ଶିବଯୋଗିଶିବାଚାର୍ଯ୍ୟବିରଚିତଃ

# ଶ୍ରୀସିଦ୍ଧାନ୍ତଶିଖାମଣିଃ



ଉତ୍କଳାନୁବାଦ

## ଡଃ. ପ୍ରମୋଦିନୀ ପଣ୍ଡା



**Shri Chintala Keshaba Rao, Smt. Chintala Damayanti**
**Brahampur, Odisha**



**Shri Kasina Chandrashekharam, Smt. Kasina Hemavathi**
**Brahampur, Odisha**



**Shri Nulu Narasimhamurthy, Smt. Nulu Bharathi**
**Brahampur, Odisha**



**Shri Alada Dewarajau, Smt. Alada Rajeshwari**
**Brahampur, Odisha**



**Shri Minduru Jagadishwara Rao, Smt. Minduru Meenakshi**
**Brahampur, Odisha**



**Shri Akasam Janardham, Smt. Akasam Anuradha**
**Brahampur, Odisha**



**Shri Karra Viswesjwar Rao, Smt. Karra Pritishree**
**Brahampur, Odisha**



**Shri Konapala Satyam, Smt. Konapala Lakshmi Devi**
**Brahampur, Odisha**



**Shri Kothakota Bhaskar Prusty, Smt. Kothakota Sasirekha**
**Brahampur, Odisha**



**Shri Asipu Lingamurthy, Smt. Asipu Vijayalakshmi**
**Brahampur, Odisha**



**Shri Kopei Sarathi, Smt. Kopei Lakshmi**
**Brahampur, Odisha**



**Shri Nulu Vignesham Smt. Nulu Mahalakshmi**
**Brahampur, Odisha**



**Shri Konapala Satya rao, Smt. Konapala Kasturi**
**Brahampur, Odisha**



**Shri Sunnapu Viswanadham, Smt. Sunnupu Lakshmi**
**Brahampur, Odisha**



**Shri Asipu Nageshwar Rao, Smt. Asipu Kantam**
**Brahampur, Odisha**



**Shri Asipu Dhabaleswar Patro, Smt. Asipu Varalakshmi**
**jaipur, Odisha**



**Smt. Nimana Parvati, Shri Nimana Swami Babu**
**Brahampur, Odisha**



**Shri Yarra Raja Rao, Smt. Yarra Mutyalu**
**Brahampur, Odisha**

ଶିବଯୋଗିଶିବାଚାର୍ଯ୍ୟବିରଚିତଃ

# ଶ୍ରୀସିଦ୍ଧାନ୍ତଶିଖାମଣିଃ

शिवयोगिशिवाचार्यविरचितः

# श्रीसिद्धान्तशिखामणिः

ଉତ୍କଳାନୁବାଦ

## ଡଃ. ପ୍ରମୋଦିନୀ ପଣ୍ଡା

उत्कलानुवादः

## डॉ. प्रमोदिनीपण्डा

**शैवभारतीशोधप्रतिष्ठान**

जंगमवाडी, वाराणसी

ଶିବଯୋଗିଶିବାଚାର୍ଯ୍ୟବିରଚିତଃ

# ଶ୍ରୀସିଦ୍ଧାନ୍ତଶିଖାମଣିଃ

*ପ୍ରକାଶକ :*
ଶୈବଭାରତୀ ଶୋଧ ପ୍ରତିଷ୍ଠାନମ୍
ଡି. ୩୫/୭୭, ଜଙ୍ଗମବାଡ଼ି ମଠ
ବାରାଣସୀ – ୨୨୧୦୦୧
ଦୂରଭାଷ : (୦୫୪୨) ୨୪୫୦୫୪୬



ପ୍ରଥମ ସଂସ୍କରଣ : ୨୦୧୫

**Copies : 1000**

ମୂଲ୍ୟ : ଟ.୬୦୦.୦୦ (ଛଅଶହ ଟଙ୍କା ମାତ୍ର)

*ଅକ୍ଷର ସଂଯୋଜନ :*
ଶ୍ୱେତପଦ୍ମା କମ୍ପ୍ୟୁଟର୍ସ
ସର୍ବୋଦୟନଗର, ପୁରୀ–୨
ଦୂରଭାଷ : (୦୬୭୫୨) ୨୨୭୭୧୫

*ମୁଦ୍ରକ :*
ରାମା ଅଫସେଟ୍

**Research Publication Series : 76**

**ISBN : 978-93-82639-16-9**

# ପ୍ରସ୍ତାବନା

ଭାରତୀୟ ଧର୍ମପରମ୍ପରାରେ ବୀରଶୈବ ଧର୍ମ ସନାତନଧର୍ମ ଭାବରେ ପରିଗଣିତ । ଏହାର ସଂସ୍ଥାପକ ପାଞ୍ଚଜଣ ଆଚାର୍ଯ୍ୟ । ସେମାନଙ୍କୁ ଶ୍ରୀଜଗଦ୍‌ଗୁରୁ ପଞ୍ଚାଚାର୍ଯ୍ୟ କୁହାଯାଏ । ସିଦ୍ଧାନ୍ତଶିଖାମଣି ଗୋଟିଏ ବୀରଶୈବ ଧର୍ମଗ୍ରନ୍ଥ ଅଟେ। ଏଣୁ ଏହି ପ୍ରସଙ୍ଗରେ ଜଗଦ୍‌ଗୁରୁ ପଞ୍ଚାଚାର୍ଯ୍ୟଙ୍କର ସଂକ୍ଷିପ୍ତ ପରିଚୟ ତଥା ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଏବଂ ଶ୍ରୀସିଦ୍ଧାନ୍ତଶିଖାମଣି ବିଷୟରେ ବିସ୍ତୃତବିବରଣୀ ଆବଶ୍ୟକ ପ୍ରତୀତ ହେଉଅଛି । ଏହି ସବୁ ବିଷୟ ପ୍ରକାଶକୁ ଆସିଲେ ଜିଜ୍ଞାସୁମାନଙ୍କର ଜିଜ୍ଞାସାର ବହୁତ ପରିମାଣରେ ସମାଧାନ ହୋଇପାରିବ ।

ଭାରତୀୟ ଧର୍ମଦର୍ଶନରେ ବୀରଶୈବ ଧର୍ମଦର୍ଶନର ଏକ ବିଶିଷ୍ଟ ସ୍ଥାନ ଅଛି। ଶିବଙ୍କର ଆଦେଶାନୁସାରେ ରେଣୁକ, ଦାରୁକ, ଘଣ୍ଟାକର୍ଣ୍ଣ, ଧେନୁକର୍ଣ୍ଣ, ବିଶ୍ୱକର୍ଣ୍ଣ ନାମକ ପାଞ୍ଚ ପ୍ରମୁଖ ଶିବଗଣ ଏହାର ସ୍ଥାପନା କରିଥିଲେ । ଏହି ପାଞ୍ଚ ଶିବଗଣଙ୍କୁ ଶ୍ରୀଜଗଦ୍‌ଗୁରୁ ପଞ୍ଚାଚାର୍ଯ୍ୟ କୁହାଯାଏ । ଏହି ପଞ୍ଚାଚାର୍ଯ୍ୟ କ୍ରମଶଃ ଆନ୍ଧ୍ରପ୍ରଦେଶର କୋଲ୍ଲୀପାକୀ କ୍ଷେତ୍ରର ସୋମନାଥ, ମଧ୍ୟପ୍ରଦେଶର ଉଜ୍ଜୟିନୀ ସ୍ଥିତ ବଟକ୍ଷେତ୍ରର ସିଦ୍ଧେଶ୍ୱର, ଆନ୍ଧ୍ରପ୍ରଦେଶର ଶ୍ରୀଶୈଳ କ୍ଷେତ୍ରର ମଲ୍ଲିକାର୍ଜୁନ ଏବଂ ଉତ୍ତରପ୍ରଦେଶର କାଶୀ କ୍ଷେତ୍ରର ବିଶ୍ୱେଶ୍ୱର ଜ୍ୟୋତିର୍ଲିଙ୍ଗରୁ ପ୍ରକଟ ହୋଇଥିଲେ । ଏମାନେ ଧର୍ମସ୍ଥାପନା ନିମନ୍ତେ ରମ୍ଭାପୁରୀ (କର୍ଣ୍ଣାଟକ), ଉଜ୍ଜୟିନୀ (ମଧ୍ୟପ୍ରଦେଶ) ଏବଂ କର୍ଣ୍ଣାଟକ, ଓଖୀମଠ (ଉତ୍ତରାଞ୍ଚଳ) ତଥା କାଶୀ (ଉତ୍ତରପ୍ରଦେଶ)ରେ ପାଞ୍ଚଟି ଧର୍ମପୀଠ ସ୍ଥାପନା କରିଥିଲେ। ଏହି ପାଞ୍ଚଟି ପୀଠ ବୀରଶୈବ ଧର୍ମର ରାଷ୍ଟ୍ରୀୟ ପୀଠ ଭାବରେ ମାନ୍ୟ । ଏହି ପାଞ୍ଚ ପୀଠର ଆଚାର୍ଯ୍ୟ ପାଞ୍ଚ ମହର୍ଷିଙ୍କୁ ସୂତ୍ରରୂପରେ ବୀରଶୈବ ଧର୍ମଦର୍ଶନର ଉପଦେଶ ଦେଲେ । ଏମାନଙ୍କ ମଧ୍ୟରୁ ରମ୍ଭାପୁରୀ ପୀଠର ଶ୍ରୀ ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ମହର୍ଷି ଅଗସ୍ତ୍ୟଙ୍କୁ ଷଡ୍‌ବିଧ ସୂତ୍ରର, ଉଜ୍ଜୟିନୀ ପୀଠର ଜଗଦ୍‌ଗୁରୁ ଦାରୁକାଚାର୍ଯ୍ୟ ମହର୍ଷି ଦଧୀଚିଙ୍କୁ ବୃଷ୍ଟିସୂତ୍ରର, ହିମବତ୍ କେଦାରପୀଠର ଘଣ୍ଟାକର୍ଣ୍ଣାଚାର୍ଯ୍ୟ ମହର୍ଷି ବ୍ୟାସଙ୍କୁ ଲମ୍ବନସୂତ୍ରର, ଶ୍ରୀଶୈଳପୀଠର ଜଗଦ୍‌ଗୁରୁ ଧେନୁକର୍ଣ୍ଣାଚାର୍ଯ୍ୟ ମହର୍ଷି ସାନନ୍ଦଙ୍କୁ ମୁକ୍ତାଗୁଚ୍ଛ ସୂତ୍ରର ଏବଂ କାଶୀପୀଠର ଜଗଦ୍‌ଗୁରୁ ବିଶ୍ୱକର୍ଣ୍ଣାଚାର୍ଯ୍ୟ ମହର୍ଷି ଦୁର୍ବାସାଙ୍କୁ ପଞ୍ଚବର୍ଣ୍ଣ ମହାସୂତ୍ରର ଉପଦେଶ ଦେଲେ । ଏଥିନିମନ୍ତେ –

ପଞ୍ଚାନନମୁଖୋଦ୍‌ଭୂତାନ୍ ପଞ୍ଚାକ୍ଷରମନୂପମାନ୍ ।
ପଞ୍ଚସୂତ୍ରକୃତୋ ବନ୍ଦେ ପଞ୍ଚାଚାର୍ଯ୍ୟାନ୍ ଜଗଦ୍‌ଗୁରୂନ୍ ।।

(ପଞ୍ଚମୁଖ ସଦାଶିବଙ୍କର ପାଞ୍ଚମୁଖରୁ ଆବିର୍ଭୂତ ହୋଇ ନ–ମ–ଶି–ବା–ୟ ଏହି ପଞ୍ଚାକ୍ଷର

ସ୍ୱରୂପ ପାଞ୍ଚ ସୂତ୍ର ଗୁଡ଼ିକର ରଚନା କରିଥିବା ଜଗଦ୍‌ଗୁରୁ ପଞ୍ଚାଚାର୍ଯ୍ୟଙ୍କୁ ନମସ୍କାର) ଏହି ପରମ୍ପରାଗତ ଶ୍ଲୋକ ପ୍ରସିଦ୍ଧ ଅଟେ ।

ଏହି ଜଗଦ୍‌ଗୁରୁମାନଙ୍କ ମଧ୍ୟରୁ କାଶୀପୀଠର ଜଗଦ୍‌ଗୁରୁ ବିଶ୍ୱକର୍ଣ୍ଣାଚାର୍ଯ୍ୟଙ୍କଦ୍ୱାରା ମହର୍ଷି ଦୁର୍ବାସାଙ୍କୁ ଉପଦିଷ୍ଟ ପଞ୍ଚବର୍ଣ୍ଣମହାସୂତ୍ରର ଭାଷ୍ୟ ଏବଂ ହିନ୍ଦିବ୍ୟାଖ୍ୟା ସହିତ ୨୦୦୫ ଖ୍ରୀଷ୍ଟାବ୍ଦରେ କାଶୀ ଜଙ୍ଗମବାଡ଼ୀ ମଠର ଶୈବଭାରତୀ ଶୋଧପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ କରାଯାଇଥିଲା । ଏହି ଶୋଧସଂସ୍ଥାର ନିର୍ଦ୍ଦେଶକ ରାଷ୍ଟ୍ରିୟ ପଣ୍ଡିତ ବ୍ରଜବଲ୍ଲଭ ଦ୍ୱିବେଦୀ ଅଥକ ପରିଶ୍ରମ କରି ହିନ୍ଦୀ ଅନୁବାଦ ସହିତ ଏହାର ସମ୍ପାଦନ କରିଥିଲେ । ଆଶା କରୁଛି ଅନ୍ୟ ଆଚାର୍ଯ୍ୟମାନଙ୍କଦ୍ୱାରା ଉପଦିଷ୍ଟ ଅବଶିଷ୍ଟ ଚାରି ସୂତ୍ରର ସଂଶୋଧନ ଓ ସମ୍ପାଦନ ମଧ୍ୟ ଶୀଘ୍ର ସମ୍ପନ୍ନ ହେବ ।

ରମ୍ଭାପୁରୀପୀଠର ଜଗଦ୍‌ଗୁରୁ ମହର୍ଷି ଅଗସ୍ତ୍ୟଙ୍କୁ ପଡ଼ବିଡ଼ି (ଷଡ଼ବିଧ) ସୂତ୍ର ସହିତ ଆଗମୋକ୍ତ ବୀରଶୈବ ସିଦ୍ଧାନ୍ତର ଯେଉଁ ସୁବିସ୍ତୃତ ଉପଦେଶ ଦେଇଥିଲେ, ତାହାର ସଂଗ୍ରହ ଶ୍ରୀ ଶିବଯୋଗୀ ଶିବାଚାର୍ଯ୍ୟ କରିଥିଲେ । ଆଜି ତାହା ଶ୍ରୀସିଦ୍ଧାନ୍ତ-ଶିଖାମଣି ନାମରେ ପ୍ରସିଦ୍ଧ ଅଟେ ।

ଶ୍ରୀସିଦ୍ଧାନ୍ତଶିଖାମଣି ବୀରଶୈବ ଧର୍ମଦର୍ଶନର ପ୍ରତିପାଦକ ଏକ ଅଦ୍ୱିତୀୟ ସଂସ୍କୃତ ଗ୍ରନ୍ଥ ଅଟେ । ଯେପରି ପ୍ରସ୍ଥାନତ୍ରୟୀ ବେଦାନ୍ତ ଉପନିଷଦ୍‌ରେ ସାରଭୂତ ଭଗବଦ୍‌ଗୀତା ଭଗବାନ୍ ଶ୍ରୀକୃଷ୍ଣଦ୍ୱାରା ଉପଦିଷ୍ଟ ହେବା ପରେ ବି ମହର୍ଷି ବ୍ୟାସଦେବଦ୍ୱାରା ଲିପିବଦ୍ଧ ହୋଇଥିଲା, ସେହିପରି ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଦ୍ୱାରା ମହର୍ଷି ଅଗସ୍ତ୍ୟଙ୍କୁ ଉପଦିଷ୍ଟ ବୀରଶୈବ ସିଦ୍ଧାନ୍ତକୁ ଶିବଯୋଗୀ ଶିବାଚାର୍ଯ୍ୟ ନାମକ ସୁପ୍ରସିଦ୍ଧ ବୀରଶୈବ ଆଚାର୍ଯ୍ୟ ରେଣୁକାଗସ୍ତ୍ୟସମ୍ବାଦ ଭାବରେ ଲିପିବଦ୍ଧ କରିଥିଲେ । ଯେପରି ଭଗବଦ୍‌ଗୀତା ସମସ୍ତ ଉପନିଷଦ୍‌ର ସାରସର୍ବସ୍ୱ ଅଟେ, ସେହିପରି ଶ୍ରୀସିଦ୍ଧାନ୍ତଶିଖାମଣି କାମିକାଦି ବାତୁଳାନ୍ତ ୨୮ ସିଦ୍ଧାନ୍ତାଗମର ସାରଭୂତ ଅଟେ ।

ଏକୋଇଶି ପରିଚ୍ଛେଦରେ ଉପନିବଦ୍ଧ ଶ୍ରୀସିଦ୍ଧାନ୍ତଶିଖାମଣିରେ ପ୍ରାୟଃ ୧୪୦୦ ଶ୍ଲୋକ ଅଛି । ଏହି ଗ୍ରନ୍ଥର ପ୍ରଥମ ପରିଚ୍ଛେଦରୁ ଚତୁର୍ଥ ପରିଚ୍ଛେଦ ପର୍ଯ୍ୟନ୍ତ ମଙ୍ଗଳାଚରଣ, କବିଙ୍କର ବଂଶବର୍ଣ୍ଣନ, କୈଳାସ ପର୍ବତ ବର୍ଣ୍ଣନ, ଜଗଦ୍‌ଗୁରୁରେଣୁକାଚାର୍ଯ୍ୟଙ୍କର ଲିଙ୍ଗାବତାରର ବର୍ଣ୍ଣନ ଓ ମହର୍ଷି ଅଗସ୍ତ୍ୟଙ୍କର ଆଶ୍ରମ ଆଦିର ବର୍ଣ୍ଣନ କରାଯାଇଛି । ଏକୋଇଶି ପରିଚ୍ଛେଦରେ ବିଭୀଷଣଙ୍କର ପ୍ରାର୍ଥନା ଅନୁସାରେ ଶ୍ରୀଲଙ୍କାରେ ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ତିନି କୋଟି ଶିବଲିଙ୍ଗ ଏକ ସଙ୍ଗେ ସ୍ଥାପନା କରିବାର ମହିମା ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥର ପଞ୍ଚମ ପରିଚ୍ଛେଦରୁ ବିଂଶ (କୋଡ଼ିଏ) ପରିଚ୍ଛେଦ ପର୍ଯ୍ୟନ୍ତ ବୀରଶୈବ ଧର୍ମଦର୍ଶନର ଷଡ୍‌ସ୍ଥଳ ସିଦ୍ଧାନ୍ତ ୧୦୧ ଅବାନ୍ତର ସ୍ଥଳ ଭାବରେ ବିସ୍ତାର ସହିତ ବର୍ଣ୍ଣିତ ହୋଇଛନ୍ତି ।

ଶ୍ରୀସିଦ୍ଧାନ୍ତଶିଖାମଣି ଏପରି ପ୍ରଥମଗ୍ରନ୍ଥ ଯେଉଁଥିରେ ବୀରଶୈବ ଷଡ୍‌ସ୍ଥଳ ସିଦ୍ଧାନ୍ତ ୧୦୧ ସ୍ଥଳ ଭାବରେ ଶାସ୍ତ୍ରୋକ୍ତରୀତିରେ ପ୍ରତିପାଦିତ ହୋଇଛି । ଅନ୍ୟ ଶୈବାଗମରେ ଷଡ୍‌ସ୍ଥଳର କେବଳ ନାମୋଲ୍ଲେଖ ଏବଂ ତାହାର ସିଦ୍ଧାନ୍ତକୁ ପ୍ରତିପାଦିତ କରାଯାଇଛି । କିନ୍ତୁ ଶ୍ରୀଶିବଯୋଗୀଶିବାଚାର୍ଯ୍ୟ ଆଗମୋକ୍ତ ଷଡ୍‌ସ୍ଥଳ ସିଦ୍ଧାନ୍ତକୁ ଆଧାର କରି ସେହି ଷଡ୍‌ସ୍ଥଳକୁ ୧୦୧ ସ୍ଥଳରେ ବିସ୍ତୃତ କରି ଏକ ଅପୂର୍ବ ଓ ଅଦ୍‌ଭୁତ ପଦ୍ଧତିରେ ତାହାର ବିବେଚନା କରିଛନ୍ତି । ଏଣୁ ଷଡ୍‌ସ୍ଥଳର ୧୦୧ ସ୍ଥଳ ଭାବରେ ପ୍ରଥମ ବିବେଚନା ଶ୍ରୀ ଶିବଯୋଗୀ ଶିବାଚାର୍ଯ୍ୟ ମାନ୍ୟ ଅଟନ୍ତି ।

**ଗ୍ରନ୍ଥର ନାମରହସ୍ୟ –**

ଶ୍ରୀରେଣୁକାଗସ୍ତ୍ୟସଂବାଦାତ୍ମକ ଏହି ଗ୍ରନ୍ଥର 'ଶ୍ରୀସିଦ୍ଧାନ୍ତଶିଖାମଣି' ନାମକରଣ କରାଯାଇଛି । ଏହାର ରହସ୍ୟ ହେଉଛି, କାମିକାଦି ବାତୁଳାନ୍ତ ଶିବୋପଦିଷ୍ଟ ୨୮ଶୈବାଗମ ସିଦ୍ଧାନ୍ତାଗମ ନାମରେ ପ୍ରସିଦ୍ଧ ଅଟନ୍ତି[୧] । ଏହି ସିଦ୍ଧାନ୍ତାଗମର ଉତ୍ତରଭାଗରେ ବୀରଶୈବ ସିଦ୍ଧାନ୍ତ ପ୍ରତିପାଦିତ ହୋଇଅଛି । ସେହି ବୀରଶୈବ ସିଦ୍ଧାନ୍ତକୁ ଶ୍ରୀଶିବଯୋଗୀ ଶିବାଚାର୍ଯ୍ୟ ନିଜର ବିଶିଷ୍ଟ ରଚନାଶୈଳୀରେ ସଂଗୃହୀତ କରିଛନ୍ତି । ଏହି ସଂଗୃହୀତ ସିଦ୍ଧାନ୍ତ ଶିଖାମଣି ଅର୍ଥାତ୍ ଶିରୋରତ୍ନ ପରି ହୋଇଥିବାରୁ ସିଦ୍ଧାନ୍ତଶିଖାମଣି ଅଟେ । ଏହି କଥାକୁ ସମର୍ଥ କରି ସ୍ୱୟଂ ଗ୍ରନ୍ଥକାର କହିଛନ୍ତି –

ସର୍ବେଷାଂ ଶୈବତନ୍ତ୍ରାଣାମୁତ୍ତରତ୍ୱାନ୍ନିରୁତ୍ତରମ୍ ।
ନାମ୍ନା ପ୍ରତୀୟତେ ଲୋକେ ଯତ୍‌ସିଦ୍ଧାନ୍ତଶିଖାମଣିଃ ।।

ଆଗମ ପ୍ରତିପାଦିତ ଅନେକ ସିଦ୍ଧାନ୍ତଗୁଡ଼ିକ ମଧ୍ୟରେ ବୀରଶୈବ ସିଦ୍ଧାନ୍ତ ଏକ ଶିଖାମଣି ସଦୃଶ ଏହି ଗ୍ରନ୍ଥରେ ପ୍ରସ୍ତୁତ ହୋଇଅଛି। ତେଣୁ ଏହି ଗ୍ରନ୍ଥର ନାମ ଶ୍ରୀସିଦ୍ଧାନ୍ତଶିଖାମଣି ଅଟେ ।

**ଗ୍ରନ୍ଥକାର ଏବଂ ତାଙ୍କର ସମୟ –**

ଗ୍ରନ୍ଥକାର ଶ୍ରୀଶିବଯୋଗୀଶିବାଚାର୍ଯ୍ୟ ଏହି ଗ୍ରନ୍ଥର ପ୍ରଥମପରିଚ୍ଛେଦର ୧୩ରୁ୨୦ ପର୍ଯ୍ୟନ୍ତ ଶ୍ଳୋକରେ ନିଜର ବଂଶର ବର୍ଣ୍ଣନା କରିଛନ୍ତି । ଏଥିରୁ ଜଣାଯାଏ ଯେ ତାଙ୍କ ବଂଶରେ ବହୁତ ବର୍ଷ ପୂର୍ବେ ଶିବଯୋଗୀନାମରେ ଜଣେ ମହାନ୍ ଯୋଗୀ ଜନ୍ମ ହୋଇଥିଲେ ।

---

୧. ସିଦ୍ଧାନ୍ତଶବ୍ଦଃ ପଙ୍କଜାଦିଶବ୍ଦବଦ୍ ଯୋଗରୂଢ୍ୟା ଶିବପ୍ରଣୀତେଷୁ କାମିକାଦିଷୁ ଦଶାଷ୍ଟାଦଶ–ତନ୍ତ୍ରେଷୁ ପ୍ରସିଦ୍ଧଃ । (ରତ୍ନତ୍ରୟମ୍, ପୃ.୫)

ତାଙ୍କର ବଂଶରେ ମୁଦ୍ଦଦେବନାମକ ଆଚାର୍ଯ୍ୟ ଥିଲେ । ତାଙ୍କର ସିଦ୍ଧନାଥନାମକ ସୁପୁତ୍ର ଥିଲେ । ସିଦ୍ଧନାଥଙ୍କର ଶିବଯୋଗୀନାମକ ପୁତ୍ର ଉତ୍ପନ୍ନ ହେଲେ । ଏହି ଶିବଯୋଗୀ ହିଁ ପ୍ରସ୍ତୁତ ଗ୍ରନ୍ଥର ରଚୟିତା ଶିବଯୋଗୀ ଶିବାଚାର୍ଯ୍ୟ ଅଟନ୍ତି ।




ଏହି ବଂଶବର୍ଣ୍ଣନରୁ ଶିବଯୋଗୀ ଶିବାଚାର୍ଯ୍ୟଙ୍କର ଦେଶ ଓ କାଳ ବିଷୟରେ ସ୍ପଷ୍ଟ ଉଲ୍ଲେଖ ନାହିଁ । ୧୭୦୦ଶତାବ୍ଦୀରେ କର୍ଣ୍ଣାଟକର ମାରିତୋଣ୍ଟଦାର୍ଯ୍ୟନାମକ ବିଦ୍ୱାନ୍ ଏହି ଗ୍ରନ୍ଥ ଉପରେ ତତ୍ତ୍ୱପ୍ରଦୀପିକା ନାମକ ସଂସ୍କୃତ ବ୍ୟାଖ୍ୟା ଲେଖିଥିଲେ । ସେ ନିଜର ବ୍ୟାଖ୍ୟାନର ଅବତରଣିକାର ପ୍ରାରମ୍ଭରେ ଲେଖିଛନ୍ତି – 'ଅତ୍ର କଳିକାଳ– ପ୍ରବେଶାନନ୍ତରଂ ଲୋକହିତାର୍ଥଂ ରେଣୁକଗଣେଶ୍ୱର ଇତି ପ୍ରସିଦ୍ଧୋ ରେବଣସିଦ୍ଧେଶ୍ୱରଃ କୁମ୍ଭସମବାୟ ବୀରଶୈବଶାସ୍ତ୍ରମୁପଦିଷ୍ଟବାନ୍ । ତଦନନ୍ତରଂ ରେବଣସିଦ୍ଧେଶ୍ୱରଦୃଷ୍ଟିଗର୍ଭସମ୍ଭୂତସିଦ୍ଧ– ରାମେଶ୍ୱରସମ୍ପ୍ରଦାୟପ୍ରସିଦ୍ଧଃ ସକଳନିଗମାଗମପାରଗଃ ଶିବଯୋଗୀଶ୍ୱର ଇତ୍ୟଭିଧାନବାନ୍ କଣ୍ଠିନ୍ନାହେଶ୍ୱରସ୍ତଦ୍ରେଣୁକାଗସ୍ତ୍ୟସଂବାଦଂ ନିର୍ବିଘ୍ନେନ ସ୍ୱଶିଷ୍ୟାନ୍ ବୋଧୟିତୁଂ ସ୍ୱମନସି କୃତସଙ୍କଳ୍ପସିଦ୍ଧାନ୍ତଶ୍ରେଷ୍ଠନିଗମାଗମୈକ୍ୟଗର୍ଭୀକାରଲକ୍ଷଣସ୍ୱେଷ୍ଟଦେବତାନମସ୍କାରରୂପଂ ମଙ୍ଗଳଂ ଶିଷ୍ୟଶିକ୍ଷାର୍ଥଂ ସପ୍ତଭିଃ ଶ୍ଳୋକୈର୍ନିବଧ୍ନାତି୨।' ଏହି ଅବତରଣିକାରେ ଗ୍ରନ୍ଥକାର ଶିବଯୋଗୀ ଶିବାଚାର୍ଯ୍ୟଙ୍କୁ ଶ୍ରୀସିଦ୍ଧରାମେଶ୍ୱରଙ୍କର ସମ୍ପ୍ରଦାୟରେ ସମ୍ବନ୍ଧ ଅର୍ଥାତ୍ ତାଙ୍କର ବଂଶଜ କୁହାଯାଇଛି । କିନ୍ତୁ ମରିତୋଣ୍ଟଦାର୍ଯ୍ୟଙ୍କର ଏହି ଉକ୍ତି ତର୍କସଙ୍ଗତ ପ୍ରତୀତ ହେଉନାହିଁ ।

ମହାରାଷ୍ଟ୍ରର ସୋଲାପୁର ପ୍ରାନ୍ତରେ ୧୨ଶ ଶତାବ୍ଦୀରେ ଶ୍ରୀସିଦ୍ଧରାମେଶ୍ୱର ନାମକ

---

୨. ସି. ଶି., ପୃ. ୧–୨

ଜଣେ ମହାନ୍ ଶିବଯୋଗୀ ଆଚାର୍ଯ୍ୟ ଥିଲେ । ତାଙ୍କର ପିତାଙ୍କ ନାମ ମୁଦ୍ଦଗୌଡ଼ା ଥିଲା । ଶିବଯୋଗୀ ଶିବାଚାର୍ଯ୍ୟ ନିଜର ପୂର୍ବଜ ମଧ୍ୟରୁ ଜଣଙ୍କ ନାମ ମୁଦ୍ଦଦେବ କହିଛନ୍ତି । ଅନ୍ୟତ୍ର ମୁଦ୍ଦଗୌଡ଼ାଙ୍କର ପୁତ୍ର ସିଦ୍ଧରାମ ଥିଲେ । ଏଠାରେ ମୁଦ୍ଦଦେବଙ୍କର ପୁତ୍ର ସିଦ୍ଧନାଥ । ଏହିପରି ନାମସାମ୍ୟହେତୁ ମୁଦ୍ଦଦେବଙ୍କୁ ମୁଦ୍ଦଗୌଡ଼ା ଭାବି ଓ ସିଦ୍ଧନାଥଙ୍କୁ ସିଦ୍ଧରାମ ମାନି ମରିତୋଣ୍ଟଦାର୍ଯ୍ୟଙ୍କ ମନରେ ଭ୍ରମ ଉତ୍ପନ୍ନ ହୋଇଥାଇପାରେ। ବସ୍ତୁତଃ ସୋଲାପୁରର ଶ୍ରୀସିଦ୍ଧରାମେଶ୍ୱରଙ୍କ ବଂଶ ସହିତ ଶିବଯୋଗୀ ଶିବାଚାର୍ଯ୍ୟଙ୍କର ସମ୍ବନ୍ଧ ହୋଇପାରିବନି । କର୍ଣ୍ଣାଟକର ବୀରଶୈବ ବିଦ୍ୱାନ୍ ଡା. ଜ. ଚ. ନି.[୩] ଓ ଏନ୍. ଆର୍. କରିବସବ ଶାସ୍ତ୍ରୀ[୪] ଆଦି ବିଦ୍ୱାନ୍ ଶ୍ରୀମରିତୋଣ୍ଟଦାର୍ଯ୍ୟଙ୍କର ବିଚାରସରଣିକୁ ବି ସଙ୍ଗତ ମାନିଛନ୍ତି ।

**ଗ୍ରନ୍ଥର କାଳନିର୍ଣ୍ଣୟରେ ଦାସଗୁପ୍ତାଙ୍କର ଅନବଧାନତା –**

ଡା. ଏସ୍. ଏନ୍. ଦାସଗୁପ୍ତା ଭାରତୀୟ ଦର୍ଶନଶାସ୍ତ୍ରର ଜଣେ ଜଣାଶୁଣା ଇତିହାସକାର । ସେ (A History of Indian Philosophy Vol.No.5, Page No.44)ରେ ଶ୍ରୀସିଦ୍ଧାନ୍ତଶିଖାମଣିର କାଳନିର୍ଣ୍ଣୟ ସମୟରେ ଲେଖିଛନ୍ତି – ଶ୍ରୀସିଦ୍ଧାନ୍ତ-ଶିଖାମଣିରେ ଶ୍ରୀବସବେଶ୍ୱରଙ୍କର ନାମୋଲ୍ଲେଖ ଗ୍ରନ୍ଥକୁ ପରବର୍ତ୍ତୀ ବତାଉଛି ଏବଂ ଶ୍ରୀକରଭାଷ୍ୟରେ ଶ୍ରୀସିଦ୍ଧାନ୍ତଶିଖାମଣିର ଉଲ୍ଲେଖ ତାହାକୁ ଶ୍ରୀପତି ପଣ୍ଡିତାରାଧ୍ୟଠାରୁ ପୂର୍ବବର୍ତ୍ତିରଚନା ସୂଚିତ କରୁଛି । ଶ୍ରୀକରଭାଷ୍ୟ ଠାରୁ ପୂର୍ବବର୍ତ୍ତି ଶ୍ରୀସିଦ୍ଧାନ୍ତଶିଖାମଣିକୁ ବସବେଶ୍ୱରଙ୍କଠାରୁ ଅର୍ବାଚୀନ ମାନି ହେଉନି କାରଣ ତାଙ୍କର ଉଲ୍ଲେଖ ଗ୍ରନ୍ଥରେ ଦେଖାଯାଉନାହିଁ । କିନ୍ତୁ ଶ୍ରୀମରିତୋଣ୍ଟଦାର୍ଯ୍ୟକୃତ ତତ୍ତ୍ୱପ୍ରଦୀପିକାବ୍ୟାଖ୍ୟାର ଅବତରଣିକାରେ ବୀରଭଦ୍ରାଚାର ଏବଂ ବସବେଶ୍ୱରୋଚାରଙ୍କର ଉଲ୍ଲେଖ ଅଛି[୫] ।

ଏଥିରୁ ଏହା ପ୍ରତିପାଦିତ ହେଉଛି ଯେ ଶ୍ରୀସିଦ୍ଧାନ୍ତଶିଖାମଣିର ତତ୍ତ୍ୱପ୍ରଦୀପିକା-ବ୍ୟାଖ୍ୟାକାର ଶ୍ରୀମରିତୋଣ୍ଟଦାର୍ଯ୍ୟ ଶ୍ରୀବସବେଶ୍ୱରଙ୍କଠାରୁ ପରବର୍ତ୍ତୀ, କିନ୍ତୁ ମୂଳଲେଖକ ଶିବଯୋଗୀ ଶିବାଚାର୍ଯ୍ୟ ନୁହନ୍ତି । ଶ୍ରୀଦାସଗୁପ୍ତ ବୋଧହୁଏ ମୂଳଲେଖା ତଥା ତାହାର ବ୍ୟାଖ୍ୟା ମଧ୍ୟରେ ଥିବା ସମୟ ବ୍ୟବଧାନକୁ ବିଚାର ନ କରି ଏପରି ମତ ଦେଇଛନ୍ତି।

---

୩. କନ୍ନଡ଼ମଣିକାନ୍ତିପୀଠିକା, ପୃ. ୧୬ ରୁ ୨୦ (ଖ୍ରୀ. ୧୯୫୧)

୪. ସିଦ୍ଧାନ୍ତଶିଖାମଣି, କନ୍ନଡ଼ ପ୍ରସ୍ତାବନା, ପୃ.୫ (ଖ୍ରୀ. ୧୯୭୧)

୫. ସି. ଶି. – ୯–୩୬, ତତ୍ତ୍ୱପ୍ରଦୀପିକା ବ୍ୟାଖ୍ୟା, ପୃ. ୧୮୫ (ବୀରଶୈବ ସାହିତ୍ୟ ସଂଶୋଧନ ମଣ୍ଡଳ, ସୋଲାପୁର ପ୍ରକାଶନ, ଖ୍ରୀ. ୧୯୯୦)

ପ୍ରସାଦାଦ୍ ଦେବତାଭକ୍ତିଃ ପ୍ରସାଦୋ ଭକ୍ତିସମ୍ଭବଃ ।
ଯଥୈବାଙ୍କୁରତୋ ବୀଜଂ ବୀଜତୋ ବା ଯଥାଙ୍କୁରଃ ।।
(ସି. ଶି.୯/୩୬)

ମହାତ୍ମା ବସବେଶ୍ୱର ଶ୍ରୀସିଦ୍ଧାନ୍ତଶିଖାମଣିର ଏହି ଶ୍ଳୋକକୁ ପ୍ରମାଣ ରୂପରେ ଉଦ୍ଧୃତ କରିଛନ୍ତି[୬] । ୧୨ଶ ଶତାବ୍ଦୀର ଚନ୍ନବସବେଶ୍ୱର ଆଦି ସନ୍ଥ ଜାତିବାଦ ନିରାକରଣ ନିମନ୍ତେ –

ଶିବଭକ୍ତିସମାବେଶେ କ୍ୱ ଜାତିପରିକଳ୍ପନା ।
ଇନ୍ଧନେଷ୍ୱଗ୍ନିଦଗ୍ଧେଷୁ କୋ ବା ଭେଦଃ ପ୍ରକୀର୍ତ୍ତ୍ୟତେ ।।
(ସି. ଶି. ୧୧/୫୫)

ଶ୍ରୀସିଦ୍ଧାନ୍ତଶିଖାମଣିର ଏହି ଶ୍ଳୋକ ଉଦାହରଣ ଦେଇଛନ୍ତି । ଏଥିରୁ ଏହା ସ୍ପଷ୍ଟ ଯେ ଶ୍ରୀଶିବଯୋଗୀଶିବାନନ୍ଦ ୧୨ଶ ଶତାବ୍ଦୀ ପୂର୍ବରୁ ବିଦ୍ୟମାନ ଥିଲେ ।

ଏହା ବ୍ୟତୀତ ଶ୍ରୀପତି ପଣ୍ଡିତାରାଧ୍ୟଙ୍କ ବିରଚିତ ଶ୍ରୀକରଭାଷ୍ୟରେ[୭] ମଧ ଶ୍ରୀସିଦ୍ଧାନ୍ତଶିଖାମଣିର ଉଲ୍ଲେଖ ଅଛି । ଭାରତୀୟ ଦର୍ଶନଶାସ୍ତ୍ରର ସୁପ୍ରସିଦ୍ଧବିଦ୍ୱାନ୍ ସ୍ୱର୍ଗୀୟ ପଣ୍ଡିତ ବଳଦେବ ଉପାଧ୍ୟାୟ ଶ୍ରୀପତି ପଣ୍ଡିତରାଧ୍ୟଙ୍କର ସମୟ[୮] ୧୦୬୦ ଖ୍ରୀଷ୍ଟାବ୍ଦ ମାନିଛନ୍ତି । ଶ୍ରୀକରଭାଷ୍ୟରେ ଶ୍ରୀରାମାନୁଜାଚାର୍ଯ୍ୟ ତଥା ତାଙ୍କର ଶ୍ରୀଭାଷ୍ୟର ଉଲ୍ଲେଖ ଅଛି । ଭାରତବର୍ଷର ଭୂତପୂର୍ବ ରାଷ୍ଟ୍ରପତି ଡା. ସର୍ବପଲ୍ଲୀ ରାଧାକୃଷ୍ଣନ୍ ଶ୍ରୀରାମାନୁଜା–ଚାର୍ଯ୍ୟଙ୍କର ସମୟ ୧୦୨୭ ଖ୍ରୀଷ୍ଟାବ୍ଦ ମାନିଛନ୍ତି[୯] ।

କାଶୀପୀଠର ପୂର୍ବ ଜଗଦ୍‌ଗୁରୁ ବୀରଭଦ୍ର ଶିବାଚାର୍ଯ୍ୟ[୧୦] ତଥା ଶ୍ରୀ ଟୀ.ଏସ୍. ନାରାୟଣଶାସ୍ତ୍ରୀ[୧୧] ପ୍ରାଚୀନ ଶିଳାଲେଖ ଆଧାରରେ ଶ୍ରୀକରଭାଷ୍ୟର ସମୟ କ୍ରମଶଃ ୧୦୬୪ଖ୍ରୀଷ୍ଟାବ୍ଦ ତଥା ୧୦୭୨ ଖ୍ରୀଷ୍ଟାବ୍ଦ ମାନିଛନ୍ତି । ଏହି ବିଦ୍ୱାନମାନଙ୍କର ବିଚାରରୁ

---

୬. ମହାତ୍ମା ବସବେଶ୍ୱରଙ୍କର ବଚନଭାଗ–୧, ପୃ.୧୦୭, କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟ ପ୍ରକାଶନ, ଖ୍ରୀ.୧୯୭୬ ବର୍ଷ ।

୭. ବ୍ରହ୍ମସୂତ୍ର, ଶ୍ରୀକରଭାଷ୍ୟ, ୧–୧–୧ ।

୮. ଭାରତୀୟଦର୍ଶନ, ପୃ.–୪୬୯, ଚୌଖମ୍ଭା ଓରିୟଣ୍ଟାଲିୟା, ଖ୍ରୀ.୧୯୭୬ ।

୯. Indian Philosophy, Vol.No.2, Page No.665, Published by D.R.Bhagi, Bombay 1977 A.D.

୧୦. ଶ୍ରୀକରଭାଷ୍ୟ ଚତୁଃ ସୂତ୍ରୀପୀଠିକା, ପୃ.–୪, ଜଙ୍ଗମବାଡ଼ୀ ମଠ, ବାରାଣସୀ ପ୍ରକାଶନ, ଖ୍ରୀ.୧୯୫୬।

୧୧. The Indian Review, Vol.No. 16, May 1915, Page No. 5

ଶ୍ରୀପତି ପଣ୍ଡିତାରାଧ୍ୟଙ୍କର ସମୟ ନିଶ୍ଚିତ ଭାବରେ ୧୧ଶ ଶତାବ୍ଦୀ ସିଦ୍ଧ ହେଉଛି । ତାଙ୍କଦ୍ୱାରା ରଚିତ ଶ୍ରୀକରଭାଷ୍ୟରେ ଶ୍ରୀସିଦ୍ଧାନ୍ତଶିଖାମଣିର ରଚୟିତା ଶ୍ରୀଶିବଯୋଗୀ ଶିବାଚାର୍ଯ୍ୟଙ୍କର ଉଲ୍ଲେଖ ଥିବାରୁ ତାଙ୍କର ସମୟ ନିଶ୍ଚିତ ଭାବରେ ୧୧ଶ ଶତାବ୍ଦୀର ପୂର୍ବବର୍ତ୍ତୀ । ଶ୍ରୀସିଦ୍ଧାନ୍ତଶିଖାମଣିରେ ଶ୍ରୀଶିବଯୋଗୀ ଶିବାଚାର୍ଯ୍ୟ କହିଛନ୍ତି –

ଯେନ ରକ୍ଷାବତୀ ଜାତା ଶିବଭକ୍ତିଃ ସନାତନୀ ।
ବୌଦ୍ଧାଦିପ୍ରତିସିଦ୍ଧାନ୍ତମହାଧ୍ୱାନ୍ତାଂଶୁମାଳିନା ।।

ବୌଦ୍ଧ ଆଦି ପ୍ରତିସିଦ୍ଧାନ୍ତରୁ ଶିବଭକ୍ତଙ୍କୁ ରକ୍ଷା କରିବା ନିମନ୍ତେ ଏହି ଗ୍ରନ୍ଥର ରଚନା କରାଯାଇଥିବାର ଏଥିରୁ ଜଣା ଯାଉଛି । ଭାରତବର୍ଷରେ ବୌଦ୍ଧଧର୍ମର ପ୍ରବଳ ପ୍ରଚାର ୬୦୦–୮୦୦ଖ୍ରୀଷ୍ଟାବ୍ଦରେ ହୋଇଥିଲା । ତେଣୁ ଶ୍ରୀସିଦ୍ଧାନ୍ତଶିଖାମଣିର ରଚନାକାଳ ମଧ୍ୟ ଏହି ସମୟରେ ଅର୍ଥାତ୍ ୮ମ ଶତାବ୍ଦୀ ମାନିବା ଉଚିତ୍ ପ୍ରତିଭାତ ହେଉଛି ।

**ଶିବଯୋଗୀ ଶିବାଚାର୍ଯ୍ୟଙ୍କର ଦେଶ –**

ଶ୍ରୀସିଦ୍ଧାନ୍ତଶିଖାମଣିର ରଚନାକାର ଶ୍ରୀଶିବଯୋଗୀ ଶିବାଚାର୍ଯ୍ୟ ନିଜର ବଂଶବର୍ଣ୍ଣନ ପ୍ରସଙ୍ଗରେ ଗ୍ରାମ ଅଥବା ପ୍ରଦେଶର ଉଲ୍ଲେଖ କରି ନାହାନ୍ତି । ତେଣୁ ଏ କାର୍ଯ୍ୟ କଠିନ ଅଟେ । ମୈସୂରର ବେ. ପଂ. କାଶୀନାଥ ଶାସ୍ତ୍ରୀ ଏବଂ ଡା.ଜ.ଚ.ନି. ମହୋଦୟ ଶିବଯୋଗୀ ଶିବାଚାର୍ଯ୍ୟଙ୍କୁ କର୍ଣ୍ଣାଟକ ପ୍ରଦେଶର ବୀଜାପୁରା ଜିଲ୍ଲାର ସାଲୋଟପୀ ଗ୍ରାମନିବାସୀ ବୋଲି ପ୍ରତିପାଦନ କରିଛନ୍ତି ।

**ଶ୍ରୀସିଦ୍ଧାନ୍ତଶିଖାମଣିର ଟୀକାକାର –**

ବୀରଶୈବ ଧର୍ମଗ୍ରନ୍ଥ ରୂପରେ ପ୍ରଖ୍ୟାତ ଶ୍ରୀସିଦ୍ଧାନ୍ତଶିଖାମଣି ଗ୍ରନ୍ଥର ସଂସ୍କୃତ, କନ୍ନଡ଼, ହିନ୍ଦୀ, ମରାଠୀ, ତେଲୁଗୁ ତଥା ଇଂରାଜୀ ଆଦି ଭାଷାରେ ବିଦ୍ୱାନ୍‌ମାନେ ଅନେକ ବ୍ୟାଖ୍ୟା ଲେଖିଛନ୍ତି । ଏହା ବୀରଶୈବ ଧର୍ମର ଏହି ଗ୍ରନ୍ଥର ଲୋକପ୍ରିୟତାକୁ ବତାଉଛି ।

୧୭ଶ ଶତାବ୍ଦୀରେ ସୋସଲେ ରେବଣାରାଧ୍ୟ ନାମକ କନ୍ନଡ଼ ବିଦ୍ୱାନ୍ ଏହି ଗ୍ରନ୍ଥ ଉପରେ ସିଦ୍ଧାର୍ଥବୋଧିନୀ ନାମକ ବ୍ୟାଖ୍ୟା ଲେଖିଛନ୍ତି । ତାଙ୍କ ପରେ ୧୨ଶ ଶତାବ୍ଦୀରେ ଶ୍ରୀ ମରିତୋଣ୍ଟଦାର୍ଯ୍ୟ 'ତତ୍ତ୍ୱପ୍ରଦୀପିକା' ନାମକ ସଂସ୍କୃତ ବ୍ୟାଖ୍ୟା ଲେଖିଲେ । ତତ୍‌ପଶ୍ଚାତ୍ ମହୀଶୂରର ଆସ୍ଥାନବିଦ୍ୱାନ୍ ଲିଂ. ଏନ୍. ଆର୍. କରିବସବ ଶାସ୍ତ୍ରୀ, ମହୀଶୂରର ଲିଂ. ପଂ. କାଶୀନାଥ ଶାସ୍ତ୍ରୀ, ଜୀ. ଏମ୍. ଏଲ୍. ନାଗଣ୍ଣା, ବୀଜାପୁରର ଜ୍ଞାନଯୋଗାଶ୍ରମର ସଂସ୍ଥାପକ ଶ୍ରୀମଲ୍ଲିକାର୍ଜୁନ ସ୍ୱାମୀ ଆଦି ୨୦ଶ ଶତାବ୍ଦୀର ବିଦ୍ୱାନ୍ କର୍ଣ୍ଣଡ ଭାଷାରେ ନିଜ ନିଜ ଶୈଳୀରେ ବ୍ୟାଖ୍ୟା ଲେଖିଥିଲେ ।

କର୍ଣ୍ଣାଟକର ଚିତ୍ରଦୁର୍ଗର ଏସ୍. ଏସ୍. ସିଦ୍ଦୟା ନାମକ ବିଦ୍ୱାନ୍ ସିଦ୍ଧାନ୍ତଶିଖାମଣି ଉପରେ କନ୍ନଡ଼ ଭାଷାରେ 'ଭାମିନୀଷଟ୍‌ପଦୀ' ନାମକ କନ୍ନଡ଼ ଛନ୍ଦରେ ପଦ୍ୟରେ ବ୍ୟାଖ୍ୟା ଲେଖିଥିଲେ । ଏହା ଏକ ବିଲକ୍ଷଣ କୃତି ଅଟେ । ବାଙ୍ଗାଲୋର ବିଶ୍ୱବିଦ୍ୟାଳୟର ଭୂତପୂର୍ବ ସଂସ୍କୃତ ବିଭାଗାଧ୍ୟକ୍ଷ ଡାଃ. ଏମ୍. ଶିବକୁମାର ସ୍ୱାମୀ ୧୯୬୮ ଖ୍ରୀଷ୍ଟାବ୍ଦରେ ଶ୍ରୀସିଦ୍ଧାନ୍ତଶିଖାମଣିର କିଛି ବିଶେଷ ଶ୍ଳୋକମାନଙ୍କର ଇଂରାଜୀ ଅନୁବାଦ କରି ତାହାକୁ 'ଶ୍ରୀରେଣୁକଗୀତା' ନାମରେ ପ୍ରକାଶିତ କରିଥିଲେ । ପରେ ସେ ମରିତୋଣ୍ଟଦାର୍ଯ୍ୟଙ୍କର ବ୍ୟାଖ୍ୟା ସହିତ ସମ୍ପୂର୍ଣ୍ଣ ଗ୍ରନ୍ଥର ଇଂରାଜୀ ଅନୁବାଦ କରିଛନ୍ତି ।

ମହାତ୍ମାଗାନ୍ଧୀ କାଶୀ ବିଦ୍ୟାପୀଠର କନ୍ନଡ଼ ଭାଷାର ପ୍ରାଧ୍ୟାପକ ଲିଙ୍ଗୈକ୍ୟ ଶ୍ରୀ ଷ. ବ୍ର. ଡା. ଶ୍ରୀପତି ପଣ୍ଡିତାରାଧ୍ୟ ଶିବାଚାର୍ଯ୍ୟ ହିରେଜେବରଗୀ (ଶାନ୍ତ ଶର୍ମା ହିରେମଠ) ଶ୍ରୀ ସିଦ୍ଧାନ୍ତଶିଖାମଣିର 'ଭାବମଞ୍ଜୂଷା' ନାମକ ହିନ୍ଦୀ ବ୍ୟାଖ୍ୟା ଲେଖିଥିଲେ । କିନ୍ତୁ ତାଙ୍କର ଅକାଳ ମୃତ୍ୟୁ ହେତୁ ସେ କାର୍ଯ୍ୟ ସମାପ୍ତ ଓ ପ୍ରକାଶିତ ହୋଇ ପାରିଲାନି । କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ପୂର୍ବ ଆଚାର୍ଯ୍ୟ ପ୍ର. ରାଧେଶ୍ୟାମ ଚତୁର୍ବେଦୀ ଶ୍ରୀସିଦ୍ଧାନ୍ତଶିଖାମଣିର 'ଜ୍ଞାନବତୀ' ନାମକ ହିନ୍ଦୀ ବ୍ୟାଖ୍ୟା ୨୦୦୬ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ । ରାଷ୍ଟ୍ରଭାଷାରେ ଲେଖାଯାଇଥିବାରୁ ଉତ୍ତରଭାରତର ଜନତା ନିମନ୍ତେ ଶୈବତତ୍ତ୍ୱ ବୁଝିବା ସହଜସାଧ୍ୟ ହୋଇଗଲା ।

କର୍ଣ୍ଣାଟକର ସୁପ୍ରସିଦ୍ଧ ସଂଶୋଧକ ଏବଂ ସାହିତ୍ୟ ରଚନାକାର ଡା. ଜ.ଚ.ନ. (ନିଡୁମାମିଡ଼ି ସଂସ୍ଥାନର ଶ୍ରୀ ଷ. ବ୍ର. ଡା. ଚନ୍ନବସବରାଜ ଦେଶିକେନ୍ଦ୍ର ମହାସ୍ୱାମୀ) ମହୋଦୟ ଶ୍ରୀସିଦ୍ଧାନ୍ତଶିଖାମଣି ଗ୍ରନ୍ଥ ଉପରେ 'ଜୀବନସିଦ୍ଧାନ୍ତ' ନାମକ ବିସ୍ତୃତ ବିଚେନାତ୍ମକ ବ୍ୟାଖ୍ୟା ୧୯୬୮–୧୯୭୦ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ । ମୁଁ ନିଜର ପୂର୍ବାଶ୍ରମରେ ଶ୍ରୀସିଦ୍ଧାନ୍ତଶିଖାମଣି ଉପରେ କନ୍ନଡ଼ ଭାଷାରେ ପ୍ରବଚନ କରୁଥିଲି । ଧୀରେ ଧୀରେ ୧୦୧ ସ୍ଥଳ ଉପରେ ପ୍ରବଚନ ଦେବା ପାଇଁ ଇଚ୍ଛା ହେଲା । ୧୯୮୯ ଖ୍ରୀଷ୍ଟାବ୍ଦ ଶୁଦ୍ଧା ଏହି ପ୍ରବଚନ ଛଅ ଭାଗରେ ପ୍ରକାଶିତ ହୋଇଥିଲା । କାଶୀ ଜଙ୍ଗମବାଡ଼ି ମଠରେ ପୀଠାଧୀଶ୍ୱର ହେବା ପରେ ଅବଶିଷ୍ଟ ସ୍ଥଳ ଉପରେ ପ୍ରବଚନ ଲେଖି ପୁରା ୧୦୧ ସ୍ଥଳକୁ ଦୁଇଟି ବୃହତ୍ ଭାଗରେ (୧୭୪୯ ପୃଷ୍ଠ) ୨୦୦୦ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ କଲି ।

କନ୍ନଡ଼ ଭାଷାରେ ପ୍ରକାଶିତ ପ୍ରବଚନ ଅତ୍ୟନ୍ତ ଲୋକପ୍ରିୟ ହେବାରୁ ତାହାର ଚତୁର୍ଥ ସଂସ୍କରଣ ଖ୍ରୀ.୨୦୦୬ରେ ପ୍ରକାଶିତ ହେଲା । ଏହାର ସଙ୍କଳନ କାର୍ଯ୍ୟରେ କାଶୀ ଜଙ୍ଗମବାଡ଼ି ମଠର ବରିଷ୍ଠ ଶୋଧଛାତ୍ର ଏବଂ ବବଲେଶ୍ୱର ବୃହନ୍ମଠର ପଟ୍ଟାଧ୍ୟକ୍ଷ ଶ୍ରୀ ଷ.ବ୍ର.ଡା. ମହାଦେବ ଶିବାଚାର୍ଯ୍ୟ ଏବଂ ହିପ୍ପରାଗୀ ଙ୍କ ଏଡ଼ୂର ମଠାଧ୍ୟକ୍ଷ ଶ୍ରୀ ଷ.ବ୍ର.ଡା. ସିଦ୍ଧରାମ ପଣ୍ଡିତାରାଧ୍ୟ ଶିବାଚାର୍ଯ୍ୟ ସ୍ୱାମୀଙ୍କର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରହିଛି ।

ଶ୍ରୀ ସିଦ୍ଧାନ୍ତଶିଖାମଣି ଉପରେ ଆଧାରିତ ମୋର ପ୍ରବଚନର ସୋଲାପୁରର ମରାଠୀ ବୀରଶୈବ ସାହିତ୍ୟର ବିଦ୍ୱାନ୍ ଡା. ଶେ. ଦେ. ପସାରକର ମରାଠୀ ଭାଷାରେ ଅନୁବାଦ କରିଥିଲେ । ତାହା 'ଜନ୍ମହା ଅଖେରଚା' ନାମରେ ପ୍ରକାଶିତ, ଯାହାର କି ତିନୋଟି ସଂସ୍କରଣ ଅଦ୍ୟାବଧି ପ୍ରକାଶିତ ହୋଇସାରିଲାଣି । ଏହିପରି ଭାବରେ ବୀରଶୈବ ଦାର୍ଶନିକ ସିଦ୍ଧାନ୍ତକୁ ସହଜବୋଧ କରିବା ନିମନ୍ତେ ଶ୍ରୀସିଦ୍ଧାନ୍ତଶିଖାମଣିର ଟୀକା, ବ୍ୟାଖ୍ୟା ଓ ପ୍ରବଚନାଦି ପ୍ରକାଶିତ କରି ବିଭିନ୍ନ ଭାଷାରେ ବିଦ୍ୱାନ୍‌ମାନେ ବୀରଶୈବ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

**ଶ୍ରୀସିଦ୍ଧାନ୍ତଶିଖାମଣି ଉପରେ ଆଧାରିତ ଶୋଧପ୍ରବନ୍ଧ –**

ଶ୍ରୀସିଦ୍ଧାନ୍ତଶିଖାମଣି ଏକ ଦାର୍ଶନିକ ଗ୍ରନ୍ଥ ହୋଇଥିବାରୁ ଖ୍ରୀ.୧୯୭୩ରେ ବେଦାନ୍ତାଚାର୍ଯ୍ୟ ପରୀକ୍ଷା ଉତ୍ତୀର୍ଣ୍ଣ ହେବା ପରେ ସମ୍ପୂର୍ଣ୍ଣାନନ୍ଦସଂସ୍କୃତବିଶ୍ୱବିଦ୍ୟାଳୟର ତତ୍‌କାଳୀନ ବେଦାନ୍ତ ବିଭାଗାଧ୍ୟକ୍ଷ ପ୍ର.ଦେବସ୍ୱରୂପମିଶ୍ରଙ୍କର ମାର୍ଗଦର୍ଶନରେ 'ଶ୍ରୀସିଦ୍ଧାନ୍ତଶିଖାମଣେର୍ଦର୍ଶନାନ୍ତରୀୟସିଦ୍ଧାନ୍ତୈଃ ସହ ସମୀକ୍ଷା' ନାମକ ଶୀର୍ଷକ ଆଧାରିତ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରିଥିଲି । ସେହି କାର୍ଯ୍ୟ ଖ୍ରୀ.୧୯୮୪ରେ ପୂର୍ଣ୍ଣ ହୋଇଥିଲା । ଶୈବଭାରତୀ ଭବନ, ଜଙ୍ଗମବାଡ଼ି ମଠଦ୍ୱାରା ତାହା ଖ୍ରୀ.୧୯୮୯ରେ ପ୍ରକାଶିତ ହୋଇଥିଲା । ଏହାର ପ୍ରକାଶନାର୍ଥ କେନ୍ଦ୍ର ସରକାରଙ୍କର ମାନବସଂସାଧନବିକାଶ ମନ୍ତ୍ରାଳୟର ଶିକ୍ଷାବିଭାଗ ତରଫରୁ ଆର୍ଥିକ ସହାୟତା ପ୍ରାପ୍ତ ହୋଇଥିଲା । 'ସିଦ୍ଧାନ୍ତ ଶିଖାମଣିସମୀକ୍ଷା' ନାମରେ ଏହି ଶୋଧପ୍ରବନ୍ଧ ସମ୍ପୂର୍ଣ୍ଣାନନ୍ଦସଂସ୍କୃତବିଶ୍ୱବିଦ୍ୟାଳୟର ବେଦାନ୍ତବିଭାଗରେ ଶକ୍ତିବିଶିଷ୍ଟାଦ୍ୱୈତ ବେଦାନ୍ତାଚାର୍ଯ୍ୟରେ ଏବଂ କାଶୀହିନ୍ଦୁବିଶ୍ୱବିଦ୍ୟାଳୟର ସଂସ୍କୃତବିଦ୍ୟା ଧର୍ମବିଜ୍ଞାନସଂକାୟର ଧର୍ମାଗମ ବିଭାଗରେ ଆଚାର୍ଯ୍ୟ ପରୀକ୍ଷା ନିମନ୍ତେ ପାଠ୍ୟଗ୍ରନ୍ଥରୂପେ ସ୍ୱୀକୃତ ହୋଇଛି ।

କାଶୀ ଜଙ୍ଗମବାଡ଼ୀ ମଠୀୟ ଜଗଦ୍‌ଗୁରୁ ବିଶ୍ୱାରାଧ୍ୟ ଗୁରୁକୁଳର ଶୋଧଛାତ୍ର ଶ୍ରୀ ଷ.ବ୍ର.ଡ଼ା. ସିଦ୍ଧରାମ ପଣ୍ଡିତାରାଧ୍ୟ ଶିବାଚାର୍ଯ୍ୟ (ସିଦ୍ଧରାମ ଦେବ ହିପ୍‌ପରାଗୀ) କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ସଂସ୍କୃତବିଦ୍ୟା ଧର୍ମବିଜ୍ଞାନ ସଂକାୟର ବେଦାନ୍ତ ବିଭାଗର ପ୍ରଫେସର ପ. ସୁଧାଂଶୁଶେଖରଶାସ୍ତ୍ରୀଙ୍କ ମାର୍ଗଦର୍ଶନରେ ଶ୍ରୀସିଦ୍ଧାନ୍ତଶିଖାମଣି ଓ ଶ୍ରୀମଦ୍‌ଭଗବଦ୍‌ଗୀତାର ତାତ୍ତ୍ୱିକ ତୁଳନାତ୍ମକ ଅଧ୍ୟୟନ କରି ବିଦ୍ୟାବାରିଧି ଉପାଧି ପ୍ରାପ୍ତ କରିଛନ୍ତି ।

**ଶ୍ରୀସିଦ୍ଧାନ୍ତଶିଖାମଣି ଆଧାରିତ ରାଷ୍ଟ୍ରିୟ ଶାସ୍ତ୍ରସଙ୍ଗୋଷ୍ଠୀ –**

କାଶୀ ଜଙ୍ଗମବାଡ଼ି ମଠରେ ଖ୍ରୀ.୧୯୯୭ ଅକ୍ଟୋବର ୧୫ରୁ ୧୭ତାରିଖ ପର୍ଯ୍ୟନ୍ତ ତ୍ରିଦିବସୀୟ ରାଷ୍ଟ୍ରୀୟ ସଂଗୋଷ୍ଠୀ 'ଶ୍ରୀସିଦ୍ଧାନ୍ତ ଶିଖାମଣିର ବିବିଧ ଆୟାମ ଉପରେ ବିଚାର

ବିମର୍ଶ' ନାମରେ ଆୟୋଜିତ ହୋଇଥିଲା । ଏଥିରେ ପ୍ରାୟ କୋଡ଼ିଏ ଜଣ ବିଦ୍ୱାନ୍ ନିବନ୍ଧବାଚନ କରିଥିଲେ । ଜଙ୍ଗମବାଡ଼ି ମଠଦ୍ୱାରା ଏ ସମସ୍ତ ଆଲେଖ 'ସିଦ୍ଧାନ୍ତଶିଖାମଣି ମୀମାଂସା' ନାମରେ ଖ୍ରୀ.୨୦୦୦ରେ ପ୍ରକାଶିତ ହୋଇଥିଲା ।

**ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟଙ୍କର ଲିଙ୍ଗୋଦ୍‌ଭବ ଲୀଳା –**

ଭଗବାନ୍ ଶିବଙ୍କର ଆଦେଶାନୁସାରେ ବୀରଶୈବ ଧର୍ମର ସଂସ୍ଥାପକ ଶ୍ରୀଜଗଦ୍‌ଗୁରୁ ପଞ୍ଚାଚାର୍ଯ୍ୟ ଭୂଲୋକରେ ଶିବଲିଙ୍ଗରୁ ପ୍ରକଟ ହେଲେ । ଏ ବିଷୟ ଶୈବାଗମମାନଙ୍କରେ ପ୍ରତିପାଦିତ ହୋଇଛି । ଶ୍ରୀ ସିଦ୍ଧାନ୍ତଶିଖାମଣିର ତୃତୀୟ ଏବଂ ଚତୁର୍ଥ ପରିଚ୍ଛେଦରେ ଶ୍ରୀ ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟଙ୍କର ଲିଙ୍ଗୋଦ୍‌ଭବଲୀଳା ବର୍ଣ୍ଣିତ ହୋଇଛି । ଗ୍ରନ୍ଥ ବର୍ଣ୍ଣନ ଅନୁଯାୟୀ ଥରେ କୈଳାସ ପର୍ବତରେ ଭଗବାନ୍ ଶିବଙ୍କର ସଭା ହେଉଥିଲା । ସେଠାରେ ତାମ୍ବୁଳ ପ୍ରସାଦ ନେବା ପାଇଁ ଭଗବାନ୍ ଶିବ ରେଣୁକ ଗଣେଶ୍ୱରଙ୍କୁ ଡାକିଲେ । ସେହି ଖୁସୀରେ ରେଣୁକ ଗଣେଶ୍ୱର ଶୀଘ୍ରତା ହେତୁ ପାଖରେ ବସିଥିବା ଦାରୁକ ଗଣେଶ୍ୱରଙ୍କୁ ଅତିକ୍ରମ କରି ଶିବଙ୍କ ପାଖରେ ପହଞ୍ଚିଲେ । ଏଥିରେ କ୍ରୋଧିତ ହୋଇ ଭଗବାନ ଶିବ ତାଙ୍କୁ ଭୂଲୋକରେ ଜନ୍ମ ନେବା ନିମନ୍ତେ ଆଦେଶ ଦେଲେ ।

ସେତେବେଳେ ଗଣେଶ୍ୱର ରେଣୁକ ଭଗବାନ୍ ଶିବଙ୍କୁ ପ୍ରାର୍ଥନା କଲେ – 'ହେ ଭଗବାନ୍ ! ଆପଣଙ୍କର ଆଦେଶାନୁସାରେ ମୁଁ ଭୂଲୋକରେ ଜନ୍ମ ନେବି । କିନ୍ତୁ ସାମାନ୍ୟ ମନୁଷ୍ୟ ପରି ମତେ ଜନ୍ମ ନ ମିଳୁ ।' ଏଥିରେ ସନ୍ତୁଷ୍ଟ ହୋଇ ମହାଦେବ କହିଲେ – 'ହେ ରେଣୁକ ! ତୁମେ ଭୟଭୀତ ହୁଅ ନାହିଁ ।' ଭୂଲୋକର ତ୍ରିଲିଙ୍ଗ ଦେଶ (ଆନ୍ଧ୍ର ପ୍ରଦେଶରେ ବିଦ୍ୟମାନ ସୁପ୍ରସିଦ୍ଧ ଶ୍ରୀଶୈଳ କ୍ଷେତ୍ରର ଉତ୍ତର ଦିଗରେ 'କୋଲ୍ଲିପାକି' ନାମକ ଗୋଟିଏ କ୍ଷେତ୍ର ଅଛି । ସେଠାରେ ମୁଁ ସୋମେଶ୍ୱର ଲିଙ୍ଗ ନାମରେ ବିଦ୍ୟମାନ । ତୁମେ ସେହି ଲିଙ୍ଗରୁ ପ୍ରକଟ ହେବ । ସେଥିରେ ତୁମକୁ ମନୁଷ୍ୟଭାବ ସ୍ପର୍ଶ କରିବ ନାହିଁ । ତୁମେ ଲିଙ୍ଗୋଦ୍‌ଭବ ହୋଇ ମାନବଜାତିର କଲ୍ୟାଣ ନିମନ୍ତେ ମୋଦ୍ୱାରା ଉପଦିଷ୍ଟ ବେଦବେଦାନ୍ତସମ୍ମତ ଶିବାଦ୍ୱୈତ ସିଦ୍ଧାନ୍ତ ଅର୍ଥାତ୍ ବୀରଶୈବ ସିଦ୍ଧାନ୍ତର ସ୍ଥାପନା କରିବ । ଭଗବାନ୍ ଶିବଙ୍କର ଆଦେଶ କ୍ରମେ ରେଣୁକ ଗଣେଶ୍ୱର ସେହି ସୋମେଶ୍ୱର ଶିବଲିଙ୍ଗରୁ ଦିବ୍ୟ ଦେହଧାରୀ ପ୍ରକଟ ହେଲେ । ଏହି ଘଟଣାକୁ ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟଙ୍କର ଲିଙ୍ଗୋଦ୍‌ଭବ ଲୀଳା କୁହାଯାଏ ।

ମହର୍ଷି ମାର୍କଣ୍ଡେୟଙ୍କୁ ଯମଭୟରୁ ମୁକ୍ତ କରିବା ନିମନ୍ତେ ଯେପରି ଭଗବାନ୍ ଶିବ ଏକ ସ୍ଥାବର ଲିଙ୍ଗରୁ ପ୍ରକଟ ହୋଇଥିଲେ ଏବଂ ପ୍ରହ୍ଲାଦଙ୍କୁ ଅନୁଗୃହୀତ କରିବା ପାଇଁ ନୃସିଂହ ଭଗବାନ୍ ରାଜପ୍ରାସାଦର ଖମ୍ବରୁ ପ୍ରକଟ ହୋଇଥିଲେ, ସେହିପରି ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଲୋକୋଦ୍ଧାର ନିମନ୍ତେ ଶ୍ରୀ ସୋମେଶ୍ୱର ଶିବଲିଙ୍ଗରୁ ପ୍ରକଟ ହେଲେ ।

ଜନ୍ମ ଏବଂ ପ୍ରାକଟ୍ୟ ମଧ୍ୟରେ ଭେଦ ଅଛି । ଜନ୍ମ ନିମନ୍ତେ ମାତାଙ୍କର ଗର୍ଭ ଆବଶ୍ୟକ କିନ୍ତୁ ପ୍ରକଟ ହେବା ପାଇଁ ମାତା–ପିତାଙ୍କର ଆବଶ୍ୟକତା ନାହିଁ । ଯେଉଁ ଲୋକ ଯୋଗସିଦ୍ଧ, ତାଙ୍କର ଅସ୍ତିତ୍ୱ ପୂର୍ବରୁ ବିଦ୍ୟମାନ ଥାଏ । ସେ ଯେଉଁଠି ଇଚ୍ଛା ପ୍ରକଟ ହୋଇପାରନ୍ତି । ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଆଣିମାଦି ଅଷ୍ଟ ସିଦ୍ଧି ଯୁକ୍ତ ଥିଲେ । ତେଣୁ ତାଙ୍କର ଭୂଲୋକରେ ପ୍ରକଟ ହେବା କିଛି ବିଚିତ୍ର ନୁହେଁ ।

ମହର୍ଷି ପତଞ୍ଜଳିଙ୍କର ଯୋଗସୂତ୍ରରେ 'ତତୋଽଣିମାଦିପ୍ରାଦୁର୍ଭାବଃ କାୟସମ୍ପତ୍ ତଦ୍ଧର୍ମାନଭିଘାତଶ୍ଚ' (ଯୋ.ସୂ. ୩/୪୫) ଏବଂ 'ଯଥା ପରମାଣୁତ୍ୱଂ ପ୍ରାପ୍ତୋ ବଜ୍ରାଦିନାମପ୍ୟତଃ ପ୍ରବିଶତି' ବୋଲି ଭୋଜବୃତ୍ତିରେ କୁହାଯାଇଛି । ଏଥିରୁ ଯୋଗସାମର୍ଥ୍ୟ ଦ୍ୱାରା ଆଣିମାଦି ଅଷ୍ଟ ସିଦ୍ଧିକୁ ପ୍ରାପ୍ତ ଯୋଗୀ ଅଣୁରୂପ ଧାରଣ କରି ଅତ୍ୟନ୍ତ କଠିନ ବଜ୍ରାଦିରେ ପ୍ରବିଷ୍ଟ ହୋଇ ପୁନଃ ପ୍ରକଟ ହୋଇଥାଏ ବୋଲି ସ୍ପଷ୍ଟ ହେଉଛି ।

ଏପରି ଅଲୌକିକ ଘଟଣା ସାମାନ୍ୟ ଜନ ନିମନ୍ତେ ଅସମ୍ଭବ, କିନ୍ତୁ ସିଦ୍ଧଯୋଗୀଙ୍କ ପକ୍ଷେ ସହଜସାଧ୍ୟ । ବିଂଶ (୨୦) ଶତାବ୍ଦୀରେ କାଶୀରେ ବିଶୁଦ୍ଧାନନ୍ଦ ନାମ୍ନକ ଜଣେ ସିଦ୍ଧ ଯୋଗୀ ଥିଲେ । ମହାମହୋପାଧ୍ୟାୟ ପ. ଗୋପୀନାଥ କବିରାଜ ତାଙ୍କର ଶିଷ୍ୟ ଥିଲେ । ଥରେ ଯୋଗସାମର୍ଥ୍ୟକୁ ବତାଇବାକୁ ଯାଇ ଯୋଗୀ ବିଶୁଦ୍ଧାନନ୍ଦ 'ଜାତ୍ୟନ୍ତର ପରିଣାମ' ବିଷୟରେ କହିଲେ ଯେ ଗୋଟିଏ ଜାତିର ବସ୍ତୁକୁ ଅନ୍ୟଜାତିରେ ପରିବର୍ତ୍ତିତ କରାଯାଇପାରିବ । ଏହା କିପରି ସମ୍ଭବ ବୋଲି ପ. ଗୋପୀନାଥ କବିରାଜ ଜିଜ୍ଞାସା କରିବାରୁ ତାଙ୍କର ଇଚ୍ଛା ଅନୁସାରେ ଯୋଗୀ ବିଶୁଦ୍ଧାନନ୍ଦ ହସ୍ତରେ ଥିବା ଗୋଲାପ ଫୁଲକୁ ଲାଲ ବନ୍ଧୁକ ପୁଷ୍ପରେ ପରିବର୍ତ୍ତିତ କରି ଦେଖାଇଥିଲେ । ପ. ଗୋପୀନାଥ କବିରାଜ ମାସିକ କଲ୍ୟାଣର ଯୋଗାଙ୍କର ୭୪୮ ପୃଷ୍ଠାରେ 'ସୂର୍ଯ୍ୟବିଜ୍ଞାନ' ନାମକ ଲେଖାରେ ଏହାର ଉଲ୍ଲେଖ କରିଛନ୍ତି ।

କାଶୀର ସୁପ୍ରସିଦ୍ଧ ତୈଲଙ୍ଗସ୍ୱାମୀ ୨୮୦ବର୍ଷ ପର୍ଯ୍ୟନ୍ତ ଜୀବିତ ରହି ଅନେକ ଅଲୌକିକ ଲୀଳା କରିଥିଲେ । ଦୈନିକ 'ଆଜ' ସମାଚାର ପତ୍ରରେ ଶ୍ରୀ ରାଜେନ୍ଦ୍ର ପ୍ରସାଦ ପାଣ୍ଡେୟ ନାମକ ଲେଖକ ୨୮–୦୧–୧୯୮୩ରେ ଏହା ଉପରେ ଲେଖିଥିଲେ । ଏଥିରୁ ଜଣାଯାଏ ଯେ ଉଲଗ୍ନ ବୁଲୁଥିବାରୁ ଜଣେ ବ୍ରିଟିଶ ଅଧିକାରୀ ତୈଲଙ୍ଗସ୍ୱାମୀଙ୍କୁ ଜେଲରେ ବନ୍ଦ କରିଦେଲେ । ତା'ପରଦିନ ସେ ପୁଣି ରାସ୍ତାରେ ଦେଖା ଯାଇଥିଲେ । ଏହିପରି ସମଗ୍ର ଭାରତବର୍ଷରେ ଯୁଗ ଯୁଗରେ ଅଲୌକିକ ଘଟଣା ଘଟିଛି । ତେଣୁ ସାକ୍ଷାତ୍ ଭଗବାନ୍ ଶଙ୍କରଙ୍କର ପାର୍ଶ୍ୱସ୍ଥ ଶିବଯୋଗୀ ରେଣୁକ ଗଣେଶ୍ୱର ଲିଙ୍ଗରୁ ପ୍ରକଟ ହେବା କିଛି ଅସମ୍ଭବ ନୁହେଁ ।

**ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟଦ୍ୱାରା ତ୍ରିକୋଟି ଶିବଲିଙ୍ଗ ସ୍ଥାପନ ଲୀଳା –**

ଶ୍ରୀସିଦ୍ଧାନ୍ତଶିଖାମଣିର ଅନ୍ତିମ ୨୧ତମ ପରିଚ୍ଛେଦରେ ତ୍ରିକୋଟି ଶିବଲିଙ୍ଗ ସ୍ଥାପନଲୀଳା ବର୍ଣ୍ଣନ କରାଯାଇଛି । ବର୍ଣ୍ଣନାନୁସାରେ ଲଙ୍କାଧିପତି ରାବଣ ନବକୋଟି ଲିଙ୍ଗ ସ୍ଥାପନାର ସଙ୍କଳ୍ପ କରିଥିଲେ । ଜୀବଦଶାରେ ସେ ଛଅ କୋଟି ଶିବଲିଙ୍ଗର ସ୍ଥାପନା କରିଥିଲେ । ଶ୍ରୀରାମଙ୍କ ସହିତ ଯୁଦ୍ଧ କରୁ କରୁ ପ୍ରାଣ ଛାଡ଼ିବା ପୂର୍ବରୁ ସେ ନିଜର ସଂକଳ୍ପ ପୂର୍ଣ୍ଣ କରିବାକୁ ଭାଇ ବିଭୀଷଣଙ୍କୁ କହିଥିଲେ । ବିଭୀଷଣ ତିନି କୋଟି ଉତ୍ତମୋତ୍ତମ ଶିବଲିଙ୍ଗକୁ ଏକ ସଙ୍ଗେ ସ୍ଥାପନା କରିବାର ନିର୍ଣ୍ଣୟ ନେଇଥିଲେ । ଏପରି କାର୍ଯ୍ୟ ସମ୍ପାଦନରେ ଦକ୍ଷ ଆଚାର୍ଯ୍ୟଙ୍କୁ ଜାଣି ନଥିବାରୁ ବିଭୀଷଣ ଦୀର୍ଘଦିନ ଧରି ଚିନ୍ତିତ ଥିଲେ ।

ଏହି ସମୟରେ ଶ୍ରୀ ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ମହର୍ଷି ଅଗସ୍ତ୍ୟଙ୍କୁ ଶିବାଦ୍ୱୈତ ସିଦ୍ଧାନ୍ତର ଉପଦେଶ ଦେଇ ଆକାଶ ମାର୍ଗରେ ଯାଇ ଲଙ୍କାରେ ପହଞ୍ଚିଥିଲେ । ବିଭୀଷଣ ଉଚିତ୍ ସ୍ୱାଗତ ସହିତ ତାଙ୍କୁ ପାଛୋଟି ନେଇ ରାଜପ୍ରାସାଦରେ ଅଭ୍ୟର୍ଥନା କରିଥିଲେ। ଏଥିରେ ସନ୍ତୁଷ୍ଟ ହୋଇ ରେଣୁକାଚାର୍ଯ୍ୟ ବରପ୍ରଦାନ କରିବାକୁ ଚାହିଁବାରୁ ବିଭୀଷଣ ଜ୍ୟେଷ୍ଠଭ୍ରାତାଙ୍କର ଅଭିଳାଷା ଜଣାଇଥିଲେ । ରେଣୁକାଚାର୍ଯ୍ୟ ତ୍ରିକୋଟି ଆଚାର୍ଯ୍ୟ ରୂପ ଧାରଣ କରି ଏକ ସଙ୍ଗେ ତିନି କୋଟି ଶିବଲିଙ୍ଗର ସ୍ଥାପନା କରିଥିଲେ ।

ଏହିପରି ଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଯୋଗସିଦ୍ଧି ବଳରେ ଏକ ସଙ୍ଗେ ତିନିକୋଟି ଆଚାର୍ଯ୍ୟରୂପ ଧାରଣ କରି ନିଜର ମହିମା ପ୍ରଦର୍ଶିତ କରିଥିଲେ ।

ଏହିପରି ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଭୂଲୋକରେ ସୋମେଶ୍ୱର ଲିଙ୍ଗରୁ ଆବିର୍ଭୂତ ହୋଇ ମହର୍ଷି ଅଗସ୍ତ୍ୟଙ୍କୁ ଶିବାଦ୍ୱୈତ ସିଦ୍ଧାନ୍ତର ଉପଦେଶ ଦେଇଥିଲେ । ତା'ପରେ ଲଙ୍କାରେ ଏକ ସଙ୍ଗେ ତିନିକୋଟି ଆଚାର୍ଯ୍ୟ ରୂପ ଧାରଣ କରି ଲିଙ୍ଗ ସ୍ଥାପନାରେ ନିଜର ମହତୀ ଶକ୍ତିର ପ୍ରଦର୍ଶନ କରାଇଥିଲେ । ନିଜ ଅବତାର ଗ୍ରହଣର ପ୍ରୟୋଜନ ପୂର୍ଣ୍ଣ ହେବା ପରେ ରେଣୁକାଚାର୍ଯ୍ୟ ପୁନଃ ସେହି ସୋମେଶ୍ୱର ଶିବଲିଙ୍ଗରେ ଲୀନ ହୋଇଗଲେ ।

ଏହିପରି ଶ୍ରୀଜଗଦ୍‌ଗୁରୁ ରେଣୁକାଚାର୍ଯ୍ୟ ଲୋକକଲ୍ୟାଣ ଏବଂ ବୀରଶୈବଧର୍ମର ସ୍ଥାପନା ନିମନ୍ତେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଲୋକଙ୍କୁ ନିଜର ମହିମାର ପରିଚୟ ଦେଇଥିଲେ ଏବଂ ମହର୍ଷି ଅଗସ୍ତ୍ୟଙ୍କୁ ଶିବାଦ୍ୱୈତ ସିଦ୍ଧାନ୍ତର ଜ୍ଞାନ ଦେଇଥିଲେ । ସେହି ଜ୍ଞାନ ଶ୍ରୀ ଶିବଯୋଗୀ ଶିବାଚାର୍ଯ୍ୟଙ୍କ ଦ୍ୱାରା ସଂଗୃହୀତ ହୋଇ ଆଜି ଶ୍ରୀସିଦ୍ଧାନ୍ତଶିଖାମଣି ଭାବରେ ସୁଲଭ ହୋଇଛି । ଏହି ଗ୍ରନ୍ଥ ବୀରଶୈବ ଧର୍ମର ପ୍ରମୁଖ ଆକର ଗ୍ରନ୍ଥ ଭାବରେ ମାନ୍ୟ ଅଟେ ।

ଶ୍ରୀଜଗଦ୍‌ଗୁରୁ ଚନ୍ଦ୍ରଶେଖର ଶିବାଚାର୍ଯ୍ୟ ମହାସ୍ୱାମୀଜୀ
ଜଙ୍ଗମବାଡ଼ୀ ମଠ, ବାରାଣସୀ ।



# ଭୂମିକା

## (ଶ୍ରୀସିଦ୍ଧାନ୍ତଶିଖାମଣି–ସମୀକ୍ଷା)

### ଶୈବ–ବୀରଶୈବଧର୍ମ ଏବଂ ଦର୍ଶନ

ବିଶ୍ୱସୃଷ୍ଟିର ରହସ୍ୟ ଅଦ୍‌ଭୁତ ଅଟେ । ଏହାର ସ୍ରଷ୍ଟା, ତାଙ୍କର ସାକ୍ଷାତ୍‌କାର ଇତ୍ୟାଦି ବିଷୟରେ ଭାରତୀୟ ମନୀଷା ଯୁଗ ଯୁଗରୁ ଅନନ୍ତକାଳରୁ ଜିଜ୍ଞାସୁ ରହି ଆସିଛି । ବିଶ୍ୱର ସର୍ବପ୍ରାଚୀନ ଅପୌରୁଷେୟ ଗ୍ରନ୍ଥ ଋଗ୍‌ବେଦର ନାସଦୀୟ ସୂକ୍ତ (ଋ. ୧୦–୧୨୯–୧), ଶ୍ୱେତାଶ୍ୱତର ଉପନିଷଦ୍‌ର ପ୍ରଥମ ମନ୍ତ୍ର ଇତ୍ୟାଦି ଏହି ତଥ୍ୟକୁ ପ୍ରକାଶିତ କରୁଛନ୍ତି । ନିଜର ଅଲୌକିକ ଦୃଷ୍ଟିରେ ଯେଉଁ ଋଷି ଯେପରି ଭାବରେ ଏହାକୁ ଜାଣିପାରିଛନ୍ତି, ସେହିପରି ଉଦ୍‌ଘାଟନ କରିଛନ୍ତି । ଏହି ବିବିଧ ଏବଂ ସୀମିତ ବର୍ଣ୍ଣନର ପୃଷ୍ଠଭୂମିରେ ଏକ ପୂର୍ଣ୍ଣ ଏବଂ ଅସୀମ ଚିଦ୍‌ସତ୍ତାର ବିଦ୍ୟମାନତାକୁ ସମସ୍ତେ ସ୍ୱୀକାର କରିଛନ୍ତି ।

ବୌଦ୍ଧିକ ସ୍ତରରେ ତର୍କ–ବିତର୍କ ସହିତ ଚରମ ସତ୍ୟକୁ ବୁଝିବାର ପ୍ରୟାସକୁ ଦର୍ଶନ କୁହାଯାଏ ଏବଂ ମାନସିକ ସ୍ତରରେ ଶରୀରର ବିଭିନ୍ନ ଚେଷ୍ଟା ସହିତ ସେ ପର୍ଯ୍ୟନ୍ତ ପହଞ୍ଚିବାର ପ୍ରକ୍ରିୟାକୁ ଧର୍ମ କୁହାଯାଏ । ଗଭୀର ବିଚାର କଲେ ଜଣାଯାଏ ଦର୍ଶନ ଏବଂ ଧର୍ମ ଗୋଟିଏ ବସ୍ତୁର ଦୁଇଟି ଆୟାମ । ଜ୍ଞାନ ଏବଂ କ୍ରିୟା ଅଥବା ଦର୍ଶନ ଓ ଧର୍ମ ଉଭୟ ପରସ୍ପରର ପୂରକ ଅଟନ୍ତି । କିନ୍ତୁ କ୍ରିୟା ସରଳ ଓ ଦର୍ଶନ ବକ୍ରମାର୍ଗ ଅଟେ । ଏହାର କାରଣ ହେଉଛି ଉଭୟଙ୍କର ସ୍ଥୂଳତା ଓ ସୂକ୍ଷ୍ମତା । ସ୍ଥୂଳରୁ ସୂକ୍ଷ୍ମକୁ ଯିବା ମାନବର ସ୍ୱଭାବ ଅଟେ ଏବଂ ଏହା ତା ପାଇଁ ଶ୍ରେୟସ୍କର ମଧ୍ୟ । ତେଣୁ ଗୃହସ୍ଥାଶ୍ରମରେ ସ୍ଥୂଳଭାବରେ ଅନୁଭୂତ ହେଉଥିବା ଯୋଗ ବାନପ୍ରସ୍ଥାଶ୍ରମରେ ସୂକ୍ଷ୍ମ ରୂପରେ ମନନ ଓ ନିଦିଧ୍ୟାସନ ବିଧାନ ଅଟେ –

'ସୋଽକାମୟତ ମେଧ୍ୟଂ ମ ଇଦଂ ସ୍ୟାଦ୍ ଆତ୍ମନ୍ୱୀ ଅନେନ ସ୍ୟାମିତି । ତତୋଽଶ୍ୱଃ ସମଭବତ୍ । ଯତ୍ତଦଶ୍ୱବତ୍ତନ୍ମେଧ୍ୟମଭୂଦିତି ତଦେବାଶ୍ୱମେଧସ୍ୟାଶ୍ୱମେଧ–ତ୍ୱମ୍ । ଏଷ ହ ବା ଅଶ୍ୱମେଧଂ ବେଦ ଯ ଏବମେବଂ ବେଦ.....।' (ବୃ.ଉ.୧/୨/୭)

ଭାରତବର୍ଷରେ ଶୈବ ଓ ବୈଷ୍ଣବ ଧାରା ନିଜର ଧର୍ମ ଓ ଦର୍ଶନ ସହିତ ପରିଚୟ ପାଇଛନ୍ତି । ନିଗମ ଅର୍ଥାତ୍ ବେଦ ବୈଷ୍ଣବୀ ଧାରାର ମୂଳ ଏବଂ ଆଗମ ଶୈବୀଧାରର ଆଧାର ଅଟେ । ଉଭୟ ସ୍ୱତନ୍ତ୍ର ହେଲେ ମଧ୍ୟ ସମୟାନୁସାର ଓ ମାନବୀୟ ସ୍ୱଭାବରୁ ମିଶ୍ରିତ ହୋଇ ଯାଇଛନ୍ତି । ପରବର୍ତ୍ତୀ କାଳରେ ଏହି ମିଶ୍ରଣରୁ ଅନେକ ନୂଆ ସମ୍ପ୍ରଦାୟ ଆବିର୍ଭୂତ ହେଲେ । ମୁଖ୍ୟ ହେଉଛନ୍ତି ଦ୍ୱୈତ, ଦ୍ୱୈତାଦ୍ୱୈତ ଓ ଅଦ୍ୱୈତ ସମ୍ପ୍ରଦାୟ ।

ଦ୍ୱୈତରୁ ଅଦ୍ୱୈତର ପ୍ରାପ୍ତି ମାନବର ପରମ ପୁରୁଷାର୍ଥ ଅଟେ । ଶୈବ ଦର୍ଶନ ପରମ୍ପରା ସମଗ୍ର ଦେଶରେ ବ୍ୟାପ୍ତ ଥିଲା । ସିନ୍ଧୁ ଘାଟୀର ପ୍ରାଗୈତିହାସିକ ଅବଶେଷରୁ ଜଣାଯାଏ ଯେ ଉତ୍ତରପ୍ରଦେଶରେ ବୈଦିକ ଆର୍ଯ୍ୟସଭ୍ୟତା ପୂର୍ବରୁ ଶୈବ, ବୀରଶୈବ ଧର୍ମାବଲମ୍ବୀ ରହୁଥିଲେ । ମହେଞ୍ଜୋଦାରୋ ଓ ହରପ୍ପାର ଭଗ୍ନାବଶେଷରୁ ସିଦ୍ଧ ହୁଏ ଯେ ଅତି ପ୍ରାଚୀନକାଳରେ ଲିଙ୍ଗପୂଜା, ଇଷ୍ଟଲିଙ୍ଗପୂଜା, ମାତୃଶକ୍ତିପୂଜା ଏବଂ ପଶୁପତି ଶିବପୂଜା, ଯାହାକି ଶୈବଧର୍ମର ମୁଖ୍ୟ ଅଙ୍ଗଥିଲା, ଭାରତବାସୀଙ୍କ ମଧ୍ୟରେ ସୁପ୍ରଚଳିତ ଥିଲା । ସେହି ସମୟର ପଶୁପତି ମୂର୍ତ୍ତିର ତ୍ରିନେତ୍ର ଓ ତ୍ରିମୁଖ ପ୍ରତିମା ଆଜିର ତ୍ରିଲୋଚନ ଶିବ ଓ ତ୍ରିମୂର୍ତ୍ତି ଦେବଙ୍କର ପୂର୍ବରୂପ । ସେହି ମୂର୍ତ୍ତିରେ ଅଭିବ୍ୟକ୍ତ ହୋଇଥିବା ଜ୍ଞାନମୁଦ୍ରା ଓ ଅର୍ଦ୍ଧୋନ୍ମୀଳିତ ନେତ୍ରଯୁକ୍ତ ଯୋଗୀମୂର୍ତ୍ତିରୁ ସଙ୍କେତିତ ଶାମ୍ଭବୀ ମୁଦ୍ରା[୧] ସୂଚାଉଛି ଯେ ଶୈବ-ବୀରଶୈବ ଯୋଗସାଧନାର ପ୍ରଚଳନ ଅଧିକ ଥିଲା । ଏଥିରୁ ଶୈବ ଧର୍ମ ସହିତ ଦର୍ଶନର ସ୍ଥିତି ସ୍ପଷ୍ଟ ହେଉଛି । ଋଗ୍‌ବେଦରେ ଅଗ୍ନିଙ୍କର ଅଧିକ ମନ୍ତ୍ର ଥିଲେ ମଧ୍ୟ ଇନ୍ଦ୍ରକୁ ପ୍ରଧାନ ଦେବତା ମାନିଛନ୍ତି । କିନ୍ତୁ ଯଜୁର୍ବେଦରେ ରୁଦ୍ରଙ୍କର ପ୍ରଧାନତା ଅଧିକ ବୋଲି କୃଷ୍ଣଯଜୁର୍ବେଦର ଚତୁର୍ଥ କାଣ୍ଡର ପଞ୍ଚମ ପ୍ରପାଠକରୁ ସ୍ପଷ୍ଟ । ବୈଦିକ ପରମ୍ପରା ବ୍ୟତୀତ ଅନ୍ୟ ଏକ ପରମ୍ପରା ଥିଲା ଯାହା କି ପରବର୍ତ୍ତୀ କାଳରେ ବୌଦ୍ଧ ଯୋଗାଚାର, ବଜ୍ରଯାନ, କାଳଚକ୍ରଯାନ, ପାଶୁପତ, ଶୈବସିଦ୍ଧାନ୍ତ, ନାଥସମ୍ପ୍ରଦାୟକୁ ପ୍ରଭାବିତ କରିଥିଲା । ମହାତ୍ମା ବୁଦ୍ଧଙ୍କର ଯୋଗଗୁରୁ ଅରାଡ଼ ଓ ଉଦ୍ରକ ଶୈବ ଯୋଗସାଧନାର ଅନୁଯାୟୀ ଥିଲେ । ଦକ୍ଷିଣ ଭାରତର ଆଲବାର ଓ ନାୟନାର ନାମକ ସନ୍ଥ ପରମ୍ପରା ମଧ୍ୟ ଶୈବସାଧନା ପଦ୍ଧତିରେ ପ୍ରଭାବିତ ଜଣାଯାଏ । ଏହିପରି ଶୈବଧର୍ମ ହିମାଳୟରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

**ଶ୍ରୀସିଦ୍ଧାନ୍ତଶିଖାମଣି ଏକ ଦର୍ଶନଗ୍ରନ୍ଥ –**

ଜୀବ, ଜଗତ୍ ଓ ମୋକ୍ଷ ବିଷୟରେ କରାଯାଇଥିବା ଚିନ୍ତନ ଅଥବା ବିଚାରକୁ ଦର୍ଶନ କୁହାଯାଏ । ଜୀବର ସ୍ୱରୂପ କ'ଣ ? ଜଗତ୍‌ର ଉତ୍ପତ୍ତିର କାରଣ କ'ଣ ? ଜୀବର ଜଗତ୍ ସହିତ କ'ଣ ସମ୍ବନ୍ଧ ? ମୋକ୍ଷର ସ୍ୱରୂପ ଓ ତା'ର ପ୍ରାପ୍ତିର ଉପାୟ କ'ଣ ?

---

୧. ବେଦଶାସ୍ତ୍ରପୁରାଣାନି ସାମାନ୍ୟଗଣିକା ଇବ ।
ଏକୈବ ଶାମ୍ଭବୀ ମୁଦ୍ରା ଗୁପ୍ତା କୁଳବଧୂରିବ ।।
ଅନ୍ତର୍ଲକ୍ଷ୍ୟା ବହିର୍ଦୃଷ୍ଟିର୍ନିମେଷୋନ୍ମେଷବର୍ଜିତା ।
ସା ପ୍ରୋକ୍ତା ଶାମ୍ଭବୀ ମୁଦ୍ରା ସର୍ବଶାସ୍ତ୍ରେଷୁ ଗୋପିତା ।।
(ହଠଯୋଗପ୍ରଦୀପିକା, ୪/୩୫-୩୬)

ଇତ୍ୟାଦି ବିନ୍ଦୁ ଦର୍ଶନର ବିଚାରଣୀୟ ବିଷୟ । ଏହି ଗ୍ରନ୍ଥରେ ରେଣୁକ-ଅଗସ୍ତ୍ୟ ସମ୍ବାଦ ମାଧ୍ୟମରେ ସେହି ବିଷୟରେ ଉତ୍କୃଷ୍ଟ ବିଚାର ପ୍ରସ୍ତୁତ କରାଯାଇଛି । ଯିଏ କର୍ମଫଳରେ ଭୋକ୍ତା, ଅଳ୍ପଜ୍ଞ, କିଞ୍ଚିତ୍‌କର୍ତ୍ତା, ଅନାଦି ଶରୀରବାନ୍, ଅନାଦି ବନ୍ଧ, ଅବିଦ୍ୟୋପାଧି କାରଣରୁ ମୋହଗ୍ରସ୍ତ, ତାହାକୁ ଜୀବ କୁହାଯାଏ । ବ୍ରହ୍ମୈକ୍ୟଜ୍ଞାନରୁ ରହିତ ଏହି ଜୀବ କର୍ମାନୁସାରେ ବିଭିନ୍ନ ଯୋନୀରେ ଜନ୍ମ ନେଇଥାଏ । ଏହାର ସ୍ୱରୂପ ବିଷୟରେ ଚାର୍ବାକଠାରୁ ବୌଦ୍ଧ ପର୍ଯ୍ୟନ୍ତ ବିଚାର କରି ସିଦ୍ଧାନ୍ତ ରୂପରେ ଗ୍ରନ୍ଥକାର ଆତ୍ମାକୁ ଶରୀର-ଇନ୍ଦ୍ରିୟ-ବୁଦ୍ଧିଠାରୁ ଭିନ୍ନ ପ୍ରତିପାଦିତ କରିଛନ୍ତି । ଏହି ଶରୀର ନଶ୍ୱର ଅଟେ । କିନ୍ତୁ ଆତ୍ମା ଅନଶ୍ୱର ଅର୍ଥାତ୍ ନିତ୍ୟ ଅଟେ । ଏହି ନିତ୍ୟ ଆତ୍ମା କର୍ମବଶରୁ ବିଭିନ୍ନ ଶରୀର ଧାରଣ କରି ତ୍ରିତାପର ଜ୍ୱାଳାରେ ଦଗ୍ଧିଭୂତ ହୁଏ । ଯେଉଁ ଶରୀରକୁ ସେ ଆଶ୍ରୟ କରେ, ତାହା ମଧ ମଳାୟତନ ଓ ମହାଦୁଃଖବର୍ଦ୍ଧକ ଅଟେ । ନିତ୍ୟାନିତ୍ୟ-ବସ୍ତୁବିବେକଦ୍ୱାରା ସେହି ଆତ୍ମା ଶରୀର ମୋହକୁ ତ୍ୟାଗ କରି ବୈରାଗ୍ୟଦ୍ୱାରା ସ୍ୱରୂପ ପ୍ରାପ୍ତ କରି ମୋକ୍ଷଲାଭ କରିଥାଏ ।

ଚରାଚରାତ୍ମକ ଜଗତ୍ ମହାଦେବଙ୍କଠାରୁ ଉତ୍ପନ୍ନ ବୋଲି କୁହାଯାଇଛି । ଯେପରି ବୁଢ଼ୀଆଣି ନିଜ ଜାଲର ଅଭିନ୍ନ ନିମିତ୍ତୋପାଦାନ ଅଟେ, ସେହିପରି ମହାଦେବ ଶିବ ଏହି ଜଗତ୍‌ର ନିମିତ୍ତ ଓ ଉପାଦାନ ଉଭୟ କାରଣ ଅଟନ୍ତି । ଯେପରି ସମୁଦ୍ରରେ ଉତ୍ପନ୍ନ ଫେଣ, ଲହରୀ, ଫୋଟକା, ଆବର୍ତ୍ତ ସମୁଦ୍ରଠାରୁ ଭିନ୍ନ ନୁହନ୍ତି ଅଥବା ତନ୍ତୁରୁ ଉତ୍ପନ୍ନ ପଟ ତନ୍ତୁଠାରୁ ଭିନ୍ନ ନୁହେଁ, ସେହିପରି ଶିବଠାରୁ ଉତ୍ପନ୍ନ ଏହି ଜଗତ୍ ଶିବଠାରୁ ଭିନ୍ନ ନୁହେଁ । ଗ୍ରନ୍ଥକାର ଅନେକ ଉଦାହରଣ ସହିତ ବେଦାନ୍ତର ବିବର୍ତ୍ତବାଦ, ସାଂଖ୍ୟର ସତ୍‌କାର୍ଯ୍ୟବାଦ, ଶାକ୍ତଦୃଷ୍ଟି ଆଦିର ସମର୍ଥନ କରିଛନ୍ତି, କିନ୍ତୁ ସେସବୁକୁ ମାୟା ବିକଳ୍ପରୁ ଉତ୍ପନ୍ନ ମାନି ହେୟ କହିଛନ୍ତି । ଅର୍ଥାତ୍ ଏହି ଜଗତ୍‌କୁ ଶିବଠାରୁ ଭିନ୍ନ ମାନିବାର ବିଚାର ପରିତ୍ୟାଗ କରିବାକୁ କହିଛନ୍ତି ।

ଶିବତ୍ୱଲାଭ ହିଁ ମୋକ୍ଷ ଅଟେ । ଚାରିପ୍ରକାରର ମୁକ୍ତି ଶାସ୍ତ୍ରରେ ବର୍ଣ୍ଣିତ - ୧.ସାଲୋକ୍ୟ, ୨.ସାମୀପ୍ୟ, ୩.ସାରୂପ୍ୟ, ୪.ସାଯୁଜ୍ୟ । ଶ୍ରୀସିଦ୍ଧାନ୍ତଶିଖାମଣିରେ ସାଯୁଜ୍ୟ ମୁକ୍ତିର ଚର୍ଚ୍ଚା କରାଯାଇଛି[୨] । ଅନ୍ୟ ସମ୍ପ୍ରଦାୟ ପରି ଏଥିରେ ଏହାକୁ ଦୁଇପ୍ରକାରର କୁହାଯାଇଛି - ଜୀବନ୍ମୁକ୍ତି ଓ ବିଦେହମୁକ୍ତି[୩] । ଏଠାରେ ବର୍ଣ୍ଣିତ ଜୀବନ୍ମୁକ୍ତିର ସ୍ୱରୂପ ଅଦ୍ୱୈତ ବେଦାନ୍ତ ସମ୍ମତ ହେଲେ ମଧ ଏଥିରେ ଆଗମଶାସ୍ତ୍ରର ପୁଟ ଅଛି । କାରଣ ଶୈବାଗମ ଶିବପରି

୨. ସି. ଶି., ୯/୩୫-୩୬

୩. ସି. ଶି., ୧୭/୭୯-୮୦

ସଂସାରକୁ ସତ୍ୟ ମାନେ । ତେଣୁ ସଂସାରର ନିରାକରଣ ସମ୍ଭବ ନୁହେଁ । ନିରାକରଣ କେବଳ ଅହନ୍ତା ଓ ମମତାର କରାଯାଇଥାଏ । ଆତ୍ମା ନିଜର ବିଶୁଦ୍ଧ ଓ ମୂଳରୂପରେ ସଦା ମୁକ୍ତ ଅଟେ । ଅଜ୍ଞାନର କାରଣ ଆବଦ୍ଧ ଜୀବ ଶିବଙ୍କର ସାକ୍ଷାତ୍କାର ପରେ ଦେହବାନ୍ ରହି ମଧ୍ୟ ଦେହରହିତ ହୋଇଯାଏ । ଭେଦବୁଦ୍ଧି ବନ୍ଧନର କାରଣ ଅଟେ[୪] । ଅଭେଦ ବୁଦ୍ଧି ହିଁ ମୁକ୍ତି ଅଟେ । ଜୀବଦ୍ଦଶାରେ ଏପରି ହେଲେ ଯୋଗୀ ଜୀବନ୍ମୁକ୍ତ ହୋଇଥାଏ । ଏହି ଅବସ୍ଥା ସୁଷୁପ୍ତ୍ୟବସ୍ଥା ସଦୃଶ ଅଟେ, ଯେଉଁଥିରେ ସ୍ୱରୂପ ବ୍ୟତୀତ ଅନ୍ୟ କିଛି ଦେଖାଯାଏ ନାହିଁ । ଏହି ସୁଖସ୍ୱରୂପ ସ୍ଥିତିରେ ଶିବଙ୍କର ସ୍ଫୁରତା ଥାଏ । ବେଦାନ୍ତରେ ଜୀବର ସ୍ଥିତି ପ୍ରକାଶ ଅଥବା ଆନନ୍ଦ ଅଟେ । କିନ୍ତୁ ଜୀବ ତାହା ଅନୁଭବ କରିପାରେ ନାହିଁ । ରେଣୁକାଚାର୍ଯ୍ୟ ସଂବିଦ୍‌କୁ ଉଲ୍ଲାସ ରୂପୀ ଓ ମୁକ୍ତକୁ ସଂବିଦ୍ ଉଲ୍ଲାସଦର୍ଶୀ କହିଛନ୍ତି[୫] । ଅର୍ଥାତ୍ ଜୀବକୁ ମୁକ୍ତାବସ୍ଥାରେ ନିଜର ଆନନ୍ଦରୂପତାର ବିମର୍ଶ ହୋଇଥାଏ । ଏପରି ସ୍ଥିତି ପ୍ରାପ୍ତ କରିବା ନିମନ୍ତେ ଯୋଗୀକୁ ଚିଦାକାଶ ସ୍ୱରୂପ ଶିବତତ୍ତ୍ୱରେ ବିଲୀନ ହେବା ଦରକାର । ଏହାହିଁ ସାଯୁଜ୍ୟ ମୁକ୍ତି ଯାହା ସର୍ବୋତ୍କୃଷ୍ଟ ଅଟେ ।

**ଶ୍ରୀସିଦ୍ଧାନ୍ତଶିଖାମଣି ଏକ ଆଗମଗ୍ରନ୍ଥ**

ଆଗମଶାସ୍ତ୍ରର ଚାରିଟି ପାଦ କୁହାଯାଇଛି – ବିଦ୍ୟା (ଜ୍ଞାନ), କ୍ରିୟା, ଯୋଗ ଓ ଚର୍ଯ୍ୟା । ଶ୍ରୀସିଦ୍ଧାନ୍ତଶିଖାମଣିରେ ଚାରିପାଦର ସଂବ୍ୟୂହନ ହୋଇଛି । ଶିବଯୋଗୀ ଅନ୍ୟ ସମସ୍ତ କ୍ରିୟାରୁ ନିବୃତ୍ତ ହୋଇ ଲିଙ୍ଗପୂଜା ରୂପକ କ୍ରିୟା କରିବା ଉଚିତ୍ । ଯଜ୍ଞ, ଅଗ୍ନିହୋତ୍ର, ଦୁଶ୍ଚର ତପ ଲିଙ୍ଗପୂଜାର ଅଂଶବିଶେଷ ଅଟନ୍ତି । ଯେଉଁ ଯୋଗୀ ଲିଙ୍ଗାର୍ଚ୍ଚନ କରନ୍ତି, ସେ ସମସ୍ତ କ୍ରିୟାର କର୍ତ୍ତା ହୋଇ ଯାଆନ୍ତି । ଏପରିକି ବ୍ରହ୍ମାଦି ଲିଙ୍ଗାର୍ଚ୍ଚନଦ୍ୱାରା ନିଜର ପଦରେ ଆରୂଢ ହୋଇଛନ୍ତି[୬] । ଶିବ ହିଁ ସାକ୍ଷାତ୍ ପରମତତ୍ତ୍ୱ ହୋଇଥିବାରୁ ତାଙ୍କ ସମ୍ବନ୍ଧିତ କ୍ରିୟା କରିବା ଉଚିତ । ଶିବସମାବେଶ ନିମନ୍ତେ କ୍ରିୟା ଏକ ଆବଶ୍ୟକ କର୍ତ୍ତବ୍ୟ ଅଟେ । ଯେପରି ଅରଣି ସ୍ଥିତ ଅଗ୍ନିକୁ ପ୍ରଜ୍ୱଳିତ କରିବା ପାଇଁ ଘର୍ଷଣ ଆବଶ୍ୟକ, ସେହିପରି ଅନ୍ତଃସ୍ଥ ଶିବଙ୍କୁ ପ୍ରକାଶିତ କରିବା ନିମନ୍ତେ ଲିଙ୍ଗାର୍ଚ୍ଚନ ଆବଶ୍ୟକ । ଆଗମଶାସ୍ତ୍ରର ଜ୍ଞାନ ପ୍ରାପ୍ତି ପରେ ଏହିପରି କ୍ରିୟା ସମ୍ଭବ । ଶିବରହସ୍ୟରେ କୁହାଯାଇଛି –

ନ କ୍ରିୟାରହିତଂ ଜ୍ଞାନଂ ନ ଜ୍ଞାନରହିତା କ୍ରିୟା ।
ଅପଶ୍ୟନ୍ନନ୍ଧକୋ ଦଗ୍ଧୋଽଭିଗଚ୍ଛନ୍ ପଙ୍ଗୁଶ୍ଚ ଦହ୍ୟତେ ।।

---

୪. ସି. ଶି., ୧୮/୪୧–୪୨

୫. ସି. ଶି., ୧୮/୬୮

୬. ସି. ଶି., ୧୫/୩୩–୩୬

ତେଣୁ କେବଳ ଗ୍ରନ୍ଥାଧ୍ୟୟନ ନୁହେଁ, ଗୁରୁଙ୍କ ଆଦେଶ ପ୍ରାପ୍ତ କରି ଲିଙ୍ଗାର୍ଚ୍ଚନ କରିବା ଉଚିତ୍ ।

ଲିଙ୍ଗପୂଜା ସମୟରେ ସର୍ବବ୍ୟାପକ ଶିବ ଲିଙ୍ଗରେ ପରିଚ୍ଛିନ୍ନ ହେଲେ ମଧ୍ୟ ସର୍ବବ୍ୟାପକତା ଅକ୍ଷୁର୍ଣ୍ଣ ରହେ । କାରଣ ତାହା ତାଙ୍କର ସ୍ୱଭାବ ଅଟେ ଏବଂ ସ୍ୱଭାବ ସ୍ୱଠାରୁ ପୃଥକ୍ ରହେ ନାହିଁ । ଏହି ସଂସାର ଆତ୍ମରୂପୀ ଶିବଠାରୁ ଉତ୍ପନ୍ନ ହୋଇଥିବାରୁ ଉପାଦାନ କାରଣରୁ ଭିନ୍ନ ହୋଇପାରିବନି । ଶିବ ସର୍ବବ୍ୟାପୀ ହୋଇଥିଲେ ମଧ୍ୟ କୈଳାଶ, ମନ୍ଦର, ସୁମେରୁ ଓ ଭକ୍ତର ହୃଦୟରେ ବିଶେଷ ଭାବରେ ଅବସ୍ଥାନ କରନ୍ତି। କ୍ରିୟା ସ୍ଥୂଳରୂପରେ ଓ ଭାବ ସୂକ୍ଷ୍ମରୂପରେ ବିଦ୍ୟମାନ । କିନ୍ତୁ ଜ୍ଞାନ ସ୍ଥୂଳ ଓ ସୂକ୍ଷ୍ମରୁ ଉର୍ଦ୍ଧ୍ୱରେ । ଶିବପୂଜାର ଆରମ୍ଭ ସ୍ଥୂଳରୂପରେ ଲିଙ୍ଗପୂଜାରୁ ହୋଇଥାଏ । ତା'ପରେ ମନରେ ସୂକ୍ଷ୍ମ ଭାବରେ ତା'ର ଭାବନା ହୋଇଥାଏ । ତତ୍‌ପଶ୍ଚାତ୍ ଅଖଣ୍ଡ ଜ୍ଞାନରୂପରେ ତାଙ୍କର ଭଜନ ମୋକ୍ଷ ଦାୟକ ହୋଇଥାଏ । ତେଣୁ କ୍ରିୟାରୁ ବିଦ୍ୟା ଅଥବା ଜ୍ଞାନ ଦିଗରେ ଅଗ୍ରସର ହେବା ଉଚିତ ।

ଏହି ଗ୍ରନ୍ଥରେ ଦୁଇ ପ୍ରକାରର ଯୋଗର ବର୍ଣ୍ଣନ ଅଛି – ଜପଯୋଗ ଏବଂ ଭକ୍ତିଯୋଗ । ନାଦତତ୍ତ୍ୱ ଅଥବା ଶବ୍ଦବ୍ରହ୍ମକୁ ପ୍ରାପ୍ତ କରିବା ନିମନ୍ତେ ଜପ ଏକ ସରଳ, ସୁଦୃଢ଼ ଓ ସୁନ୍ଦର ଉପାୟ ଅଟେ । ମହର୍ଷି ପତଞ୍ଜଳି ଜପକୁ ସ୍ୱାଧ୍ୟାୟ ନାମ ଦେଇଛନ୍ତି ଏବଂ ଏହାକୁ କ୍ରିୟାଯୋଗ ଭାବରେ ନିର୍ଦ୍ଧାରିତ କରିଛନ୍ତି[8] । ସିଦ୍ଧାନ୍ତଶିଖାମଣିରେ ପଞ୍ଚାକ୍ଷରୀ ମନ୍ତ୍ର 'ନମଃ ଶିବାୟ'ର ବିଧାନ ବର୍ଣ୍ଣିତ ହୋଇଛି । ଶିବ ପଦରେ ଶ୍ ଇ ବ୍ ଅ – ବୋଲି ଚାରି ଅକ୍ଷର ଅଛନ୍ତି । ଏଥିରୁ 'ଶ୍' ଅଥର୍ବବେଦର, 'ଇ' ଯଜୁର୍ବେଦର, 'ବ୍' ବ୍ୟାକରଣର ଓ 'ଅ' ଋଗ୍‌ବେଦର ପ୍ରତୀକ ଅଟନ୍ତି । ଏହିପରି ଶିବ ପଦ ବେଦ ଓ ବେଦାଙ୍ଗ ଉଭୟର ବାଚକ । ପକ୍ଷାନ୍ତରରେ 'ଶିବ' ପଦସ୍ଥ 'ଶ'କାର ପଞ୍ଚ ବ୍ରହ୍ମର ଓ 'ବ'କାର ମାୟାର ବାଚକ । ତେଣୁ ଶିବ ପଦ ସମ୍ପୂର୍ଣ୍ଣ ସୃଷ୍ଟିର ବାଚକ । ଏହି ପଞ୍ଚାକ୍ଷରୀ ମନ୍ତ୍ରର ଜ୍ଞାନ ହେବା ପରେ ଅନ୍ୟ ମନ୍ତ୍ର ଜ୍ଞାନର ଆବଶ୍ୟକତା ରହେ ନାହିଁ । ପଞ୍ଚାକ୍ଷରରେ ପଞ୍ଚମହାଭୂତ, ପଞ୍ଚତନ୍ମାତ୍ରା, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚବ୍ରହ୍ମ, ପଞ୍ଚକୃତ୍ୟ ଆଦି ସମାହିତ ହୁଅନ୍ତି । ଗ୍ରନ୍ଥରେ ଜପର ବାଚିକ, ଉପାଂଶୁ ଓ ମାନସ ଭେଦ ବର୍ଣ୍ଣନ କରି ତାହାର ମହତ୍ତ୍ୱ କୁହାଯାଇଛି –

ଯାବନ୍ତଃ କର୍ମଯଜ୍ଞାଦ୍ୟାବ୍ରତଦାନତପାଂସି ଚ ।
ସର୍ବେ ତେ ଜପଯଜ୍ଞସ୍ୟ କଳାଂ ନାର୍ହନ୍ତି ଷୋଡ଼ଶୀମ୍[9] ।।

---

୭. ତୈ. ଉ., ୨/୧

୮. ତପଃସ୍ୱାଧ୍ୟାୟେଶ୍ୱରପ୍ରଣିଧାନାନି କ୍ରିୟାଯୋଗଃ (ଯୋ. ସୂ., ୩/୧)

୯. ସି. ଶ., ୮/୩୦

ଶ୍ରୀସିଦ୍ଧାନ୍ତଶିଖାମଣିରେ ଭକ୍ତିଯୋଗର ବିଶଦଚର୍ଚ୍ଚା ହୋଇଛି । ଭକ୍ତି ବିଷୟରେ ଶ୍ରୀମଦ୍‌ଭାଗବତ ମହାପୁରାଣର କଥନ ହେଉଛି –

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍[୧୦] ।।

ଉତ୍ତମ ଭକ୍ତର କ୍ରିୟାକଳାପର ଚର୍ଚ୍ଚା ଭାଗବତରେ ହୋଇଛି –

ବାଣୀ ଗୁଣାନୁକଥନେ ଶ୍ରବଣୌ କଥାୟାଂ
ହସ୍ତୌ ଚ କର୍ମସୁ ମନସ୍ତବ ପାଦୟୋର୍ନଃ ।
ସ୍ମୃତ୍ୟାଂ ଶିରସ୍ତବ ନିବାସଜଗତ୍‌ପ୍ରଣାମେ
ଦୃଷ୍ଟିଃ ସତାଂ ଦର୍ଶନେଽସ୍ତୁ ଭବତ୍ତନୂନାମ୍[୧୧] ।।

ଶ୍ରୀସିଦ୍ଧାନ୍ତଶିଖାମଣିରେ ଦୁଇ ପ୍ରକାର ଭକ୍ତିର ବର୍ଣ୍ଣନ ଅଛି – ବାହ୍ୟଭକ୍ତି ଓ ଆଭ୍ୟନ୍ତର ଭକ୍ତି । ନାନା ଉପଚାରରେ ଶିବଲିଙ୍ଗର ପୂଜା ବାହ୍ୟ ଭକ୍ତି ଅଟେ । ଏହା ସର୍ବସାଧାରଣଙ୍କର ନିମନ୍ତେ ପ୍ରଯୁଜ୍ୟ । ଆଭ୍ୟନ୍ତର ପୂଜାର ସାମର୍ଥ୍ୟ କେବଳ ବୀରଶୈବ କରିଥା'ନ୍ତି । ଏଥିରେ ପ୍ରାଣରେ ଲିଙ୍ଗକୁ ଓ ଲିଙ୍ଗରେ ପ୍ରାଣକୁ ପ୍ରତିଷ୍ଠିତ କରି ଶିବଙ୍କ ବ୍ୟତୀତ ଅନ୍ୟ କାହାରି ଧ୍ୟାନ ନ କରିବାର ବିଧାନ ଅଛି । ଶାମ୍ଭବୀ ମୁଦ୍ରା ଅଥବା ଶାମ୍ଭବ ଯୋଗଦ୍ୱାରା ଏହି ଭକ୍ତିର ଅନୁଷ୍ଠାନ ହୋଇଥାଏ । ଏପରି ଯୋଗୀ ଜୀବନ୍ମୁକ୍ତ ଅଟେ । ପୁନର୍ବାର ଭକ୍ତିର ତିନି ପ୍ରକାର ବତାଯାଇଛି – ମାନସିକ, ବାଚିକ ଓ କାୟିକ । ଶିବଙ୍କର ରୂପର ଧ୍ୟାନ, ତାଙ୍କର ପୂଜା ଆଦିର ଚିନ୍ତନ ମାନସିକ ଭକ୍ତି ଅଟେ। ଜପ ଆଦି ବାଚିକ ଏବଂ ବାହ୍ୟ ଶିବଲିଙ୍ଗ ପୂଜା, ଶୈବ ମନ୍ଦିର ଆଦିର ଦର୍ଶନ ଇତ୍ୟାଦି କାୟିକ ଭକ୍ତି ଅଟେ । ବାହ୍ୟ ଓ ଆଭ୍ୟନ୍ତର ଭକ୍ତି ବ୍ୟତୀତ ତୃତୀୟ ପ୍ରକାରର ଭକ୍ତି ହେଉଛି – ବାହ୍ୟାଭ୍ୟନ୍ତର ପୂଜା । ଏଥିରେ ମନକୁ ମହେଶ୍ୱରଙ୍କଠାରେ ଏକାଗ୍ର କରାଯାଇଥାଏ । ଏପରି ହେଲେ ସମସ୍ତ ପ୍ରକାରର ପୂଜା ସ୍ୱୟଂ ହୋଇଥାନ୍ତି । ଶିଖାମଣିକାର ଭକ୍ତିର ପାଞ୍ଚଟି ଆୟାମ ବତାଇଛନ୍ତି – ତପ, କର୍ମ, ଜପ, ଧ୍ୟାନ ଓ ଜ୍ଞାନ । ଶିବଙ୍କ ନିମନ୍ତେ ଶରୀରକୁ ଶୁଷ୍କ କରିବା ତପ ଅଟେ, କୃଚ୍ଛ୍ର ଚାନ୍ଦ୍ରାୟଣ, ସନ୍ତାପନ ଆଦି ନୁହେଁ । ଶିବଙ୍କର ପୂଜା ହିଁ କର୍ମ ଅଟେ, ଯାଗ ଆଦି ନୁହେଁ । ପଞ୍ଚାକ୍ଷର ମନ୍ତ୍ର ଅଥବା ପ୍ରଣବ ଜପ ହିଁ ଜପ ଅଟେ । ବେଦର ଅନ୍ୟ ସୂକ୍ତମାନଙ୍କର ପାଠ ନ କରି କେବଳ ରୁଦ୍ରାଷ୍ଟଧ୍ୟାୟୀର ଏବଂ ରୁଦ୍ର ମନ୍ତ୍ରର ପାଠ କରିବାର ବିଧାନ ଅଛି । ଶିବଙ୍କର ରୂପ, ଗୁଣ ଆଦିର ଧ୍ୟାନ କରିବା ଉଚିତ୍, ଆତ୍ମାର ନୁହେଁ । ସେହିପରି କେବଳ

---

୧୦. ଭା. ମ. ପୁ., ୭/୫/୨୩

୧୧. ଭା. ମ. ପୁ., ୧୦/୧୦/୩୮

ଶୈବଶାସ୍ତ୍ରର ଅଧ୍ୟୟନ ଜ୍ଞାନ ଅଟେ, ବୈଷ୍ଣବାଦି ଶାସ୍ତ୍ରର ନୁହେଁ । ଭକ୍ତିର ପ୍ରକାର ଭେଦ ଏହିପରି ଜାଣିବା ଉଚିତ୍ – ଭକ୍ତି ବାହ୍ୟ, ଆଭ୍ୟନ୍ତର ଓ ବାହ୍ୟାଭ୍ୟନ୍ତର ଭେଦରେ ତିନି ପ୍ରକାରର । ପ୍ରତ୍ୟେକ ଭେଦ ମାନସିକ, ବାଚିକ ଓ କାୟିକ ଭେଦରେ ତିନି ପ୍ରକାରର । ପୁନଶ୍ଚ ବାହ୍ୟ–ମାନସିକ ଭକ୍ତି ଆଦିରେ ତପ, କର୍ମ, ଜପ, ଧ୍ୟାନ ଓ ଜ୍ଞାନ ନାମରେ ପାଞ୍ଚଟି ଆୟାମ ଅଛନ୍ତି । ତପ ଆଦି ପାଞ୍ଚ ପ୍ରକାରର ଅନୁଷ୍ଠାନକୁ ଶିବଯଜ୍ଞ କୁହାଯାଏ । ଯେ ଏହି ପାଞ୍ଚ ଯଜ୍ଞଦ୍ୱାରା ଶିବଙ୍କର ଅହର୍ନିଶ ପୂଜା କରେ, ସେ ଭକ୍ତଯୋଗୀ ଅଟେ ।

ଆଗମଶାସ୍ତ୍ରର ଚତୁର୍ଥପାଦ ଚର୍ଯ୍ୟା ଅଟେ । ଚର୍ଯ୍ୟା ଅର୍ଥାତ୍ ଆଚରଣ ରେଣୁକାଚାର୍ଯ୍ୟ ଶିବଯୋଗୀର ଆଚରଣ ବିଷୟରେ ବିଶଦ ଆଲୋଚନା କରିଛନ୍ତି । ସିଦ୍ଧାନ୍ତଶିଖାମଣି ବିଶେଷ ରୂପରେ ଚର୍ଯ୍ୟାଗ୍ରନ୍ଥ ଅଟେ । ବୀରଶୈବ ଅଥବା ଶୈବାଗମ ଅନୁଯାୟୀଙ୍କ ନିମନ୍ତେ ଜ୍ଞାନ ଅପେକ୍ଷା ଚର୍ଯ୍ୟା ଅଧିକ ମହତ୍ତ୍ୱପୂର୍ଣ୍ଣ । କାରଣ ପାମରଜନ ମଧ୍ୟ ଚର୍ଯ୍ୟାଦ୍ୱାରା ଅନ୍ତତୋଗତ୍ୱା ଶିବସାୟୁଜ୍ୟ ପ୍ରାପ୍ତ କରିପାରନ୍ତି ଏବଂ ଅପାମର ଅର୍ଥାତ୍ ଶାସ୍ତ୍ରଜ୍ଞାନୀ ଚର୍ଯ୍ୟା ବିନା ଶିବ ସାୟୁଜ୍ୟ ପ୍ରାପ୍ତ କରି ପାରନ୍ତି ନାହିଁ । ତେଣୁ ଚର୍ଯ୍ୟା ପାମର–ଅପାମର ଉଭୟଙ୍କର ନିମନ୍ତେ ଅନିବାର୍ଯ୍ୟ ଅଟେ ।

ଦୀକ୍ଷା – ଚର୍ଯ୍ୟାର ପ୍ରଥମ କ୍ରମ ଦୀକ୍ଷା ଅଟେ । ଦୀକ୍ଷାର ଲକ୍ଷଣ ହେଉଛି –

ଦୀୟତେ ଚ ଶିବଜ୍ଞାନଂ କ୍ଷୀୟତେ ପାଶବନ୍ଧନମ୍ ।
ଯସ୍ମାଦତଃ ସମାଖ୍ୟାତା ଦୀକ୍ଷେତୀୟଂ ବିଚକ୍ଷଣୈଃ[୧୨] ।।

ଦୀକ୍ଷା ତିନି ପ୍ରକାରର – ବେଧାଦୀକ୍ଷା, ମନ୍ତ୍ର ଦୀକ୍ଷା ଓ କ୍ରିୟା ଦୀକ୍ଷା । ବେଧାଦୀକ୍ଷାରେ ଗୁରୁ ଶିଷ୍ୟ ଉପରେ ଦୃଷ୍ଟି ରଖି ତା'ର ଶିର ଉପରେ ନିଜର ହାତ ରଖନ୍ତି ଓ ଏଥିରେ ଶିଷ୍ୟକୁ ଶିବସାୟୁଜ୍ୟ ପ୍ରାପ୍ତ ହୋଇଥାଏ । ମନ୍ତ୍ରଦୀକ୍ଷାରେ ଗୁରୁଶିଷ୍ୟର କାନରେ ପଞ୍ଚାକ୍ଷର ମନ୍ତ୍ରର ଉପଦେଶ କରନ୍ତି । ମନ୍ତ୍ରର ମନନ କରିବା ପରେ ତ୍ରାଣ କରୁଥିବା ଏହି ଦୀକ୍ଷାକୁ ମାନ୍ତ୍ରୀ ଦୀକ୍ଷା କୁହାଯାଏ । କ୍ରିୟାଦୀକ୍ଷାର ଏହି ଗ୍ରନ୍ଥରେ ବିସ୍ତୃତ ବର୍ଣ୍ଣନ ଅଛି । ଏଥିରେ ଶୁଭ ମୁହୂର୍ତ୍ତରେ ଗୁରୁ ଆଚାର୍ଯ୍ୟ ଋତ୍ୱିଜଙ୍କ ସହିତ ଶିଷ୍ୟର ଅଭିଷେକ କରି ଦକ୍ଷିଣ କର୍ଣ୍ଣରେ ପଞ୍ଚାକ୍ଷରୀ ମନ୍ତ୍ରର ଉପଦେଶ ଦେଇଥାନ୍ତି । ତା'ପରେ ପଞ୍ଚାକ୍ଷରୀ ମନ୍ତ୍ରର ନ୍ୟାସ, ବିନିଯୋଗ ଆଦି ବତାଇଥା'ନ୍ତି ।

**ଲିଙ୍ଗଧାରଣ**

ଦୀକ୍ଷା ପ୍ରଦାନ ପରେ ଗୁରୁ ଗୋଟିଏ ଲିଙ୍ଗକୁ ପୂଜା କରି ଶୈବୀ କଳା ଯୁକ୍ତ

---

୧୨. ସି. ଶି., ୬/୧୧

କରିଥା'ନ୍ତି । ଏହାପରେ ସେହି ଲିଙ୍ଗରେ ଶିଷ୍ୟର ପ୍ରାଣର ଓ ପ୍ରାଣରେ ଲିଙ୍ଗର ସ୍ଥାପନା କରି ଗୁରୁ ଉଭୟଙ୍କୁ ଏକ କରିଦିଅନ୍ତି । ସେହି ଲିଙ୍ଗକୁ ଶିଷ୍ୟର ହାତରେ ଦେଇ ପ୍ରାଣ ସଙ୍କଟରେ ପଡ଼ିଲେ ମଧ୍ୟ ଲିଙ୍ଗକୁ ଶରୀରରୁ ଅଲଗା ନ କରିବା ପାଇଁ ଆଦେଶ ଦିଅନ୍ତି। ଏହା ବାହ୍ୟ ଲିଙ୍ଗ ଅର୍ଥାତ୍ ସ୍ଫଟିକ ଆଦିରେ ନିର୍ମିତ ଲିଙ୍ଗଧାରଣର ପ୍ରକ୍ରିୟା ଅଟେ । ଏହାର ସହାୟତାରେ ଶିଷ୍ୟ ଆନ୍ତର ଲିଙ୍ଗ ଧାରଣର ଅଭ୍ୟାସ କରିବା ଉଚିତ୍ । ମୂଳାଧାର ହୃଦୟ ଅଥବା ଭ୍ରୂମଧ୍ୟରେ ଜ୍ୟୋତିର୍ଲିଙ୍ଗର ଅନୁସନ୍ଧାନ କରିବା ଉଚିତ । ମୂଳାଧାରରେ ସ୍ୱର୍ଣ୍ଣିମ, ହୃଦୟରେ ମୁଂଗାସଦୃଶ ଓ ଭ୍ରୂମଧ୍ୟରେ ସ୍ଫଟିକୋପମ ଲିଙ୍ଗର ଧ୍ୟାନ କୁହାଯାଇଛି। ଏହିପରି ଲିଙ୍ଗ ତିନି ପ୍ରକାରର – ସ୍ଥୂଳ, ସୂକ୍ଷ୍ମ ଓ ପରାତ୍ପର । ବାହ୍ୟ ଲିଙ୍ଗ ଶିର, କଣ୍ଠ, ହୃଦୟ, ହସ୍ତ ଆଦିରେ ଧାରଣ କରାଯାଇଥାଏ । ପ୍ରାଣକୁ ସୂକ୍ଷ୍ମ ଲିଙ୍ଗ କହନ୍ତି । ପରାତ୍ପର ଲିଙ୍ଗ ତୃପ୍ତିଲିଙ୍ଗ ଅଟେ । ସ୍ଥୂଳଲିଙ୍ଗର ଧାରଣ ନାଭିର ଅଧୋଭାଗରେ କରାଯାଏ ନାହିଁ । ତାହାର ପୂଜା ହାତ ଉପରେ ରଖି କରାଯାଏ ।

### ଭସ୍ମଧାରଣ

ଲିଙ୍ଗଧାରଣ କରି ଭସ୍ମଧାରଣ ଶିବଯୋଗୀ ନିମନ୍ତେ ଅନିବାର୍ଯ୍ୟ ଅଟେ । 'ଭାସ୍' ଧାତୁରେ ମନିନ୍ ପ୍ରତ୍ୟୟ କରି ଭସ୍ମ ଶବ୍ଦର ବ୍ୟୁତ୍ପତ୍ତି କରାଯାଏ । ଏହାର ଅର୍ଥ ହେଉଛି ଭାସନ ଅଥବା ପ୍ରକାଶନ । ଶିବଙ୍କର ଭାସନ କରୁଥିବା ପଞ୍ଚାକ୍ଷରୀ ମନ୍ତ୍ର ବାସ୍ତବିକ ଭସ୍ମ ଅଟେ । ତାହାର ପ୍ରତୀକ ଭାବରେ ମନ୍ତ୍ର, ନ୍ୟାସ, ଧ୍ୟାନ ଆଦିରୁ ଉତ୍ପନ୍ନ ସ୍ଥୂଳଭସ୍ମ ଧାରଣ କରିବାର ବିଧି ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଭସ୍ମର ବିଭୂତି, ଭସିତ ଆଦି ପାଞ୍ଚଟି ନାମ ଅଛି ଏବଂ ପ୍ରତ୍ୟେକଙ୍କର ବିଶିଷ୍ଟ ଅର୍ଥ ଅଛି । ଏହି ଭସ୍ମ କପିଳ, କୃଷ୍ଣ ଆଦି ପାଞ୍ଚ ବର୍ଣ୍ଣ ନନ୍ଦା ଆଦି ପାଞ୍ଚ ଗାଈଙ୍କଠାରୁ ଉତ୍ପନ୍ନ ଏବଂ ଏମାନଙ୍କର ଉତ୍ପତ୍ତିରେ ସଦ୍ୟୋଜାତ, ବାମଦେବ, ଅଘୋର, ତତ୍ପୁରୁଷ ଓ ଈଶାନ ନାମକ ପଞ୍ଚବ୍ରହ୍ମ କାରଣ ଅଟନ୍ତି । ନିତ୍ୟ ଭସ୍ମଧାରଣ କରିବା ଉଚିତ । ତ୍ରିପୁଣ୍ଡ୍ର ରୂପରେ ଏହାକୁ ଧାରଣ କରାଯାଏ । ତ୍ରିପୁଣ୍ଡ୍ର ଅର୍ଥାତ୍ ଅନାମିକା, ମଧ୍ୟମା ଓ ତର୍ଜନୀଦ୍ୱାରା ଭସ୍ମର ତିନୋଟି ତିର୍ଯ୍ୟକ୍ ରେଖା ଧାରଣ କରିବା । ଏହି ଭସ୍ମ ଶିର, ଲଲାଟ, ଉଭୟ କର୍ଣ୍ଣ, କଣ୍ଠ, ଉଭୟ ହସ୍ତ, ହୃଦୟ, ନାଭି, ପୃଷ୍ଠ, ଉଭୟ ବାହୁ, ଉଭୟ କହୁଣୀ ଏବଂ ଉଭୟ ମଣିବନ୍ଧରେ ଧାରଣ କରାଯାଇଥାଏ । ଏପରି ଧାରଣ କଲେ ମନୁଷ୍ୟ ରୁଦ୍ର ସଦୃଶ ମହାନ୍ ହୋଇଥାଏ ।

### ରୁଦ୍ରାକ୍ଷଧାରଣ

ରୁଦ୍ରାକ୍ଷଧାରଣର ବିଧି ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ରୁଦ୍ରାକ୍ଷର ଉତ୍ପତ୍ତି ବିଷୟରେ

କିମ୍ବଦନ୍ତୀ ଅଛି ଯେ ତ୍ରିପୁର ଦାହର ପ୍ରାରମ୍ଭରେ ଭଗବାନ୍ ରୁଦ୍ର ନିଜର ତୃତୀୟ ନେତ୍ରରେ ତାହାକୁ ଦେଖିଥିଲେ । ସେହି ସମୟରେ କ୍ରୋଧ ହେତୁ ତୃତୀୟ ନେତ୍ରରୁ ଯେଉଁ ଲୋତକ ବୋହି ଥିଲା, ତାହା ରୁଦ୍ରାକ୍ଷ ହୋଇଥିଲା । ରୁଦ୍ରଙ୍କର ଅକ୍ଷିର ଲୋତକରୁ ନିର୍ମିତ ହୋଇଥିବାରୁ ଏହାକୁ ରୁଦ୍ରାକ୍ଷ କୁହାଯାଏ । ତାଙ୍କର ସୂର୍ଯ୍ୟାତ୍ମକ ଦକ୍ଷିଣ ନେତ୍ରରୁ କପିଳ ବର୍ଣ୍ଣର ୧୨ଟି ରୁଦ୍ରାକ୍ଷ, ଚନ୍ଦ୍ରାତ୍ମକ ବାମ ନେତ୍ରରୁ ଶ୍ୱେତ ବର୍ଣ୍ଣର ୧୬ଟି ରୁଦ୍ରାକ୍ଷ ଓ ଲଲାଟସ୍ଥ ଅଗ୍ନିମୟନେତ୍ରରୁ ୧୦ବର୍ଣ୍ଣର ରୁଦ୍ରାକ୍ଷ ଉତ୍ପନ୍ନ ହୋଇଥିଲେ। ଏହିପରି ରୁଦ୍ରାକ୍ଷ (୧୨ + ୧୬ + ୧୦ = ୩୮) ଅଠତିରିଶ ପ୍ରକାରର ଅଟେ । ସ୍ୱର୍ଣ୍ଣିମ ବର୍ଣ୍ଣର କେହି ଧାରଣ ନ କରିଥିବା ରୁଦ୍ରାକ୍ଷକୁ ଧାରଣ କରିବା ଉଚିତ୍ । ଭିନ୍ନ ଭିନ୍ନ ଅଙ୍ଗରେ ଭିନ୍ନ ସଂଖ୍ୟକ ରୁଦ୍ରାକ୍ଷଧାରଣର ବିଧାନ ଅଛି[୧୩] । ରୁଦ୍ରାକ୍ଷ ଧାରଣ କରିଥିବା ଶିବଭକ୍ତ ବ୍ରହ୍ମହତ୍ୟା ଆଦି ମହାପାପ ତଥା ଅନ୍ୟ ସମସ୍ତ ପାପରୁ ମୁକ୍ତ ହୋଇଥାଏ । ମୃତ୍ୟୁକାଳରେ ରୁଦ୍ରାକ୍ଷ ଘୋରି ସେହି ଜଳକୁ ପାନ କଲେ ରୁଦ୍ରଲୋକ ପ୍ରାପ୍ତ ହୋଇଥାଏ।

### ମନ୍ତ୍ରଜପ

ପଞ୍ଚାକ୍ଷର ମନ୍ତ୍ରଜପ ଅନ୍ୟତମ ଚର୍ଯ୍ୟା ଅଟେ । ବାଚିକ, ଉପାଂଶୁ ଓ ମାନସ – ଏହି ତିନି ପ୍ରକାର ଜପକୁ ଜପଯଜ୍ଞ କୁହାଯାଏ । ସମସ୍ତ କର୍ମଯଜ୍ଞ ଓ ବ୍ରତ, ଦାନ ଆଦି ଜପଯଜ୍ଞର ଷୋଳାଂଶ ମଧ୍ୟ ନୁହନ୍ତି । ଆଣବ, ମାୟୀୟ ଓ କାର୍ମପାଶରୁ ମୁକ୍ତ ହେବା ନିମନ୍ତେ ଜପଯଜ୍ଞ କରିବା ଉଚିତ । ଅଭକ୍ଷଣ, ବାୟୁଭକ୍ଷଣ, ଅଥବା ଅନ୍ୟ ବ୍ରତ ଆଚରଣ କରୁଥିବା ବ୍ୟକ୍ତି ଶିବଲୋକକୁ ପ୍ରାପ୍ତ ହୁଅନ୍ତି ନାହିଁ । କିନ୍ତୁ ଏହି ପଞ୍ଚାକ୍ଷରୀ ମହାମନ୍ତ୍ରର ଥରେ ମାତ୍ର ଉଚ୍ଚାରଣ କଲେ ସର୍ବସିଦ୍ଧି ପ୍ରାପ୍ତ ହୋଇଥାଏ । ପଞ୍ଚାକ୍ଷର ଉଚ୍ଚାରଣ କରି ଶିବଲିଙ୍ଗରେ ପୁଷ୍ପ ଅର୍ପଣ କଲେ ଏକ ସହସ୍ର ବାଜପେୟ ଯଜ୍ଞର ଫଳପ୍ରାପ୍ତି ହୋଇଥାଏ । ବଶିଷ୍ଠ, ବାମଦେବ ଆଦି ଋଷିଗଣ ଏହି ମନ୍ତ୍ର ଜପ କରି ସିଦ୍ଧ ହୋଇ ପାରିଥିଲେ । ଶତାନନ୍ଦ ମୁନି ନର୍କକୁ ସ୍ୱର୍ଗ କରିଦେଇଥିଲେ । ବ୍ରହ୍ମାଦିଙ୍କର ସୃଷ୍ଟିରେ ସାମର୍ଥ୍ୟ ଏହି ମନ୍ତ୍ର କାରଣରୁ ।

ଏହିପରି ଅନେକ ଚର୍ଯ୍ୟାର ବର୍ଣ୍ଣନ ସିଦ୍ଧାନ୍ତଶିଖାମଣିରେ ଅଛି । ଗୁରୁଙ୍କର ମହତ୍ତ୍ୱ, ଗୁରୁଙ୍କ ପ୍ରତି କର୍ତ୍ତବ୍ୟ, ଲିଙ୍ଗର ମହତ୍ତ୍ୱ, ଲିଙ୍ଗଧାରଣର ମହତ୍ତା, ଶିବଯୋଗୀର ମହିମା, ଶିବାର୍ଚ୍ଚନର ମାହାତ୍ମ୍ୟ ଇତ୍ୟାଦି ବିଷୟ ଏହି ଗ୍ରନ୍ଥରେ ଆଲୋକିତ ହୋଇଛି । ଆଚାର୍ଯ୍ୟ ଅଭିନବ ଗୁପ୍ତ ଆଗମଶାସ୍ତ୍ରକୁ ପ୍ରକ୍ରିୟା ଶାସ୍ତ୍ର ଏବଂ ଅନୁଭବଶାସ୍ତ୍ର କହିଛନ୍ତି। କ୍ରିୟା, ପ୍ରକ୍ରିୟା, ସାଧନା, ଅନୁଷ୍ଠାନ ଇତ୍ୟାଦି ପ୍ରାରମ୍ଭିକ ସ୍ତରର ବିଷୟ ଅଟନ୍ତି । କ୍ରିୟା ବିନା କାର୍ଯ୍ୟସିଦ୍ଧି ହୁଏ

---

୧୩. ସି. ଶି., ୭/୫୨–୫୮

ନାହିଁ । କ୍ରିୟାର ଉତ୍କର୍ଷ ଅନୁସାରେ ଭଗବଦ୍‌କୃପା ପ୍ରଭୂତ ଭାବରେ ଭକ୍ତକୁ ଅନୁଗୃହୀତ କରିଥାଏ । ଏଥି ମଧ୍ୟରେ ଭକ୍ତକୁ ଅନେକ ଦିବ୍ୟ ଅନୁଭବ ହୋଇଥାଏ ତଥା ସାଧକ ଦିବ୍ୟଶକ୍ତି ସହିତ ସମନ୍ୱିତ ହୋଇଥାଏ । ସାଧନା କ୍ରମରେ ଏପରି ଏକ ସ୍ଥିତି ଆସେ ଯେତେବେଳେ ପ୍ରୟାସ ବିନା କ୍ରିୟା ଅଥବା ପ୍ରକ୍ରିୟା ହୋଇଥାଏ । ଜପ, ଧ୍ୟାନର ଏହି ଅବସ୍ଥା ଉଚ୍ଚକୋଟିର ହୋଇଥାଏ । ଅନ୍ତରେ 'ଯଦ୍ ଯଦ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍'ର ସ୍ଥିତି ହୋଇଥାଏ । ସାଧକ ଶିବତ୍ୱର ଅନୁଭବ କରିଥାଏ । ତା'ର ସମସ୍ତ କୃତ୍ୟ ଶିବମୟ ହୋଇଯାଏ । ଉପନିଷଦ୍‌ରେ ବର୍ଣ୍ଣିତ 'ଆତ୍ମରତିଃ ଆତ୍ମକ୍ରୀଡଃ' ଇତ୍ୟାଦି ଏହି ଅବସ୍ଥାର ଦ୍ୟୋତକ । ମହାରାଷ୍ଟ୍ର ଗଣେଶପୁରୀର ଶିବସ୍ୱରୂପ ସନ୍ତ ଭଗବାନ୍ ନିତ୍ୟାନନ୍ଦ ବେଳେବେଳେ ନିଜର ପୂଜା କରୁଥିଲେ । 'ଓଁ ଗନ୍ଧଂ ସମର୍ପୟାମି ଆତ୍ମନେ ନମଃ, ଓଁ ପୁଷ୍ପଂ ସମର୍ପୟାମି ଆତ୍ମନେ ନମଃ' ଇତ୍ୟାଦି ଉଚ୍ଚାରଣ କରି ନିଜ ଉପରେ ଗନ୍ଧ, ପୁଷ୍ପାଦି ସିଞ୍ଚନ କରୁଥିଲେ । ଶିବଯୋଗୀର ଚରମ ଉତ୍କର୍ଷ ଅଠର, ଉଣେଇଶ ଓ କୋଡ଼ିଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

ଆଗମ ନିଗମ ଅର୍ଥାତ୍ ବେଦ ବିରୋଧୀ ବୋଲି ଅନେକଙ୍କର ଧାରଣା । ଆଂଶିକ ଭାବରେ ଏହା ସତ୍ୟ ମଧ୍ୟ । ବ୍ରାହ୍ମଣ ଆଦି ଗ୍ରନ୍ଥରେ ବର୍ଣ୍ଣିତ ଜଟିଳ କର୍ମକାଣ୍ଡ ବିଧି ଏବଂ ତାହାକୁ ଆଚରଣ କରିବାର ଅଧିକାରୀ ବିଷୟରେ ଯେଉଁ ସବୁ ନିୟମ ନିର୍ଦ୍ଦେଶ ଅଛି ତନ୍ତ୍ରଶାସ୍ତ୍ର ସେଥିରେ ସମ୍ମତ ନୁହେଁ । ଏହା ଅତ୍ୟନ୍ତ ଉଦାର ଶାସ୍ତ୍ର ଅଟେ । ଶୈବୀ ସାଧନା, ଶିବସାଯୁଜ୍ୟ ପ୍ରାପ୍ତିର ଅଧିକାରୀ କେହି ହେଲେ ସାଧନା କରି ହୋଇପାରିବ । ଏପରିକି ନାରୀ ଯଜ୍ଞ କରିବା ନିଷିଦ୍ଧ ହୋଇଥିଲେ ମଧ୍ୟ, ଆଗମ ଲିଙ୍ଗାର୍ଚ୍ଚନର ଅଧିକାର ଦେଇଛି । ତେଣୁ କୁହାଯାଇଛି –

ଲିଙ୍ଗାର୍ଚ୍ଚନରତାୟାସ୍ତୁ ଋତୌ ନାର୍ଯ୍ୟା ନ ସୂତକମ୍ ।
ତଥା ପ୍ରସୂତିକାୟାଶ୍ଚ ସୂତକଂ ନୈବ ବିଦ୍ୟତେ ।।

(ସି. ଶି., ୯/୪୪)

୧୧ଶ ଶତାବ୍ଦୀ ଓ ପରବର୍ତ୍ତୀ କାଳରେ ବେଦ ଓ ଆଗମ ମଧ୍ୟରେ ଏକ ପ୍ରକାର ସାମଞ୍ଜସ୍ୟ ସ୍ଥାପିତ କରିବା ପାଇଁ ଚେଷ୍ଟା ଆରମ୍ଭ ହେଲା । ଅଭିନବଗୁପ୍ତାଚାର୍ଯ୍ୟଙ୍କ ମତରେ –

ଗର୍ଭାଧାନାଦିତଃ କୃତ୍ୱା ଯାବଦୁଦ୍ୱାହମେବ ଚ ।
ତାବତ୍ତୁ ବୈଦିକଂ କର୍ମ ପଶ୍ଚାଚ୍ଛୈବେ ହ୍ୟନନ୍ୟଭାକ୍ ।।

ଏହି ଗ୍ରନ୍ଥରେ ମଧ୍ୟ ସାମଞ୍ଜସ୍ୟର ଭାବନା ନିହିତ ଅଛି । ଗ୍ରନ୍ଥକାର ଶିବଯୋଗୀ ଶିବାଚାର୍ଯ୍ୟ ସାଂଖ୍ୟ, ଯୋଗ, ପାଞ୍ଚରାତ୍ର, ବେଦ ଓ ପାଶୁପତର ପ୍ରାମାଣିକତାକୁ ଏକ

ମାନିଛନ୍ତି ଏବଂ ବେଦକୁ ସର୍ବପ୍ରଧାନ କହିଛନ୍ତି । ବେଦର ପ୍ରାମାଣିକତା ପରବର୍ତ୍ତୀ ବେଦାନୁଗାମୀ ଗ୍ରନ୍ଥମାନଙ୍କର ପ୍ରାମାଣିକତା –

ବେଦାଃ ପ୍ରଧାନଂ ସର୍ବେଷାଂ ସାଂଖ୍ୟାଦୀନାଂ ମହାମୁନେ ।
ବେଦାନୁସାରଣାଦେଷାଂ ପ୍ରାମାଣ୍ୟମିତି ନିଶ୍ଚିତମ୍ ।।
(ସି. ଶି., ୫/୪–୫)

ରେଣୁକାଚାର୍ଯ୍ୟ ସ୍ଥଳ ବିଶେଷରେ ଏପରି ଶ୍ଳୋକର ଗ୍ରଥନ କରିଛନ୍ତି ଯାହା ଉପନିଷଦ୍ ଅଥବା ଗୀତାର ଶ୍ଳୋକର ପ୍ରତିଚ୍ଛାୟାରୂପ ପ୍ରତୀତ ହେଉଛି –

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ଜନ୍ତୁର୍ମରଣଜନ୍ମଭ୍ୟାଂ ପରିଭ୍ରମତି ଚକ୍ରବତ୍ ।।
(ସି. ଶି., ୫/୬୩)

ଏହି ଶ୍ଳୋକର ପୂର୍ବାର୍ଦ୍ଧ ଗୀତାରୁ ଉଦ୍ଧୃତ । ଏହିପରି 'ପୃଥିବ୍ୟାଦ୍ୟଷ୍ଟ ମୂର୍ତ୍ତିତ୍ୱ-ମୀଶ୍ୱରସ୍ୟ ପ୍ରକୀର୍ତ୍ତିତମ୍' (ସି. ଶି. ୧୦/୪୯) ବଚନ ବୃହଦାରଣ୍ୟକ ଉପନିଷଦ୍‌ର 'ଯସ୍ୟ ପୃଥିବୀ ଶରୀରମ୍' ତଥା 'ଯସ୍ୟାତ୍ମା ଶରୀରମ୍' (ବୃ. ୩/୭/୩, ୩/୭/୨୩) କୁ ବୁଝାଉଛି । ସେହିପରି –

ନିତ୍ୟଂ ଭାସି ତଦୀୟସ୍ତ୍ୱଂ ଯା ତେ ରୁଦ୍ରଶିବାତନୂଃ ।
ଅଘୋରାଦ୍ଧପାପକାଶୀତି ଶ୍ରୁତିରାହ ସନାତନୀ ।।
(ସି. ଶି., ୧୦/୫୯)

ଏହି ଶ୍ଳୋକରେ ଶୁକ୍ଳଯଜୁର୍ବେଦର ବାଜସନେୟୀସଂହିତାର ୧୬/୨ ମନ୍ତ୍ରର ଉଦ୍ଧରଣ ଦେଖାଯାଏ । ପୁନଶ୍ଚ ତୈତ୍ତିରୀୟ ଉପନିଷଦ୍, ବ୍ରହ୍ମବିନ୍ଦୂପନିଷଦ୍, ଶ୍ୱେତାଶ୍ୱତର ଉପନିଷଦ୍ ଆଦି ଶ୍ରୁତିଗ୍ରନ୍ଥମାନଙ୍କର ପ୍ରତିଚ୍ଛାୟା ବଚନ ଏହି ଗ୍ରନ୍ଥର ଅନେକ ଶ୍ଳୋକରେ ଦେଖିବାକୁ ମିଳେ । ଏଥିରୁ ଶିବଯୋଗୀ ଶିବାଚାର୍ଯ୍ୟ ବେଦୋପନିଷଦ୍‌ଗୀତା ସମ୍ମତ ଉପଦେଶ ଦେଇଥିବା ଜଣାଯାଏ ।

## ଶ୍ରୀସିଦ୍ଧାନ୍ତଶିଖାମଣି ଏକ ମହାକାବ୍ୟ

ଶ୍ରୀସିଦ୍ଧାନ୍ତଶିଖାମଣି ଦର୍ଶନଶାସ୍ତ୍ର ଏବଂ ଆଗମଶାସ୍ତ୍ର ସହିତ ଏକ ମହାକାବ୍ୟ ମଧ୍ୟ । 'ସର୍ଗବନ୍ଧୋ ମହାକାବ୍ୟମ୍' ଅନୁସାରେ ଏଥିରେ ୨୧ ପରିଚ୍ଛେଦ ଥିବାରୁ ଉତ୍କୃଷ୍ଟ କୋଟିର ଏହା ମହାକାବ୍ୟ ଅଟେ । ଏହାର ନାୟକ ରେଣୁକାଚାର୍ଯ୍ୟ, ଯେ କି ଧୀରୋଦାତ୍ତରୁ ମଧ୍ୟ ଅଧିକ ଉଚ୍ଚସ୍ତର ଗୁଣରେ ଯୁକ୍ତ । ସେ ଅବିକତ୍ଥନ ଅର୍ଥାତ୍ ଆତ୍ମଶ୍ଳାଘାରହିତ ଥିଲେ ।

ସେ ନିଜର ନୁହଁ, ଅଗସ୍ତ୍ୟ ଓ ବିଭୀଷଣଙ୍କର ପ୍ରଶଂସା କରିଛନ୍ତି । ସହନଶକ୍ତି ଯୁକ୍ତ ରେଣୁକ ଭଗବାନ୍ ଶିବଦ୍ୱାରା ଅଭିଶପ୍ତ ହୋଇ କ୍ରୋଧିତ ହୋଇ ନଥିଲେ, ବରଂ ବିନମ୍ରତା ସହିତ ଶାପୋଦ୍ଧାରର ଉପାୟ ଭିକ୍ଷା କରିଥିଲେ । ଶିବଙ୍କର ପ୍ରିୟ ଗଣେଶ୍ୱର ହୋଇଥିବାରୁ ତାଙ୍କଠାରେ ଗାମ୍ଭୀର୍ଯ୍ୟ ଓ ମହତ୍ତ୍ୱ ସ୍ୱଭାବତଃ ଥିଲା । ସେ ଏପରି ଦୃଢ଼ବ୍ରତୀ ଥିଲେ କି ମହାଦେବଙ୍କର ଆଦେଶ ପାଳନର ସଙ୍କଳ୍ପ ନେଇ ଅଗସ୍ତ୍ୟ ମୁନିଙ୍କୁ ବୀରଶୈବ ସିଦ୍ଧାନ୍ତର ପ୍ରଚାର–ପ୍ରସାର କରିବା ପାଇଁ ଆଦେଶ ଦେଇଥିଲେ ଓ ବିଭୀଷଣଙ୍କର ନିବେଦନ ଶୁଣି ତିନିକୋଟି ଶରୀର ଧାରଣ କରି ଏକସଙ୍ଗେ ତିନିକୋଟି ଶିବଲିଙ୍ଗର ସ୍ଥାପନା କରିଥିଲେ ।

ଶାନ୍ତରସ ଏହି ମହାକାବ୍ୟର ଅଙ୍ଗୀ ରସ । ସମ୍ପୂର୍ଣ୍ଣ କାବ୍ୟ ନିର୍ବେଦ ଭାବଯୁକ୍ତ ଅଟେ । ଗୁରୁ, ଶିଷ୍ୟ, ଶିବଭକ୍ତି, ଲିଙ୍ଗ, ସଂସାର, କଷ୍ଟ, ଲିଙ୍ଗାର୍ଚ୍ଚନ, ସମର୍ପଣ ଆଦି ବର୍ଣ୍ଣିତ ବିଷୟ ପାଠକ ମନରେ ସଂସାର ପ୍ରତି ବୈରାଗ୍ୟ ଭାବ ଆଣି ଶିବଙ୍କର ଅର୍ଚ୍ଚନା ସହିତ ସମର୍ପଣ ଭାବ ଉଦ୍ରେକ କରୁଛି । ନାୟକର ବ୍ୟକ୍ତିତ୍ୱ ବର୍ଣ୍ଣନ, ନାୟିକା ବର୍ଣ୍ଣନ, ପ୍ରକୃତି ବର୍ଣ୍ଣନ ଇତ୍ୟାଦି ମହାକାବ୍ୟର ଅନିବାର୍ଯ୍ୟ ବିଷୟ । ଗ୍ରନ୍ଥକାର ଗ୍ରନ୍ଥର ପ୍ରାରମ୍ଭରେ ଶିବସ୍ତୁତି, ଶକ୍ତିସ୍ତୁତି ମାଧ୍ୟମରେ ନାୟକ–ନାୟିକାଙ୍କର ବର୍ଣ୍ଣନ କରିଛନ୍ତି । ରଘୁବଂଶ ମହାକାବ୍ୟ ପରି ଗ୍ରନ୍ଥକାର ଶିବଯୋଗୀ ନିଜର ବଂଶବର୍ଣ୍ଣନ କରିଛନ୍ତି । ତୃତୀୟ ପରିଚ୍ଛେଦର ପ୍ରାରମ୍ଭରେ ପ୍ରକୃତି ବର୍ଣ୍ଣନ କରାଯାଇଛି ।

ଏହି ମହାକାବ୍ୟରେ ଅନେକ ଅଳଙ୍କାରର ପ୍ରୟୋଗ କରାଯାଇଛି ।

ଉପମା – ନାଭିସ୍ଥାନାବଲମ୍ବିନ୍ୟା ନବମୌକ୍ତିକମାଳୟା ।
ଗଙ୍ଗୟେବ କୃତାଶ୍ଳେଷମୌଳିଭାଗାବତୀର୍ଣ୍ଣୟା ।।
(ସି. ଶି., ୩/୨୨)

ମାଲୋପମା – ଅର୍ଥହୀନା ଯଥା ବାଣୀ ପତିହୀନା ଯଥା ସତୀ ।
ଶ୍ରୁତିହୀନା ଯଥା ବୁଦ୍ଧିର୍ଭାବହୀନା ତଥା କ୍ରିୟା ।।
(ସି. ଶି. ୧୬/୧୯)

ଶିବାନନ୍ଦଂ ସମାସାଦ୍ୟ କୋ ବାଦ୍ଧନ୍ୟମୁପତିଷ୍ଠତେ ।
ଗଙ୍ଗାମୃତଂ ପରିତ୍ୟଜ୍ୟ କଃ କାଂକ୍ଷେନ୍ମୃଗତୃଷ୍ଣିକାମ୍ ।।
(ସି. ଶି., ୧୩/୭)

ରୂପକ – ତ୍ରୈଲୋକ୍ୟସମ୍ପଦାଲେଖ୍ୟସମୁଲ୍ଲେଖନଭିତ୍ତୟେ
ସଚ୍ଚିଦାନନ୍ଦରୂପାୟ ଶିବାୟ ବ୍ରହ୍ମଣେ ନମ ।। (ସି. ଶି., ୧/୧)

ଜ୍ଞାନଚନ୍ଦ୍ରସମୁଦ୍ଭୂତାଂ ପରମାନନ୍ଦଚନ୍ଦ୍ରିକାମ୍ ।
ପଶ୍ୟନ୍ତି ପରମାକାଶେ ମୁକ୍ତିରାତ୍ରୌ ମହାଧିୟଃ ।।

(ସି. ଶି., ୧୯/୧୪)

ଏହିପରି ଭାବରେ ପରମ ଆଲଙ୍କାରିକ ଶିବଯୋଗୀ ଶିବାଚାର୍ଯ୍ୟ ଏହି ମହାକାବ୍ୟରେ ଯଥା ସମ୍ଭବ, ଯଥୋଚିତ ଏବଂ ଯଥାସ୍ଥାନ ଅଲଙ୍କାରର ସମାବେଶ କରିଛନ୍ତି ।

ଶ୍ରୀସିଦ୍ଧାନ୍ତଶିଖାମଣି ନାମକ ମହାକାବ୍ୟରେ ପ୍ରମୁଖ ରୂପରେ ଅନୁଷ୍ଟୁପ୍ ଛନ୍ଦର ପ୍ରୟୋଗ କରାଯାଇଛି । ମହାକାବ୍ୟର ଲକ୍ଷଣ ଅନୁସାରେ ପ୍ରତ୍ୟେକ ପରିଚ୍ଛେଦର ଶେଷ ଶ୍ଳୋକରେ ଭିନ୍ନ ଦୀର୍ଘ ଛନ୍ଦର ପ୍ରୟୋଗ କରାଯାଇଛି । ପ୍ରଥମ ପରିଚ୍ଛେଦରେ ମାଳିନୀ, ଦ୍ୱିତୀୟରେ ବଂଶସ୍ଥ, ତୃତୀୟରେ ଶାର୍ଦୂଳବିକ୍ରୀଡିତ, ଚତୁର୍ଥରେ ବସନ୍ତତିଳକା, ପଞ୍ଚମରେ ଶାର୍ଦୂଳବିକ୍ରୀଡିତ, ଷଷ୍ଠରେ ବଂଶସ୍ଥ, ସପ୍ତମରେ ବଂଶସ୍ଥ, ଅଷ୍ଟମରେ ମାଳିନୀ, ନବମ-ଦଶମ-ଏକାଦଶ-ଦ୍ୱାଦଶ-ତ୍ରୟୋଦଶ-ଚତୁର୍ଦଶ ପରିଚ୍ଛେଦରେ ବଂଶସ୍ଥ, ପଞ୍ଚଦଶରେ ଶାର୍ଦୂଳବିକ୍ରୀଡ଼ିତ, ଷୋଡ଼ଶରେ ପୁଷ୍ପିତାଗ୍ରା, ସପ୍ତଦଶରେ ଶାର୍ଦୂଳବିକ୍ରୀଡ଼ିତ, ଅଷ୍ଟାଦଶରେ ବଂଶସ୍ଥ, ଉନବିଂଶରେ ଶାର୍ଦୂଳବିକ୍ରୀଡ଼ିତ, ବିଂଶରେ ଅନୁଷ୍ଟୁପ୍ ଓ ଏକବିଂଶ ପରିଚ୍ଛେଦର ଅନ୍ତିମ ଶ୍ଳୋକରେ ଶାର୍ଦୂଳବିକ୍ରୀଡ଼ିତ ଛନ୍ଦର ପ୍ରୟୋଗ କରାଯାଇଛି ।

ଏହି ଗ୍ରନ୍ଥ ବୈଦର୍ଭୀ ଶୈଳୀରେ ରଚିତ । ପ୍ରାୟଃ ସମାସରହିତ ପଦ, କୋମଳ ବର୍ଣ୍ଣ ପ୍ରୟୋଗ ଆଦି ବୈଦର୍ଭୀ ରୀତିର ବିଶେଷତା ଅଛି । ଏହାର ଶ୍ଳୋକରେ ମୂର୍ଧନ୍ୟ ଏବଂ ବର୍ଗ୍ୟ ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣର ଅଳ୍ପ ପ୍ରୟୋଗ କରାଯାଇଛି । ତେଣୁ ଏହି ରଚନା ପ୍ରସାଦଗୁଣଯୁକ୍ତ । ଏଥିରେ ଶ୍ରୁତିକଟୁତ୍ୱ, ଦୂରାନ୍ୱୟ, କ୍ଲିଷ୍ଟତା, ସନ୍ଦେହ ଇତ୍ୟାଦି ଦୋଷ ନାହିଁ । ଗ୍ରନ୍ଥାଧ୍ୟୟନ କାଳରେ ଅଧ୍ୟେତା ମନରେ ଶାନ୍ତରସ ମିଶ୍ରିତ ଭକ୍ତିଧାରା ପ୍ରବାହିତା ହୁଏ । ଯଥାର୍ଥରେ ଏହି ଗ୍ରନ୍ଥ ବୀରଶୈବ ସିଦ୍ଧାନ୍ତ ଶିଖାମଣି ଅଟେ ।

ଶୈବଭାରତୀ ଶୋଧପ୍ରତିଷ୍ଠାନର ସଂସ୍ଥାପକ ଶ୍ରୀକାଶୀବିଶ୍ୱାରାଧ୍ୟ ଜ୍ଞାନ ସିଂହାସନାଧୀଶ୍ୱର ଶ୍ରୀ ୧୦୦୮ ଜଗଦ୍‌ଗୁରୁ ଡା. ଚନ୍ଦ୍ରଶେଖର ଶିବାଚାର୍ଯ୍ୟ ମହାସ୍ୱାମୀଙ୍କର ବୀରଶୈବ ଦର୍ଶନର ପ୍ରଚାର-ପ୍ରସାର ନିମନ୍ତେ ଦୃଢ଼ପ୍ରତିଜ୍ଞା ହେଉଛି, ଶ୍ରୀସିଦ୍ଧାନ୍ତଶିଖାମଣି ଗ୍ରନ୍ଥ ଭାରତବର୍ଷର ପ୍ରତ୍ୟେକ ପ୍ରାଦେଶିକ ଭାଷାରେ ଅନୁଦିତ ହେଉ, ଯାହା ଫଳରେ ପ୍ରତ୍ୟେକ ଶିବଯୋଗୀ, ଶିବଭକ୍ତ, ଶିବାନୁରାଗୀ ଜନ ସହଜ ଭାବରେ ଶୈବଦର୍ଶନକୁ ବୁଝିପାରିବେ, ଯାହାକି ଜ୍ଞାନର ଅଧୀଶ୍ୱର ମହାଦେବଙ୍କର ମହିମାକୁ ଆଧାର କରି ରଚିତ ହୋଇଛି । ଓଡ଼ିଆ ଭାଷାରେ ଅନୁବାଦ କରିବାର ସୁଯୋଗ ମତେ ମିଳିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି । ଏହା ଏକ ଧାର୍ମିକ କାର୍ଯ୍ୟ ସହିତ ମାତୃଭାଷାର ସେବା ମଧ୍ୟ ।

ଆମର ଦେଶର ରାଜ୍ୟ ଗଠନ ଭାଷାକୁ ଆଧାର କରି ହୋଇଥିଲା, ଯାହା ଫଳରେ ସାହିତ୍ୟ ସୁରକ୍ଷିତ ଓ ସମୃଦ୍ଧ ହୋଇପାରିଲା । କିନ୍ତୁ ପରିବର୍ତ୍ତିତ ଜୀବନଶୈଳୀ ନିଜର ପ୍ରାଦେଶିକ ଭାଷାରେ ଦକ୍ଷ ହେବା ନିମନ୍ତେ ସନ୍ତାନମାନଙ୍କୁ ସୁଯୋଗ ଦେଉନାହିଁ । ତଥାପି ଧାର୍ମିକଜନଙ୍କର ଏହି ଗ୍ରନ୍ଥ ସହାୟକ ହେବ ବୋଲି ମୋର ବିଶ୍ୱାସ ।

ଏହି ଗ୍ରନ୍ଥ ଉପରେ ଅନେକ ଶୋଧକାର୍ଯ୍ୟ ହୋଇଛି । ସମ୍ପୂର୍ଣ୍ଣାନନ୍ଦ ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ କାଶୀହିନ୍ଦୂ ବିଶ୍ୱବିଦ୍ୟାଳୟରେ ଏହା ପାଠ୍ୟପୁସ୍ତକ ଭାବରେ ଗୃହୀତ। କାଶୀ ହିନ୍ଦୂ ବିଶ୍ୱବିଦ୍ୟାଳୟର ସଂସ୍କୃତବିଭାଗର ପୂର୍ବାଚାର୍ଯ୍ୟ ଡା. ରାଧେଶ୍ୟାମ ଚତୁର୍ବେଦୀ ମହୋଦୟଙ୍କର ହିନ୍ଦୀ ଅନୁବାଦ ଭୂମିକା ଆଦି ଛାତ୍ରୋପଯୋଗୀ ଓ ସହଜବୋଧ ହୋଇଥିବାରୁ ତାହାର ଓଡ଼ିଆ ଅନୁବାଦ କରିବାକୁ ମୁଁ ଯଥାସମ୍ଭବ ଚେଷ୍ଟା କରିଛି ।

ବାରାଣସୀରେ ରହି ଉତ୍କଳ ଲିପିରେ ଟଙ୍କଣ କାର୍ଯ୍ୟ କରାଇବା ସମ୍ଭବପର ହୋଇ ନ ଥାନ୍ତା ଯଦି ମୋର ପତି ପ୍ରଫେସର ଗଙ୍ଗାଧର ପଣ୍ଡା ସେଠାରେ କାର୍ଯ୍ୟରତ ନଥାନ୍ତେ। ତାଙ୍କୁ ଉକ୍ତ କାର୍ଯ୍ୟରେ ଶ୍ରୀଜଗନ୍ନାଥସଂସ୍କୃତବିଶ୍ୱବିଦ୍ୟାଳୟର ନ୍ୟାୟବୈଶେଷିକଦର୍ଶନର ଆଚାର୍ଯ୍ୟ ଏବଂ ଅଧ୍ୟକ୍ଷ ପ୍ରଫେସର କମଳେଶମିଶ୍ର ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଟଙ୍କଣ କାର୍ଯ୍ୟକୁ ପ୍ରମାଦ ରହିତ କରି ସମୟାନୁବର୍ତ୍ତିତା ଦେଖାଇଥିବାରୁ ମୁଁ ଶ୍ରୀ କୈଳାଶଚନ୍ଦ୍ର ବରାଳଙ୍କୁ ଶୁଭ ଆଶୀର୍ବାଦ ପୂର୍ବକ ଧନ୍ୟବାଦ ଦେଉଛି । ସମସ୍ତ ପରିଶ୍ରମକୁ ମୂର୍ତ୍ତିମନ୍ତ କରି ପୁସ୍ତକ ଆକାରରେ ପ୍ରକାଶିତ କରାଇବାରେ ତତ୍ପରତା ଦେଖାଇ ସହାୟତା କରିଥିବାରୁ ଡାଃ.ଗଙ୍ଗାଧର କେନ୍ଦ୍ରମଠ ପୁସ୍ତକାଧ୍ୟକ୍ଷ୍ୟ, କାଶୀ ହିନ୍ଦୂବିଶ୍ୱବିଦ୍ୟାଳୟ, ବାରାଣସୀକୁ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ସର୍ବୋପରି କାଶୀପୁରାଧୀଶ୍ୱର ଓ ମାତା ଅନ୍ନପୂର୍ଣ୍ଣାଙ୍କର ଅପାର କରୁଣାରୁ ଏହି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିଛି । ଏଣୁ ମୁଁ ତାଙ୍କର ଶରଣାଗତା ହୋଇ ଉକ୍ତ ଅନୁବାଦ ଗ୍ରନ୍ଥଟିକୁ ତାଙ୍କ ଚରଣରେ ସମର୍ପିତ କରୁଛି ।

**ତା.୨୯.୧୧.୨୦୧୪**

ଡା. ପ୍ରମୋଦିନୀ ପଣ୍ଡା
ଏ. ନବୀନ ଆଚାର୍ଯ୍ୟ ନିବାସ
ସମ୍ପୂର୍ଣ୍ଣାନନ୍ଦସଂସ୍କୃତବିଶ୍ୱବିଦ୍ୟାଳୟ
ବାରାଣସୀ

# ବିଷୟ-ସଂକ୍ଷେପ

**ପ୍ରଥମ-ତୃତୀୟ ପରିଚ୍ଛେଦ -**

ଗ୍ରନ୍ଥର ନିର୍ବିଘ୍ନ ସମାପ୍ତି ନିମନ୍ତେ ପ୍ରଥମ ପରିଚ୍ଛେଦର ପ୍ରଥମ ବାରଟି ଶ୍ଳୋକରେ ମଙ୍ଗଳାଚରଣ କରି ତାପରେ ଶିବଯୋଗୀ ଶିବାଚାର୍ଯ୍ୟଙ୍କର ବଂଶ-ବର୍ଣ୍ଣନ କରାଯାଇଛି। ପ୍ରଥମ ଶିବଯୋଗୀଙ୍କର ପୁତ୍ର ମୁଦ୍ଦଦେବ, ତାଙ୍କର ପୁତ୍ର ସିଦ୍ଧନାଥ, ତାଙ୍କର ପୁତ୍ର ଶିବଯୋଗୀ (ଦ୍ୱିତୀୟ) । ଏମାନେ ବୀରଶୈବର ପ୍ରବର୍ତ୍ତକ ହେଲେ । ଏମାନେ ଶ୍ରୀସିଦ୍ଧାନ୍ତଶିଖାମଣିର ରଚନା କଲେ ।

ବ୍ରହ୍ମ ସଚ୍ଚିଦାନନ୍ଦରୂପ ପରିଚ୍ଛେଦାତୀତ ଏବଂ ସନାତନ ଅଟନ୍ତି । ସୃଷ୍ଟି ପୂର୍ବରୁ ଏହି ବିଶ୍ୱ ତାଙ୍କଠାରେ ଲୀନ ରହେ । ତାଙ୍କର ଶକ୍ତି ମଧ୍ୟ ତାଙ୍କଠାରେ ସମବାୟ ସମ୍ବନ୍ଧରେ ନିତ୍ୟ ବର୍ତ୍ତମାନ ରହେ । ସେହି ପରମେଶ୍ୱର ବ୍ରହ୍ମାଙ୍କର ସୃଷ୍ଟି କରି ତାଙ୍କୁ ସମସ୍ତ ବିଦ୍ୟାରେ ଅଳଂକୃତ କଲେ ଏବଂ ସୃଷ୍ଟିର ଉପାୟ ବତାଇଲେ । ଶିବ ହିଁ ସର୍ବବ୍ୟାପୀ ସର୍ବଶକ୍ତିମାନ୍ ପ୍ରମଥଗଣଙ୍କୁ ଉତ୍ପନ୍ନ କଲେ । ସେମାନଙ୍କ ମଧ୍ୟରେ ରେଣୁକ ଓ ଦାରୁକ ଏହି ଦୁଇଗଣ ଶିବଙ୍କର ଅତ୍ୟନ୍ତ ପ୍ରିୟ ଅଟନ୍ତି । ସେମାନେ ସଦାବେଳେ ଅନ୍ତଃପୁରର ଦ୍ୱାରରେ ରହି ଭଗବାନ୍ ଶିବଙ୍କର ସେବା କରନ୍ତି ।

ଥରେ ଭଗବାନ୍ ଶିବ କୈଳାସ ପର୍ବତ ଉପରେ ବିରାଜମାନ ଥିଲେ । ଭଗବତୀ ଉମା ତଥା ତାଙ୍କର ପରିବାର ସାଙ୍ଗରେ ଶୋଭାୟମାନ ଥିଲେ । ସରସ୍ୱତୀ, ବେଦ, ଅନ୍ୟ ଦିବ୍ୟ କନ୍ୟାମାନେ, ଅନ୍ୟ ସ୍ତ୍ରୀମାନେ, ବିଦ୍ୟେଶ୍ୱର, ନନ୍ଦୀ ଆଦିଗଣ, ପ୍ରମଥଗଣ ତାଙ୍କର ସେବା କରୁଥିଲେ । ସେଥି ସହିତ ବ୍ରହ୍ମା, ଇନ୍ଦ୍ର ଆଦି ଦେବଗଣ, ବଶିଷ୍ଠ ଆଦି ଋଷିଗଣ, ଦ୍ୱାଦଶ ଆଦିତ୍ୟ, ଅଷ୍ଟ ବସୁ, ଏକାଦଶ ରୁଦ୍ର, ରାକ୍ଷସ, ଦାନବ ଆଦି ତାଙ୍କର ସପର୍ଯ୍ୟାରେ ନିରତ ଥିଲେ । ଭଗବାନ୍ ଶିବ ମଧ୍ୟ କ୍ରମଶଃ ସମସ୍ତଙ୍କୁ ନିଜର କୃପାକଟାକ୍ଷରେ କୃତକୃତ୍ୟ କରୁଥିଲେ । ଏହି ସମୟରେ ଭଗବାନ୍ ଶିବ ରେଣୁକଙ୍କୁ ପ୍ରସାଦ ରୂପରେ ତାମ୍ବୁଳ ଦେବା ନିମନ୍ତେ ଡାକିଲେ । ରେଣୁକ ଶିବଙ୍କର ଆହ୍ୱାନ ଶୁଣି ଅଭିମାନରେ ଦାରୁକଙ୍କୁ ପାରି ହୋଇ ଶିବଙ୍କ ପାଖକୁ ଯିବାର ଧୃଷ୍ଟତା କଲେ । ଭଗବାନ୍ ଶିବ ଏପରି କୁତ୍ସିତ ଆଚରଣ ଦେଖି ରେଣୁକଙ୍କୁ କହିଲେ - ଆରେ ଦୁର୍ବୁଦ୍ଧି, ଶିବଭକ୍ତଙ୍କର ଉଲ୍ଲଂଘନ ପରମ ଅନର୍ଥର କାରଣ ହୋଇଥାଏ । ଏଣୁ ମନୁଷ୍ୟ ପରି ଆଚରଣ କରିଥିବାର ଅପରାଧରେ ତୁମେ ମଣିଷ ହୋଇଯାଅ । ଭୟଭୀତ ରେଣୁକ ଶିବଙ୍କୁ ତାଙ୍କୁ ମନୁଷ୍ୟ ଯୋନିରେ ଜନ୍ମ ନ ଦେବା ପାଇଁ ପ୍ରାର୍ଥନା କଲେ । ରେଣୁକଙ୍କର ପ୍ରାର୍ଥନାରେ ପ୍ରସନ୍ନ ଭଗବାନ୍ ଶିବ କହିଲେ - ଶ୍ରୀଶୈଳର

ଉତ୍ତର ଭାଗରେ ତ୍ରିଲିଙ୍ଗ ଦେଶ (ତେଲଙ୍ଗାନା) ରେ ସୋମେଶ୍ୱର ନାମରେ ମୋର ଏକ ଲିଙ୍ଗ ଅଛି । ସେଥିରୁ ତୁମ୍ଭର ପ୍ରାକଟ୍ୟ ହେବ ଏବଂ ତୁମେ ବେଦ–ବେଦାନ୍ତ ସମ୍ମତ ବୀରଶୈବ ଶାସ୍ତ୍ରର ଭୂଲୋକରେ ସ୍ଥାପନା କରିବ । ଏହା କହି ଭଗବାନ୍ ନିଜର ଅନ୍ତଃପୁରକୁ ଚାଲିଗଲେ ଏବଂ ରେଣୁକ ଏହି ଧରିତ୍ରୀରେ ଅବତାର ନେଲେ ।

**ଚତୁର୍ଥ–ପଞ୍ଚମ ପରିଚ୍ଛେଦ –**

ଯେତେବେଳେ ସୋମେଶ୍ୱର ମହାଦେବଠାରୁ ରେଣୁକଙ୍କର ପ୍ରାଦୁର୍ଭାବ ହେଲା ତେଲଙ୍ଗାନା ଦେଶର ସମସ୍ତ ପ୍ରାଣୀ ଅତ୍ୟନ୍ତ ତେଜସ୍ୱୀ ତାଙ୍କୁ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ । ତାଙ୍କର ସମସ୍ତ ଶରୀର ଭସ୍ମୋଦ୍ଧୂଳିତ ଥିଲା । ମସ୍ତକରେ ତ୍ରିପୁଣ୍ଡ୍ର ସୁଶୋଭିତ ଥିଲା । କଟିପ୍ରଦେଶରେ କନ୍ଥା, ହାତରେ ଯୋଗଦଣ୍ଡ, ଭସ୍ମପାତ୍ର ଏବଂ କମଣ୍ଡଳୁ ଧାରଣ କରିଥିଲେ । 'ଆପଣ କିଏ' – ଏପରି ଲୋକମାନେ ପଚାରିବା ପରେ ସେ କହିଲେ – 'ମୁଁ ଭଗବାନ୍ ଶିବଙ୍କର ସହଚର ରେଣୁକ ଅଟେ । କୌଣସି କାରଣରୁ ଶିବଲିଙ୍ଗରୁ ମୋର ଉତ୍ପତ୍ତି ହୋଇଛି । ଜୈନ, ବୌଦ୍ଧ, ଚାର୍ବାକ ଆଦି ନାସ୍ତିକ ଦର୍ଶନର ଖଣ୍ଡନ କରି ବୀରଶୈବସିଦ୍ଧାନ୍ତର ସ୍ଥାପନା କରିବା ହେଉଛି ମୋ ଅବତାରର ପ୍ରୟୋଜନ।' ଏହିପରି କହି ରେଣୁକାଚାର୍ଯ୍ୟ ଆକାଶମାର୍ଗରେ ମଳୟ ପର୍ବତକୁ ଆସିଗଲେ ଏବଂ ସେଠାରେ ଅଗସ୍ତ୍ୟଙ୍କ ଆଶ୍ରମକୁ ଗଲେ । ସେହି ଆଶ୍ରମ ଅତ୍ୟନ୍ତ ରମଣୀୟ ତଥା ତପସ୍ୱୀମାନଙ୍କଦ୍ୱାରା ପରିପୂର୍ଣ୍ଣ ବ୍ରହ୍ମଲୋକ ସମାନ ଥିଲା । ସେହି ଆଶ୍ରମରେ ଚନ୍ଦନବୃକ୍ଷ ମୂଳରେ ମହର୍ଷି ଅଗସ୍ତ୍ୟ ବସିଥିଲେ । ପିଙ୍ଗଜଟାଧାରୀ ତ୍ରିପୁଣ୍ଡ୍ରାଙ୍କିତ ମସ୍ତକବାଲା ଅଗସ୍ତ୍ୟଙ୍କର ଚତୁପାର୍ଶ୍ୱରେ ତପସ୍ୱୀ ଏବଂ ମୁନିମାନେ ବିରାଜମାନ କରିଥିଲେ । ରେଣୁକାଚାର୍ଯ୍ୟଙ୍କୁ ଦେଖି ମହର୍ଷି ଅଗସ୍ତ୍ୟ ଦିବ୍ୟଚକ୍ଷୁରେ ତାଙ୍କର ପରିଚୟ ଓ ପ୍ରୟୋଜନ ଜାଣିପାରିଲେ । ଲୋପାମୁଦ୍ରା ଆଣିଥିବା ଜଳ ଆଦିରେ ରେଣୁକଙ୍କର ପୂଜା କରି ଅଗସ୍ତ୍ୟ ଅପର ଆସନରେ ବସିଲେ ।

ତାହାପରେ ଅଗସ୍ତ୍ୟ ଏବଂ ରେଣୁକ ମଧ୍ୟରେ ଏହିପରି ସମ୍ବାଦ ହୋଇଥିଲା –

ରେଣୁକାଚାର୍ଯ୍ୟ କହିଲେ – ହେ ମୁନିବର ! ଆପଣ ମହାତେଜସ୍ୱୀ । ତେଣୁ ଆପଣଙ୍କର ନିତ୍ୟ ନିୟମ ଆଦିରେ ବିଘ୍ନର ତିଳେମାତ୍ର ସମ୍ଭାବନା କିପରି ହୋଇପାରିବ ? ଆପଣ ବିନ୍ଧ୍ୟାଚଳକୁ ନତମସ୍ତକ କରାଇଥିଲେ, ସମୁଦ୍ରର ଜଳପାନ କରି ତାହାକୁ କାଦୁଅ ଅବଶେଷ କରିଥିଲେ, ବାତାପି ରାକ୍ଷସକୁ ନିଜର ଜଠରାଗ୍ନିରେ ଜଳାଇଥିଲେ, ପୂର୍ବକାଳରେ ସ୍ୱାମୀ କାର୍ତ୍ତିକେୟ ଆପଣଙ୍କୁ ଶିବଧର୍ମର ଉପଦେଶ ଦେଇଥିଲେ, ତେଣୁ ଆପଣ ଶିବଭକ୍ତ ଅଟନ୍ତି ।

ଅଗସ୍ତ୍ୟ କହିଲେ – ମୁଁ ସର୍ବଦା ମୁନିଜନଙ୍କର ଆଦରର ପାତ୍ର ରହିଛି । ମୁଁ ଆପଣଙ୍କୁ ରେଣୁକ ନାମକ ଗଣେଶ୍ୱର ଭାବରେ ଜାଣିଛି । ମୋ ଉପରେ କୃପା କରିବା ନିମନ୍ତେ ଆପଣ ପୃଥ୍ୱୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି । ମୁଁ ଆପଣଙ୍କ ମୁଖରୁ ଶ୍ରୁତିସମ୍ମତ ଶୈବସିଦ୍ଧାନ୍ତ ଶୁଣିବାକୁ ଚାହୁଁଛି । ଅନେକ ଆଗମଶ୍ରବଣ କରି ମୋର ମନରେ ସଂଶୟ ଜାତ ହୋଇଛି । ତେଣୁ ହେ ଦିବ୍ୟଯୋଗୀ, ଆପଣ ମତେ ସେହି ସିଦ୍ଧାନ୍ତ ଶୁଣାଇ କୃତକୃତ୍ୟ କରନ୍ତୁ ।

ଅଗସ୍ତ୍ୟଙ୍କର ବଚନ ଶୁଣି ଆଚାର୍ଯ୍ୟ ରେଣୁକ କହିଲେ – ହେ ଅଗସ୍ତ୍ୟ, ମୁଁ ଆପଣଙ୍କୁ ଶିବଜ୍ଞାନର ଉପଦେଶ ଦେବି । ମନୀଷୀମାନଙ୍କର ଭିନ୍ନ ମତ ଅନୁସାରେ ସାଂଖ୍ୟ, ଯୋଗ, ପାଞ୍ଚରାତ୍ର, ବେଦ, ପାଶୁପତ ଆଦି ଅନେକ ସିଦ୍ଧାନ୍ତ ପ୍ରଚଳିତ ଅଛି। ଏ ସମସ୍ତ ପ୍ରାମାଣିକ ଦର୍ଶନ ଅଟେ । ଏହାର ଖଣ୍ଡନ କରିବା ଉଚିତ୍ ନୁହେଁ । ଏହା ଶୈବତନ୍ତ୍ରରେ ବର୍ଣ୍ଣିତ ସମସ୍ତ ଦର୍ଶନଠାରୁ ଶ୍ରେଷ୍ଠ । ଶୈବ, ପାଶୁପତ, ସୋମ ଓ ଲାକୁଳ ଭେଦରେ ଆଗମ ଚାରି ପ୍ରକାରର । ବାମ ଆଗମ ଶକ୍ତିପ୍ରଧାନ, ଦକ୍ଷିଣାଗମ ଭୈରବପ୍ରଧାନ, ମିଶ୍ରାଗମ ସପ୍ତମାତୃକାପରକ ଓ ସିଦ୍ଧାନ୍ତ ବେଦପ୍ରଧାନ । ଏଣୁ ଶିବୋପଦିଷ୍ଟ କାମିକାଦି ବାତୁଳାନ୍ତ ଆଗମ ଅପେକ୍ଷା ବୀରଶୈବାଗମ ଅଧିକ ପ୍ରାମାଣିକ ଅଟେ ।

ବୀରଶୈବ ଓ ବୀର ମାହେଶ୍ୱର ପଦର ଅର୍ଥନିର୍ବଚନ କରିବା ପରେ ବୀରଶୈବର ଛଅ ଭେଦ ବତାଯାଇଛି । ସେସବୁ ହେଲା – ଭକ୍ତସ୍ଥଳ, ମାହେଶ୍ୱର ସ୍ଥଳ, ପ୍ରସାଦୀସ୍ଥଳ, ପ୍ରାଣିଲିଙ୍ଗୀସ୍ଥଳ, ଶରଣସ୍ଥଳ ଓ ଐକ୍ୟସ୍ଥଳ । ଏହାପରେ ଭକ୍ତସ୍ଥଳର ଅବାନ୍ତର ପନ୍ଦର ଭେଦ ବତାଯାଇଛି । ସେମାନଙ୍କର ନାମ ହେଲା – ପିଣ୍ଡସ୍ଥଳ, ପିଣ୍ଡଜ୍ଞାନ ସ୍ଥଳ, ସଂସାରହେୟ ସ୍ଥଳ, ଗୁରୁ କାରୁଣ୍ୟ ସ୍ଥଳ, ଲିଙ୍ଗଧାରଣ ସ୍ଥଳ, ବିଭୂତି ଧାରଣ ସ୍ଥଳ, ରୁଦ୍ରାକ୍ଷଧାରଣ ସ୍ଥଳ, ପଞ୍ଚାକ୍ଷରଜପ ସ୍ଥଳ, ଭକ୍ତମାର୍ଗକ୍ରିୟା ସ୍ଥଳ, ଉଭୟ ସ୍ଥଳ, ତ୍ରିବିଧ ସମ୍ପତ୍ତି ସ୍ଥଳ, ଚତୁର୍ବିଧ ସାରାୟ ସ୍ଥଳ, ସୋପାଧିଦାନ ସ୍ଥଳ, ନିରୁପାଧିଦାନ ସ୍ଥଳ ଏବଂ ସହଜଦାନ ସ୍ଥଳ । ଶିବଭକ୍ତ ଏହି ସ୍ଥଳଗୁଡ଼ିକ ପ୍ରଯତ୍ନ ପୂର୍ବକ ଅଭ୍ୟାସ କରିବା ଉଚିତ ।

ପିଣ୍ଡ ସ୍ଥଳରେ ପିଣ୍ଡ ଅର୍ଥାତ୍ ଶରୀର, ପିଣ୍ଡଜ୍ଞାନ ସ୍ଥଳରେ ଶରୀରର ସ୍ୱରୂପ, ସଂସାର ହେୟରେ ସଂସାର ଏବଂ ସାଂସାରିକ ବସ୍ତୁଗୁଡ଼ିକ ତ୍ୟାଜ୍ୟ ହେବାର ଉପାୟ ବତା ଯାଇଛି ।

**ଷଷ୍ଠ–ସପ୍ତମ ପରିଚ୍ଛେଦ –**

ଷଷ୍ଠ ପରିଚ୍ଛେଦର ଗୁରୁକାରୁଣ୍ୟ ସ୍ଥଳରେ ଗୁରୁଙ୍କର ବୈଶିଷ୍ଟ୍ୟ ବତାଇ ଶିଷ୍ୟଙ୍କୁ ଗୁରୁ ପାର୍ଶ୍ୱକୁ ଯିବାକୁ କୁହାଯାଇଛି । ତାପରେ ଦୀକ୍ଷାର ପରିଭାଷା, ତାହାର ତିନିପ୍ରକାର,

ମାଂସପିଣ୍ଡକୁ ମନ୍ତ୍ରପିଣ୍ଡ ପରି ସୁସଂସ୍କୃତ କରିବା ବତାଯାଇଛି । ଲିଙ୍ଗଧାରଣ ସ୍ଥଳରେ ଶିଷ୍ୟର ପ୍ରାଣର ଲିଙ୍ଗ ସହିତ ସାମରସ୍ୟ, ଲିଙ୍ଗଧାରଣର ପ୍ରୟୋଜନ, ତାହାର ଧାରକ, ଅନ୍ତର୍ଲିଙ୍ଗ ଧାରଣ, ବାହ୍ୟଲିଙ୍ଗ ଧାରଣ, ଲିଙ୍ଗଧାରଣରେ ଶ୍ରୁତି ପ୍ରମାଣର ବର୍ଣ୍ଣନ କରାଯାଇଛି ।

ସପ୍ତମ ପରିଚ୍ଛେଦର ଭସ୍ମଧାରଣ ସ୍ଥଳରେ ଭସ୍ମର ବିଭୂତି ଆଦି ପାଞ୍ଚ ନାମର ଅନ୍ୱର୍ଥକତା, ତାହାର ରୂପ, ବିନିଯୋଗ, ଭସ୍ମ ନିର୍ମାଣର ନାନା ପ୍ରକ୍ରିୟା, ସ୍ନାନର ସାତପ୍ରକାର, ଭସ୍ମ ସ୍ନାନ, ତ୍ରିପୁଣ୍ଡ ଧାରଣ, ତ୍ରିପୁଣ୍ଡ୍ର ଧାରଣୀୟ ଅଙ୍ଗ ଓ ତ୍ରୀପୁଣ୍ଡ୍ରଧାରୀ ଜୀବର ବର୍ଣ୍ଣନ ଅଛି । ରୁଦ୍ରାକ୍ଷ ଧାରଣ ସ୍ଥଳରେ ରୁଦ୍ରାକ୍ଷର ଉତ୍ପତ୍ତି, ଧାରଣୀୟ ରୁଦ୍ରାକ୍ଷର ଲକ୍ଷଣ, କେଉଁ ଅଙ୍ଗରେ କେତେ ରୁଦ୍ରାକ୍ଷ ଧାରଣ କରିବା ଉଚିତ, ରୁଦ୍ରାକ୍ଷ ଧାରଣର ଫଳ ଇତ୍ୟାଦି ବର୍ଣ୍ଣନ କରାଯାଇଛି ।

**ଅଷ୍ଟମ–ଦଶମ ପରିଚ୍ଛେଦ –**

ଅଷ୍ଟମ ପରିଚ୍ଛେଦରେ ପଞ୍ଚାକ୍ଷରୀ ବିଦ୍ୟାର ବର୍ଣ୍ଣନ କରାଯାଇଛି । ଯେପରି ଶିବଙ୍କଠାରୁ ଅଧିକ ତତ୍ତ୍ୱ ନାହିଁ, ସେହିପରି ପଞ୍ଚାକ୍ଷର (ନମଃ ଶିବାୟ)ରୁ ଶ୍ରେଷ ମନ୍ତ୍ର ନାହିଁ । 'ଶିବ' ନାମକ ଦୁଇଟି ଅକ୍ଷର ପରବ୍ରହ୍ମଙ୍କର ପ୍ରକାଶକ । ଓଁକାର ସହିତ ଏହାକୁ ଷଡ଼କ୍ଷର ମଧ୍ୟ କୁହାଯାଏ । ଏହାପରେ ପଞ୍ଚାକ୍ଷର ଜପର ବିଧାନ, ଜପର ଭେଦ, ଜପଯଜ୍ଞର ମାହାତ୍ମ୍ୟ, ମାନସ ଜପର ଶ୍ରେଷ୍ଠତା, ସମନ୍ତ୍ରକ ଶିବପୂଜନର ବିଧି ଓ ତାହାର ମାହାତ୍ମ୍ୟ, ପଞ୍ଚାକ୍ଷରୀ ଜପର ଫଳ, ଜପ କରୁଥିବା ଆଚାର୍ଯ୍ୟଙ୍କର ମହିମାର ବର୍ଣ୍ଣନ କରି ପରିଚ୍ଛେଦ ସମାପ୍ତ କରାଯାଇଛି ।

ନବମ ପରିଚ୍ଛେଦର ବିଷୟ ହେଉଛି ଭକ୍ତିମାର୍ଗ–କ୍ରିୟା । ଏଥିରେ ଭକ୍ତିର ନବ ଭେଦ, ବାହ୍ୟ ଓ ଆଭ୍ୟନ୍ତର ଦୃଷ୍ଟିରେ ଭକ୍ତି ଦୁଇ ପ୍ରକାରର, ଭକ୍ତିର ଅନେକ ଜନ୍ମ ଲଭ୍ୟତ୍ୱ, ମନୋ–ବାକ୍–କାୟ ଭେଦରେ ଭକ୍ତି ପୁନଃ ତିନି ପ୍ରକାରର, ତପ, କର୍ମ, ଜପ, ଧ୍ୟାନ ଓ ଜ୍ଞାନ ଭେଦରେ ପାଞ୍ଚ ପ୍ରକାରର ଶିବଯଜ୍ଞ, ବୀରଶୈବ ମାର୍ଗରେ ଦୀକ୍ଷିତ ଭକ୍ତ ନିମନ୍ତେ ନିୟମ, ଲିଙ୍ଗୀ ଓ ଅଲିଙ୍ଗୀର ଭେଦ ଏବଂ କର୍ତ୍ତବ୍ୟ, ଉଭୟରେ ଅନ୍ନ–ଜଳ–ଦାନର ଶ୍ରେଷ୍ଠତା ବର୍ଣ୍ଣନ କରାଯାଇଛି । ଏହାପରେ ଉଭୟସ୍ଥଳରେ ଶିବ ଓ ଗୁରୁ ମଧ୍ୟରେ ଅଭେଦର ଚର୍ଚ୍ଚା କରାଯାଇଛି । ଏହାପରେ ଉଲ୍ଲିଖିତ ତ୍ରିବିଧସମ୍ପତ୍ତି ସ୍ଥଳରେ ଗୁରୁ, ଲିଙ୍ଗ ଓ ଜଙ୍ଗମ ଶିବଯୋଗୀର ବିବିଧ ଆୟାମ ଦୃଷ୍ଟିରୁ ବର୍ଣ୍ଣନ ପ୍ରସ୍ତୁତ ହୋଇଛି । ଚତୁର୍ବିଧସରାୟ ସ୍ଥଳରେ ଶିବଙ୍କର ଚରଣାମୃତ, ତାଙ୍କୁ ଅର୍ପିତ ବେଲପତ୍ର, ମାଳା, ଅନ୍ନ ଗ୍ରହଣର ଫଳ କୁହାଯାଇଛି । ଅନ୍ତରେ ସୋପାଧି, ନିରୁପାଧି ଏବଂ ସହଜ ସଂଜ୍ଞକ ତିନି ପ୍ରକାରର ଦାନର ମହିମା ବତାଯାଇଛି ।

ଦଶମ ପରିଚ୍ଛେଦର ବିଷୟ ମାହେଶ୍ୱର ସ୍ଥଳ ଅଟେ । ଏଥିରେ ମାହେଶ୍ୱରର ପ୍ରଶଂସା, ଲିଙ୍ଗନିଷ୍ଠା, ପୂର୍ବାଶ୍ରୟ ନିରାସ, ଅଦ୍ୱୈତ ନିରାକରଣ, ଆହ୍ୱାନ ବର୍ଜନ, ଅଷ୍ଟମୂର୍ତ୍ତି ନିରାକରଣ, ସର୍ବଗତତ୍ତ୍ୱର ଖଣ୍ଡନ, ଶିବ ଏବଂ ଭକ୍ତ ଉଭୟଙ୍କର ଶିବତା – ଏହିପରି ନଅ ଭେଦର ଚର୍ଚ୍ଚା ଅଛି । ଯିଏ ମହେଶ୍ୱରଙ୍କୁ ସର୍ବଶ୍ରେଷ୍ଠ ମାନେ ସେ ମାହେଶ୍ୱର ଅଟେ । ସେ ପରସ୍ତ୍ରୀ, ପରଦ୍ରବ୍ୟ, ପରାଙ୍ମୁଖ ଶିବଙ୍କ ନିମନ୍ତେ ପ୍ରାଣତ୍ୟାଗ ଇତ୍ୟାଦି କରିବାବାଲା ଅଟେ । ଏହି ମାହେଶ୍ୱରଦ୍ୱାରା ବିଧୀୟମାନ ଲିଙ୍ଗନିଷ୍ଠାର ସ୍ୱରୂପ ହେଉଛି ଯେ ଭକ୍ତ ଉକ୍ତ ମାହେଶ୍ୱର ଲିଙ୍ଗକୁ ହିଁ ସବୁକିଛି ଭାବେ । ପ୍ରାଣ ସଙ୍କଟରେ ହେଲେ ମଧ୍ୟ ସେ ଲିଙ୍ଗପୂଜାର ମହାବ୍ରତକୁ ଛାଡ଼େ ନାହିଁ । ତାକୁ ବେଦୋକ୍ତ ଅଗ୍ନିହୋତ୍ର ଆଦି କର୍ମ କରିବାକୁ ପଡ଼େ ନାହିଁ । ସେ ପୂର୍ବ ସ୍ୱୀକୃତ ଧର୍ମର ତ୍ୟାଗ କରିଦିଏ । 'ସର୍ବଂ ଖଲ୍ୱିଦଂ ବ୍ରହ୍ମ'ର ଧାରଣାକୁ ପରିତ୍ୟାଗ କରିଥିବା ସେ ଲିଙ୍ଗକୁ ପୂଜ୍ୟ ଓ ନିଜକୁ ପୂଜକ ଭାବି ଦ୍ୱୈତଭାବରେ ରହେ । ସେ ଶିବଙ୍କର ଆହ୍ୱାନ କରିବା ଉଚିତ୍ ନୁହେଁ କାରଣ ଲିଙ୍ଗ ରୂପରେ ଶିବ ସର୍ବଦା ତାଙ୍କ ସହିତ ଅଛନ୍ତି । ପୃଥିବୀ ଆଦି ଆଠ ତତ୍ତ୍ୱ ଶିବଠାରୁ ଭିନ୍ନ ଅଟନ୍ତି । ଏଥିପାଇଁ ଶିବ ସର୍ବଗତ ହେଲେ ମଧ୍ୟ ଲିଙ୍ଗରେ ବିଶେଷ ଭାବରେ ଅଧିଷ୍ଠିତ ରୁହନ୍ତି । ଭିନ୍ନ ରୂପରେ ତାଙ୍କର ପୂଜା କରୁଥିଲେ ମଧ୍ୟ ପୂଜକ ଶିବଙ୍କୁ ସର୍ବବ୍ୟାପୀ ଭାବିବା ଉଚିତ୍ । ଏପରି ହେଲେ ମଧ୍ୟ ଶିବ ଭଗବାନ୍ ଭକ୍ତଙ୍କ ହୃଦୟରେ ବିଶେଷ ଭାବରେ ସ୍ଥିତ ହୋଇ ପ୍ରତିଭାତ ହୁଅନ୍ତି ।

**ଏକାଦଶ–ତ୍ରୟୋଦଶ ପରିଚ୍ଛେଦ –**

ଏକାଦଶ ପରିଚ୍ଛେଦରେ ମୁଖ୍ୟ ପ୍ରସାଦୀ ସ୍ଥଳ ଅଟେ । ଏହାପରେ ଗୁରୁମାହାତ୍ମ୍ୟ, ଲିଙ୍ଗପ୍ରଶଂସା, ଜଙ୍ଗମଗୌରବ, ଭକ୍ତମାହାତ୍ମ୍ୟ, ଶରଣକୀର୍ତ୍ତନ ଏବଂ ଶିବପ୍ରସାଦମାହାତ୍ମ୍ୟ – ଏହିପରି ପ୍ରସାଦୀସ୍ଥଳକୁ ମିଶାଇ ସାତସ୍ଥଳ (ଉପ ପରିଚ୍ଛେଦ)ର ବର୍ଣ୍ଣନା କରାଯାଇଛି । ପ୍ରସାଦୀସ୍ଥଳରେ ମନର ନିର୍ମଳତା, ନିର୍ମଳତା ପ୍ରାପ୍ତିର ଉପାୟ, ନିର୍ମଳତାରୁ ଲାଭର ଚର୍ଚ୍ଚା କରାଯାଇଛି । ଗୁରୁମାହାତ୍ମ୍ୟରେ ଗୁରୁ ଓ ଶିବ ଅଭେଦ ଏବଂ ଏପରି ଭାବ ହେଲେ ଲାଭର ବର୍ଣ୍ଣନ ଅଛି । ତୃତୀୟ ସ୍ଥଳରେ ଲିଙ୍ଗର ସ୍ୱରୂପ, ବ୍ରହ୍ମ ହିଁ ଲିଙ୍ଗ ଅଟେ, ପରମାଶକ୍ତି ଏହାର ପୀଠ ଅଟେ, ଉଭୟଙ୍କର ସମାଯୋଗ ବିଶ୍ୱଲିଙ୍ଗ ଅଟେ । ଏହାର ଉପାସନାରେ ପରମ ଐଶ୍ୱର୍ଯ୍ୟ ମିଳେ । ଶିବଯୋଗୀମାନେ ଜଙ୍ଗମଲିଙ୍ଗ ଅଟନ୍ତି । କାମାଦି ଦୋଷ ରହିତ ଶିବଜ୍ଞାନୀ ଶିବଚିନ୍ତନପରାୟଣ ହିଁ ବାସ୍ତବିକ ଜଙ୍ଗମଲିଙ୍ଗ ଅଟେ । ଭକ୍ତମାହାତ୍ମ୍ୟ ପରିଚ୍ଛେଦରେ ଭକ୍ତର ଲକ୍ଷଣ, ଶିବ ଏବଂ ଭକ୍ତର ଅଭେଦ ଓ ବୈଶିଷ୍ଟ୍ୟ କୁହାଯାଇଛି । ଶରଣସ୍ଥଳରେ ଶରଣର ମହିମା, ଶରଣାର୍ଥିର ସ୍ୱରୂପ, ଶିବପ୍ରପତ୍ତିର ମହତ୍ତ୍ୱ ବର୍ଣ୍ଣିତ ହୋଇଛି । ପ୍ରସାଦମହତ୍ତ୍ୱ ସ୍ଥଳରେ ଶିବ–ପ୍ରସାଦର ସ୍ୱରୂପ, ତା'ର ମହିମା କହି ପରିଚ୍ଛେଦର ଉପସଂହାର କରାଯାଇଛି ।

ଦ୍ୱାଦଶ ପରିଚ୍ଛେଦ ପ୍ରାଣଲିଙ୍ଗୀସ୍ଥଳ ନାମରେ ଉଦ୍ଧୃତ ଅଟେ । ଏଥିରେ ପାଞ୍ଚଟି ଅବାନ୍ତର ସ୍ଥଳ ରହିଛି – ପ୍ରାଣଲିଙ୍ଗ, ପ୍ରାଣଲିଙ୍ଗାର୍ଚ୍ଚନ, ଶିବଯୋଗସମାଧି, ଲିଙ୍ଗନିଜସ୍ଥଳ ତଥା ଅଙ୍ଗଲିଙ୍ଗିସ୍ଥଳ । ପ୍ରାଣ ଓ ଅପାନର ସମାଘାତରେ କନ୍ଦ ମଧ୍ୟରେ ଉଠିଥିବା ଜ୍ୟୋତିକୁ ପ୍ରାଣଲିଙ୍ଗ କୁହାଯାଏ । ଯାହା ବାହ୍ୟଲିଙ୍ଗକୁ ଛାଡ଼ି ଚିତ୍‌ଲିଙ୍ଗର ପରାମର୍ଶ କରିଥାଏ, ସେ ପ୍ରାଣଲିଙ୍ଗୀ କୁହାଯାଏ । ଏପରି ପ୍ରାଣଲିଙ୍ଗର ହୃଦୟକମଳରେ ଅର୍ଚ୍ଚନା ପ୍ରାଣଲିଙ୍ଗାର୍ଚ୍ଚନ ଅଟେ । ଏଥି ନିମନ୍ତେ କ୍ଷମା, ବିବେକ, ସତ୍ୟ ଆଦି ଗୁଣଗୁଡ଼ିକର ଉପଚାର ଭାବରେ ପ୍ରୟୋଗ ହୋଇଥାଏ । ଶିବଯୋଗସମାଧି ସ୍ଥଳରେ ସମାଧିସ୍ଥର ଲକ୍ଷଣ, ବହିର୍ବାସନାର ଅପସାରଣର ଉପାୟ ବର୍ଣ୍ଣନ କରାଯାଇଛି । ଲିଙ୍ଗ ନିଜ ସ୍ଥଳରେ ଲିଙ୍ଗ ସ୍ୱରୂପର ଚର୍ଚ୍ଚା, ଲିଙ୍ଗର ମହତ୍ତ୍ୱ ତଥା ନିଜର ସେହି ରୂପରେ ଧ୍ୟାନ କରିବାର କଥା କୁହାଯାଇଛି । ଅଙ୍ଗଲିଙ୍ଗୀସ୍ଥଳରେ କୁହାଯାଇଛି ଯେ ଜ୍ଞାନରୂପୀ ଅଙ୍ଗ ଓ ଜ୍ଞେୟରୂପୀ ଲିଙ୍ଗ ଏ ଦୁଇଟି ଯାହା ପାଖରେ ଅଛି, ସେ ଅଙ୍ଗଲିଙ୍ଗୀ କୁହାଯାଏ । ଯିଏ ଏ ଦୁଇଟିରୁ ଶୂନ୍ୟ ଅଟେ, ତାହାର ମୁକ୍ତି ହୁଏ ନାହିଁ ।

ତ୍ରୟୋଦଶ ପରିଚ୍ଛେଦରେ ଶରଣସ୍ଥଳ, ତାମସ ନିରସନ ସ୍ଥଳ, ନିର୍ଦ୍ଦେଶ ସ୍ଥଳ ଏବଂ ଶୀଳ ସମ୍ପାଦନ ସ୍ଥଳ ବିଷୟରେ କୁହାଯାଇଛି । ପତିବ୍ରତା ସ୍ତ୍ରୀ ପରି ଯିଏ ଶିବଙ୍କ ପ୍ରତି ଆକୃଷ୍ଟ ହୁଏ, ତାହାକୁ ଶରଣସ୍ଥଳବାନ୍ କୁହାଯାଏ । ଗୁରୁ ଦ୍ୱାରା ଏହି ଭକ୍ତ ମଧ୍ୟରେ ଥିବା ସମସ୍ତ ତମୋଭାବ ଯେତେବେଳେ ନିରସ୍ତ କରି ଦିଆଯାଏ, ସେତେବେଳେ ସେ ତାମସନିରାସକ କୁହାଯାଏ । ଯାହାର ଜ୍ଞାନ ତମୋମିଶ୍ରିତ ଅଟେ, ତାକୁ ମୁକ୍ତି ମିଳେ ନାହିଁ । ତେଣୁ ଯିଏ ଶମ-ଦମ ଆଦିରୁ ମୁକ୍ତ ଅଟେ, ସେ ସାତ୍ତ୍ୱିକ ମହାଯୋଗୀ କୁହାଯାଏ । ଏହିପରି ଶିବମୟ ପ୍ରପଞ୍ଚରେ ସର୍ବତ୍ର ଦ୍ୱେଷ ଭାବନା ରଖୁଥିବା ବ୍ୟକ୍ତି ରାଜସ ଏବଂ ସର୍ବତ୍ର ଅସତ୍ୟ ଭାବନା ରଖୁଥିବା ବ୍ୟକ୍ତି ତାମସ ଶିବଯୋଗୀ ଅଟେ । ଏଥିମଧ୍ୟରୁ ପ୍ରଥମକୋଟିର ଯୋଗୀ ସର୍ବୋତ୍ତମ ଅଟେ । ଏପରି ବ୍ୟକ୍ତି ଯେଉଁ ଜ୍ଞାନ ବତାଏ, ତାହା ନିର୍ଦ୍ଦେଶ କୁହାଯାଏ । ଏପରି ନିର୍ଦ୍ଦେଶ ଦେଉଥିବା ହିଁ ବାସ୍ତବିକ ଗୁରୁ ଅଟେ । ସେ ଶିବତ୍ୱ ଲାଭ କରିବାରେ ସମର୍ଥ । ଶିବତତ୍ତ୍ୱର ଜିଜ୍ଞାସା ତାହା ପ୍ରତି ସ୍ଥିର ଭାବନା ଶୀଳ ନାମରେ ଅଭିହିତ ହୁଏ । ଏହିପରି ଶିବୈକ୍ୟଜ୍ଞାନ, ଶିବଧ୍ୟାନ, ଶିବପ୍ରାପ୍ତି ନିମନ୍ତେ ଉତ୍କଣ୍ଠାଶୀଳ କୁହାଯାଇଛି । ଏହିପରି ଭକ୍ତ ହିଁ ଶିବଲିଙ୍ଗୈକ୍ୟବାନ୍ (ଅଟେ) କୁହାଯାଏ ।

**ଚତୁର୍ଦ୍ଦଶ–ଷୋଡ଼ଶ ପରିଚ୍ଛେଦ –**

ଚତୁର୍ଦ୍ଦଶ ପରିଚ୍ଛେଦରେ ଐକ୍ୟ, ଆଚାର ସମ୍ପତ୍ତି ଆଦି ଚାରିଟି ସ୍ଥଳ ଅଛି । ଶରଣବାନ୍ ଭକ୍ତ ପ୍ରାଣ ଆଦି ଲିଙ୍ଗଯୋଗରେ ଅତିଶୟ ସୁଖ କୁ ପ୍ରାପ୍ତ କରି ଶିବଙ୍କ ସହିତ

ଐକ୍ୟବାଲା ହୋଇଯାଏ । ବିଷୟାନନ୍ଦ–ପରାଙ୍ମୁଖ ସେ ଶିବାନନ୍ଦର ସାଗରରେ ନିମଜ୍ଜନ କରେ । ତାକୁ ସଂସାରର ପ୍ରତୀତି ହୁଏ ନାହିଁ, କାରଣ ଭେଦରୂପୀ ଗର୍ଭରେ ଶୋଇଥିବା ସଂସାରରୂପୀ ସର୍ପ ନିମନ୍ତେ ଶିବୈକ୍ୟ ଭାବନା ବାଧକ ଔଷଧି ଅଟେ । ଯିଏ ଶିବୈକ୍ୟ ଭାବକୁ ପ୍ରାପ୍ତ ହୁଏ, ତାକୁ କର୍ମଫଳ ଭୋଗ କରିବାକୁ ପଡ଼େ ନାହିଁ । ଏହି ଦଶାରେ ବ୍ରାହ୍ମଣଚଣ୍ଡାଳ, ପାପୀ–ପୁଣ୍ୟାତ୍ମା ଏକାପରି ହୋଇଥାନ୍ତି । ତାଙ୍କର କର୍ମବୀଜ ଶିବଜ୍ଞାନାଗ୍ନିରେ ଦଗ୍ଧ ହୋଇଯାଏ । ତାଙ୍କର ଗମନ ଆଦି ସମସ୍ତ କର୍ମ ଶିବାରାଧନ ହୋଇଯାଏ । ସେ ଏହି ବିଶ୍ୱକୁ ଶିବମୟ ଦେଖନ୍ତି । ବିଶ୍ୱ ଓ ଶିବ ମଧ୍ୟରେ ତାକୁ ଆଧାର–ଆଧେୟ ଭାବ ପ୍ରତୀତି ହୁଏ । ଶିବରେ ଲୀନ ତା'ର ନିରାକୁଳ ହୃଦୟ ଯେତେବେଳେ ବୃତ୍ତିଶୂନ୍ୟ ହୋଇଯାଏ, ସେତେବେଳେ ସେ ମୁକ୍ତ ହୋଇଯାଏ । ଗୁରୁ, ଶିବ ଏବଂ ଶିଷ୍ୟଙ୍କର ଏକ ରୂପରେ ସ୍ମରଣ ସହଭୋଜନ କୁହାଯାଏ । ଯିଏ ଏପରି ଭାବେ ନାହିଁ ସେ ବିଶ୍ୱଭୋଜକ ନୁହେଁ । ଯେତେବେଳେ ସେ ପରାହନ୍ତା ରୂପକ ପାବକରେ ଇଦନ୍ତାର ହୋମ କରିଦିଏ, ତାକୁ ବିଶ୍ୱହୋମୀ କୁହାଯାଏ । ସମସ୍ତ ବିଶ୍ୱକୁ 'ଅହଂ' ରୂପରେ ଦେଖିବାକୁ ପୂର୍ଣ୍ଣାହନ୍ତା କୁହାଯାଏ ।

**ପଞ୍ଚଦଶ ପରିଚ୍ଛେଦ –**

ପଞ୍ଚଦଶ ପରିଚ୍ଛେଦରେ ଦୀକ୍ଷାଗୁରୁ, ଶିକ୍ଷାଗୁରୁ ଆଦି ନବ ସ୍ଥଳର ବର୍ଣ୍ଣନ ଅଛି । ଯାହା ଶିବଜ୍ଞାନ ଦିଏ ଏବଂ ତ୍ରିବିଧ ମଳର କ୍ଷୟ କରେ, ତାହାକୁ ଦୀକ୍ଷା କହନ୍ତି । ସେହି ବିଷୟର ଗୁରୁ ଦୀକ୍ଷାଗୁରୁ ଅଟନ୍ତି । 'ଗୁ' ଅର୍ଥାତ୍ ଗୁଣାତୀତ 'ରୁ' ଅର୍ଥାତ୍ ରୂପାତୀତ । ଯିଏ ଏହାର ଜ୍ଞାନ କରାନ୍ତି ସେ ଗୁରୁ ଅଟନ୍ତି । ଯିଏ ଶାସ୍ତ୍ରର ଅର୍ଥକୁ ବୁଝିକରି ସଂଗ୍ରହ କରନ୍ତି, ସ୍ୱୟଂ ଆଚରଣ କରନ୍ତି, ଅନ୍ୟକୁ ସେହି ଦିଗରେ ପ୍ରେରିତ କରନ୍ତି, ସେ ଆଚାର୍ଯ୍ୟ କୁହାଯାଆନ୍ତି । ଯିଏ ସମସ୍ତ ବସ୍ତୁରେ ଅଖଣ୍ଡ ଚୈତନ୍ୟର ଅଭିବ୍ୟକ୍ତି କରନ୍ତି, ସେହି ଗୁରୁ ବିଶ୍ୱଭାସକ ଅଟନ୍ତି । ଯିଏ ଦୀକ୍ଷାଗୁରୁ, ସେ ଶିଷ୍ୟର ବୋଧକ ହେବା ହେତୁ ଶିକ୍ଷାଗୁରୁ ମଧ୍ୟ । ଏହିପରି ଜ୍ଞାନଦୀପିକାରେ ଶିଷ୍ୟର ହୃଦୟକୁ ପ୍ରକାଶିତ କରିବାବାଲା ଗୁରୁ ଦୁର୍ଲଭ ଅଟେ । ଯେଉଁ ବ୍ୟକ୍ତି ଶିବରୂପାନୁସନ୍ଧାୟୀ ଜ୍ଞାନକୁ ଦିଅନ୍ତି, ସେ ଜ୍ଞାନଗୁରୁ ନାମରେ ପରିଚିତ ହୁଅନ୍ତି । ସୂର୍ଯ୍ୟ କେବଳ ବାହ୍ୟ ଅନ୍ଧକାର ଦୂର କରେ, କିନ୍ତୁ ଜ୍ଞାନଗୁରୁ ବାହ୍ୟ ଓ ଆଭ୍ୟନ୍ତର ଉଭୟ ଅନ୍ଧକାରର ନାଶକ ଅଟେ । ଜ୍ଞାନଗୁରୁଙ୍କର ବିଶେଷ ଜ୍ଞାନଦ୍ୱାରା ସମସ୍ତ କ୍ରିୟା ଯେଉଁଥିରେ ଲୀନ ହୋଇଯାଏ, ତାକୁ କ୍ରିୟାଲିଙ୍ଗ କୁହନ୍ତି । ଯୋଗୀଜନ ସମସ୍ତ କ୍ରିୟାକୁ ତ୍ୟାଗ କରି କେବଳ ଲିଙ୍ଗ ପୂଜାରେ ତତ୍ପର ରହନ୍ତି । ତେଣୁ କ୍ରିୟାଲିଙ୍ଗର ବିଶେଷ ମହତ୍ତ୍ୱ ଅଛି । ଏହିପରି କରୁ କରୁ ଦିନେ ଏପରି ସ୍ଥିତି ଆସେ ଯେ କ୍ରିୟା ଓ ଭାବ ଉଭୟ ଲିଙ୍ଗରେ

ଲୀନ ହୋଇଯାଆନ୍ତି । ଏହାକୁ ଭାବଲିଙ୍ଗ କୁହାଯାଏ । ଏହି ଅବସ୍ଥାରେ ପରମେଶ୍ୱର ଭକ୍ତର ଭାବମାତ୍ରରେ ପ୍ରସନ୍ନ ହୋଇଯାଆନ୍ତି । ଏହିପରି ଆନ୍ତର ଭାବପୂଜା ସର୍ବୋତ୍କୃଷ୍ଟ ଅଟେ । ତାହାକୁ ଜ୍ଞାନଜୀବ ହିଁ କରିଥା'ନ୍ତି । ଏଠାରେ ବ୍ରହ୍ମା, ବିଷ୍ଣୁ, ରୁଦ୍ର ଆଦି ଭେଦ ସମାପ୍ତ ହୋଇଯାଏ । ପରବୋଧ ହିଁ ଜ୍ଞାନର ବିଷୟ ହୋଇଥାଏ । ଏପରି ବୋଧସମ୍ପନ୍ନ ବ୍ୟକ୍ତିକୁ ଜ୍ଞାନଲିଙ୍ଗୀ ଓ ବୋଧକୁ ଜ୍ଞାନଲିଙ୍ଗ କୁହନ୍ତି ।

ଭାବଲିଙ୍ଗର ଜ୍ଞାପକ ଜ୍ଞାନ ଯେଉଁ ଜ୍ଞାନରେ ଲୀନ ହୋଇଯାଏ, ସେହି ଜ୍ଞାନବାଲା ବ୍ୟକ୍ତି 'ସ୍ୱୟଂ' କୁହାଯାଏ । ସେ ସଂସାରରେ ରହିଲେ ମଧ୍ୟ ପରାନନ୍ଦରେ ଲୀନ ରହେ । ଶିବଙ୍କର ଧ୍ୟାନ, ଶିବଙ୍କର ଜ୍ଞାନ, ଭିକ୍ଷା ଏବଂ ଏକାନ୍ତବାସ ତାହାର କର୍ମ ହୋଇଥାଏ । ଏହିପରି ସ୍ୱୟଂ ଜ୍ଞାନଯୁକ୍ତ ସାଧକ ଯେତେବେଳେ କାମ, କ୍ରୋଧ ଆଦିରୁ ରହିତ ସର୍ବତ୍ର ସମବୁଦ୍ଧିବାଲା ହୋଇ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ'ର ଭାବନା କରେ, ତାହାକୁ 'ଚର' କୁହାଯାଏ। ସେ ସ୍ୱୟଂମାତ୍ର ହୋଇ ସର୍ବତ୍ର ସ୍ୱୟଂକୁ ଦେଖେ, ତାର ଏହି ବୋଧକୁ ପରବୋଧ କୁହାଯାଏ । ସେ ବର୍ଣ୍ଣ, ଆଶ୍ରମ, ଧର୍ମ ଆଦିରୁ ପର (ଉର୍ଦ୍ଧ୍ୱ) ହୋଇ ନିଜକୁ ସର୍ବୋତ୍କୃଷ୍ଟ ଭାବେ । ଏହିପରି ଶିବଯୋଗୀ ନିଜର ଦର୍ଶନ, ସ୍ପର୍ଶନରେ ଅଜ୍ଞାନୀକୁ ମଧ୍ୟ ମୁକ୍ତ କରିଥାଏ । ସେ ନିରଞ୍ଜନ ଓ ଜୀବନ୍ମୁକ୍ତ ହୋଇ ମଧ୍ୟ ସାମାନ୍ୟ ଜନ ପରି ବ୍ୟବହାର କରିଥାଏ ।

**ଷୋଡ଼ଶ ପରିଚ୍ଛେଦ –**

ଷୋଡ଼ଶ ପରିଚ୍ଛେଦ ମାହେଶ୍ୱରର ବର୍ଣ୍ଣନରେ ଅଳଂକୃତ ହୋଇଛି । ଏଥିରେ ନଅଟି ଖଣ୍ଡ ଅଛି । ସେଗୁଡ଼ିକ ହେଲେ – କ୍ରିୟାଗମ, ଭାବାଗମ, ଜ୍ଞାନାଗମ, ସକାୟ, ଅକାୟ, ପରକାୟ, ଧର୍ମାଚାର, ଭାବାଚାର ଓ ଜ୍ଞାନାଚାର। କ୍ରିୟାଗମ ସ୍ଥଳରେ ଶିବପୂଜାର ଚର୍ଚ୍ଚା ଅଛି । ଯେପରି ବିନା ଅରଣି ମନ୍ଥନରେ ଅଗ୍ନି ପ୍ରକଟ ହୁଏ ନାହିଁ, ସେହିପରି ବିନା ପୂଜାରେ ଶିବଙ୍କର ସାକ୍ଷାତ୍କାର ହୁଏ ନାହିଁ । ତେଣୁ ଗୁରୁଙ୍କର ଆଦେଶ ନେଇ ପରମେଶ୍ୱରଙ୍କର ପୂଜା କରିବା ଉଚିତ୍ । ତାଙ୍କର ପୂଜାରେ ସମସ୍ତ ଦେବ ପୂଜିତ ହୋଇଥା'ନ୍ତି । ଜ୍ଞାନ ଏବଂ କ୍ରିୟା ଦୁଇଟି ପକ୍ଷ ପରି । ଗୋଟିଏ ନ ଥିଲେ ଜୀବରୂପୀ ପକ୍ଷୀ ମୋକ୍ଷାକାଶରେ ବିଚରଣ କରିପାରେ ନାହିଁ । ଏପରି ଅଭ୍ୟାସ କରୁ କରୁ ଭାବଶୁଦ୍ଧି ହୋଇଯାଏ । ଏପରି ସ୍ଥିତିରେ ସର୍ବତ୍ର ପୂର୍ଣ୍ଣ ମାହେଶ୍ୱରଙ୍କର ଭାବନା ହୁଏ। ଭାବ ହିଁ ସେହି ଚକ୍ଷୁ ଯେଉଁଥିରେ ଶିବଙ୍କୁ ଦେଖାଯାଏ । ଏପରି ଭକ୍ତ ପରମଜ୍ଞାନୀ ଅଟେ। ଜ୍ଞାନରହିତ କର୍ମ ବନ୍ଧନର କାରଣ ଅଟେ । ଜ୍ଞାନ ହିଁ ମୁକ୍ତି ଦିଏ । ତାହା ଶାସ୍ତ୍ରର ଅଭ୍ୟାସ, ଗୁରୁଙ୍କର ଉପଦେଶ, ସତ୍‌ସଙ୍ଗ ଆଦିରୁ ପ୍ରାପ୍ତ ହୋଇଥାଏ । ଦେହ ତଥା କର୍ମର ଅଭିମାନରୁ ରହିତ

ଯୋଗୀର ଶରୀର ଆତ୍ମସଦୃଶ ହୋଇଥାଏ । ତାହାଦ୍ୱାରା ଏହିଲୋକ ସକାୟ କୁହାଯାଏ । କାରଣ ବିନା ଶରୀରରେ ଯୋଗୀ ସଂସାରୀ ଜନକୁ ସନ୍ମାର୍ଗରେ ପାରିବନି । ମୂର୍ତ୍ତି ମାଧ୍ୟମରେ ଦେବତାଙ୍କ ପୂଜା ପରି ଦେହ ମାଧ୍ୟମରେ ଯୋଗୀ ସଂସାରରେ ପୂଜ୍ୟ ହୋଇଥାଏ । ତପସ୍ୟା ଆଦି ସମସ୍ତ କର୍ମ ଯୋଗୀ ଶରୀର ମାଧ୍ୟମରେ କରିଥାଏ । ତେଣୁ ସେ ଶରୀର ତ୍ୟାଗ କରିବା ଉଚିତ୍ ନୁହେଁ । ସଶରୀର ହେଲେ ମଧ୍ୟ ସେ ଶରୀର ଆଦି ପ୍ରତି ଭେଦବୁଦ୍ଧି ଓ ମମତ୍ୱାଭିମାନରୁ ରହିତ ହେବା ହେତୁ ଅକାୟ କୁହାଯାଏ । ସେ ନିଜକୁ ମନୁଷ୍ୟ - ଦେବତା ଆଦି ନୁହଁ, ଶିବ ହିଁ ଭାବିଥାଏ । ଯେହେତୁ ପ୍ରକୃତି ଏହାର ବଶରେ ରହେ, ମାୟା ଏହାକୁ ସ୍ପର୍ଶ କରିପାରେ ନାହିଁ, ତେଣୁ ସେ ସଚ୍ଚିଦାନନ୍ଦସ୍ୱରୂପ ପରକାୟ ଅଟେ । ପରାହନ୍ତା ଅଥବା ପୂର୍ଣ୍ଣାହନ୍ତାକୁ ପ୍ରାପ୍ତ ସେହି ଯୋଗୀ ଅଖିଳ ବିଶ୍ୱକୁ ସ୍ୱାତ୍ମରୂପ ଅଥବା ଶିବରୂପରେ ଦେଖିଥାଏ । ଫଳତଃ ସେ ନିରବଚ୍ଛିନ୍ନ ହୋଇଥାଏ । ସେହି ପରକାୟ ଯୋଗୀର ଆଚରଣ ଧର୍ମାଚାର କୁହାଯାଏ । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଦୟା, କ୍ଷମା, ଦାନ, ପୂଜା, ଜପ ଓ ଧ୍ୟାନ ଧର୍ମ ଅଟନ୍ତି । ଏଗୁଡ଼ିକର ଅନୁସରଣ କରିବାବାଲା ଅହଂକାର-ମମକାର ରହିତ ହୋଇଥାଏ । ଏହିପରି ହୋଇ ମଧ୍ୟ ଯୋଗୀ ଧର୍ମାଚରଣର ତ୍ୟାଗ କରେ ନାହିଁ । ସେହି ଧର୍ମାଚାରସମ୍ପନ୍ନ ଶିବଯୋଗୀର ଭାବ ହିଁ ସାମାନ୍ୟ ଜନଙ୍କର ଭାବାଚାର ହୋଇଥାଏ । ଭାବରୁ ମନଃଶୁଦ୍ଧି ହୁଏ ଓ ଭାବଶୁଦ୍ଧି କର୍ମରୁ ହୁଏ । ତେଣୁ ଯୋଗୀ ଭାବର ତ୍ୟାଗ କରିବା ଉଚିତ୍ ନୁହେଁ । ଶିବଭାବନାଦ୍ୱାରା ସମସ୍ତ କାର୍ଯ୍ୟକୁ କରୁଥିବା ମହାଯୋଗୀ ଗୁଣ-ଦୋଷରେ ଲିପ୍ତ ହୁଏ ନାହିଁ । ସ୍ୱୟଂକୁ ସଂସାରକୁ ତଥା ପରଶିବଙ୍କୁ ଏକ ଭାବୁଥିବା ଯୋଗୀ ବାସ୍ତବିକ ଶିବଦ୍ରଷ୍ଟା ଅଟେ । ଏପରି ଯୋଗୀର ଜ୍ଞାନାଚାର ହିଁ ସାଧାରଣ ଲୋକଙ୍କର ଜ୍ଞାନାଚାର କୁହାଯାଏ । ଶିବାଦ୍ୱୈତ ଭାବନା ହିଁ ଜ୍ଞାନ ଅଟେ । ଏପରି ଭାବି ଯେ ସଂସାରରେ ବ୍ୟବହାର କରେ, ସେ ଜ୍ଞାନାଚାରୀ କୁହାଯାଏ । ସେ ସମସ୍ତ ଲୋକଙ୍କୁ ଜ୍ଞାନରେ ଯୁକ୍ତ କରିଥାଏ । ଅଦ୍ୱୈତ ଭକ୍ତିରେ ଯୁକ୍ତ ଏହି ଶିବଯୋଗୀର ସମସ୍ତ କ୍ରିୟା କେବଳ କ୍ରିୟା ହୋଇଥା'ନ୍ତି । ସେଥିରେ ବନ୍ଧନ ଅଥବା ସଂସାରର ଉତ୍ପତ୍ତି ହୁଏ ନାହିଁ ।

**ସପ୍ତଦଶ-ଅଷ୍ଟାଦଶ ପରିଚ୍ଛେଦ -**

ସପ୍ତଦଶ ପରିଚ୍ଛେଦ ପ୍ରସାଦୀସ୍ଥଳ ନାମରେ ପ୍ରସିଦ୍ଧ । ଏଥିରେ ନବ ସ୍ଥଳ ଅଛି । ଏଗୁଡ଼ିକର ନାମ ହେଉଛି - କାୟାନୁଗ୍ରହ, ଇନ୍ଦ୍ରିୟାନୁଗ୍ରହ, ପ୍ରାଣାନୁଗ୍ରହ, କାୟାର୍ପିତ, କରଣାର୍ପିତ, ଭାବାର୍ପିତ, ଶିଷ୍ୟସ୍ଥଳ, ସୁଶ୍ରୁଷାସ୍ଥଳ ଓ ସେବ୍ୟସ୍ଥଳ । ନିଜର ଶରୀର ଦର୍ଶାଇ ଶିବଯୋଗୀ ଯେତେବେଳେ ଲୋକଙ୍କୁ ଅନୁଗ୍ରହ କରେ, ତାହାକୁ କାୟାନୁଗ୍ରହ କୁହାଯାଏ ।

ଏହା ଏପରି କୁହାଯାଏ କାରଣ ଶିବ ଯୋଗୀର ଶରୀରରେ ପ୍ରବେଶ ହୋଇ ଅନୁଗ୍ରହ କରନ୍ତି । ଶିବ ଓ ଶିବଯୋଗୀ ଉଭୟ ଶରୀର ପ୍ରତି ଅନାସକ୍ତ ଅଟନ୍ତି। ଇନ୍ଦ୍ରିୟ ଗୁଡ଼ିକର ପରଶିବଠାରୁ ଅଭେଦ ଜ୍ଞାନ ଇନ୍ଦ୍ରିୟାନୁଗ୍ରହ କୁହାଯାଏ । ଏପରି ସ୍ଥିତିରେ ଯୋଗୀ ଅନ୍ତଃକରଣରେ ଶିବଙ୍କର ଅନୁଭବ କରି କେବେ କେବେ କ୍ଷଣମାତ୍ର ପାଇଁ ବାହ୍ୟ ପଦାର୍ଥର ମଧ୍ୟ ଅନୁଭବ କରିଥାଏ । ତା'ର ଜରା ମରଣର ଭୟ ରହେ ନାହିଁ । ସେ ଇନ୍ଦ୍ରିୟ ସହିତ ପ୍ରାଣକୁ ମନରେ ସଂଶ୍ଳିଷ୍ଟ କରି ଶିବଭାବନା କରୁଥାଏ । ଇନ୍ଦ୍ରିୟାନୁଗ୍ରହ ସମ୍ପନ୍ନ ଯୋଗୀ ଯେତେବେଳେ ପ୍ରାଣବାୟୁକୁ ନିରୁଦ୍ଧ କରି ତାତ୍ପର୍ଯ୍ୟକୁ ଦେଖେ, ସେତେବେଳେ ସେ ପ୍ରାଣାନୁଗ୍ରହ କୁହାଯାଏ । ତାତ୍ପର୍ଯ୍ୟ ଦର୍ଶନର ଅର୍ଥ ହେଉଛି – ପରମ କାରଣ ଶିବଙ୍କଠାରେ ପ୍ରାଣକୁ ଲୀନ କରିଦେବା । ପ୍ରାଣବୃତ୍ତି ଲୀନ ହେବା ପରେ ମନ ଶାନ୍ତ ହୋଇଯାଏ, କିନ୍ତୁ ନିଜର ଶକ୍ତି–ସଂସ୍କାର ବଳରେ ଯୋଗୀ ଶରୀରଯାତ୍ରା କରୁଥାଏ । ବସ୍ତୁତଃ ତାହାର ଶରୀର ଥିଲେ ମଧ୍ୟ ନ ଥାଏ, କାରଣ ତାହାର କାୟାଭିଜ୍ଞାନ ରହେ ନାହିଁ । ଏହାକୁ କାୟାର୍ପିତ କୁହାଯାଏ । ଶିବଙ୍କ ନିମନ୍ତେ ସ୍ୱଶରୀରର ଅର୍ପଣର ଫଳସ୍ୱରୂପ ସେହି ଯୋଗୀ ଶିବ ହୋଇଯାଏ । ଶରୀରର ସମସ୍ତ ସୁଖଦୁଃଖ ଶିବଙ୍କର ହୋଇଯାଏ । କରଣାର୍ପିତ ସ୍ଥଳ ହେଉଛି ସମସ୍ତ ଇନ୍ଦ୍ରିୟଗୁଡ଼ିକର ଶିବାର୍ପଣ । ବିଷୟସୁଖର ଅନୁଭବିତ୍ରୀ ଇନ୍ଦ୍ରିୟଗୁଡ଼ିକର ଶିବାର୍ପଣ କରୁଥିବା ଯୋଗୀ କରଣାର୍ପକ କୁହାଯାଏ । ଇନ୍ଦ୍ରିୟ ମଧ୍ୟରେ ପ୍ରଧାନ ମନ ଅଟେ । ତାହା ବଶୀଭୂତ ହେବାପରେ ସମସ୍ତ ଇନ୍ଦ୍ରିୟ ବଶରେ ଆସିଯାଆନ୍ତି । ଚିତ୍ତ ଏବଂ ଜଗତ୍‌ର ଚିଦାଗ୍ନିରେ ଆହୁତି ଦେବା ପରେ ସଂସାର ରହେ ନାହିଁ ଏବଂ ଶିବଯୋଗୀ ମୁକ୍ତ ହୋଇଯାଏ । ଏହିପରି ନିଶ୍ଚଳ ଭାବରେ ଶିବଙ୍କ ନିମନ୍ତେ ସମସ୍ତ ଭାବକୁ ଅର୍ପଣ ଭାବାର୍ପିତ କୁହାଯାଏ। ମନରେ ସବୁବେଳେ ଭାବନା ଉତ୍ପନ୍ନ ହେଉଥାଏ । ଏହା ହେଉଛି ବନ୍ଧନର କାରଣ **'ଶିବୋଽହମ୍'** ର ଭାବନା ଚିତ୍ତସ୍ଥ ଅଶୁଦ୍ଧ ଭାବନାକୁ ନଷ୍ଟ କରିଦିଏ । ତା'ପରେ ଭୋକ୍ତା, ଭୋଗ୍ୟ ଓ ଭୋଗ ଏହି ତ୍ରିପୁଟୀ ନଷ୍ଟ ହୋଇଯାଏ । ସମସ୍ତ କର୍ମ ଶିବାର୍ଚ୍ଚନ, ସମସ୍ତ ବଚନ ଶିବକୀର୍ତ୍ତନ ହୋଇଯାଏ – 'ଯଦ୍ୟତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍ ।' ପରକାୟ ଶିବଯୋଗୀଦ୍ୱାରା ଯିଏ ଶାସନୀୟ ହୁଏ, ସେ ଶିଷ୍ୟ ଅଟେ। ଶମ, ଦମ, ତପ, ଶୀଳ, ସତ୍ୟବାକ୍ୟ, ସମଦୃଷ୍ଟି, ଗୁରୁ ଓ ଶିବ ମଧ୍ୟରେ ତୁଲ୍ୟଭାବ, ଆଦି ଉତ୍ତମ ଶିଷ୍ୟର ଲକ୍ଷଣ ଅଟନ୍ତି । ଶିଷ୍ୟ ଗୁରୁଙ୍କର ଆଜ୍ଞାର ଉଲଂଘନ କରିବା ଅନୁଚିତ୍ । ଏପରି ଶିଷ୍ୟକୁ ଯେବେ ଗୁରୁ ନିର୍ଦ୍ଦେଶ କରନ୍ତି 'ତୁମେ ଶିବ ଅଟ', ସେ ମୁକ୍ତ ହୋଇଯାଏ ।

ପରକାୟ ଗୁରୁଙ୍କଦ୍ୱାରା ଉପଦିଶ୍ୟମାନ ଏହି ଶିଷ୍ୟ ଯେତେବେଳେ ଗୁରୁସେବାରେ ରତ ରହେ, ସେ ସୁଶ୍ରୁଷୁ କୁହାଯାଏ । ସେତେବେଳେ ସେ ନାନା ପ୍ରଶ୍ନ କରିଥାଏ ।

ପରମତତ୍ତ୍ୱ କ'ଣ ଅଟେ ? କାହାର ସାକ୍ଷାତ୍‌କାରରେ ମୁକ୍ତି ହୁଏ ? ଆଦି ଆଦି । ଉତ୍ତରରେ ଗୁରୁ କହନ୍ତି – 'ଶିବ ହିଁ ଜ୍ଞେୟ ଅଟନ୍ତି । ତୁମେ ଶିବ ଅଟ । ଶିବଙ୍କର ଶ୍ରବଣ–ମନନ–ଚିନ୍ତନ କର । ଏଥିରେ ମୁକ୍ତିଲାଭ ହେବ । ଗୁରୁଙ୍କର ଏପରି ଉପଦେଶାମୃତକୁ ପାନ କରି ସୁଶ୍ରୁଷୁ ଶିଷ୍ୟ ଯେତେବେଳେ ଶିବତତ୍ତ୍ୱର ଜ୍ଞାନପ୍ରାପ୍ତ କରିନିଏ, ସେତେବେଳେ ସେ ସେବ୍ୟ କୁହାଯାଏ । ଗୁରୁଙ୍କର ଉପଦେଶାନୁସାର ଆଚରଣ କରିବାରୁ ସେ ଗୁରୁଙ୍କ ପରି ପୂଜ୍ୟ ହୋଇଥାଏ । ଏହାର ପରିଣାମରେ ସେହି ଶିଷ୍ୟ ମଧ୍ୟ ନିଜର ଦୃଷ୍ଟିପାତରେ ସାମାନ୍ୟ ଜନକୁ ମୋକ୍ଷମାର୍ଗରେ ନେବା ନିମନ୍ତେ ସମର୍ଥ ହୋଇଥାଏ ।

ଅଷ୍ଟାଦଶ ପରିଚ୍ଛେଦ ପ୍ରାଣଲିଙ୍ଗସ୍ଥଳ ବିଷୟକ ଅଟେ । ଏଥିରେ ଆତ୍ମସ୍ଥଳ, ଅନ୍ତରାତ୍ମସ୍ଥଳ, ପରମାତ୍ମସ୍ଥଳ, ନିର୍ଦେହାଗମସ୍ଥଳ, ନିର୍ଭାବାଗମସ୍ଥଳ, ନଷ୍ଟାଗମସ୍ଥଳ, ଆଦିପ୍ରସାଦସ୍ଥଳ, ଅନ୍ତ୍ୟପ୍ରସାଦସ୍ଥଳ ଓ ସେବ୍ୟପ୍ରସାଦସ୍ଥଳ ଅଛି । ଯେତେବେଳେ ସେବ୍ୟସ୍ଥଳ ଜୀବଭାବର ତ୍ୟାଗ କରି ତତ୍ତ୍ୱରୂପରେ ଭାବନାର ବିଷୟ ହୁଏ, ସେତେବେଳେ ତାକୁ ଆତ୍ମା କହନ୍ତି । ଏହି ଆତ୍ମା ବାଳ (କେଶ)ର ଅଗ୍ରଭାଗର ଶତାଂଶ ରୂପ ଅଟେ । ପ୍ରାକ୍ତନ କର୍ମରୂପୀ ବନ୍ଧନରେ ଆବଦ୍ଧ ହୋଇ ଏହା (ଆତ୍ମା) ଜୀବ ହୋଇଥାଏ ତଥା ଅହଙ୍କାରରେ ଆବଦ୍ଧ ହେବା ହେତୁ ଶରୀରବାନ୍ ହୋଇଥାଏ । ମୂଳରୂପରେ ଏହା ନିର୍ଦେହ ତଥା ନିର୍ମଳ ଅଟେ । ଏହା ଅନାମ ଓ ଅରୂପ ଅଟେ । ଦେହଧାରୀ ହୋଇ ଏହା ପୁଷ୍କରପଲାଶ ପରି ଦେହରେ ଅସଂସକ୍ତ ରହେ । ଏପରି ସ୍ଥିତିରେ ମଧ୍ୟ ସେ ଯୋଗର ବଳରେ ଶିବଙ୍କର ସାକ୍ଷାତ୍‌କାର କରିଥାଏ । ଏହି ଅନ୍ତରାତ୍ମା ହିଁ ନିର୍ମଳ ହୋଇ ପରମାତ୍ମା ହୋଇଥାଏ । ଶିବ ହିଁ ସର୍ବବ୍ୟାପୀ ଏବଂ ଉତ୍କୃଷ୍ଟତମ ଆତ୍ମତତ୍ତ୍ୱ ହୋଇଥିବାରୁ ପରମାତ୍ମା ଅଟନ୍ତି । ସେ ନିଜର ଧୂମାବତୀ ଆଦି ଶକ୍ତିଦ୍ୱାରା ବିଶ୍ୱରେ ପଞ୍ଚତତ୍ତ୍ୱ କରି ସ୍ଥିତ ଅଟନ୍ତି । ପରମାତ୍ମସ୍ଥଳ ପରେ ନିର୍ଦେହାଗମସ୍ଥଳର ବର୍ଣ୍ଣନ ଅଛି । ଅହନ୍ତ୍ୱ ଏବଂ ମମତ୍ୱ ଉଭୟ ନିରାସ ହେବା ପରେ ଦେହର ସ୍ଥୂଳତ୍ୱ ଆଦି ଧର୍ମର ପ୍ରତୀତି ଯୋଗୀକୁ ହୋଇ ନ ଥାଏ । ଏପରି ଯୋଗୀକୁ ନିର୍ଦେହ କୁହାଯାଏ । ଯଦ୍ୟପି ସାମାନ୍ୟ ଲୋକଙ୍କ ଦୃଷ୍ଟିରେ ସେ ସଦେହ ଅଟେ, କିନ୍ତୁ ଯଥାର୍ଥତଃ ସେ ଦେହଭାବନା ଏବଂ ଦେହବିକାର ରୁ ଉର୍ଦ୍ଧ୍ୱରେ ଥାଏ । ସର୍ବବ୍ୟାପୀ ପରମାତ୍ମାଙ୍କଠାରୁ ଅଭିନ୍ନ ହେବାପରେ ସେ ପରିଚ୍ଛିନ୍ନ ଦେହକର୍ମରେ ପ୍ରଭାବିତ ହୋଇ ନ ଥାଏ । ଏହି ଶିବଯୋଗୀ ନିର୍ଦେହତତ୍ତ୍ୱର ପରିଣାମସ୍ୱରୂପ ରାଗଦ୍ୱେଷ ଆଦି ଭାବରୁ ରହିତ ହୋଇଥାଏ । 'ଅହମ୍' ଓ 'ବ୍ରହ୍ମ' ଏହି ଦୁଇଟି ଭାବ ଅଟନ୍ତି । ଚିଦାକାଶରେ ଉଭୟ ଏକ ହେବାପରେ ନିର୍ଭାବର ସ୍ଥିତି ହୁଏ । ବାଣୀ ଏବଂ ମନର ସୀମାରୁ ଉର୍ଦ୍ଧ୍ୱରେ ଶୂନ୍ୟ ଚିଦାକାଶରେ ନିଜର ଅସ୍ତିତ୍ୱକୁ ଲୟ କରୁଥିବା ଯୋଗୀ ପାଇଁ ଭାବନାର କଳ୍ପନା ଅସମ୍ଭବ ଅଟେ । ଏପରି

ସ୍ଥିତିରେ ଯେତେବେଳେ ତାଙ୍କର ଜ୍ଞାତା–ଜ୍ଞାନ–ଜ୍ଞେୟ ରୂପକ ତ୍ରିପୁଟୀଭାବ ନଷ୍ଟ ହୋଇଯାଏ, ତାହାକୁ ନଷ୍ଟାଗମ କହନ୍ତି। ତ୍ରିପୁଟୀର ସ୍ଥିତି ଦ୍ୱୈତତାରେ ରହେ । ଅଦ୍ୱୈତ ହେବାପରେ ଯୋଗୀକୁ ସ୍ୱର ପ୍ରତୀତି ହୋଇ ନଥାଏ । ତା'ପରେ ତ୍ରିପୁଟୀ ଅଥବା ତ୍ରିପୁଟୀମୟ ପ୍ରପଞ୍ଚ ଏବଂ ତାର ପ୍ରତୀତି ବିଷୟରେ କ'ଣ କୁହାଯିବ । ଅଦ୍ୱୈତ ଭାବନା ପରେ ଶିବଯୋଗୀ ପାଇଁ ଶିବତ୍ୱ ପଦ ପ୍ରାପ୍ତି ହିଁ ଅବଶିଷ୍ଟ ରହେ । ସେଥିପାଇଁ ଶିବ କୃପା ଆବଶ୍ୟକ ହୋଇଥାଏ। ଯେପରି ସୂର୍ଯ୍ୟଙ୍କୁ ଦେଖିବା ପାଇଁ ସୂର୍ଯ୍ୟଙ୍କର କିରଣ ଆବଶ୍ୟକ, ସେହିପରି ଶିବପଦ ପ୍ରାପ୍ତି ନିମନ୍ତେ ଶିବଙ୍କର କୃପାରୂପୀ କିରଣ ଅନିବାର୍ଯ୍ୟ ହୋଇଥାଏ । ଶିବତ୍ୱର ସାକ୍ଷାତ୍କାର ଓ ସଂସାରତ୍ୱର ନିବୃତ୍ତି ଗୋଟିଏ କଥା । ସଂସାରର ନିବୃତ୍ତିର ଅନ୍ୟ ନାମ 'ଅନ୍ତ୍ୟ' ଅଟେ। ସଂସାର ମାୟାକୃତ ଅଟେ । ଏହାର ଅନ୍ତ ଚିଦାକାଶ ଦର୍ଶନରେ ହୋଇଥାଏ । ଚିଦ୍‌ବ୍ୟୋମରେ ପ୍ରତିଷ୍ଠିତ ହେବା ପରେ ସଂସାର ରହେ ନାହିଁ । ଏହି ଅବସ୍ଥା ସମସ୍ତଙ୍କର ସେବ୍ୟ ଶିବରୂପୀ ଗୁରୁଙ୍କର ପ୍ରସନ୍ନତାରୁ ପ୍ରାପ୍ତ ହୋଇଥାଏ । ଗୁରୁ ହିଁ ପରମତତ୍ତ୍ୱ ଅଟନ୍ତି । ତାଙ୍କ ସହିତ ଐକ୍ୟପ୍ରାପ୍ତ ହେବାପରେ କିଛି ମଧ୍ୟ ପ୍ରାପ୍ତବ୍ୟ ରହେ ନାହିଁ । ଏହି ସ୍ଥିତି ନିତ୍ୟତୃପ୍ତିର ହୋଇଥାଏ ।

### ଏକୋନବିଂଶ–ଏକବିଂଶ ପରିଚ୍ଛେଦ –

ଉଣେଇଶି ପରିଚ୍ଛେଦ ଶରଣସ୍ଥଳ ନାମରେ ପ୍ରସିଦ୍ଧ ଅଟେ । ଏଥିରେ ବାରଟି ଭାଗ ଅଛି । ସେଗୁଡ଼ିକର ନାମ – ଦୀକ୍ଷାପାଦୋଦକ, ଶିକ୍ଷାପାଦୋଦକ, ଜ୍ଞାନପାଦୋଦକ, କ୍ରିୟାନିଷ୍ପତ୍ତିକ, ଭାବନିଷ୍ପତ୍ତିକ, ଜ୍ଞାନନିଷ୍ପତ୍ତିକ, ପିଣ୍ଡାକାଶସ୍ଥଳ, ବିନ୍ଦ୍ୱାକାଶସ୍ଥଳ, ମହାକାଶସ୍ଥଳ, କ୍ରିୟାପ୍ରକାଶନସ୍ଥଳ, ଭାବପ୍ରକାଶନସ୍ଥଳ, ତଥା ଜ୍ଞାନପ୍ରକାଶନସ୍ଥଳ । ଦୀକ୍ଷାଦ୍ୱାରା ଦ୍ୱୈତଭାବ ନଷ୍ଟ ହୋଇଯାଏ ଏବଂ ଗୁରୁ ଓ ଶିଷ୍ୟ ବିଷୟରେ ଐକ୍ୟ ଭାବନା ହୋଇଥାଏ । ଏଣୁ ଏହାକୁ ଦୀକ୍ଷାପାଦୋଦକ କୁହାଯାଏ । 'ପାଦ' ଅର୍ଥାତ୍ ନିର୍ମଳ ପରମାନନ୍ଦ ଏବଂ 'ଉଦକ' ଅର୍ଥାତ୍ ଜ୍ଞାନ । ଦୀକ୍ଷାଦ୍ୱାରା ଜ୍ଞାନ ଓ ନିର୍ମଳ ଆନନ୍ଦ ଅଭିନ୍ନ ହୋଇଥାନ୍ତି । ପରାସଂବିତ୍‌ରେ ଯୁକ୍ତ ଶିବଯୋଗୀ ପରାନନ୍ଦକୁ ପ୍ରାପ୍ତ କରି ସର୍ବତ୍ର ଅଭେଦର ଅନୁଭବ କରେ । ଏହି ଜ୍ଞାନାନନ୍ଦ କେବଳ ଗୁରୁକୃପାରୁ ପ୍ରାପ୍ତ ହୋଇଥାଏ ।

ପୂର୍ବୋକ୍ତ ଜ୍ଞାନର ମନନ ଓ ଗୁରୁଶିଷ୍ୟଙ୍କର ଏକରୂପତାର ଜ୍ଞାନ ସମରସତାକୁ ଶିକ୍ଷାପାଦୋଦକ କୁହାଯାଏ । ଏହାର ପରିଣାମରେ ଶିବଯୋଗୀ ବିଷୟାନନ୍ଦରୁ ପରାଙ୍ମୁଖ ହୋଇ ନିଜାନନ୍ଦ ସାଗରରେ ନିମଜ୍ଜିତ ହୋଇଥାଏ, କାରଣ ବିଷୟାନନ୍ଦ ସେହି ପରାନନ୍ଦର କଣିକାମାତ୍ର ହୋଇଥାଏ । ଏପରି ଆନନ୍ଦମୟ ଯୋଗୀର ସମସ୍ତ କ୍ରିୟା ଫଳ ଦେଇ ନଥା'ନ୍ତି ।

ସେହି ଜ୍ଞାନୀ କର୍ମ କରୁଥିଲେ ମଧ୍ୟ ସେଥିରେ ଲିପ୍ତ ହୋଇ ନଥାଏ, ଯେପରି ଘୃତ ଆଦିର ସ୍ୱାଦ ଜାଣୁଥିବା ଜିହ୍ୱା ସେଥିରେ ଲିପ୍ତ ହୋଇ ନଥାଏ। ଯେଉଁ ଶିବଯୋଗୀର ଅନ୍ତରରେ ପ୍ରତୀତ ହେଉଥିବା ଭାବ କଳ୍ପିତ ହୁଏ, ସେହିଭାବ ନିଷ୍ପତ୍ତିମାନ୍ ହୋଇଥାଏ । ଯଦ୍ୟପି ତାହାର ଭାବରେ ସମ୍ବନ୍ଧ ହୁଏ ନାହିଁ, ତଥାପି ତାଙ୍କୁ ଶିବଙ୍କ ପ୍ରତି ଅଦ୍ୱୈତ ଭାବନା କରିବା ଉଚିତ୍ । କାରଣ ତାଙ୍କର ସେହି ଭାବ ଅନ୍ୟ ଭକ୍ତଙ୍କ ନିମନ୍ତେ ପରକ ହୋଇଥାଏ । ବିନା ଭାବରେ ଜ୍ଞାନ ନାହିଁ, ଜ୍ଞାନ ବିନା ଭାବ ନାହିଁ । ତେଣୁ ଯୋଗୀ ଉଭୟଙ୍କର ଆଶ୍ରୟଣ କରିବା ଉଚିତ୍ । ଉଭୟଙ୍କର କାରକ ମନ ଅଟେ । ଯେତେବେଳେ ମନ ଲକ୍ଷ୍ୟକୁ ପ୍ରାପ୍ତ କରି ପରତତ୍ତ୍ୱରେ ବିଲୀନ ହୋଇଯାଏ, ସେତେବେଳେ ତାଙ୍କର ଜ୍ଞାନ ସ୍ୱପ୍ନବତ୍ ହୋଇଥାଏ । ଏପରି ଜ୍ଞାନୀ ଜ୍ଞାନନିଷ୍ପତ୍ତିମାନ୍ କୁହାଯାଇଥାଏ । ଯେପରି ଜାଗ୍ରତ ହେବାପରେ ସ୍ୱପ୍ନର ପଦାର୍ଥ ଓ ତାହାର ଜ୍ଞାନ ଲୁପ୍ତ ହୋଇଥାଏ, ସେହିପରି ଆତ୍ମପ୍ରକାଶ ହେବାପରେ ସଂସାର ଓ ତାହାର ଜ୍ଞାନ ଲୁପ୍ତ ହୋଇଥାନ୍ତି । ଏପରି ସ୍ଥିତିରେ ଅଖଣ୍ଡ ଆନନ୍ଦ ସ୍ୱରୂପା ସଂବିତ୍ ଶେଷ ରହିଥାଏ ।

ପିଣ୍ଡାକାଶସ୍ଥଳର ଯେପରି ଆକାଶ ଘଟାବଚ୍ଛିନ୍ନ, ମଠାବଚ୍ଛିନ୍ନ ହେବା ପରେ ବି ତାହାର ପୂର୍ଣ୍ଣତା ଅକ୍ଷୁର୍ଣ୍ଣ ରହେ, ସେହିପରି ଏହି ପିଣ୍ଡରେ ଥିବା ଆତ୍ମାର ପୂର୍ଣ୍ଣତାର କୌଣସି କ୍ଷିଣତା ଆସେ ନାହିଁ ବୋଲି କୁହାଯାଇଛି । ପରମେଶ୍ୱର ପରକାଶ ପରି ଅଟନ୍ତି । ସେ ପ୍ରାଣୀଙ୍କ ମଧ୍ୟରେ ହୃଦୟ ଗୁମ୍ଫାରେ ମଧ୍ୟ ରହନ୍ତି । ଯୋଗୀ ପରମେଶ୍ୱର ଓ ଜୀବଙ୍କର ପରାକାଶ ଓ ପିଣ୍ଡାକାଶ ପରି ଅଭେଦ ଭାବରେ ଧ୍ୟାନ କରିବା ଉଚିତ୍ । ସଦାଶିବତତ୍ତ୍ୱରୁ ଆରମ୍ଭ କରି ପୃଥିବୀରେ ସ୍ଥିତ ସମସ୍ତ ତତ୍ତ୍ୱର ମୂଳକାରଣ ବ୍ୟାପକ ସଦାଶିବ ଅଟନ୍ତି । ତାଙ୍କର ବିନ୍ଦୁ ଭାବରେ ଚିନ୍ତନ କରିବା ଉଚିତ୍ । ଏହା ବିନ୍ଦ୍ୱାକାଶ ଅଟେ । ଆକାଶ ଏବଂ ଆତ୍ମା ଏକ ପରି ଅଟନ୍ତି । ଆକାଶରୁ ଉତ୍ପନ୍ନ ବାୟୁ ଏକ ହେଲେ ମଧ୍ୟ ସର୍ବତ୍ର ସବୁଭାବରେ ସେହି ସେହି ରୂପ ଧାରଣ କରିବା ପରି ସେ ସବୁରୁ ଭିନ୍ନ ଥାଏ । ସେହିପରି ପରମେଶ୍ୱର ମଧ୍ୟ ସମସ୍ତ ଶରୀରରେ ଜୀବ ରୂପରେ ରହିଲେ ମଧ୍ୟ ସେ ସବୁରୁ ଭିନ୍ନ ଅଟନ୍ତି । ଏହା ବିନ୍ଦ୍ୱାକାଶ ଅଟେ । ଯେପରି ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟରେ ସ୍ଥିତ ଆକାଶ ଅଭିନ୍ନ ଅଟେ, ସେହିପରି ଶିବଯୋଗୀ ନିମନ୍ତେ ଜୀବାତ୍ମା ଓ ପରମାତ୍ମାରେ ଭେଦ ନାହିଁ । ଏହାକୁ ମହାକାଶସ୍ଥଳ କୁହାଯାଏ । ପରାନନ୍ଦ ରୂପୀ ସଂବିତ୍ ହିଁ ପରମାକାଶ ଅଟେ । ସେ ଶରୀରାବଚ୍ଛିନ୍ନ ଜୀବ ମଧ୍ୟ ଅଟେ । ସିନ୍ଧୁ ଓ ତାହାର ଲହରୀ ପରି ପରମାତ୍ମା । ଜୀବାତ୍ମା ତଥା ବିଶ୍ୱ ଏକ ଓ ଅଭିନ୍ନ ଅଟନ୍ତି । ଭେଦର ପ୍ରତୀତି ଉପାଧି କାରଣରୁ ହୋଇଥାଏ । ଯିଏ ଚିଦାକାଶରୂପୀ ପରିପୂର୍ଣ୍ଣ ଶିବଙ୍କର ଆତ୍ମା ରୂପରେ ଅନୁସନ୍ଧାନ କରେ, ସେ କ୍ରିୟାପ୍ରକାଶବାନ୍

ଅଟେ । ନିଜଦ୍ୱାରା ସମ୍ପାଦିତ କର୍ମ ତଥା ଅନ୍ୟ ସମସ୍ତ ଜାଗତିକ କ୍ରିୟାକୁ ସେ ଗନ୍ଧର୍ବନଗର ପରି ତୁଚ୍ଛ ମାନିଥାଏ । ଯେପରି ସମୁଦ୍ରର ତରଙ୍ଗ ସମୁଦ୍ରଠାରୁ ଭିନ୍ନ ହୋଇ ନ ଥାଏ, ସେହିପରି ବୁଦ୍ଧି ଆଦି ଭାବ ଶିବଯୋଗୀର ଚୈତନ୍ୟଠାରୁ ଭିନ୍ନ ହୋଇ ନଥାଏ । ସେ ଶିବମୟ ଅଟନ୍ତି । ଅଜ୍ଞାନତିମିର ଦୂର ହେବା ପରେ ଯୋଗୀର ସମସ୍ତ କ୍ରିୟା ଶିବାତ୍ମକ ହୋଇଯାଏ, ସମସ୍ତ ଭାବ ମଧ୍ୟ ଶିବାତ୍ମକ ହୋଇଯାଏ । ଏହି ଜ୍ଞାନର ପ୍ରକାଶରେ 'ତତ୍ତ୍ୱମସି' ମହାବାକ୍ୟରେ ଯେପରି ଭାଗତ୍ୟାଗ ଲକ୍ଷଣଦ୍ୱାରା ଅଖଣ୍ଡ ଚୈତନ୍ୟର ବୋଧ ହୁଏ, ସେହିପରି ଅଖଣ୍ଡ ଶିବତାର ପ୍ରତୀତି ହୋଇଥାଏ । ଶିବତତ୍ତ୍ୱ ଜ୍ଞାନର ବିଷୟ ନୁହେଁ, ତାହାକୁ ଆତ୍ମାରୁ ଅଭିନ୍ନ ଜାଣିବା ହିଁ ଜ୍ଞାନ ଅଟେ । ଏହି ଅଦ୍ୱୈତଜ୍ଞାନ ମୋକ୍ଷର କାରଣ ହୋଇଥାଏ । ଏପରି ଅବସ୍ଥାରେ ସଂସାର ଭିନ୍ନ ପ୍ରତୀତ ହୁଏ ନାହିଁ ।

କୋଡ଼ିଏ ପରିଚ୍ଛେଦର ନାମ ଐକ୍ୟସ୍ଥଳ । ଏଥିରେ ନଅଟି ସ୍ଥଳବିଷୟରେ ଚର୍ଚ୍ଚା କରାଯାଇଛି । ସେଗୁଡ଼ିକା ହେଲା – ସ୍ୱୀକୃତପ୍ରସାଦୈକ୍ୟସ୍ଥଳ, ଶିଷ୍ଟୋଦନସ୍ଥଳ, ଚରାଚରଲୟସ୍ଥଳ, ଭାଣ୍ଡସ୍ଥଳ, ଭାଜନସ୍ଥଳ, ଅଙ୍ଗାଲେପସ୍ଥଳ, ସ୍ୱପରାଜ୍ଞାସ୍ଥଳ, ଭାବାଭାବ-ବିନାଶସ୍ଥଳ ତଥା ଜ୍ଞାନଶୂନ୍ୟସ୍ଥଳ ।

ଜ୍ଞାନପ୍ରକାଶରେ ସମ୍ପନ୍ନ ଯୋଗୀର ଅନ୍ତରରେ ଯେତେବେଳେ ମୁଖ୍ୟାର୍ଥ ଓ ଲକ୍ଷ୍ୟାର୍ଥର ଅଭାବ ହୋଇଯାଏ, ସେତେବେଳେ ସେ ପୂର୍ଣ୍ଣଜ୍ଞାନପ୍ରକାଶଯୁକ୍ତ ହୋଇଯାଏ। ଏପରି ସ୍ଥିତିରେ ସେ ପ୍ରମାତା–ପ୍ରମେୟ–ପ୍ରମାଣରୂପ ତ୍ରିପୁଟୀରେ ସମବାୟରେ ଥିବା ସଂବିତ୍‌ର ସାକ୍ଷାତ୍‌କାର କରି ସ୍ୱଚ୍ଛ ହୋଇଯାଏ । ପୂର୍ଣ୍ଣଜ୍ଞାନୀ ସେହି ଶିବଯୋଗୀଙ୍କୁ ସଂସାର ସର୍ବତ୍ର ଶିବମୟ ଦେଖାଯାଏ । ସେତେବେଳେ ଯୋଗୀ ସମସ୍ତ ଐନ୍ଦ୍ରିୟ ବିଷୟକୁ ଚିଦଗ୍ନିରେ ହୋମ କରି ନିର୍ମଳ ହୋଇଯାଏ ଏବଂ ପରାନନ୍ଦମୟ ହୋଇ ବିଷୟଭୋଗ କରେ । ମାୟାକୁ ଓଦନ କୁହାଯାଇଛି । ଯେପରି ଉଦରସ୍ଥ ଅନ୍ନ ରକ୍ତ ଆଦିରେ ପରିବର୍ତ୍ତିତ ହୋଇ ନଶ୍ୱର ଶରୀରକୁ ପୁଷ୍ଟ କରିଥାଏ, ସେହିପରି ଏହି ସଂସାରରେ ମାୟା ନାନା ରୂପରେ ପ୍ରକଟ ହୋଇ ତାହାକୁ ପୁଷ୍ଟ କରିଥାଏ । ଯେତେବେଳେ ତାହା ଚିତ୍‌ଲିଙ୍ଗରେ ଲୀନ ହୋଇଯାଏ, ସେତେବେଳେ ମାୟାକୁ ଶିଷ୍ଟ କହନ୍ତି । ମାୟା ସଂସାର ଜନଙ୍କର ସ୍ୱାମିନୀ ଏବଂ ଯୋଗୀ ଜନଙ୍କର କିଙ୍କରୀ ହୋଇଥାଏ । କାରଣ ମହାତ୍ମା ଶିବଯୋଗୀ ଚିତ୍‌ସ୍ୱରୂପ ଜ୍ୟୋତିର୍ଲିଙ୍ଗରେ ନିମଗ୍ନ ରହେ । ଏପରି ଯୋଗୀଦ୍ୱାରା ଭୁଜ୍ୟମାନ ବିଷୟ ଚିଦାତ୍ମାରେ ଲୀନ ହୋଇଯାଏ । ଯେପରି ଅଗ୍ନି ଇନ୍ଧନକୁ ଜଳାଇ ସ୍ୱୟଂ ସ୍ୱଚ୍ଛ ହୋଇଥାଏ, ସେପରି ଶିବଯୋଗୀ ଦେହଧାରୀ ହୋଇ ମଧ୍ୟ ନିର୍ଦ୍ଦେହୀ ହୋଇଥାଏ ଏବଂ ଚରାଚରାତ୍ମକ ଜଗତ୍‌ରେ ଥିବା ମଳଶକ୍ତିର ବିନାଶକ ହୁଏ । ଯେପରି ଜାଗ୍ରତ ହେବା ପରେ ସ୍ୱପ୍ନଜଗତ୍ ଅଦୃଶ୍ୟ ଅଥବା ନଷ୍ଟ ହୋଇଯାଏ,

ସେହିପରି ଆତ୍ମପ୍ରବୋଧ ହେବାପରେ ସମ୍ପୂର୍ଣ୍ଣ ସଂସାର ନଷ୍ଟ ହୋଇଯାଏ, ଅର୍ଥାତ୍ ସେତେବେଳେ ଯୋଗୀ ଜନ ନିମନ୍ତେ ସଂସାର ସାଧାରଣ ଲୋକଙ୍କ ଦୃଷ୍ଟିରୁ ଭିନ୍ନ ହୋଇଥାଏ । ବାଣୀ ଓ ମନରୁ ଉର୍ଦ୍ଧ୍ୱରେ ତୁରୀୟାତୀତ ଅବସ୍ଥାକୁ ପ୍ରାପ୍ତ ଯୋଗୀ ଚିଦାନନ୍ଦମୟ ଶିବଙ୍କ ଅତିରିକ୍ତ ଅନ୍ୟ କିଛି ଜାଣିପାରେ ନାହିଁ ।

ଶିବଯୋଗୀର ବିଚାରରୂପ ପରବିନ୍ଦୁର ଅନ୍ୟ ନାମ ଭାଣ୍ଡସ୍ଥଳ ଅଟେ । ଏହା ପରମଶିବ ରୂପ ଯୋଗୀର ବିମର୍ଶକଳା ଅଟେ, ଯେଉଁଥିରେ ସମସ୍ତ ବିଶ୍ୱ ମୟୂରାଣ୍ଡରସନ୍ୟାୟରେ ପ୍ରଚ୍ଛନ୍ନ ରହେ । ଏହା ଶବ୍ଦବ୍ରହ୍ମ ଅଟେ । ଏହା ପରାହନ୍ତାରୂପ ବିମର୍ଶ ଅଟେ । ଏହି ବିମର୍ଶରୂପୀ ଭାଣ୍ଡରେ ସମ୍ପୂର୍ଣ୍ଣ ବିଶ୍ୱକୁ ବିଲୀନ କରି ଯୋଗୀ ମୁକ୍ତ ରହେ । ନିଖିଳ ବ୍ରହ୍ମାଣ୍ଡର କାରଣଭୂତ ବିମର୍ଶ ଯେଉଁଥିରେ ପ୍ରତିଭାସିତ ହୁଏ, ସେହି 'ଅହଂ' ର 'ଅ'କାର ଶିବ ଅଟେ, 'ହ'କାର ଶକ୍ତି ଅଟେ । ଏହିପରି ଅହଂ ପଦରେ ଶିବଶକ୍ତି ଉଭୟ ସମରସ ହୋଇ ରହନ୍ତି । ଏହି ଅହନ୍ତାରେ ସମ୍ପୂର୍ଣ୍ଣ ବିଶ୍ୱ ବଟବୀଜରେ ନିହିତ ବୃକ୍ଷ ପରି ଅବ୍ୟକ୍ତ ରହେ । ଅହନ୍ତାମୟ ଯୋଗୀ ବିଶ୍ୱାତ୍ମା ହୋଇ ପ୍ରତୀତ ହୁଏ । ଅଙ୍ଗାଲେପର ଅର୍ଥ ହେଉଛି ସେହି ରୂପ ଯାହା ଦେଶକାଳ ଆଦିରେ ଅବଚ୍ଛିନ୍ନ ନ ହୋଇ ଚିଦାନନ୍ଦମୟ ହୋଇଥାଏ । ଯେପରି ଧୂପ ଆଦିରେ ଆକାଶ ଲିପ୍ତ ହୁଏ ନାହିଁ, ସେହିପରି ଯୋଗୀ ମଧ୍ୟ ସଂସାରରେ ଲିପ୍ତ ହୁଏ ନାହିଁ । ତା ପାଇଁ ବିଧି-ନିଷେଧ ଆଦି କିଛି ରହେ ନାହିଁ । ସେହି ଯୋଗୀ ସର୍ବାକାର ଥାଇ ମଧ୍ୟ ଜୀବନ୍ମୁକ୍ତ ହୋଇଥାଏ ।

ସ୍ୱପରାଜ୍ଞସ୍ଥଳରେ ନିଜର ଓ ଅନ୍ୟର ଅଜ୍ଞାନର କଥା କୁହାଯାଇଛି । ଯେତେବେଳେ ଶିବଯୋଗୀ ନିଜକୁ ଅପ୍ରମେୟ ଚିଦଦ୍ୱୈତ ତତ୍ତ୍ୱରେ ବିଲୀନ କରିଦିଏ, ତାକୁ ସ୍ୱ ଓ ପରର ଅନୁଭବ ହୁଏ ନାହିଁ । ସେ ସଜାତୀୟ, ବିଜାତୀୟ ଓ ସ୍ୱଗତ ଏହି ତିନି ଭେଦରୁ ଶୂନ୍ୟ ହୋଇଯାଏ । ସମସ୍ତ ଦ୍ୱନ୍ଦ୍ୱରୁ ଉର୍ଦ୍ଧ୍ୱରେ ତାକୁ ସ୍ୱପରାଜ୍ଞସ୍ଥଳ କୁହାଯାଏ । ଏହିପରି ଯିଏ ତ୍ୱଂ ଓ ଅହଂ ର ଭାବରୁ ଶୂନ୍ୟ ହୋଇଯାଏ, ସେ ଭାବାଭାବର ଲୟସ୍ଥଳ ହୋଇଯାଏ । 'ଅହଂ' ଭାବ ଓ 'ସ୍ୱ' ଭାବରୁ ରହିତ ସେ ଜୀବନ୍ମୁକ୍ତ ଯେତେବେଳେ ଚିଦ୍‌ସ୍ୱରୂପ ହୋଇଯାଏ, ସେତେବେଳେ ତା ପାଇଁ ସୁଖ-ଦୁଃଖର ଭାବ ରହେ ନାହିଁ କି ଅଭାବ ରହେ ନାହିଁ । ଯେପରି ଘିଅରେ ଘିଅ, ତେଲରେ ତେଲ, ଦୁଧରେ ଦୁଧ ଢାଳିଲେ ପାର୍ଥକ୍ୟ ଜଣା ପଡ଼େ ନାହିଁ, ସେହିପରି ଶିବଯୋଗୀ ଓ ପରବ୍ରହ୍ମ ମଧ୍ୟରେ ବିଭାଗ ରହେ ନାହିଁ । ସ୍ୱୟଂ ବିଭାଗର ମଧ୍ୟ ଅସ୍ତିତ୍ୱ ରହେ ନାହିଁ । କେବଳ ଚିଦାନନ୍ଦ ରୂପ ସେହି ତତ୍ତ୍ୱରେ ବିଶେଷଣ ସମ୍ଭବ ହୁଏ ନାହିଁ । କାର୍ଯ୍ୟ-କାରଣ, ଶେଷ-ଶେଷୀ ଆଦି ସମସ୍ତ ସମ୍ବନ୍ଧ ଶୂନ୍ୟତାକୁ ପ୍ରାପ୍ତ ହୁଅନ୍ତି । ଏପରି ଯୋଗୀକୁ ଜ୍ଞାନଶୂନ୍ୟସ୍ଥଳ କୁହାଯାଏ ।

ଭଗବାନ୍ ଶିବ ଭଗବତୀ ପାର୍ବତୀଙ୍କୁ ଯେଉଁ ଅଦ୍ୱୈତ ଆନନ୍ଦଶିବଧର୍ମର ଉପଦେଶ ଦେଇଥିଲେ, ଗଣେଶ୍ୱର ରେଣୁକାଚାର୍ଯ୍ୟ ମହର୍ଷି ଅଗସ୍ତ୍ୟଙ୍କୁ ଏହି ଉପଦେଶ ଶୁଣାଇ ମୌନ ହୋଇଗଲେ । ତା'ପରେ ମୁନି ଅଗସ୍ତ୍ୟ କହିଲେ – ହେ ଶିବଜ୍ଞାନର ମହାସାଗର, ଆଚାର୍ଯ୍ୟ, ଆପଣଙ୍କ ମୁଖରୁ ଏହି ନିର୍ମଳଶାସ୍ତ୍ର ଅବତୀର୍ଣ୍ଣ ହୋଇଛି । ଏହାକୁ ଶୁଣି ମୋର ଚିତ୍ତ ଅତୀବ ପ୍ରସନ୍ନ ହୋଇଗଲା । ମୁଁ ଶିବଜ୍ୟୋତିର ସାକ୍ଷାତ୍‌କାର କରୁଛି । ତପସ୍ୟାର ପ୍ରଭାବ ଓ ଶଙ୍କରଙ୍କ କୃପା ବିନା କିଏ ଏହା ଶୁଣିବାର ଅଧିକାରୀ ହୋଇପାରିବ । ଆପଣ ମତେ କୃତକୃତ୍ୟ କରିବା ପାଇଁ ଏଠାକୁ ଆସିଲେ । ତେଣୁ ମୋର ଜନ୍ମ ସଫଳ ହୋଇଗଲା । ମୁଁ ପାଶବନ୍ଧନରୁ ମୁକ୍ତ ହୋଇଗଲି । ମୋର ତପସ୍ୟା ଫଳୀଭୂତ ହୋଇଗଲା । ଅଗସ୍ତ୍ୟ ବଚନ ଶୁଣି ରେଣୁକାଚାର୍ଯ୍ୟ କହିଲେ ହେ ମୁନିଶାର୍ଦ୍ଦୂଳ, ଆପଣଙ୍କ ବ୍ୟତୀତ ଅନ୍ୟ କିଏ ଏହି ଶିବଶାସ୍ତ୍ରକୁ ଜାଣିବା ପାଇଁ ଅଧିକାରୀ ? ଏହି ତନ୍ତ୍ରର ଆପଣ ଏକମାତ୍ର ଅଧିକାରୀ । ଶିବପ୍ରବୋଧର ଏପରି ସାଧନ ଅନ୍ୟ କେଉଁଠାରେ ନାହିଁ । ସର୍ବାନୁଗ୍ରହ ଶିବ ଲୋକମଙ୍ଗଳ ନିମନ୍ତେ ଏହାର ପ୍ରବଚନ କରିଥିଲେ । ଶିଷ୍ୟକୁ ପରୀକ୍ଷା କରିବା ପରେ ହିଁ ଆପଣ ତାକୁ ଉପଦେଶ ଦେବେ । ଅପରୀକ୍ଷିତ ଅଯୋଗ୍ୟକୁ କେବେ ନୁହେଁ । ଆପଣ ପୃଥିବୀରେ ଏହାର ପ୍ରଚାର-ପ୍ରସାର କରନ୍ତୁ ।

ଉପର୍ଯ୍ୟୁକ୍ତ ପ୍ରବଚନ କରି ଅଗସ୍ତ୍ୟ ଦେଖୁ ଦେଖୁ ଗଣେଶ୍ୱର ରେଣୁକ ମନରେ ଶିବଙ୍କର ଧ୍ୟାନ କରି ଅନ୍ତର୍ହିତ ହୋଇଗଲେ । ତା'ପରେ ସ୍ୱେଚ୍ଛାରେ ଶରୀର ଧାରଣ କରୁଥିବା ଗଣେଶ୍ୱର ରେଣୁକ ଲଙ୍କାରେ ପହଞ୍ଚିଗଲେ। ସର୍ବାଗମବେତ୍ତା ଗଣେଶ୍ୱରଙ୍କୁ ଆସିଥିବାର ଦେଖି ବିଭୀଷଣ ତାଙ୍କୁ ନିଜ ମହଲକୁ ନେଇଗଲେ ଏବଂ ଭଦ୍ର ଆସନରେ ବସାଇ ପାଦ୍ୟ-ଅର୍ଘ୍ୟ ଆଦି ସମସ୍ତ ଉପଚାରରେ ତାଙ୍କର ପୂଜା କଲେ । ତା'ପରେ ସ୍ୱୟଂ ବିଭୀଷଣ ତାଙ୍କ ଆସନ ପାଖରେ ବସିଗଲେ । ବିଭୀଷଣ ହାତ ଯୋଡ଼ିକରି କହିଲେ – ହେ ଗଣନାୟକ, ଆପଣ ଶିବଙ୍କ ଆଜ୍ଞାରେ ଏହି ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି ବୋଲି ଶୁଣିଛି । ମୋର ସୌଭାଗ୍ୟରୁ ସାକ୍ଷାତ୍ ମହେଶ୍ୱରରୂପ ଆପଣ ମୋର ଘରକୁ ଆସିଛନ୍ତି । ଏହି କାରଣରୁ ମୁଁ ଏବଂ ମୋର ନଗରୀ ଲଙ୍କା କୃତାର୍ଥ ହୋଇଗଲୁ । ଏହା ଶୁଣି ଗଣେଶ୍ୱର ବିଭୀଷଣଙ୍କୁ କହିଲେ – ହେ ଭଗବାନ୍ ! ସୁକୃତ ଯେତେବେଳେ ପରିପକ୍ୱ ହୋଇଯାଏ, ସେତେବେଳେ ସ୍ୱୟଂ ଫଳ ଦେଇଥାଏ । ତଥାପି ମତେ ଗୋଟିଏ ବର ଦିଅନ୍ତୁ । ମୋର ଭାଇ ରାବଣ ଯୁଦ୍ଧରେ ରାମଶରରେ ବିଦ୍ଧ ହୋଇ ମତେ ଡାକି କହିଥିଲେ – ହେ ବିଭୀଷଣ, ମୁଁ ଏହି ଲଙ୍କାରେ ନଅ କୋଟି ଶିବଲିଙ୍ଗ ସ୍ଥାପନାର ସଙ୍କଳ୍ପ କରିଥିଲି । ଛଅ କୋଟିର ସ୍ଥାପନା ମୁଁ କରିଛି । ଶେଷ ତିନିକୋଟିର ସ୍ଥାପନା ତୁ କରିବୁ । ହେ ଗଣେଶ୍ୱର ! ଏକାଥରକେ

ଏତେ ଶିବଲିଙ୍ଗର ସ୍ଥାପନା କରିବା ଅସମ୍ଭବ ଜାଣି ମୁଁ ଚିନ୍ତାଗ୍ରସ୍ତ ଥିଲି । ଆପଣ ମୋର ଇଚ୍ଛା ପୂର୍ଣ୍ଣ କରନ୍ତୁ । ଭଗବାନ୍ ରେଣୁକ ବିଭୀଷଣଙ୍କର ପ୍ରାର୍ଥନା ଅନୁସାରେ ତିନି କୋଟି ଶରୀର ଧାରଣ କରି ସେହି କ୍ଷଣି ତିନି କୋଟି ଶିବଲିଙ୍ଗର ସ୍ଥାପନା କରିଦେଲେ । ବିଭୀଷଣ ଗଣେଶ୍ୱରଙ୍କର ଏପରି ମାହାତ୍ମ୍ୟ ଦେଖି ବିସ୍ମିତ ହୋଇ ତାଙ୍କ ଚରଣରେ ନତ ମସ୍ତକ ହୋଇଗଲେ । ରେଣୁକାଚାର୍ଯ୍ୟ ତାଙ୍କୁ ଅନୁଗୃହୀତ କରି ଅନ୍ତର୍ହିତ ହୋଇଗଲେ ।

ପୃଥିବୀ ମଣ୍ଡଳରେ ଏଠାରେ ସେଠାରେ ବୁଲି ଲୋକଙ୍କ କଲ୍ୟାଣ କରି ରେଣୁକ କୋଲ୍ଲିପାକ୍ୟ ନାମକ ନିଜର ପୁରକୁ ଆସିଗଲେ । ସେଠାରେ ଲୋକଙ୍କ ଦ୍ୱାରା ପୂଜିତ ହୋଇ ସେ ସୋମେଶ୍ୱର ମନ୍ଦିରକୁ ଆସିଲେ ଏବଂ ଭକ୍ତିପୂର୍ବକ ଶିବଙ୍କର ସ୍ତୁତି କଲେ । ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ୍ ନିଜର ସେହି ଲିଙ୍ଗରୁ ଶବ୍ଦ ଉଚ୍ଚାରଣ କଲେ – ହେ ବତ୍ସ, ଆସ । ମୁଁ ତୁମ ଉପରେ ପ୍ରସନ୍ନ । ଏହା ଶୁଣି ଗଣେଶ୍ୱର ରେଣୁକ ଜ୍ୟୋତିସ୍ୱରୂପ ହୋଇ ସୋମେଶ୍ୱର ଲିଙ୍ଗରେ ସମାବିଷ୍ଟ ହୋଇଗଲେ ।



# ଶ୍ରୀସିଦ୍ଧାନ୍ତଶିଖାମଣିଃ
## ବିଷୟାନୁକ୍ରମଣୀ

| ବିଷୟାଃ | ପୃଷ୍ଠାଙ୍କାଃ |
|---|---|

| ବିଷୟାଃ | ପୃଷ୍ଠାଙ୍କାଃ |
|---|---|

ଶ୍ରୀଃ

# ଶ୍ରୀଶିବଯୋଗିଶିବାଚାର୍ଯ୍ୟବିରଚିତଃ

# ଶ୍ରୀସିଦ୍ଧାନ୍ତଶିଖାମଣିଃ

ଶ୍ରୀମରିତୋଣ୍ଟଦାର୍ଯ୍ୟରଚିତତତ୍ତ୍ୱପ୍ରଦୀପିକାଖ୍ୟୟା ସଂସ୍କୃତଟୀକୟା ଆଚାର୍ଯ୍ୟ-ରାଧେଶ୍ୟାମଚତୁର୍ବେଦିକୃତ 'ଜ୍ଞାନବତୀ' ହିନ୍ଦୀବ୍ୟାଖ୍ୟାୟାଶ୍ଚ ଓଡ଼ିଆବ୍ୟାଖ୍ୟୟାସମ୍ୱଳିତଃ।

## ପ୍ରଥମଃ ପରିଚ୍ଛେଦଃ

ଶ୍ରୀନାଥଃ ସୋମମୂର୍ତ୍ତିର୍ଜୟତି ପରଶିବସ୍ତ୍ର୍ୟମ୍ବକସ୍ତାରରୂପଃ
ସ୍ୱଚ୍ଛଶ୍ରୀବ୍ରହ୍ମରନ୍ଧ୍ରସ୍ଥିତସିତଜଳ ପ୍ରୋଦ୍ୟଦବ୍ଜତ୍ରିକୋଣେ ।
ଇଚ୍ଛାଜ୍ଞାନକ୍ରିୟାଖ୍ୟେ ତ୍ରିବିଧଲିପିମୟେ ହକ୍ଷଲାର୍ଣାଗ୍ରପାର୍ଶ୍ୱେ
କୃଷ୍ଣାର୍ଣୌନ୍ମୁଖବିନ୍ଦୌ ଚିଦଚିଦୁଦୟକୃଦ୍ ଦୃକ୍କ୍ରିୟାଗ୍ନିଂଦ୍ୱୟାଢ୍ୟଃ ।।

ଅନେକବିଧସିଦ୍ଧାନ୍ତଶିଖାମଣିମନାମୟମ୍ ।
ଶ୍ରୀବୀରଶୈବସିଦ୍ଧାନ୍ତମେକୋତ୍ତରଶତସ୍ଥଳମ୍ ।।
ରେଣୁକାଗସ୍ତ୍ୟସମ୍ୱାଦଂ ନିଗମାଗମବିଶ୍ରୁତମ୍ ।
ପ୍ରଦୀପୟତି ଗୁପ୍ତାର୍ଥମୁଦ୍ଧୃତ୍ୟ ଶିବଯୋଗିରାଟ୍ ।।

## ଶିବସ୍ତୁତିଃ

ଅତ୍ର କଳିକାଳପ୍ରବେଶାନନ୍ତରଂ ଲୋକହିତାର୍ଥଂ ରେଣୁକଗଣେଶ୍ୱର ଇତି ପ୍ରସିଦ୍ଧୋ ରେବଣସିଦ୍ଧେଶ୍ୱରଃ କୁମ୍ଭସମ୍ଭବାୟବୀରଶୈବଶାସ୍ତ୍ରମୁପଦିଷ୍ଟବାନ୍ । ତଦନନ୍ତରଂ ରେବଣସିଦ୍ଧେଶ୍ୱରଦୃଷ୍ଟିଗର୍ଭସମ୍ଭୂତସିଦ୍ଧରାମେଶ୍ୱରସମ୍ପ୍ରଦାୟପ୍ରସିଦ୍ଧଃ ସକଳ-ନିଗମାଗମପରାଗଃ ଶିବଯୋଗିଶ୍ୱର ଇତ୍ୟଭିଧାନବାନ୍ କଶ୍ଚିନ୍ ମାହେଶ୍ୱରଃ ତଦ୍ରେଣୁକାଗସ୍ତ୍ୟସଂବାଦଂ ନିର୍ବିଘ୍ନେନ ସ୍ୱଶିଷ୍ୟାନ୍ ବୋଧୟିତୁଂ ସ୍ୱମନସି କୃତସକଳ-ସିଦ୍ଧାନ୍ତଶ୍ରେଷ୍ଠନିଗମାଗମୈକ୍ୟଗର୍ଭୀକାଲକ୍ଷଣସ୍ୱେଷ୍ଟଦେବତାନମସ୍କାରରୂପମଙ୍ଗଳଂ ଶିଷ୍ୟଶିକ୍ଷାର୍ଥଂ ସପ୍ତଭିଃ ଶ୍ଳୋକୈର୍ନିବଧ୍ନାତି –

**ତ୍ରୈଲୋକ୍ୟସମ୍ପଦାଲେଖ୍ୟସମୁଲ୍ଲେଖନଭିତ୍ତୟେ ।**
**ସଚ୍ଚିଦାନନ୍ଦରୂପାୟ ଶିବାୟ ବ୍ରହ୍ମଣେ ନମଃ ।। ୧ ।।**

ଜଗଦ୍ରୂପମାୟିକସମ୍ପଚ୍ଚିତ୍ରସମୁଲ୍ଲେଖନାଧାରଭିତ୍ତିରୂପାୟ ସଚ୍ଚିଦାନନ୍ଦସ୍ୱରୂପାୟ

ଜୀବବିଲକ୍ଷଣାୟ ବ୍ରହ୍ମଣେ ବେଦାନ୍ତପ୍ରତିପାଦ୍ୟାୟ ଶିବାୟ ଶିବସିଦ୍ଧାନ୍ତପ୍ରସିଦ୍ଧପରମଶିବାୟ ନମ ଇତ୍ୟର୍ଥଃ ।। ୧ ।।

– ତ୍ରୈଲୋକ୍ୟରୂପୀ ସମ୍ପତ୍ତିର ଚିତ୍ରର ଚିତ୍ରଣର ଆଧାର, ସଚ୍ଚିଦାନନ୍ଦରୂପ ବ୍ୟାପକ ଶିବଙ୍କୁ ନମସ୍କାର ।। ୧ ।।

**ବ୍ରହ୍ମେତି ବ୍ୟପଦେଶସ୍ୟ ବିଷୟଂ ଯଂ ପ୍ରଚକ୍ଷତେ ।**
**ବେଦାନ୍ତିନୋ ଜଗନ୍ମୂଲଂ ତଂ ନମାମି ପରଂ ଶିବମ୍ ।। ୨ ।।**

ବ୍ରହ୍ମେତି ବ୍ୟପଦେଶସ୍ୟ ପରବ୍ରହ୍ମେତି ଶବ୍ଦସ୍ୟ ବେଦାନ୍ତିନୋ ଯଂ ପରମାତ୍ମାନଂ ବିଷୟମର୍ଥଂ ପ୍ରଚକ୍ଷତେ, ତଂ ଜଗତ୍କାରଣଂ ପରଶିବଂ ଶିବସିଦ୍ଧାନ୍ତପ୍ରସିଦ୍ଧପରମଶିବଂ ନମାମୀତ୍ୟର୍ଥଃ ।। ୨ ।।

– ବେଦାନ୍ତୀ ଲୋକ ଯାହାଙ୍କୁ 'ବ୍ରହ୍ମ' ବ୍ୟବହାରର ବିଷୟ କହନ୍ତି, ସଂସାରର ମୂଳ ସେହି ପରମଶିବଙ୍କୁ ମୁଁ ପ୍ରଣାମ କରୁଛି ।। ୨ ।।

**ଯସ୍ୟୋର୍ମିବୁଦ୍‌ବୁଦାଭାସଃ ଷଟ୍‌ତ୍ରିଂଶତ୍ତତ୍ତ୍ୱସଞ୍ଚୟଃ ।**
**ନିର୍ମଲଂ ଶିବନାମାନଂ ତଂ ବନ୍ଦେ ଚିନ୍ମହୋଦଧିମ୍ ।। ୩ ।।**

ଶିବାଦିକ୍ଷିତ୍ୟନ୍ତ ଷଟ୍‌ତ୍ରିଂଶତ୍ତତ୍ତ୍ୱସମୂହୋ ଯସ୍ୟ ପରଶିବାଖ୍ୟଚିଦ୍‌ସମୁଦ୍ରସ୍ୟ ଊର୍ମିବୁଦ୍‌ବୁଦାଭାସୋ ଘୃତକାଠିନ୍ୟନ୍ୟାନେନୈକଦେଶେ ତରଙ୍ଗାଦିବଦାଭାତି, ନିର୍ମଲଂ ମଲତ୍ରୟରହିତଂ ଶିବନାମାନଂ ତଂ ଚିନ୍ମହୋଦଧିଂ ବନ୍ଦେ ନମସ୍କରୋମୀତ୍ୟର୍ଥଃ ।।୩।।

– ଛତିଶୀ ତତ୍ତ୍ୱମାନଙ୍କର ସମୂହ ଯାହାର ଢେଉ, ପାଣି ଫୋଟକା (ବୁଦ୍ ବୁଦ୍) ଓ ଆଭାସ ଅଟେ, ଶିବ ନାମକ ସେହି ନିର୍ମଳ ଚିତ୍ ସିନ୍ଧୁଙ୍କର ମୁଁ ବନ୍ଦନା କରୁଛି ।।୩।।

**ଯଦ୍‌ଭାସା ଭାସତେ ବିଶ୍ୱଂ ଯଦ୍ ସୁଖେନାନୁମୋଦତେ ।**
**ନମସ୍ତସ୍ମୈ ଗୁଣାତୀତବିଭବାୟ ପରାତ୍ମନେ ।। ୪ ।।**

'ତସ୍ୟ ଭାସା ସର୍ବମିଦଂ ବିଭାତି'[୧] ଇତି ଶ୍ରୁତେର୍ବିଶ୍ୱଂ ଯସ୍ୟ ପରବ୍ରହ୍ମଣଃ ପ୍ରକାଶେନ ପ୍ରକାଶତେ, 'ଅସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି'[୨] ଇତି ଶ୍ରୁତେଃ ଯତ୍‌ପରବ୍ରହ୍ମସୁଖେନାନୁମୋଦତେ, ତସ୍ମୈ ମାୟିକ ସତ୍ତ୍ୱରଜସ୍ତମୋଗୁଣାତୀତବିଭବାୟ ପରମାତ୍ମନେ ଶିବାୟ ନମ ଇତ୍ୟର୍ଥଃ ।। ୪ ।।

– ଯାହାଙ୍କର ପ୍ରକାଶରେ ବିଶ୍ୱ ପ୍ରକାଶିତ ହୁଏ, ଯାହାଙ୍କର ଆନନ୍ଦରେ ଏହା

---

୧. କଠୋପନିଷଦ୍, ୨/୫/୧୫ ।

୨. ବୃ. ଉ., ୪/୩/୩୨ ।

ଆନନ୍ଦିତ ହୁଏ, ଗୁଣାତୀତ ତଥା ବୈଭବ ସମ୍ପନ୍ନ ସେହି ପରମାତ୍ମାଙ୍କୁ ନମସ୍କାର ।। ୪ ।।

**ସଦାଶିବ ମୁଖାଶେଷତତ୍ତ୍ୱୋନ୍ମେଷବିଧାୟିନେ ।**
**ନିଷ୍କଲଙ୍କସ୍ୱଭାବାୟ ନମଃ ଶାନ୍ତାୟ ଶମ୍ଭବେ ।। ୫ ।।**

ମୟୂରାଣ୍ଡରସନ୍ୟାୟେନ[୩] ସ୍ୱବିମର୍ଶଶକ୍ତିସାମରସ୍ୟାପନ୍ନସଦାଶିବାଦିଭୂମ୍ୟନ୍ତଷଟ୍ - ତ୍ରିଂଶତ୍ତତ୍ତ୍ୱବିଳାସକାରିଣେ ବିଶ୍ୱଦୋଷରହିତସ୍ୱରୂପାୟ ସୁଖଭୋକ୍ତ୍ରେ ସୁଖଧାତ୍ରେ ଶମ୍ଭବେ ନମ ଇତ୍ୟର୍ଥଃ ।। ୫ ।।

– ସଦାଶିବଙ୍କଠାରୁ ଆରମ୍ଭ କରି ପୃଥିବୀ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱମାନଙ୍କର ଉନ୍ମେଷକର୍ତ୍ତା, ନିଷ୍କଲଙ୍କ ସ୍ୱଭାବ ଶାନ୍ତ ଶମ୍ଭୁଙ୍କୁ ନମସ୍କାର ।। ୫ ।।

**ସ୍ୱେଚ୍ଛାବିଗ୍ରହଯୁକ୍ତାୟ ସ୍ୱେଚ୍ଛାବର୍ତନବର୍ତିନେ ।**
**ସ୍ୱେଚ୍ଛାକୃତତ୍ରିଲୋକାୟ ନମଃ ସାମ୍ବାୟ ଶମ୍ଭବେ ।। ୬ ।।**

'ସ୍ଥିରେଭିରଙ୍ଗୈଃ ପୁରୁରୂପ ଉଗ୍ରଃ' ଇତି ଶ୍ରୁତେର୍ଭକ୍ତାନୁଗ୍ରହାର୍ଥଂ ସ୍ୱେଚ୍ଛାକଳ୍ପିତଦିବ୍ୟମଙ୍ଗଳ ବିଗ୍ରହଯୁକ୍ତାୟ ସ୍ୱଚ୍ଛନ୍ଦଧାରିଣେ ସ୍ୱେଚ୍ଛାଶକ୍ତିନିର୍ମିତଲୋକତ୍ରୟାୟ ପାର୍ବତୀପତୟେ ପରଶିବାୟ ନମ ଇତ୍ୟର୍ଥଃ ।। ୬ ।।

– ନିଜର ଇଚ୍ଛାରେ ଶରୀର ଧାରଣ କରୁଥିବା, ନିଜର ଇଚ୍ଛାରେ ହିଁ ବ୍ୟବହାର (ଆଚରଣ) କରୁଥିବା ତଥା ନିଜର ଇଚ୍ଛା ଶକ୍ତିରେ ହିଁ ତ୍ରୈଲୋକ୍ୟର ରଚନା କରୁଥିବା ମାତା ସହିତ ଶିବଙ୍କୁ ନମସ୍କାର ।। ୬ ।।

**ଯତ୍ର ବିଶ୍ରାମ୍ୟତୀଶତ୍ୱଂ ସ୍ୱାଭାବିକମନୁତ୍ତମମ୍ ।**
**ନମସ୍ତସ୍ମୈ ମହେଶାୟ ମହାଦେବାୟ ଶୂଳିନେ ।। ୭ ।।**

ଯତ୍ର ବେଦାଗମପ୍ରସିଦ୍ଧପରବ୍ରହ୍ମାଖ୍ୟପରଶିବେ ଅନୁତ୍ତମଂ ବିଶ୍ୱତଃ ଶ୍ରେଷ୍ଠଂ ସ୍ୱାଭାବିକମମାୟୀୟଶତ୍ୱମୁମାମହେଶ୍ୱରତ୍ୱଂ ବିଶ୍ରାମ୍ୟତି ।

ଘୃତକାଠିନ୍ୟବନ୍ମୂର୍ତ୍ତିଃ ସଚ୍ଚିଦାନନ୍ଦଲକ୍ଷଣା ।
ଶିବାଭିଧେନ ସୈବାସ୍ତି ଶିବ ଏବ ହି ସା ସଦା ।।

ଇତି ସୂତଗୀତୋକ୍ତେସ୍ତାଦାତ୍ମ୍ୟଂ ଭଜତେ, ତସ୍ମୈ ମହେଶ୍ୱରାୟ 'ତମୀଶ୍ୱରାଣାଂ ପରମଂ ମହେଶ୍ୱରମ୍' ଇତି ଶ୍ରୁତେର୍ବ୍ରହ୍ମାଦିକାରଣେଶ୍ୱରାୟ ମହାଦେବାୟ ଅପରିମିତ-

---

୩. ଯଥା ମୟୂରନାମ୍ନଃ ପକ୍ଷିଣୋଣ୍ଡସ୍ୟ ରସେ ନାନାବିଧରାଗବଦ୍ବର୍ହମୟଂ ଶରୀରଂ,ପ୍ରଚ୍ଛନ୍ନଂ ଭବତି, କାଳକ୍ରମେଣ ବହିରାବିର୍ଭବତି, ତଥୈବ ଶିବସ୍ୟ ବିଶ୍ୱୋତ୍ତୀର୍ଣ୍ଣତାଦଶାୟାଂ ସର୍ବଂ ବୈଚିତ୍ର୍ୟମୟଂ ଜଗତ୍ ପରମଶିବେ ପ୍ରଚ୍ଛନ୍ନଂ ସତ୍ ତିଷ୍ଠତି କାଳକ୍ରମେଣ ଚାବିର୍ଭବତି ।

୪. ଅଥ. ଉ. ୨–୩

ପ୍ରକାଶରୂପାୟ ଶୂଳିନେ ଇଚ୍ଛାଜ୍ଞାନକ୍ରିୟାଶକ୍ତିମୟତ୍ରିଶୂଳିନେ ପରମଶିବାୟ ନମ ଇତ୍ୟର୍ଥଃ । ଅନେନାୟଂ ସିଦ୍ଧାନ୍ତୋ ନିର୍ବିଶେଷବ୍ରହ୍ମାଦ୍ୱୈତଲକ୍ଷଣ ଇତ୍ୟନୁସନ୍ଧେୟଃ । ଏବଂ ବିଧଶ୍ଳୋକସପ୍ତକପ୍ରତିପାଦିତଂ ବସ୍ତୁ ତତ୍‌ପରଂ ବ୍ରହ୍ମ ସ ଏକଃ 'ସ ଏକୋ ରୁଦ୍ରଃ ସ ଈଶାନଃ ସ ଭଗବାନ୍ ସ ମହେଶ୍ୱରଃ ସ ମହାଦେବଃ'[୪] ଇତ୍ୟଥର୍ବଶିର ଉପନିଷଦୁକ୍ତ-ପ୍ରକାରେଣୈକମେବେତି ଶିବାଦ୍ୱୈତଶାସ୍ତ୍ରପ୍ରବୀଣୈରବଗନ୍ତବ୍ୟମ୍ ।

– ଯାହାଙ୍କଠାରେ ଐଶ୍ୱର୍ଯ୍ୟର ପରାକାଷ୍ଠା ଅଛି, ଯିଏ ସ୍ୱଭାବତଃ ସର୍ବୋତ୍ତମ ଅଟନ୍ତି, ତ୍ରିଶୂଳଧାରୀ ସେହି ମହାଦେବ ମହେଶଙ୍କୁ ନମସ୍କାର ।। ୭।।

## ଶକ୍ତିସ୍ତୁତିଃ

ଏବଂ ବେଦାଗମସମ୍ମତ୍ୟା ସପ୍ତଭିଃ ଶ୍ଳୋକୈଃ ଶିବଂ ନମସ୍କୃତ୍ୟ ତଥୈବ ବେଦାଗମାଦିପ୍ରସିଦ୍ଧନିତ୍ୟସମବେତଶିବଶକ୍ତିଂ ପଞ୍ଚଭିଃ ଶ୍ଳୋକୈଃ ପ୍ରସ୍ତୌତି –

**ଯାମାହୁଃ ସର୍ବଲୋକାନାଂ ପ୍ରକୃତିଂ ଶାସ୍ତ୍ରପାରଗାଃ ।**
**ତାଂ ଧର୍ମଚାରିଣୀଂ ଶମ୍ଭୋଃ ପ୍ରଣମାମି ପରାଂ ଶିବାମ୍।। ୮ ।।**

ବେଦାଗମାଦିଶାସ୍ତ୍ରପାରଙ୍ଗତାଃ ଶିବଜ୍ଞାନିନୋ ଯାଂ ପରଶିବସମବେତଶକ୍ତିଂ ସର୍ବ-ଲୋକାନାଂ ପ୍ରକୃତିଂ ମୂଳକାରଣୀଭୂତଜ୍ଞାନକ୍ରିୟାସାମରସ୍ୟାତ୍ମିକାମାହୁଃ, ତାଂ ଶମ୍ଭୋର୍ଧର୍ମଚାରିଣୀଂ ଧର୍ମସ୍ୱରୂପାଂ ପରାଂ ସର୍ବୋତ୍କୃଷ୍ଟାଂ ଶିବାଂ ଭବାନୀଂ ପ୍ରଣମାମୀତ୍ୟର୍ଥଃ।। ୮ ।।

– ଶାସ୍ତ୍ରର ପାରଙ୍ଗତ ବିଦ୍ୱାନ୍ ଯାହାଙ୍କୁ ସମସ୍ତ ଲୋକର ମୂଳକାରଣ ମାନନ୍ତି, ଶିବଙ୍କର ଧର୍ମପତ୍ନୀ ସେହି ପରମା ଶିବାଙ୍କୁ ମୁଁ ପ୍ରଣାମ କରୁଛି ।। ୮ ।।

**ଯୟା ମହେଶ୍ୱରଃ ଶମ୍ଭୁର୍ନାମରୂପାଦିସଂଯୁତଃ ।**
**ତସ୍ୟୈ ମାୟାସ୍ୱରୂପାୟୈ ନମଃ ପରମଶକ୍ତୟେ ।। ୯ ।।**

ଯୟା ସ୍ୱସମବେତଶକ୍ତ୍ୟା ମହେଶ୍ୱରୋ ବ୍ରହ୍ମାଦିସର୍ବକାରଣେଶ୍ୱରଃ ଶମ୍ଭୁଃ ଶିବଃ 'ଶକ୍ତ୍ୟୋ' ଯୟା ଶମ୍ଭୁର୍ଭୁକ୍ତୌ ମୁକ୍ତୌ ଚ ପଶୁପଣସ୍ୟାସ୍ୟ ଇତି ତତ୍ତ୍ୱପ୍ରକାଶ ବାକ୍ୟାନୁସାରେଣ ନାମରୂପକ୍ରିୟାବିଶିଷ୍ଟୋ[୫] ଜୀବାନାଂ ଭୁକ୍ତିମୁକ୍ତିପ୍ରଦଃ ସ୍ୟାତ୍, ତସ୍ୟୈ ମାୟାସ୍ୱରୂପାୟୈ 'ମାୟାଂ ତୁ ପ୍ରକୃତିଂ ବିନ୍ଦ୍ୟାନ୍ ମାୟିନଂ ତୁ ମହେଶ୍ୱରମ୍'[୬] ଇତି ଶ୍ରୁତେଃ ପ୍ରତିସ୍ଫୁରଣଗତ୍ୟା

---

୫. ଅସ୍ତି ଭାତି ପ୍ରିୟଂ ନାମ ରୂପଂ ଚେତ୍ୟଂଶପଞ୍ଚକମ୍ ।
ଆଦ୍ୟଂ ତ୍ରୟଂ ବ୍ରହ୍ମରୂପଂ ଜଗଦ୍‌ରୂପମଥ ଦ୍ୱୟମ୍ ।। (ପଞ୍ଚଦଶୀ)

୬. ଶ୍ୱେ. ଉ., ୪/୧୦

ଜଗଦୁପାଦାନକାରଣୀଭୂତସତ୍ତ୍ୱରଜସ୍ତମୋଗୁଣାତ୍ମମାୟାଖ୍ୟମୂଳପ୍ରକୃତ୍ୟୈ ପରମଶକ୍ତ୍ୟୈ ପରମଶିବସମବେତନିତ୍ୟଶକ୍ତ୍ୟୈ ନମ ଇତ୍ୟର୍ଥଃ।। ୯।।

– ଯାହାଙ୍କ ନିମନ୍ତେ ମହେଶ୍ୱର ନାମ-ରୂପ ଆଦି (ଗୁଣ, ସଂଖ୍ୟା, ପରିମାଣ ଆଦି)ରେ ଯୁକ୍ତ ହୋଇ ଶମ୍ଭୁ କଥିତ ହୁଅନ୍ତି ଅଥବା ଯାହାଙ୍କ ନିମନ୍ତେ ନାମ, ରୂପ ଆଦିରେ ଯୁକ୍ତ ଶମ୍ଭୁ ମହେଶ୍ୱର କଥିତ ହୁଅନ୍ତି, ମାୟାସ୍ୱରୂପା ସେହି ପରମଶକ୍ତିଙ୍କୁ ନମସ୍କାର ।। ୯।।

**ଶିବାଦ୍ୟାଦିସମୁଦ୍ଭୂତପନ୍ନଶାନ୍ତ୍ୟତୀତପରୋତ୍ତରାମ୍ ।**
**ମାତରଂ ତାଂ ସମସ୍ତାନାଂ ବନ୍ଦେ ଶିବକରୀଂ ଶିବାମ୍।। ୧୦।।**

ଶିବାତ୍ ପରଶିବାଦାଦ୍ୟାଦିପଟଗତଶୁକ୍ଲତ୍ୱବତ୍ ପୂର୍ବଂ ସମୁତ୍ପନ୍ନନିବୃତ୍ତିପ୍ରତିଷ୍ଠାବିଦ୍ୟା ଶାନ୍ତିଶାନ୍ତ୍ୟତୀତକଳାପରକୁଣ୍ଡଳିନୀଶକ୍ତ୍ୟପେକ୍ଷୟା ଉତ୍ତରାଂ ଶ୍ରେଷ୍ଠାଂ ସମସ୍ତାନାଂ ମାତରଂ ଶିବକରୀଂ ମଙ୍ଗଳକରୀଂ ତାଂ ଶିବାଂ ସର୍ବମଙ୍ଗଳାଂ ନମାମୀତ୍ୟର୍ଥଃ।। ୧୦।।

– ଯିଏ ଶିବଙ୍କଠାରୁ ସର୍ବପ୍ରଥମ ଉତ୍ପନ୍ନ ହେଲେ ତଥା ଶାନ୍ତ୍ୟତୀତ କଳାଠାରୁ ଶ୍ରେଷ୍ଠ ଏବଂ ସମସ୍ତ କଳାମାନଙ୍କଠାରୁ ଉତ୍ତର ଅଥବା ସମସ୍ତ ସୃଷ୍ଟିର ମାତୃସ୍ୱରୂପା ମଙ୍ଗଳକାରିଣୀ, ସେହି ଶିବାଙ୍କର ମୁଁ ବନ୍ଦନା କରୁଛି ।। ୧୦।।

**ଇଚ୍ଛାଜ୍ଞାନାଦିରୂପେଣ ଯା ଶମ୍ଭୋର୍ବିଶ୍ୱଭାବିନୀ ।**
**ବନ୍ଦେ ତାଂ ପରମାନନ୍ଦପ୍ରବୋଧଲହରୀଂ ଶିବାମ୍ ।। ୧୧।।**

ଶମ୍ଭୋଃ ପରମେଶ୍ୱରସ୍ୟ ଯା ସମବେତଶକ୍ତିଃ, ଇଚ୍ଛାଜ୍ଞାନାଦିରୂପେଣ

ପରାସ୍ୟ ଶକ୍ତିର୍ବିମଳା ବିତର୍କା ସ୍ୱାଭାବିକୀ ରୁଦ୍ରସମାନଧର୍ମିଣୀ।
ଜ୍ଞାନକ୍ରିୟେଚ୍ଛାଦିସହସ୍ରରୂପା ତନ୍ମେ ମନଃ ଶିବସଂକଳ୍ପମସ୍ତୁ।।[୭]

ଇତି ଶ୍ରୁତେରିଚ୍ଛାଦିରୂପେଣ ବିଶ୍ୱଭାବିନୀ ବିଶ୍ୱପ୍ରକାଶିନୀ, ତାଂ ପରମାନନ୍ଦପ୍ରବୋଧଲହରୀଂ ଚିଦାନନ୍ଦୋଲ୍ଲଣାଂ ଶିବାଂ ବନ୍ଦେ ଇତ୍ୟର୍ଥଃ ।। ୧୧।।

– ଯିଏ ଶିବଙ୍କର ଇଚ୍ଛା ଜ୍ଞାନ ଆଦି (କ୍ରିୟା) ରୂପରେ ବିଶ୍ୱର ପ୍ରକାଶିକା ଅଟନ୍ତି, ପରମାନନ୍ଦ ପ୍ରବୋଧର ଲହଡ଼ି (ଢେଉ) ସ୍ୱରୂପା ସେହି ଶିବାଙ୍କର ମୁଁ ବନ୍ଦନା କରୁଛି ।। ୧୧।।

**ଅମୃତାର୍ଥଂ ପ୍ରପନ୍ନାନାଂ ଯା ସୁବିଦ୍ୟାପ୍ରଦାୟିନୀ ।**
**ଅହର୍ନିଶମହଂ ବନ୍ଦେ ତାମୀଶାନମନୋରମାମ୍ ।। ୧୨।।**

ଅମୃତାର୍ଥଂ ମୁକ୍ତ୍ୟର୍ଥଂ ପ୍ରପନ୍ନାନାଂ ଶରଣାଗତାନାଂ ଯା ଶିବସମବେତଶକ୍ତିଃ ସୁବିଦ୍ୟା-

---

୭. ଶି. ସଂ.

ପ୍ରଦାୟିନୀ 'ବେଦାନ୍ତବାକ୍ୟଜା ବିଦ୍ୟା' ଇତି ସୂତସଂହିତୋକ୍ତେସ୍ତତ୍ତ୍ୱମସ୍ୟାଦି ବେଦାନ୍ତ-ମହାବାକ୍ୟପ୍ରକାଶିତଶିବାଜୀବୈକ୍ୟବିଦ୍ୟାପ୍ରଦାୟିନୀ, ତାଂ ଶିବପ୍ରାଣକାନ୍ତାମହର୍ନିଶଂ ବନ୍ଦେ ନମସ୍କରୋମୀତ୍ୟର୍ଥଃ। 'ଅନନ୍ୟା ସ୍ୟାଚ୍ଛିବା ସୈବ ବସ୍ତୁତୋ ମୂର୍ତ୍ତିରେଶ୍ୱରୀ' ଇତି ପୌଷ୍କରବଚନାଦେତଦ୍ ପଞ୍ଚସୂତ୍ରପ୍ରତିପାଦିତାଂ ଶକ୍ତିଂ ଶିବାଭେଦେନୈବ ପରାମୃଶେଦିତି ।। ୧୨ ।।

– ଅମରତ୍ୱ ନିମନ୍ତେ ଶରଣରେ ଆସିଥିବା ଭକ୍ତମାନଙ୍କୁ ଯିଏ ସଦ୍‌ବିଦ୍ୟା ଦିଅନ୍ତି ବୋଲି କୁହାଯାଇଛି, ଈଶାନଙ୍କର ମନୋରମା ସେହି ଶିବାନୀଙ୍କର ମୁଁ ଦିନରାତି ବନ୍ଦନା କରୁଛି ।। ୧୨ ।।

## ଗ୍ରନ୍ଥକାରବଂଶବର୍ଣ୍ଣନମ୍

ଏବଂ ସଂଗ୍ରହେଣ ପାର୍ବତୀପରମେଶ୍ୱରୌ ନମସ୍କୃତ୍ୟାଦ୍ଧନନ୍ତରମଷ୍ଟଭିଃ ଶ୍ଳୋକୈଃ ଶିବଯୋଗିବଂଶାନୁଗତାଚାର୍ଯ୍ୟାନ୍ ପ୍ରକଟୟତି –

**କଶ୍ଚିଦାଚାରସିଦ୍ଧାନାମଗ୍ରଣୀଃ ଶିବଯୋଗିନାମ୍ ।**
**ଶିବଯୋଗୀତି ବିଖ୍ୟାତଃ ଶିବଜ୍ଞାନମହୋଦଧିଃ ।। ୧୩ ।।**

ଶିବଯୋଗିନାଂ ମଧ୍ୟେ ଅଗ୍ରଣୀଃ ଶ୍ରେଷ୍ଠଃ ଶିବଜ୍ଞାନମହୋଦଧିଃ ଶିବଜ୍ଞାନସ୍ୟ ସମୁଦ୍ରଃ, କଶ୍ଚିଦ୍ରେବଣସିଦ୍ଧେଶ୍ୱରଦୃଷ୍ଟିଗର୍ଭସମ୍ଭୂତସିଦ୍ଧରାମେଶ୍ୱରଃ, ଆଚାରସିଦ୍ଧାନାଂ ସଦାଚାରସମ୍ପନ୍ନାନାଂ ବଂଶେ ଶିବଯୋଗୀତି ବିଖ୍ୟାତଃ ଆସୀଦିତ୍ୟର୍ଥଃ ।। ୧୩ ।।

– ଆଚାରସିଦ୍ଧ ଶିବଯୋଗୀମାନଙ୍କ ମଧ୍ୟରେ ଅଗ୍ରଣୀ, ଶିବବିଷୟକ ଜ୍ଞାନର ସାଗର କେହି ଶିବଯୋଗୀ ପ୍ରସିଦ୍ଧ ଥିଲେ ।। ୧୩ ।।

**ଶିବଭକ୍ତିସୁଧାସିନ୍ଧୁଜୃମ୍ଭଣାମଲଚନ୍ଦ୍ରିକା ।**
**ଭାରତୀ ଯସ୍ୟ ବିଦଧେ ପ୍ରାୟଃ କୁବଲୟୋତ୍ସବମ୍ ।। ୧୪ ।।**

ଯସ୍ୟ ଶିବଯୋଗୀତି ପ୍ରସିଦ୍ଧସ୍ୟ ସିଦ୍ଧରାମେଶ୍ୱରସ୍ୟ ଭାରତୀ ବାକ୍ ଶିବଭକ୍ତି – ସୁଧାସମୁଦ୍ରବର୍ଧନସ୍ୟାମଲଚନ୍ଦ୍ରିକାପ୍ରାୟା ଆଧିକ୍ୟେନ କୁବଲୟୋତ୍ସବଂ ଭୂମଣ୍ଡଲାଖ୍ୟ-ନୀଲୋତ୍ପଲସ୍ୟୋତ୍ସବଂ ବିଦଧେ କୃତବତୀତ୍ୟର୍ଥଃ।। ୧୪ ।।

– ଯାହାଙ୍କର ଶିବଭକ୍ତିରୂପୀ ସୁଧା ସମୁଦ୍ରର ଜୃମ୍ଭଣ ଅର୍ଥାତ୍ ଆନନ୍ଦୋଚ୍ଛଳନ ପାଇଁ ଚନ୍ଦ୍ରିକା ସମାନ (ତୁଲ୍ୟ) ବାଣୀ ପ୍ରାୟଃ କୁବଲୟୋତ୍ସବ (କୁ ପୃଥିବୀ ର ବଳୟର ଉତ୍ସବ) ଅଥବା କୁବଳୟ ଅର୍ଥାତ୍ କମଳର ଉତ୍ସବ କରୁଥିଲା ।। ୧୪ ।।

ତଦେବ ବିବୃଣୋତି –

**ତସ୍ୟ ବଂଶେ ସମୁଦ୍‌ପନ୍ନୋ ମୁକ୍ତାମଣିରିବାମଲଃ ।**
**ମୁଦ୍‌ଦଦେବାଭିଧାଚାର୍ଯ୍ୟୋ ମୂର୍ଧନ୍ୟଃ ଶିବଯୋଗିନାମ୍ ।। ୧୫ ।।**

ତସ୍ୟ ସିଦ୍ଧରାମେଶ୍ୱରସ୍ୟ ବଂଶେ ଶିବବେଦିନାଂ ଶିବଜ୍ଞାନିନାଂ ମଧ୍ୟେ ମୂର୍ଧନ୍ୟଃ ଶ୍ରେଷ୍ଠୋ ମୁଦ୍‌ଦଦେବାଖ୍ୟାଚାର୍ଯ୍ୟୋ ନିର୍ମଲମୁକ୍ତାମଣିରିବ ସମୁଦ୍‌ପନ୍ନଃ, ଉଦ୍‌ଭୂତ୍ୱାନିତ୍ୟର୍ଥଃ ।। ୧୫ ।।

– ତାଙ୍କର ବଂଶରେ ନିର୍ମଳ ମୁକ୍ତାମଣି ପରି ମୁଦ୍‌ଦଦେବ ନାମକ ଆଚାର୍ଯ୍ୟ (ଉତ୍ପନ୍ନ) ଜନ୍ମ ହେଲେ ଯେ କି ଶିବଯୋଗୀମାନଙ୍କ ମଧ୍ୟରେ ମୂର୍ଧନ୍ୟ ଥିଲେ ।। ୧୫ ।।

**ମୁଦ୍ଦାନାଦ୍ ସର୍ବଜନ୍ତୂନାଂ ପ୍ରଣତାନାଂ ପ୍ରବୋଧତଃ ।**
**ମୁଦ୍ଦଦେବେତି ବିଖ୍ୟାତା ସମାଖ୍ୟା ଯସ୍ୟ ବିଶ୍ରୁତା ।। ୧୬ ।।**

ସର୍ବପ୍ରାଣିନାଂ ସନ୍ତୋଷଦାନାଦ୍ ପ୍ରଣତାନାଂ ପ୍ରବୋଧନାଦ୍ ମୁଦ୍‌ଦଦେବେତି ଯସ୍ୟାନ୍ୱର୍ଥରୂଢ଼ିଭ୍ୟାଂ ବିଖ୍ୟାତା ସମାଖ୍ୟା ବିଶ୍ରୁତା ଲୋକପ୍ରସିଦ୍ଧେତ୍ୟର୍ଥଃ ।। ୧୬ ।।

– ଶରଣାଗତ ସମସ୍ତ ଜୀବଙ୍କୁ ଆନନ୍ଦ ଦେବା ଏବଂ ପ୍ରଣତ ଜନଙ୍କୁ ପ୍ରବୁଦ୍ଧ କରିବା ହେତୁ ତାଙ୍କର ମୁଦ୍‌ଦେବ ନାମ ପ୍ରସିଦ୍ଧ ହେଲା ।। ୧୬ ।।

**ତସ୍ୟାସୀନ୍ନନ୍ଦନଃ ଶାନ୍ତଃ ସିଦ୍ଧନାଥାଭିଧଃ ଶୁଚିଃ ।**
**ଶିବସିଦ୍ଧାନ୍ତନିର୍ଣ୍ଣେତା ଶିବାଚାର୍ଯ୍ୟଃ ଶିବାତ୍ମକଃ ।। ୧୭ ।।**

ତସ୍ୟ ମୁଦ୍‌ଦଦେବସ୍ୟ ଶୁଚିଃ ପବିତ୍ରଃ ଶାନ୍ତଃ ରାଗଦ୍ୱେଷରହିତଃ, ଶିବାତ୍ମକଃ ଶିବସ୍ୱରୂପଃ, ଶିବସିଦ୍ଧାନ୍ତନିର୍ଣ୍ଣେତା ତ୍ରିପଦାର୍ଥଚତୁଷ୍ପାଦଯୁକ୍ତ ଶିବାଗମାର୍ଥନିର୍ଣ୍ଣାୟକଃ, ଶିବାଚାର୍ଯ୍ୟଃ ଶିବସମୟସ୍ଥାପନାଚାର୍ଯ୍ୟଃ, ସିଦ୍ଧନାଥାଭିଧଃ ସିଦ୍ଧରାମେଶ୍ୱରାଭିଧାସଂଯୁକ୍ତଃ ସିଦ୍ଧନାଥାଚାର୍ଯ୍ୟାଖ୍ୟୋ ନନ୍ଦନଃ କୁମାର ଆସୀଦଭବଦିତ୍ୟର୍ଥଃ ।। ୧୭ ।।

– ତାଙ୍କର ସିଦ୍ଧନାଥ ନାମକ ପୁତ୍ର ହେଲେ ଯିଏ କି ଶିବାତ୍ମକ ଏବଂ ଶିବସିଦ୍ଧାନ୍ତର ନିର୍ଣ୍ଣାୟକ ଶିବାଚାର୍ଯ୍ୟ ଥିଲେ ।। ୧୭ ।।

**ବୀରଶୈବଶିଖାରତ୍ନଂ ବିଶିଷ୍ଟାଚାରସମ୍ପଦମ୍ ।**
**ଶିବଜ୍ଞାନ ମହାସିନ୍ଧୁଂ ଯଂ ପ୍ରଶଂସନ୍ତି ଦେଶିକାଃ ।। ୧୮ ।।**

ବିଶିଷ୍ଟାଚାରସମ୍ପଦଂ ସଦାଚାରସମ୍ପନ୍ନଂ ଶିବଜ୍ଞାନମହାସିନ୍ଧୁଂ ଯଂ ସିଦ୍ଧନାଥାଚାର୍ଯ୍ୟଂ ଦେଶିକା ଆଚାର୍ଯ୍ୟା ବୀରଶୈବଶିଖାରତ୍ନଂ ବୀରଶୈବାନାଂ ଶିରୋମଣିଂ ଶ୍ରେଷ୍ଠଂ ସନ୍ତଂ ପ୍ରଶଂସନ୍ତି କଥୟନ୍ତୀତ୍ୟର୍ଥଃ ।। ୧୮ ।।

– ଆଚାର୍ଯ୍ୟଗଣ ଯାହାଙ୍କର ପ୍ରଶଂସା ବୀରଶୈବଚୂଡାମଣି, ବିଶିଷ୍ଟ ଆଚାରଯୁକ୍ତ ତଥା ଶିବଜ୍ଞାନ ମହାସିନ୍ଧୁ ରୂପରେ କରୁଥିଲେ ।। ୧୮ ।।

**ଯସ୍ୟାଚାର୍ଯ୍ୟକୁଲାଜ୍ଜାତା ସତାମାଚାରମାତୃକା ।**
**ଶିବଭକ୍ତିଃ ସ୍ଥିରା ଯସ୍ମିନ୍ ଜଜ୍ଞେ ବିଗତବିପ୍ଲବା ।। ୧୯ ।।**

ସତାଂ ସତ୍ପୁରୁଷାଣାମ୍ ଆଚାରମାତୃକା ଯସ୍ୟ ସିଦ୍ଧନାଥାଚାର୍ଯ୍ୟସ୍ୟ ଆଚାର୍ଯ୍ୟକୁଲାଦ୍ ଆଚାର୍ଯ୍ୟବଂଶାଦ୍ ଜାତା । ବିଗତବିପ୍ଲବା ବିଗତଦୋଷା ଶିବଭକ୍ତିରଷ୍ଟବିଧା ଯସ୍ମିନ୍ ସ୍ଥିରା ଜଜ୍ଞେ ଜାତେତ୍ୟର୍ଥଃ ।। ୧୯ ।।

– ଯାହାଙ୍କର ଆଚାର୍ଯ୍ୟକୁଳରେ ଉତ୍ପନ୍ନ ତଥା ସଜ୍ଜନମାନଙ୍କର ଆଚାରର ଜନନୀ ଶିବଭକ୍ତି ଉପଦ୍ରବ ରହିତ ହୋଇ ଯାହାଙ୍କଠାରେ ସ୍ଥିର ହୋଇଗଲା ।। ୧୯ ।।

**ତସ୍ୟ ବୀରଶିବାଚାର୍ଯ୍ୟଶିଖାରତ୍ନସ୍ୟ ନନ୍ଦନଃ ।**
**ଅଭବଚ୍ଛିବଯୋଗୀତି ସିନ୍ଧୋରିବ ସୁଧାକରଃ ।। ୨୦ ।।**

ବୀରଶୈବଶିଖାମଣେସ୍ତସ୍ୟ ସିଦ୍ଧନାଥାଚାର୍ଯ୍ୟସ୍ୟ ନନ୍ଦନଃ କୁମାରଃ, ସିନ୍ଧୋଃ ସମୁଦ୍ରସ୍ୟ ସୁଧାକର ଇବ ଶିବଯୋଗୀତି ଆସୀତ୍ ପ୍ରସିଦ୍ଧୋ ଜାତ ଇତ୍ୟର୍ଥଃ ।। ୨୦ ।।

– ବୀରଶୈବ ଶିବାଚାର୍ଯ୍ୟମାନଙ୍କର ମୁକୁଟମଣି ଭାବରେ ବିଦ୍ୟମାନ ସେହି ସିଦ୍ଧନାଥଙ୍କର ସମୁଦ୍ରରୁ ଚନ୍ଦ୍ରମା ପରି ଶିବଯୋଗୀ ନାମକ ପୁତ୍ର ହେଲେ ।। ୨୦ ।।

ଅଥୈତଚ୍ଛାସ୍ତ୍ରସଂଗ୍ରହକର୍ତ୍ତାଽୟଂ ଶିବଯୋଗୀ ଦ୍ୱାଦଶସୂତ୍ରୈଃ ସ୍ୱନାମପ୍ରଶଂସାପୂର୍ବକଂ ଶାସ୍ତ୍ରବତାରକ୍ରମଂ ନିରୂପୟତି –

**ଚିଦାନନ୍ଦପରାକାଶଶିବାନୁଭବଯୋଗତଃ ।**
**ଶିବଯୋଗୀତି ନାମୋକ୍ତିର୍ଯସ୍ୟ ଯାଥାର୍ଥ୍ୟ ଯୋଗିନୀ ।। ୨୧ ।।**

ଯସ୍ୟ ଆଚାର୍ଯ୍ୟସ୍ୟ 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ'[୮] 'ଆକାଶଶରୀରଂ ବ୍ରହ୍ମ'[୯] ଇତ୍ୟାଦି ଶ୍ରୁତେଶ୍ଚିଦାନନ୍ଦପରାକାଶରୂପଶିବାନୁଭବଯୋଗାତ୍ ଶିବଯୋଗୀତି ନାମୋକ୍ତିର୍ଯାଥାର୍ଥ୍ୟ ଯୋଗିନୀ ଯଥାର୍ଥେନ ସଂଯୁକ୍ତା ଭବତୀତ୍ୟର୍ଥଃ ।। ୨୧ ।।

– ଚିଦାନନ୍ଦ ସଂବଳିତ ପରାକାଶରୂପୀ ଶିବତତ୍ତ୍ୱର ଅନୁଭବରେ ଯୁକ୍ତ ହୋଇଥିବା ହେତୁ 'ଶିବଯୋଗୀ' ନାମ ଯାହାଙ୍କର ସାର୍ଥକ ହୋଇଥିଲା ।। ୨୧ ।।

**ଶିବାଗମପରିଜ୍ଞାନପରିପାକସୁଗନ୍ଧିନା ।**
**ଯଦୀୟକୀର୍ତ୍ତିପୁଷ୍ପେଣ ବାସିତଂ ହରିତାଂ ମୁଖମ୍ ।। ୨୨ ।।**

ଉକ୍ତଲକ୍ଷଣଶିବାଗମପରିଜ୍ଞାନପରିପାକସୁଗନ୍ଧିନା ଯଦୀୟକୀର୍ତ୍ତିପୁଷ୍ପେଣ ଯସ୍ୟାଚାର୍ଯ୍ୟସ୍ୟ କୀର୍ତ୍ତିକୁସୁମେନ ହରିତାଂ ଦିଶାଂ ମୁଖଂ ବାସିତଂ ପୋଷିତମିତ୍ୟର୍ଥଃ ।। ୨୨ ।।

---

୮. ତୈ. ଉ., ୨/୧/୧

୯. ତୈ. ଉ., ୧/୬/୨

– ଶୈବାଗମର ପରିପୂର୍ଣ୍ଣ ଜ୍ଞାନର ପରିପୂର୍ଣ୍ଣ ପାକରେ ସୁଗନ୍ଧଯୁକ୍ତ ଯାହାଙ୍କର କୀର୍ତ୍ତିରୂପୀ ପୁଷ୍ପରେ ସମସ୍ତ ଦିଗର ମୁଖ ସଦା ବାସିତ (ସୁଗନ୍ଧିତ) ହେଉଥିଲା ।। ୨୨।।

**ଯେନ ରକ୍ଷାବତୀ ଜାତା ଶିବଭକ୍ତିଃ ସନାତନୀ ।**
**ବୁଦ୍ଧାଦିପ୍ରତିସିଦ୍ଧାନ୍ତମହାଧ୍ୱାନ୍ତାଂଶୁମାଲିନା ।। ୨୩।।**

ବୌଦ୍ଧାଦିଶିବସମୟପ୍ରତିକୂଳସିଦ୍ଧାନ୍ତାନ୍ଧକାରଚଣ୍ଡକିରଣେନ ଯେନାଚାର୍ଯ୍ୟେଣ ସନାତନୀ ଶିବଭକ୍ତୀ ରକ୍ଷାବତୀ ଜାତା ରକ୍ଷିତାଽଭୂଦିତ୍ୟର୍ଥଃ ।। ୨୩ ।।

– ବୌଦ୍ଧ ଆଦିର ପ୍ରତିକୂଳ ସିଦ୍ଧାନ୍ତରୂପୀ ମହାଅନ୍ଧକାର ନିମନ୍ତେ ସୂର୍ଯ୍ୟ ସମାନ ଯାହାଙ୍କ ଦ୍ୱାରା ସନାତନୀ ଶିବଭକ୍ତିର ରକ୍ଷା ହେଲା ।। ୨୩ ।।

**ସ ମହାବୀରଶୈବାନାଂ ଧର୍ମମାର୍ଗପ୍ରବର୍ତ୍ତକଃ ।**
**ଶିବତତ୍ତ୍ୱପରିଜ୍ଞାନଚନ୍ଦ୍ରିକାବୃତଚନ୍ଦ୍ରମାଃ ।। ୨୪।।**

ଶିବତତ୍ତ୍ୱଜ୍ଞାନରୂପଚନ୍ଦ୍ରିକାବୃତଚନ୍ଦ୍ରମାଃ ସ ଶିବଯୋଗୀ ମହାବୀରଶୈବାନାଂ ଧର୍ମମାର୍ଗପ୍ରବର୍ତ୍ତକଃ ତଦୀୟାଚାରମାର୍ଗ ଏବ ବର୍ତ୍ତନବାନିତ୍ୟର୍ଥଃ ।। ୨୪।।

– ଶିବତତ୍ତ୍ୱର ପରିପୂର୍ଣ୍ଣ ଜ୍ଞାନରୂପୀ ଚନ୍ଦ୍ରିକାରେ ଆବୃତ ସେହି ଶିବଯୋଗୀ ମହାବୀର ଶୈବମାନଙ୍କର ଧର୍ମମାର୍ଗର ପ୍ରବର୍ତ୍ତକ ହେଲେ ।। ୨୪।।

**ଆଲୋକ୍ୟ ଶୈବତନ୍ତ୍ରାଣି କାମିକାଦ୍ୟାନି ସାଦରମ୍ ।**
**ବାତୁଳାନ୍ତାନି ଶୈବାନି ପୁରାଣାନ୍ୟଖିଳାନି ତୁ ।। ୨୫।।**

କାମିକାଦିବାତୁଳାନ୍ତଶୈବତନ୍ତ୍ରାଣି ଶୈବାନ୍ୟଖିଳାନି ପୁରାଣାନି ଚ ପ୍ରୀତିଯୁକ୍ତଂ ଯଥା ଭବତି ତଥା ଆଲୋକ୍ୟ ।। ୨୫।।

– ସେ କାମିକଠାରୁ ଆରମ୍ଭ କରି ବାତୁଳାନ୍ତ ଶୈବତନ୍ତ୍ର, ସମସ୍ତ ଶୈବପୁରାଣ ମାନଙ୍କର ଆଦର ସହିତ ଅଧ୍ୟୟନ କରି ବୀରଶୈବ ମହାତନ୍ତ୍ରର ରଚନା କଲେ ।। ୨୫।।

**ବେଦମାର୍ଗାବିରୋଧେନ ବିଶିଷ୍ଟାଚାରସିଦ୍ଧୟେ ।**
**ଅସନ୍ମାର୍ଗନିରାସାୟ ପ୍ରମୋଦାୟ ବିବେକିନାମ୍ ।। ୨୬।।**

ବୈଦିକମାର୍ଗାବିରୋଧେନ ସଦାଚାରସିଦ୍ଧୟେ ଦୁର୍ଜନଜୈନବୌଦ୍ଧାଦିଶାସ୍ତ୍ରମାର୍ଗ-ନିରାସାୟ ବେଦାଗମବିବେକିନାଂ ସନ୍ତୋଷାୟ ।। ୨୬।।

– ଏହି ରଚନା ବୈଦିକମାର୍ଗର ବିରୋଧ ନ କରି ବିଶିଷ୍ଟ ଆଚାରର ସିଦ୍ଧି, ଅସତ୍ ମାର୍ଗକୁ ଦୂର କରିବା ତଥା ଜ୍ଞାନୀମାନଙ୍କର ପ୍ରମୋଦ ପାଇଁ କରାଯାଇଥିଲା ।। ୨୬।।

**ସର୍ବସ୍ୱଂ ବୀରଶୈବାନାଂ ସକଳାର୍ଥପ୍ରକାଶନମ୍ ।**
**ଅସ୍ପୃଷ୍ଟମଖିଳୈର୍ଦୋଷୈରାଦୃତଂ ଶୁଦ୍ଧମାନସୈଃ ।। ୨୭।।**

ବୀରଶୈବାନାଂ ସର୍ବସ୍ୱଂ ସମସ୍ତାର୍ଥପ୍ରକାଶକଂ ସମସ୍ତଦୋଷୈରସଂସ୍ପୃଷ୍ଟଂ ଶୁଦ୍ଧମାନସୈର୍ନିଗମାଗମଜ୍ଞାନିଭିରାଦୃତଂ ସନ୍ତୋଷିତମ୍ ।। ୨୭।।

– ବୀରଶୈବମାନଙ୍କର ସର୍ବସ୍ୱ, ସମସ୍ତ ତତ୍ତ୍ୱମାନଙ୍କର ପ୍ରକାଶକ ତଥା ସମ୍ପୂର୍ଣ୍ଣ ଦୋଷଗୁଡ଼ିକରୁ ମୁକ୍ତ ଏହି ଗ୍ରନ୍ଥର ଶୁଦ୍ଧ ଅନ୍ତଃକରଣ ଯୁକ୍ତ ବିଦ୍ୱାନମାନେ ଆଦର କଲେ ।। ୨୭।।

**ଦ୍ୱେଷାଗମେଷୁ ସର୍ବେଷୁ ପୁରାଣେଷ୍ୱଖିଳେଷୁ ଚ ।**
**ପୁରା ଦେବେନ କଥିତଂ ଦେବ୍ୟୈତନ୍ନନ୍ଦନାୟ ଚ ।। ୨୮ ।।**

ପୂର୍ବୋକ୍ତାଗମପୁରାଣେଷୁ ଶିବେନ ଦେବୈତନ୍ନନ୍ଦନାୟ ଷଣ୍ମୁଖାୟାନୁଗୃହ୍ୟ କଥିତମ୍।। ୨୮ ।।

– ପ୍ରାଚୀନକାଳରେ ସମସ୍ତ ଆଗମ ତଥା ସମ୍ପୂର୍ଣ୍ଣ ପୁରାଣଶାସ୍ତ୍ରରେ ବର୍ଣ୍ଣିତ ଏହି ସିଦ୍ଧାନ୍ତକୁ ଭଗବାନ୍ ଶିବ ଦେବୀ ପାର୍ବତୀ ଏବଂ ତାଙ୍କର ପୁତ୍ର (କାର୍ତ୍ତିକେୟ)ଙ୍କୁ କହିଥିଲେ ।। ୨୮ ।।

**ତତ୍‌ସମ୍ପ୍ରଦାୟସିଦ୍ଧେନ ରେଣୁକେନ ମହାତ୍ମନା ।**
**ଗଣେଶ୍ୱରେଣ କଥିତମଗସ୍ତ୍ୟାୟ ପୁନଃ କ୍ଷିତୌ ।। ୨୯ ।।**

ତତ୍‌ସମ୍ପ୍ରଦାୟସିଦ୍ଧେନ ମହାତ୍ମନା ରେଣୁକଗଣାଧୀଶ୍ୱରେଣ ପୁନଃ କ୍ଷିତାବଗସ୍ତ୍ୟାୟ କଥିତମ୍ ।। ୨୯ ।।

– ସେହି ଶିବ ସମ୍ପ୍ରଦାୟରେ ପ୍ରସିଦ୍ଧ ମହିମାଶାଳୀ ଗଣେଶ୍ୱର ରେଣୁକ ଏହି ଶାସ୍ତ୍ରକୁ ପୃଥିବୀଲୋକରେ ମହର୍ଷି ଅଗସ୍ତିଙ୍କୁ ବତାଇଲେ ।। ୨୯ ।।

**ବୀରଶୈବମହାତନ୍ତ୍ରମେକୋତ୍ତରଶତସ୍ଥଲମ୍ ।**
**ଅନୁଗ୍ରହାୟ ଲୋକାନାମଭ୍ୟଧାତ୍ ସୁଧିୟାଂ ବରଃ ।। ୩୦ ।।**

ଏକୋତ୍ତରଶତସ୍ଥଲଂ ପିଣ୍ଡାଦିଜ୍ଞାନଶୂନ୍ୟାନ୍ତୈରେକୋତ୍ତରଶତସ୍ଥଲଂ ବୀରଶୈବସିଦ୍ଧାନ୍ତଂ ଲୋକାନାମନୁଗ୍ରହାୟ ନିର୍ମଳଜ୍ଞାନିନାଂ ମଧ୍ୟେ ଶ୍ରେଷ୍ଠଃ ଶିବଯୋଗିନାମ୍ନା ପ୍ରଖ୍ୟାତାଚାର୍ଯ୍ୟଃ, ଅଭ୍ୟଧାତ୍ ସଂଗ୍ରହେଣ ପ୍ରକଟିତବାନିତ୍ୟର୍ଥଃ ।। ୩୦ ।।

– ମନୀଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶିବାଚାର୍ଯ୍ୟ ଶିବଯୋଗୀ ଏକ ଶହ ଏକ ସ୍ଥଳ (ବିଷୟ) ଯୁକ୍ତ ବୀରଶୈବ ମହାତନ୍ତ୍ରର ମନୁଷ୍ୟମାନଙ୍କ ଉପରେ ଅନୁଗ୍ରହ କରି ବର୍ଣ୍ଣନ କଲେ ।। ୩୦ ।।

**ସର୍ବେଷାଂ ଶୈବତନ୍ତ୍ରାଣାମୁତ୍ତରତ୍ୱାନ୍ନିରୁତ୍ତରମ୍ ।**
**ନାମ୍ନା ପ୍ରତୀୟତେ ଲୋକେ ଯତ୍‌ସିଦ୍ଧାନ୍ତଶିଖାମଣିଃ ।। ୩୧ ।।**

ଯଦ୍ବୀରଶୈବତନ୍ତ୍ରଂ ସର୍ବେଷାଂ ଶୈବତନ୍ତ୍ରାଣାମୁତ୍ତରତ୍ୱାଦ୍ ନିରୁତ୍ତରଂ ସ୍ୱସ୍ମାଦୁତ୍ତରହିତଂ ସତ୍ ସିଦ୍ଧାନ୍ତଶିଖାମଣିରିତି ନାମ୍ନା ଲୋକେ ପ୍ରତୀୟତେ ପ୍ରତିଭାତୀତ୍ୟର୍ଥଃ ।। ୩୧ ।।

– ସମସ୍ତ ଶୈବତନ୍ତ୍ରମାନଙ୍କର ଉତ୍ତର (ଅନ୍ତିମ) ହୋଇ ଥିବାରୁ ନିରୁତ୍ତର ଏହି ଗ୍ରନ୍ଥ ଲୋକରେ ସିଦ୍ଧାନ୍ତଶିଖାମଣି ନାମରେ ପ୍ରସିଦ୍ଧ ଅଟେ । ଯେପରି ଶିଖା ଉପରେ ଶରୀରର ଅନ୍ୟ କୌଣସି ଅଙ୍ଗ ନ ହେବାରୁ ତାହା ଉପରେ ଲଗାଯାଇଥିବା ମଣି ସର୍ବୋପରି ହୁଏ, ସେହିପରି ଏହି ଗ୍ରନ୍ଥ ବୀରଶୈବ ସିଦ୍ଧାନ୍ତର ଚର୍ଚ୍ଚା କରୁଥିବା ସର୍ବଶ୍ରେଷ୍ଠ ଗ୍ରନ୍ଥ ଅଟେ ।। ୩୧ ।।

**ଅନୁଗତସକଳାର୍ଥେ ଶୈବତନ୍ତ୍ରୈଃ ସମସ୍ତୈଃ**
**ପ୍ରକଟିତଶିବବୋଧାଦ୍ୱୈତଭାବପ୍ରସାଦେ ।**
**ବିଦଧତୁ ମତିମସ୍ମିନ୍ ବୀରଶୈବା ବିଶିଷ୍ଟାଃ**
**ପଶୁପତିମତସାରେ ପଣ୍ଡିତଶ୍ଳାଘନୀୟେ ।। ୩୨ ।।**

ଇତି ଶ୍ରୀସିଦ୍ଧାନ୍ତଶିଖାମଣୌ ପ୍ରଥମ ପରିଚ୍ଛେଦଃ ।। ୧ ।।

ସମସ୍ତୈର୍ବୀରଶୈବତନ୍ତ୍ରୈରନୁଗତସମସ୍ତରହସ୍ୟାର୍ଥେ ପ୍ରକଟିତଶିବାଦ୍ୱୈତଜ୍ଞାନ ସମରସଭାବପ୍ରସନ୍ନତାଯୁକ୍ତେ ଶିବସିଦ୍ଧାନ୍ତସାରେ ବିଦ୍ୱଦ୍ଭିଃ ସ୍ତୂୟମାନେଽସ୍ମିନ୍ ସିଦ୍ଧାନ୍ତଶିଖାମଣୌ ବିଶିଷ୍ଟାଃ ଶ୍ରେଷ୍ଠା ବୀରଶୈବା ବୀରଶୈବାଚାର୍ଯ୍ୟା ମତିଂ ବିଦଧତୁ କୁର୍ବନ୍ତ୍ୱିତ୍ୟର୍ଥଃ ।। ୩୨ ।।

– ହେ ବିଶିଷ୍ଟ ବୀରଶୈବ ଲୋକମାନେ, ସମସ୍ତ ଶୈବତନ୍ତ୍ରମାନଙ୍କର ତତ୍ତ୍ୱକୁ ନିଜ ଭିତରେ ସମାହିତ କରି ରଖିଥିବା, ଶିବଜ୍ଞାନର ଅଦ୍ୱୈତଭାବର ଆନନ୍ଦକୁ ପ୍ରକଟ କରୁଥିବା ପାଶୁପତମତର ସାରଭୂତ ତଥା ପଣ୍ଡିତମାନଙ୍କଦ୍ୱାରା ପ୍ରଶଂସିତ ଏହି ଗ୍ରନ୍ଥର ଅଧ୍ୟୟନ ବିଷୟରେ ନିଜର ମନ ଲଗାନ୍ତୁ ।। ୩୨ ।।

ଇତି ଶ୍ରୀମତ୍ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ଅନୁକ୍ରମବର୍ଣ୍ଣନ ନାମକଃ ପ୍ରଥମଃ ପରିଚ୍ଛେଦଃ ।। ୧ ।।

ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ଅନୁକ୍ରମବର୍ଣ୍ଣନ ନାମକ ପ୍ରଥମ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀ କୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୧ ।।



# ଦ୍ୱିତୀୟଃ ପରିଚ୍ଛେଦଃ

ଅଥ ଶିବଯୋଗିନାମାଚାର୍ଯ୍ୟଃ ସୂତ୍ରଦ୍ୱୟେନ ନିଗମାଗମସମ୍ମତ୍ୟା ପାର୍ବତୀପରମେଶ୍ୱରୌ ପ୍ରଣମତି –

**ସଚ୍ଚିଦାନନ୍ଦରୂପାୟ ସଦସଦ୍ବ୍ୟକ୍ତିହେତବେ ।**
**ନମଃ ଶିବାୟ ସାମ୍ବାୟ ସଗଣାୟ ସ୍ୱୟମ୍ଭୁବେ ।। ୧ ।।**

ସଦସଦ୍ବ୍ୟକ୍ତିହେତବେ ଭାବାଭାବମଣ୍ଡଳପ୍ରପଞ୍ଚାବିର୍ଭାବକାରଣାୟ ଭବାନୀପତୟେ ପ୍ରଥମଗଣସହିତାୟ ସ୍ୱୟମ୍ଭୁବେ ଅୟୋନିଜାୟ ସଚ୍ଚିଦାନନ୍ଦରୂପାୟ ଶିବାୟ ନମ ଇତ୍ୟର୍ଥଃ ।। ୧ ।।

– ସଚ୍ଚିଦାନନ୍ଦରୂପ ସତ୍ ଅର୍ଥାତ୍ ଭାବ ଅର୍ଥାତ୍ ପାରମେଶ୍ୱର ସ୍ୱରୂପ ତଥା ଅସତ୍ ଅର୍ଥାତ୍ ଅଭାବ ଅର୍ଥାତ୍ ଜାଗ୍ରତ–ସ୍ୱାପ୍ନ–ପ୍ରପଞ୍ଚ ଅଥବା ପ୍ରାତିଭାସିକ ଏବଂ ବ୍ୟାବହାରିକ ପ୍ରପଞ୍ଚର ଅଭିବ୍ୟକ୍ତିର କାରଣ, ସ୍ୱୟମ୍ଭୂଗଣମାନଙ୍କ ସହିତ ସାମ୍ବ ଶିବଙ୍କୁ ମୁଁ ନମସ୍କାର କରୁଛି ।। ୧ ।।

**ସଦାଶିବ ମୁଖାଶେଷତତ୍ତ୍ୱମୌକ୍ତିକଶୁକ୍ତିକାମ୍ ।**
**ବନ୍ଦେ ମାହେଶ୍ୱରୀଂ ଶକ୍ତିଂ ମହାମାୟାଦିରୂପିଣୀମ୍ ।। ୨ ।।**

ସଦାଶିବାଦିଭୂମ୍ୟନ୍ତଷଟ୍ତ୍ରିଂଶତ୍ତତ୍ତ୍ୱମୌକ୍ତିକୋତ୍ପତ୍ତିଶୁକ୍ତିରୂପାଂ ଶୁଦ୍ଧବିଦ୍ୟାଖ୍ୟ–ମହାମାୟାପ୍ରକୃତିରୂପିଣୀଂ ଶିବସମବେତଶକ୍ତିଂ ଭବାନୀଂ ବନ୍ଦେ ନୌମୀତ୍ୟର୍ଥଃ ।। ୨ ।।

– ସଦାଶିବ ତତ୍ତ୍ୱଠାରୁ ପୃଥିବୀ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱରୂପୀ ମୋତିମାନଙ୍କର ଶୁକ୍ତିସ୍ୱରୂପା ମହାମାୟା ଆଦିରୂପ ମହେଶ୍ୱରଙ୍କର ଶକ୍ତିକୁ ମୁଁ ବନ୍ଦନା କରୁଛି ।। ୨ ।।

ଅଥ ବିଶ୍ୱସୃଷ୍ଟିକ୍ରମମୁପପାଦୟିତୁଂ ଚତୁର୍ଭି ସୂତ୍ରୈର୍ବସ୍ତୁନିର୍ଦ୍ଦେଶଂ କରୋତି –

**ଅସ୍ତି ସଚ୍ଚିତ୍ ସୁଖାକାରମଲକ୍ଷଣପଦାସ୍ପଦମ୍ ।**
**ନିର୍ବିକଳ୍ପଂ ନିରାକାରଂ ନିରସ୍ତାଶେଷବିପ୍ଳବମ୍ ।। ୩ ।।**

ସଚ୍ଚିଦାନନ୍ଦସ୍ୱରୂପଂ ଚିହ୍ନଶୂନ୍ୟପଦାସ୍ପଦଂ ଭେଦରହିତମ୍ ଆକାରଶୂନ୍ୟଂ ନିବାରିତ ସକଳୋପପ୍ଳବମ୍ ।। ୩ ।।

– (ପରବ୍ରହ୍ମ) ସତ୍–ଚିତ୍–ଆନନ୍ଦରୂପ, ଲକ୍ଷଣରହିତ, ନିର୍ବିକଳ୍ପ, ନିରାକାର ଏବଂ ସମସ୍ତ ଉପଦ୍ରବକୁ ନିରସ୍ତ କରିବାବାଲା ପରଶିବ ବ୍ରହ୍ମ ଅଟନ୍ତି ।। ୩ ।।

**ପରିଚ୍ଛେଦକଥାଶୂନ୍ୟଂ ପ୍ରପଞ୍ଚାତୀତ ବୈଭବମ୍ ।**
**ପ୍ରତ୍ୟକ୍ଷାଦିପ୍ରମାଣାନାମଗୋଚରପଦେ ସ୍ଥିତମ୍ ।। ୪ ।।**

ବିଚ୍ଛିନ୍ନ ପ୍ରସଙ୍ଗରହିତମପ୍ରାକୃତବୈଭବ ରୂପରସାଦ୍ୟଭାବେନ ପ୍ରତ୍ୟକ୍ଷପ୍ରମାଣାଗମ୍ୟମ୍ ଅତ ଏବାନୁମାନାଦ୍ୟଗମ୍ୟମ୍, ତେଷାମପି ପ୍ରତ୍ୟକ୍ଷମୂଳତ୍ୱାଦ୍ ପରିଚ୍ଛିନ୍ନତ୍ୱାଚ୍ଚ ।। ୪।।

– ସେହି ବ୍ରହ୍ମ ପରିସୀମନ ବାର୍ତ୍ତାରୁ ରହିତ, ପ୍ରପଞ୍ଚରୁ ଉର୍ଦ୍ଧ୍ୱରେ, ବୈଭବବାଲା, ତଥା ପ୍ରତ୍ୟକ୍ଷ, ଅନୁମାନ ଆଦି ପ୍ରମାଣମାନଙ୍କର ଅବିଷୟ ଅଟେ। କାରଣ ଅନୁମାନ ଆଦି ପ୍ରମାଣ ମଧ୍ୟ ପ୍ରତ୍ୟକ୍ଷମୂଳକ ଏବଂ ପରିଚ୍ଛିନ୍ନ ଅଟନ୍ତି ।। ୪।।

ସ୍ୱପ୍ରକାଶଂ ବିରାଜନ୍ତମନାମୟମନୌଗମମ୍ ।
ସର୍ବଜ୍ଞଂ ସର୍ବଗଂ ଶାନ୍ତଂ ସର୍ବଶକ୍ତି ନିରଙ୍କୁଶମ୍ ।। ୫।।

ସ୍ୱପ୍ରକାଶେନୈବ[୧୦] ପ୍ରକାଶମାନଂ ଜନନମରଣାଦିଦୋଷରହିତମ୍, ଉପମାତୀତଂ ସର୍ବଜ୍ଞଂ ସର୍ବାନୁସ୍ୟୂତଂ ରାଗଦ୍ୱେଷରହିତଂ ସର୍ବସାମର୍ଥ୍ୟମ୍ ଅନର୍ଗଳଂ ନିରୋଧରହିତମିତି ଯାବତ୍ ।। ୫।।

– ସେ (ବ୍ରହ୍ମ) ସ୍ୱପ୍ରକାଶ, ବିଶେଷରୂପରେ ଦୀପ୍ୟମାନ, ନିର୍ମଳ, ନିରୁପମେୟ, ସର୍ବଜ୍ଞ, ସର୍ବବ୍ୟାପୀ, ଶାନ୍ତ, ସର୍ବଶକ୍ତି ସମ୍ପନ୍ନ ତଥା ସ୍ୱତନ୍ତ୍ର ଅଟେ ।। ୫।।

ଶିବରୁଦ୍ରମହାଦେବଭବାଦି ପଦସଂଜ୍ଞିତମ୍ ।
ଅଦ୍ୱିତୀୟମନିର୍ଦେଶ୍ୟଂ ପରଂବ୍ରହ୍ମ ସନାତନମ୍ ।। ୬।।

ଶିବରୁଦ୍ରାଦ୍ୟନେକପଦସଂଜ୍ଞିତଂ ଦ୍ୱିତୀୟଶୂନ୍ୟମବାଚ୍ୟଂ ନିତ୍ୟଂ ପରଂ ବ୍ରହ୍ମ ଅସ୍ତି । ଅସ୍ତୀତ୍ୟଙ୍ଗୀକରଣୀୟମ୍, ଅନ୍ୟଥା ଜଗଦାନ୍ଧ୍ୟପ୍ରସଙ୍ଗାତ୍ ।

ଅସନ୍ନେବ ସ ଭବତି ଅସଦ୍ ବ୍ରହ୍ମେତି ବେଦ ଚେତ୍ ।
ଅସ୍ତି ବ୍ରହ୍ମେତି ଚେଦ୍ୱେଦ ସନ୍ତମେନ ତତୋ ବିଦୁଃ[୧୧] ।।

ଇତି ଶ୍ରୁତେଃ ।। ୬ ।।

– ସେହି ପରଂବ୍ରହ୍ମ ଶିବ, ରୁଦ୍ର, ମହାଦେବ, ଭବ ଆଦି ପଦଦ୍ୱାରା ଜଣାଯାଉଥିବା ଅଦ୍ୱିତୀୟ ଅନିର୍ଦେଶ୍ୟ ଏବଂ ସନାତନ ଅଟନ୍ତି ।। ୬।।

ଅଥୈକବିଧକ୍ରିୟାଶକ୍ତିମତଃ ପରବ୍ରହ୍ମଣଃ ସକାଶାତ୍ 'ସଦେବ ସୌମ୍ୟେଦମଗ୍ର ଆସୀତ୍'[୧୨] ଇତି ଶ୍ରୁତେର୍ବୀଜାଙ୍କୁରନ୍ୟାୟେନ ବିଶ୍ୱସୃଷ୍ଟିପ୍ରକାରଂ ଦର୍ଶୟତି –

ତତ୍ର ଲୀନମଭୂତ୍ ପୂର୍ବଂ ଚେତନା ଚେତନଂ ଜଗତ୍ ।
ସ୍ୱାତ୍ମଲୀନଂ ଜଗତ୍କାର୍ଯ୍ୟଂ ସ୍ୱପ୍ରକାଶ୍ୟଂ ତଦଦ୍ଭୁତମ୍ ।। ୭।।

---

୧୦. ସ୍ୱପ୍ରକାଶତ୍ୱଂ ନାମ ସ୍ୱସ୍ୟ ପ୍ରକାଶକତ୍ୱେ ସତି ପରପ୍ରକାଶକତ୍ୱମ୍ ।

୧୧. ତୈ. ଉ., ୨/୬/୧

୧୨. ଛା. ଉ., ୬/୨/୧

ତତ୍ର ତସ୍ମିନ୍ନୁକ୍ତଲକ୍ଷଣେ ପରବ୍ରହ୍ମଣି ଚରାଚରମୟଂ ବିଶ୍ୱଂ ପୂର୍ବଂ ସୃଷ୍ଟେଃ ପ୍ରାଗ୍ ଲୀନମ୍ ଅନୁଭୟେନ୍ଦ୍ରିୟଗୋଚରତ୍ୱେନ ତାଦାତ୍ମ୍ୟେନ ସ୍ଥିତଂ ତଦଦ୍‌ଭୁତମାଶ୍ଚର୍ଯ୍ୟମ୍ । ଅନନ୍ତରମିତି ଶେଷଃ, ସ୍ୱାତ୍ମଲୀନଂ ସ୍ୱାତ୍ମଶକ୍ତିଲୀନଂ ଜଗଦ୍ ଯୋଗ୍ୟୋଗାଦାନାନ୍ତରରାହିତ୍ୟେନ ସ୍ୱପ୍ରକାଶ୍ୟଂ ଦ୍ୱିତୀୟସ୍ୟାଭାବାତ୍ ସ୍ୱେନୈବ ପ୍ରକାଶ୍ୟଂ ସତ୍ କାର୍ଯ୍ୟମୁଭୟେନ୍ଦ୍ରିୟ-ଗୋଚରତ୍ୱେନଂ[୧୩] କର୍ତ୍ତୁଂ ଯୋଗ୍ୟମଭୂଦିତ୍ୟର୍ଥଃ ।। ୭ ।।

- ସୃଷ୍ଟିର ପୂର୍ବରୁ ଏହି ଜଡ଼ ଚେତନ ଜଗତ୍ ସେଠାରେ (ବ୍ରହ୍ମରେ) ଲୀନ ଥିଲା । ଏହି ଜଗତ୍‌ରୂପୀ ଅଦ୍‌ଭୂତ କାର୍ଯ୍ୟ ସ୍ୱାତ୍ମ ଅର୍ଥାତ୍ ପରବ୍ରହ୍ମରେ ଲୀନ ହୋଇ ମଧ୍ୟ ସ୍ୱପ୍ରକାଶ୍ୟ ଅର୍ଥାତ୍ ସ୍ୱୟଂ ପରଂବ୍ରହ୍ମ ଦ୍ୱାରା ପ୍ରକାଶ୍ୟ ଅଟେ ।। ୭ ।।

ଅଥ ଘୃତକାଠିନ୍ୟନ୍ୟାୟେନ ବିଶ୍ୱସୃଷ୍ଟ୍ୟୁନ୍ମୁଖୀଭୂତ ଶିବଶକ୍ତିସ୍ୱରୂପଂ ସୂତ୍ର-ଷଟ୍‌କେନ ପ୍ରଦର୍ଶୟତି -

**ଶିବାଭିଧଂ ପରଂବ୍ରହ୍ମ ଜଗନ୍ନିର୍ମାତୁମିଚ୍ଛୟା ।**
**ସ୍ୱରୂପମାଦଧେ କିଞ୍ଚିତ୍ ସୁଖାସ୍ଫୂର୍ତ୍ତିବିଜୃମ୍ଭିତମ୍ ।। ୮ ।।**

ଶିବାଖ୍ୟଂ ପରଂବ୍ରହ୍ମ ବିଶ୍ୱସୃଷ୍ଟ୍ୟର୍ଥଂ ସ୍ୱେଚ୍ଛୟା ସୁଖବାହୁଲ୍ୟୋଚ୍ଛୂନଂ କିଞ୍ଚିତ୍ ସ୍ୱରୂପମଙ୍ଗୀଚକାରେତ୍ୟର୍ଥଃ ।। ୮ ।।

- ଶିବ ନାମକ ଏହି ପରଂବ୍ରହ୍ମ ଜଗତ୍ ରଚନାର ଇଚ୍ଛାରେ କିଛି ଆନନ୍ଦ ମିଶ୍ରିତ ଉଲ୍ଲାସରେ ଯୁକ୍ତ ସ୍ୱରୂପକୁ ଧାରଣ କଲେ ।। ୮ ।।

ତତ୍ ସ୍ୱରୂପଂ କୁଳକେ[୧୪] (ବିଶେଷକେ) ନାହ -

**ନିରସ୍ତ ଦୋଷସମ୍ବନ୍ଧଂ ନିରୁପାଧିକମବ୍ୟୟମ୍ ।**
**ଦିବ୍ୟମପ୍ରାକୃତଂ ନିତ୍ୟଂ ନୀଳକଣ୍ଠଂ ତ୍ରିଲୋଚନମ୍ ।। ୯ ।।**

ନିରସ୍ତଜରାମରଣାଦିସକଳଦୋଷସମ୍ବନ୍ଧଂ ସ୍ୱାତିରିକ୍ତାବିଦ୍ୟାଦ୍ୟୁପାଧିଶୂନ୍ୟଂ ନାଶରହିତମତ ଏବ ନିତ୍ୟଂ କାଳତ୍ରୟାବାଧ୍ୟମିତ୍ୟର୍ଥଃ । ଅପ୍ରାକୃତଂ ପ୍ରକୃତି ସମ୍ବନ୍ଧ-ରହିତଂ ନୀଳକଣ୍ଠଂ ତ୍ରିଲୋଚନମ୍ ।। ୯ ।।

- ସେହି ସ୍ୱରୂପ ଦୋଷଦ୍ୱାରା ଅସମ୍ବନ୍ଧ ଉପାଧି ରହିତ, ନାଶ ରହିତ ଅର୍ଥାତ୍

---

୧୩. ଉଭୟେନ୍ଦ୍ରିୟ ଗୋଚରତା ର ତାତ୍ପର୍ଯ୍ୟ - ମନ ଏବଂ ଯେ କୌଣସି ଗୋଟିଏ ଜ୍ଞାନେନ୍ଦ୍ରିୟ ଦ୍ୱାରା ବାହ୍ୟ ଜଗତର ଜ୍ଞାନ ହୋଇଥାଏ । ସୁଖ ଦୁଃଖ ଆଦି ଆନ୍ତର ବିଷୟ କେବଳ ମନ ଦ୍ୱାରା ଜାଣି ହୋଇଥାଏ ।

୧୪. ଦ୍ୱାଭ୍ୟାଂ ତୁ ଯୁଗ୍ମକଂ ଜ୍ଞେୟଂ ତ୍ରିଭିର୍ଜ୍ଞେୟଂ ବିଶେଷକମ୍ ।
କପାଲକଂ ଚତୁର୍ଭିଃ ସ୍ୟାତଦୂର୍ଦ୍ଧ୍ୱଂ କୁଳକଂ ସ୍ମୃତମ୍ ।। (ସ୍ମୁ. କୁ. ଟୀ.)

ନିତ୍ୟ ଦିବ୍ୟ ଅପ୍ରାକୃତ ନୀଳକଣ୍ଠ ଏବଂ ତ୍ରିଲୋଚନ ଥିଲା ।। ୯ ।।

**ଚନ୍ଦ୍ରାର୍ଧଶେଖରଂ ଶୁଦ୍ଧଂ ଶୁଦ୍ଧସ୍ଫଟିକସନ୍ନିଭମ୍ ।**
**ଶୁଦ୍ଧମୁକ୍ତାଫଳାଭାସମୁପାସ୍ୟଂ ଗୁଣମୂର୍ତ୍ତିଭିଃ ।। ୧୦ ।।**

ଚନ୍ଦ୍ରଖଣ୍ଡଶେଖରଂ ଶୁଦ୍ଧଂ ପବିତ୍ରଂ ଶୁଦ୍ଧସ୍ଫଟିକସଙ୍କାଶଂ ନିର୍ମଳମୁକ୍ତାମଣିପ୍ରଭଂ ଗୁଣମୂର୍ତ୍ତିଭିର୍ବ୍ରହ୍ମାଦିଭିରୁପାସ୍ୟମ୍ ।। ୧୦ ।।

– ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ରବାଲା, ଶୁଦ୍ଧ, ଶୁଦ୍ଧସ୍ଫଟିକ ସମାନ ସ୍ୱଚ୍ଛ ଏବଂ ଦେଦୀପ୍ୟମାନ, ଶୁଦ୍ଧ ମୋତି ପରି ତଥା ଗୁଣମୂର୍ତ୍ତିମାନଙ୍କ ଅର୍ଥାତ୍ (ତିନି) ତ୍ରିମୂର୍ତ୍ତି (ବ୍ରହ୍ମା, ବିଷ୍ଣୁ, ରୁଦ୍ର) ଦ୍ୱାରା (ଏହି ଶିବ) ଉପାସ୍ୟ ଥିଲେ ।। ୧୦ ।।

**ବିଶୁଦ୍ଧଜ୍ଞାନକରଣଂ ବିଷୟଂ ସର୍ବଯୋଗିନାମ୍ ।**
**କୋଟିସୂର୍ଯ୍ୟପ୍ରତୀକାଶଂ ଚନ୍ଦ୍ରକୋଟିସମପ୍ରଭମ୍ ।। ୧୧ ।।**
**ଅପ୍ରାକୃତ ଗୁଣାଧାରମନନ୍ତମହିମାସ୍ପଦମ୍ ।**

ଦିବ୍ୟଂ ସ୍ତୁତ୍ୟଂ ନିର୍ମଳଜ୍ଞାନମୟ ଚକ୍ଷୁରାଦିକରଣପ୍ରପଞ୍ଚଂ ଯୋଗିନାଂ ପ୍ରତ୍ୟକ୍ଷଂ କୋଟି–ସୂର୍ଯ୍ୟପ୍ରକାଶଂ ଚନ୍ଦ୍ରକୋଟିସମାଭାସମପ୍ରାକୃତାନନ୍ତକଲ୍ୟାଣଗୁଣାଶ୍ରୟମତିଦୁର୍ଘଟ-କାରିତାଦ୍ୟନେକମହିମାଧାରଂ କିଞ୍ଚିତ୍ ସ୍ୱରୂପମାଦଧ ଇତି ପୂର୍ବେଣ ସମ୍ବନ୍ଧଃ ।।୧୧।।

– ବିଶୁଦ୍ଧ ଜ୍ଞାନର ଅସାଧାରଣ କାରଣ, ସମସ୍ତ ଯୋଗୀମାନଙ୍କର ଧ୍ୟାନର ବିଷୟ, କୋଟି ସୂର୍ଯ୍ୟଙ୍କ ପରି ଦେଦୀପ୍ୟମାନ, କୋଟି ଚନ୍ଦ୍ରମା ପରି କାନ୍ତିଯୁକ୍ତ, ପ୍ରାକୃତିକ ଗୁଣମାନଙ୍କଠାରୁ ଭିନ୍ନ, ସର୍ବଜ୍ଞତା–ତୃପ୍ତି–ଅନାଦି ବୋଧ[୧୫] ଆଦି ଗୁଣମାନଙ୍କର ଆଧାର ତଥା ଅନନ୍ତ ମହିମାବାଲା ଥିଲେ ।। ୧୧ ।।

ଅଥ ଶିବସ୍ୟ ଶକ୍ତିସ୍ୱରୂପଂ ପ୍ରକଟୟତି –

**ତଦୀୟା ପରମା ଶକ୍ତିଃ ସଚ୍ଚିଦାନନ୍ଦଲକ୍ଷଣା ।। ୧୨ ।।**
**ସମସ୍ତଲୋକନିର୍ମାଣସମବାୟସ୍ୱରୂପିଣୀଂ ।**

ତଦୀୟା ପରଶିବସମ୍ବନ୍ଧିନୀ ପରମା ଶକ୍ତିଃ ପରାରୂପା ବିମର୍ଶଶକ୍ତିଃ ସଚ୍ଚିଦାନନ୍ଦଲକ୍ଷଣା, ଅସ୍ତୀତି ଶେଷଃ ।। ୧୨ ।।

**ତଦିଚ୍ଛୟାଦ୍ଧଭବତ୍ ସାକ୍ଷାତ୍ତତ୍ସ୍ୱରୂପାନୁସାରିଣୀ ।। ୧୩ ।।**

'ଅହମସ୍ମି' ଇତି ଶ୍ରୁତେଃ ଅସ୍ମିନ୍ ପ୍ରକାଶେ ନନ୍ଦାମୀତ୍ୟନୁତ୍ପନ୍ନମଲୋଲ୍ଲାସା-

---

୧୫. ସର୍ବଜ୍ଞତା ତୃପ୍ତିରନାଦିବୋଧଃ ସ୍ୱତନ୍ତ୍ରତା ନିତ୍ୟମଲୁପ୍ତଶକ୍ତିଃ ।
ଅନନ୍ତଶକ୍ତିଶ୍ଚ ବିଭୋର୍ବିଧିଜ୍ଞା ଆହୁଃ ଷଡ଼ଙ୍ଗାନି ମହେଶ୍ୱରସ୍ୟ ।। (ବାୟୁ. ପୁ.)

କର୍ମକାକ୍ରମୋଦ୍‌ଗତମସ୍ଫୁର୍ତ୍ତିରୂପାଣି ସମସ୍ତଲୋକନିର୍ମାଣେ ପୂର୍ବୋକ୍ତପ୍ରକାରେଣ 'ନାସତୋ ବିଦ୍ୟତେ ଭାବଃ'[16] ଇତି ଭଗବଦୁକ୍ତେଃ ସ୍ୱାତ୍ମନ୍ୟଣ୍ଡରସନ୍ୟାୟେନାହମିତ୍ୟ ବିଭାଗପରାମର୍ଶାତ୍ମନାନୁଭୟେନ୍ଦ୍ରିୟଗୋଚରତ୍ୱେନ ସ୍ଥିତସ୍ୟ ବିଶ୍ୱସ୍ୟେଦନ୍ତାଲକ୍ଷଣବିଭାଗ-ପରାମର୍ଶମୟସୃଷ୍ଟିଲୀଳାୟାଂ ସ୍ୱସ୍ୱାତନ୍ତ୍ର୍ୟମହିମ୍ନା ଭେଦାଭେଦଂ ପ୍ରତିପାଦ୍ୟ ବୃକ୍ଷଗତଫଳପୁଷ୍ପାଦି ନ୍ୟାୟେନ ବିକାରରାହିତ୍ୟେନ ସମବାୟସ୍ୱରୂପିଣୀ ଉପାଦାନକାରଣୀଭୂତା ଭବତି (ନ୍ତୀ)। ପୁନଃ ସ୍ୱାନ୍ତରାକର୍ଷଣଲକ୍ଷଣସଂହାରଲୀଳାୟା ତଦିଚ୍ଛୟା କୂର୍ମଭଙ୍ଗିନ୍ୟାୟେନ ସ୍ୱକିରଣାୟମାନଜ୍ଞାନକ୍ରିୟାଶକ୍ତିଦ୍ୱାରା ସର୍ବଂ ସ୍ୱାତ୍ମନ୍ୟାକୃଷ୍ୟ ସାକ୍ଷାଦପରୋକ୍ଷେଣାହମିତି ତତ୍ ସ୍ୱରୂପାନୁକାରିଣୀ ଶିବାଭିନ୍ନସ୍ୱରୂପିଣୀ ଅଭବତ୍, ଭବତୀତ୍ୟର୍ଥଃ । ନ ଚ ଭେଦାଭେଦୟୋର୍ବିରୋଧ ଇତି ବାଚ୍ୟମ୍, ତଦ୍‌ଭେଦସ୍ୟ ସ୍ୱାତନ୍ତ୍ର୍ୟପିରକଳ୍ପିତତ୍ୱାତ୍, ସ୍ୱାଭାବିକଭେଦାଭେଦୟୋରେବ ବିରୋଧାତ୍, ସମାନ ସତ୍ତାକୟୋରିତି ଯାବତ୍, ଭଗବତଃ ଶକ୍ତେରଘଟନଘଟନାପଟୀୟସ୍ତ୍ୱାତ୍ । ତଦେତଦଗ୍ରେ ତତ୍ର ତତ୍ର ସ୍ଫୁଟୀ ଭବିଷ୍ୟତୀତି ନୈଷ (ନାତ୍ର) ବିସ୍ତରଃ । ଦେବଃ କ୍ରୀଡ଼ାଶୀଳ ଇତ୍ୟର୍ଥଃ ।। ୧୩।।

– ତାଙ୍କର ସତ୍-ଚିତ୍-ଆନନ୍ଦ ଲକ୍ଷଣଯୁକ୍ତ ପରମାଶକ୍ତି ଯାହାକି ସମସ୍ତ ଲୋକ ନିର୍ମାଣର ସମବାୟରୂପା ଅଟନ୍ତି, ତାଙ୍କର ଇଚ୍ଛାରେ ତାଙ୍କର ସ୍ୱରୂପ ପରି ହୋଇଗଲା ।। ୧୨-୧୩।।

ବିମର୍ଶ – ପରମେଶ୍ୱରଙ୍କର ଶକ୍ତି ନିଜର ମୂଳ ରୂପରେ କ୍ରମ ରହିତ ହୋଇଥିଲେ ମଧ୍ୟ ସର୍ବପ୍ରଥମ ମୟୂରାଣ୍ଡରସନ୍ୟାୟରେ ସଂସାରକୁ ନିଜ ମଧ୍ୟରେ ନିଜଠାରୁ ଅଭିନ୍ନ ଭାବରେ ଗ୍ରହଣ କରେ । ତତ୍‌ପଶ୍ଚାତ୍ ଯେପରି ପତ୍ର-ପୁଷ୍ପ-ଫଳ-ଶାଖା ଆଦି ପୃଥକ୍ ପୃଥକ୍ ହେଲେ ମଧ୍ୟ 'ଅୟମେକୋ ବୃକ୍ଷଃ' କୁହାଯାଏ, ସେପରି ତାହା ଏହି ବିଶ୍ୱକୁ ଅନେକ ରୂପଯୁକ୍ତ ହେଲେ ମଧ୍ୟ ଏକ ରୂପରେ ପ୍ରକାଶିତ କରେ । ଏହାପରେ ସ୍ୱେଚ୍ଛାରେ କଇଁଚ ପରି ନିଜର ଅଙ୍ଗଭୂତ ଏହି ସଂସାରକୁ ନିଜ ଭିତରେ ସଂହରଣ କରି ନିଏ । ଏ ସବୁ କିଛି ପରମେଶ୍ୱର ନିଜର ସ୍ୱତନ୍ତ୍ର ଶକ୍ତିରେ କରନ୍ତି । ତାଙ୍କର ଶକ୍ତି ଲୌକିକ ଦୃଷ୍ଟିରେ ଅସମ୍ଭବକୁ ମଧ୍ୟ ସମ୍ଭବ କରିପାରେ ।

ଏବଂ ଶିବଶକ୍ତିସ୍ୱରୂପଂ ନିରୂପ୍ୟାଥ । 'ସ ଐକ୍ଷତ ଲୋକାନସୃଜତ'[17] 'ଯଥାପୂର୍ବମକଳ୍ପୟତ୍'[18] ଇତ୍ୟାଦିଶ୍ରୁତ୍ୟୁକ୍ତ ପ୍ରକାରେଣ ସୃଷ୍ଟିକ୍ରମଂ ନିରୂପୟତି –

---

୧୬. ଭ. ଗୀ., ୨/୧୬

୧୭. ଐ. ଉ., ୧/୧-୨

୧୮. ଋ. ସଂ., ୧୦/୧୯୦/୩

**ଜଗତ୍ ସିସୃକ୍ଷୁଃ ପ୍ରଥମଂ ବ୍ରହ୍ମାଣଂ ସର୍ବଦେହିନାମ୍ ।**
**କର୍ତ୍ତାରଂ ସର୍ବଲୋକାନାଂ ବିଦଧେ ବିଶ୍ୱନାୟକଃ ।। ୧୪ ।।**

ଲୋକାନାଂ ଚତୁର୍ଦଶଭୁବନାନାଂ ଦେହିନାଂ ତତ୍ତଲ୍ଲୋକମାଶ୍ରିତ୍ୟ ବିଦ୍ୟମାନାନାଂ ପ୍ରାଣିନାମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ । ଅସ୍ମିନ୍ନର୍ଥେ – 'ବିଶ୍ୱାଧିକୋ ରୁଦ୍ରୋ ମହର୍ଷିଃ । ହିରଣ୍ୟଗର୍ଭଂ ଜନୟାମାସ ପୂର୍ବମ୍' ଇତି ଯାଜୁଷଶ୍ରୁତେଃ ।। ୧୪ ।।

– ବିଶ୍ୱନାୟକ ଭଗବାନ୍ ସର୍ବଜ୍ଞ ସର୍ବଶକ୍ତିମାନ୍ ଶମ୍ଭୁ ସଂସାରର ରଚନା କରିବା ଇଚ୍ଛାରେ ସର୍ବପ୍ରଥମ ସମସ୍ତ ଲୋକମାନଙ୍କର ସମସ୍ତ ଜୀବମାନଙ୍କର କର୍ତ୍ତା ବ୍ରହ୍ମାଙ୍କର ରଚନା କଲେ ।। ୧୪ ।।

ଅଥ – 'ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ[୧୯]' ଇତି ଶ୍ୱେତାଶ୍ୱତରଶ୍ରୁତ୍ୟର୍ଥଂ ପ୍ରକଟୟତି –

**ତସ୍ମୈ ପ୍ରଥମପୁତ୍ରାୟ ଶଙ୍କରଃ ଶକ୍ତିମାନ୍ ବିଭୁଃ ।**
**ସର୍ବଜ୍ଞଃ ସକଳା ବିଦ୍ୟାଃ ସାନୁଗ୍ରହମୁପାଦିଶତ୍ ।। ୧୫ ।।**

ଶକ୍ତିମାନ୍ ସମବେତଶକ୍ତିମାନିତ୍ୟର୍ଥଃ । ଅନୁଗ୍ରହେଣ ସହିତଂ ଯଥା ଭବତି ତଥା ବେଦାଦିସକଳଶାସ୍ତ୍ରମୁପଦିଷ୍ଟବାନିତ୍ୟର୍ଥଃ ।। ୧୫ ।।

– ସର୍ବଜ୍ଞ, ଶକ୍ତିମାନ୍ ତଥା ବ୍ୟାପକ ଭଗବାନ୍ ଶଙ୍କର ତାଙ୍କର ସେହି ପ୍ରଥମ ପୁତ୍ରକୁ ସମସ୍ତ ବିଦ୍ୟାଗୁଡ଼ିକୁ ଅନୁଗ୍ରହ ପୂର୍ବକ ଉପଦେଶ ଦେଲେ ।। ୧୫ ।।

**ସମସ୍ତ ଲେକାନ୍ନିର୍ମାତୁଂ ସମୁଦ୍ୟମପରୋଽଭବତ୍ ।**
**କୃତୋଦ୍ୟୋଗୋଽପି ନିର୍ମାଣେ ଜଗତାଂ ଶଙ୍କରାଜ୍ଞୟା ।**
**ଅଜ୍ଞାତୋପାୟସମ୍ପତ୍ତେରଭବନ୍ମାୟୟାବୃତଃ ।। ୧୬ ।।**

ବିଶ୍ୱ ନିୟାମକ ମହାଦେବଙ୍କଠାରୁ ବିଦ୍ୟା ପ୍ରାପ୍ତ ବ୍ରହ୍ମା ସମସ୍ତ ଲୋକର ନିର୍ମାଣରେ ତତ୍ପର ହେଲେ । ଶଙ୍କରଙ୍କ ଆଜ୍ଞାରେ ସଂସାର ନିର୍ମାଣର ପ୍ରଯତ୍ନ କଲେ ମଧ୍ୟ ଉପାୟଗୁଡ଼ିକୁ ନ ଜାଣି ଥିବାରୁ ସେ ମାୟାରେ ଆବୃତ ଅର୍ଥାତ୍ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ।। ୧୬ ।।

**ବିଧାତୁମଖିଳାନ୍ ଲୋକାନୁପାୟ ପ୍ରାପ୍ତୁମିଚ୍ଛୟା ।**
**ପୁନସ୍ତଂ ପ୍ରାର୍ଥୟାମାସ ଦେବଦେବଂ ତ୍ରିୟମ୍ବକମ୍ ।। ୧୭ ।।**

– ସମସ୍ତ ଲୋକର ରଚନା ନିମନ୍ତେ ଉପାୟ ପ୍ରାପ୍ତ କରିବାର ଇଚ୍ଛାରେ ବ୍ରହ୍ମା ପୁନଃ ସେହି ଦେବାଧିଦେବ ତ୍ରିଲୋଚନଙ୍କୁ ପ୍ରାର୍ଥନା କଲେ ।। ୧୭ ।।

ଅଥ ତତ୍ପ୍ରାର୍ଥନପ୍ରକାରଂ ଦର୍ଶୟତି –

---

୧୯. ଶ୍ୱେ. ଉ., ୬/୧୮

**ନମସ୍ତେ ଦେବଦେବେଶ ନମସ୍ତେ କରୁଣାକର ।**
**ଅସ୍ମଦାଦିଜଗତ୍‌ସର୍ବନିର୍ମାଣ ନ ବିଧିକ୍ଷମ ।। ୧୮ ।।**
**ଉପାୟଂ ବଦ ମେ ଶମ୍ଭୋ ଜଗତ୍ ସୃଷ୍ଟଃ, ଜଗତ୍‌ପତେ ।**
**ସର୍ବଜ୍ଞଃ ସର୍ବଶକ୍ତିସ୍ତ୍ୱଂ ସର୍ବକର୍ତ୍ତା ସନାତନଃ ।। ୧୯ ।।**

ଅତ୍ରୋପାୟକଥନେ ସର୍ବଜ୍ଞ ଇତ୍ୟାଦିକଂ ହେତୁଗର୍ଭବିଶେଷଣମ୍ ।। ୧୯ ।।

– ଏଠାରେ ବ୍ରହ୍ମାଙ୍କଦ୍ୱାରା କରାଯାଇଥିବା ପ୍ରାର୍ଥନାକୁ ବଢ଼ାଉଛନ୍ତି – ହେ ଦେବଦେବେଶ ଆପଣଙ୍କୁ ନମସ୍କାର । ହେ କରୁଣାକର ! ମୋଠାରୁ ଆରମ୍ଭ କରି ସମସ୍ତ ଜଗତର ସୃଷ୍ଟି କରିବାରେ ସକ୍ଷମ ଆପଣଙ୍କୁ ନମସ୍କାର ।। ୧୮ ।।

– ହେ ଶମ୍ଭୁ ! ହେ ସଂସାରର ସ୍ୱାମୀ ! ମତେ ଉପାୟ ବତାନ୍ତୁ, କାରଣ ଆପଣ ହେଉଛନ୍ତି ସର୍ବଜ୍ଞାତା, ସର୍ବଶକ୍ତିମାନ୍, ସର୍ବକର୍ତ୍ତା ଏବଂ ସନାତନ ।। ୧୯ ।।

ସର୍ବଜ୍ଞ ଆଦି ଯେଉଁ ବିଶେଷଣ, ତାହା ଉପାୟ କଥନର କାରଣ ବତାଉଛି ।

**ଇତି ସମ୍ପ୍ରାର୍ଥିତଃ ଶମ୍ଭୁର୍ବହ୍ମଣା ବିଶ୍ୱନାୟକଃ ।**
**ଉପାୟମବଦତ୍ ତସ୍ମୈ ଲୋକସୃଷ୍ଟି ପ୍ରବର୍ତ୍ତନମ୍ ।। ୨୦ ।।**
**ଉପାୟମୀଶ୍ୱରେଣୋକ୍ତଂ ଲବ୍ଧ୍ୱାଦ୍ଧପି ଚତୁରାନନଃ ।**
**ନ ସମର୍ଥୋଦ୍ଧଭବତ୍ କର୍ତ୍ତୁଂ ନାନାରୂପମିଦଂ ଜଗତ୍ ।। ୨୧ ।।**

ବିଶ୍ୱନିର୍ମାଣେ ଶିବେନ ଲବ୍‌ଧୋପାୟବାନପି ବ୍ରହ୍ମା ନ ସମର୍ଥୋଦ୍ଧଭବତ୍ । କୁତ ଇତ୍ୟତ୍ର ହେତୁଗର୍ଭବିଶେଷଣମ୍–ନାନାରୂପମିତି । ଜଗତୋ ନାନାରୂପତ୍ୱାଦିତି ଭାବଃ ।। ୨୧ ।।

– ବ୍ରହ୍ମା ଏହିପରି ପ୍ରାର୍ଥନା କରିବାରୁ ବିଶ୍ୱନାୟକ ଶିବ ତାଙ୍କୁ ଲୋକସୃଷ୍ଟି ପ୍ରବର୍ତ୍ତନର ଉପାୟ ବତାଇଲେ ।। ୨୦ ।।

– ଈଶ୍ୱରଙ୍କ ଦ୍ୱାରା ବତାଯାଇଥିବା ଉପାୟକୁ ପ୍ରାପ୍ତ କରି ମଧ୍ୟ ଚତୁରାନନ ବ୍ରହ୍ମା ନାନାରୂପଯୁକ୍ତ ଏହି ସଂସାରକୁ ରଚନା କରିବା ପାଇଁ ସମର୍ଥ ହେଲେ ନାହିଁ ।। ୨୧ ।।

ଅଥ ତତ୍‌ପ୍ରକାରଂ ବର୍ଣ୍ଣୟତି –

**ପୁନସ୍ତ ପ୍ରାର୍ଥୟାମାସ ବ୍ରହ୍ମା ବିହ୍ୱଳମାନସଃ ।**
**ଦେବଦେବ ମହାଦେବ ଜଗତ୍ ପ୍ରଥମ କାରଣ ।। ୨୨ ।।**

ଅତୋ ବିହ୍ୱଳମାନସୋ ଭୟଯୁକ୍ତମାନସଃ ସନ୍ ପୁନଃ ଶିବଂ ପ୍ରାର୍ଥୟାମାସେତ୍ୟର୍ଥଃ ।। ୨୨ ।।

**ନମସ୍ତେ ସଚ୍ଚିଦାନନ୍ଦ ସ୍ୱେଚ୍ଛା ବିଗ୍ରହରାଜିତ ।**
**ଭବ ସର୍ବ ମହେଶାନ ସର୍ବକାରଣ କାରଣ ।। ୨୩ ।।**
**ଭବଦୁକ୍ତୋ ହ୍ୟୁପାୟୋ ମେ ନ କିଞ୍ଚିଜ୍‌ଜ୍ଞାୟତେଦ୍ଧଧୁନା ।**

ଭବ ସର୍ବଲୋକୋତ୍ପାଦକ ଶର୍ବ ସର୍ବ ସଂହାରକ, ସର୍ବକାରଣ କାରଣ ବିନ୍ଦୁମାୟାଦି ସର୍ବକାରଣକାରଣେତ୍ୟର୍ଥଃ ।। ୨୩।।

– ଏଠାରେ ତାହାର ପ୍ରକାରକୁ ବର୍ଣ୍ଣନ କରୁଛନ୍ତି –

ଏହାପରେ ବ୍ୟାକୁଳ ଚିତ୍ତଯୁକ୍ତ ବ୍ରହ୍ମା ପୁନର୍ବାର ସେହି ଶିବଙ୍କର ପ୍ରାର୍ଥନା କଲେ ହେ ଦେବାଧିଦେବ ମହାଦେବ, ସଂସାରର ପ୍ରଥମ କାରଣ, ଆପଣଙ୍କୁ ନମସ୍କାର ।। ୨୨।।

ହେ ସଚ୍ଚିଦାନନ୍ଦ, ସ୍ୱେଚ୍ଛାରେ ଶରୀରଧାରୀ, ଭବ–ଶର୍ବ–ମହେଶ୍ୱର–ସମସ୍ତ କାରଣର କାରଣ, ଆପଣଙ୍କଦ୍ୱାରା ବତା ଯାଇଥିବା ଉପାୟ ମୋର ବୋଧ ହେଉ ନାହିଁ ।। ୨୩–୨୪।।

ତର୍ହି କିଂ କର୍ତ୍ତବ୍ୟମିତ୍ୟତ୍ରାହ –

**ସୃଷ୍ଟିଂ ବିଧେହି ଭଗବତ୍ ପ୍ରଥମଂ ପରମେଶ୍ୱର ।**
**ଜ୍ଞାତୋପାୟସ୍ତତଃ କୁର୍ଯ୍ୟାଂ ଜଗତ୍ସୃଷ୍ଟିମୁମାପତେ ।। ୨୪।।**

– ହେ ପରମେଶ୍ୱର ! ହେ ଭଗବାନ୍ ! ପ୍ରଥମେ ଆପଣ ସୃଷ୍ଟି କରନ୍ତୁ । ହେ ଉମାପତି ! ତାପରେ ଉପାୟ ଜାଣି କରି ମୁଁ ସଂସାରର ରଚନା କରିବି ।। ୨୪।।

ଅଥ 'ପ୍ରଜାଃ ସୃଜେତି ନିର୍ଦିଷ୍ଟଶ୍ଚନ୍ଦ୍ରମୌଳିର୍ବିରିଞ୍ଚିନା ।'

ସସର୍ଜ ମନସା ରୁଦ୍ରାନାତ୍ମତୁଲ୍ୟାନ୍ ମହେଶ୍ୱରାନ୍ ।
ନୀଳକଣ୍ଠାଂସ୍ତ୍ରିନେତ୍ରାଂଶ୍ଚ ଜଟାମୁକୁଟମଣ୍ଡିତାନ୍ ।।

ଇତ୍ୟାଦ୍ୟାଦିତ୍ୟପୁରାଣବଚନାନୁସାରେଣ ସୃଷ୍ଟବାନିତ୍ୟାହ –

**ଇତ୍ୟେବଂ ପ୍ରାର୍ଥିତଃ ଶମ୍ଭୁର୍ବ୍ରହ୍ମଣା ବିଶ୍ୱଯୋନିନା ।**
**ସସର୍ଜାତ୍ମସମପ୍ରଖ୍ୟାନ୍ ସର୍ବଗାନ୍ ସର୍ବଶକ୍ତିକାନ୍ ।। ୨୫।।**
**ପ୍ରବୋଧପରମାନନ୍ଦପରିବାହିତ ମାନସାନ୍ ।**
**ପ୍ରମଥାନ୍ ବିଶ୍ୱନିର୍ମାଣପ୍ରଲୟାପାଦନକ୍ଷମାନ୍ ।। ୨୬।।**

– ବିଶ୍ୱର କାରଣଭୂତ ବ୍ରହ୍ମାଙ୍କଦ୍ୱାରା ଏପରି ପ୍ରାର୍ଥନା କରାଯାଇଥିବା ଭଗବାନ୍ ଶିବ ନିଜ ପରି ଶୋଭାଯୁକ୍ତ ପ୍ରମଥଗଣଙ୍କୁ ଉତ୍ପନ୍ନ କଲେ । ସେମାନେ ସମସ୍ତେ ସର୍ବଗାମୀ, ସର୍ବଶକ୍ତିମାନ୍, ପ୍ରବୋଧଜନିତ, ପରମାନନ୍ଦରେ ପରିପୂର୍ଣ୍ଣ ଚିତ୍ତଯୁକ୍ତ ତଥା ବିଶ୍ୱର ରଚନାରେ ସମର୍ଥ ଥିଲେ ।। ୨୫–୨୬।।

**ତେଷୁ ପ୍ରମଥବର୍ଗେଷୁ ସୃଷ୍ଟେଷୁ ପରମାତ୍ମନା ।**
**ରେଣୁକୋ ଦାରୁକଶ୍ଚେତି ଦ୍ୱାବଭୂତାଂ ଶିବପ୍ରିୟୌ ।। ୨୭।।**

ସ୍ପଷ୍ଟମ୍ ।। ୨୭।।

– ପରମାତ୍ମା ଶିବଙ୍କଦ୍ୱାରା ସୃଷ୍ଟ ସେହି ପ୍ରମଥଗଣଙ୍କ ମଧ୍ୟରେ ରୈଣୁକ ଏବଂ ଦାରୁକ ଶିବଙ୍କର ପ୍ରିୟ ଥିଲେ ।। ୨୭।।

ଅଥ ତଦ୍‌ଗଣେଶ୍ୱରୟୋର୍ମାହାତ୍ମ୍ୟଂ ପଞ୍ଚଭିଃ ଶ୍ଳୋକୈଃ ପ୍ରକଟୟତି –

**ସର୍ବବିଦ୍ୟାବିଶେଷଜ୍ଞୌ ସର୍ବକାର୍ଯ୍ୟବିଚକ୍ଷଣୌ ।**
**ମାୟାମଲବିନିର୍ମୁକ୍ତୌ ମହିମାତିଶୟୋଜ୍ଜ୍ୱଲୌ ।। ୨୮ ।।**

ସ୍ପଷ୍ଟମ୍ ।। ୨୮ ।।

– ସେହି ଦୁଇ ଗଣେଶ୍ୱରଙ୍କର ମହିମା ପାଞ୍ଚଟି ଶ୍ଳୋକରେ ବର୍ଣ୍ଣନ କରୁଛନ୍ତି –

ସେ ଦୁଇଜଣ ସମସ୍ତ ବିଦ୍ୟାରେ ପାରଙ୍ଗତ, ସକଳକାର୍ଯ୍ୟ ସମ୍ପାଦନରେ କୁଶଳ, ମାୟାଜନ୍ୟ ମଳରୁ ରହିତ, ଅତଏବ ନିଜର ମହିମାରେ ଅତ୍ୟନ୍ତ ଉଜ୍ଜ୍ୱଳ ଥିଲେ ।। ୨୮ ।।

**ଆତ୍ମାନନ୍ଦପରିସ୍ଫୂର୍ତ୍ତିରସାସ୍ୱାଦନଲମ୍ପଟୌ ।**
**ଶିବତତ୍ତ୍ୱପରିଜ୍ଞାନତିରସ୍କୃତଭବାମୟୌ ।। ୨୯ ।।**

ମାୟାମଲବିନିର୍ମୁକ୍ତୌ ମାୟାଶକ୍ତି ପରିକଳ୍ପିତାଣବାଦିମଲତ୍ରୟ ସମ୍ବନ୍ଧରହିତାବିତ୍ୟର୍ଥଃ ।। ୨୯ ।।

– ଆତ୍ମାନନ୍ଦର ପରିସ୍ଫୁରଣରୁ ଜାତ ରସାସ୍ୱାଦଯୁକ୍ତ ତଥା ଶିବତତ୍ତ୍ୱର ପରିପୂର୍ଣ୍ଣ ଜ୍ଞାନ ହେତୁ ସଂସାର ରୂପୀ ଆମୟ ଅର୍ଥାତ୍ ରୋଗରୁ ମୁକ୍ତ ଥିଲେ ।। ୨୯ ।।

**ନାନାପଥମହାଶୈବତନ୍ତ୍ର ନିର୍ବାହତତ୍‌ପରୌ ।**
**ବେଦାନ୍ତସାର ସର୍ବସ୍ୱ ବିବେଚନ ବିଚକ୍ଷଣୌ ।। ୩୦ ।।**

ସ୍ପଷ୍ଟମ୍ ।। ୩୦ ।।

– ଅନେକ ମାର୍ଗଯୁକ୍ତ ଶିବାଦ୍ୱୟ ତନ୍ତ୍ରର ପରିପାଳନରେ ତଥା ବେଦାନ୍ତସାରର ସର୍ବସ୍ୱ ବିବେଚନାରେ ତତ୍‌ପର ଥିଲେ ।। ୩୦ ।।

**ନିତ୍ୟସିଦ୍ଧୌ ନିରାତଙ୍କୌ ନିରଙ୍କୁଶପରାକ୍ରମୌ ।**
**ତାଦୃଶୌ ତୌ ମହାଭାଗୌ ସମୀକ୍ଷ୍ୟ ପରମେଶ୍ୱରଃ ।। ୩୧ ।।**

ନିତ୍ୟସିଦ୍ଧୌ ନିତ୍ୟଭୂତସିଦ୍ଧିମନ୍ତୌ, ସ୍ପଷ୍ଟମନ୍ୟତ୍ ।। ୩୧ ।।

**ସମର୍ଥୌ ସର୍ବକାର୍ଯ୍ୟେଷୁ ବିଶ୍ୱାସପରମାଶ୍ରିତୌ ।**
**ଅନ୍ତଃ ପୁରଦ୍ୱାରପାଳୌ ନିର୍ମମେ ନିୟତୌ ବିଭୁଃ ।। ୩୨ ।।**

ନିୟତୌ ଶୁଦ୍ଧାତ୍ମାନୌ ଏବଂରୂପରେଣୁକଦାରୁକୌ ବିଭୁଃ ସ୍ୱତନ୍ତ୍ରଃ ପରମେଶ୍ୱରଃ ଅନ୍ତଃପୁରଦ୍ୱାରପାଳୌ ନିର୍ମମେ ନିର୍ମିତବାନିତ୍ୟର୍ଥଃ ।। ୩୨ ।।

– ନିତ୍ୟ ସିଦ୍ଧ ଆତଙ୍କରହିତ ଅଜେୟ ପରାକ୍ରମଯୁକ୍ତ ଭାଗ୍ୟଶାଳୀ ସେହି ଦୁଇଜଣଙ୍କୁ ଦେଖି କରି ପରମେଶ୍ୱର ତାଙ୍କୁ ସମସ୍ତ କାର୍ଯ୍ୟ କରିବାରେ ସମର୍ଥ ତଥା ପରମ ବିଶ୍ୱସନୀୟ

ଭାବିଲେ । ଫଳତଃ ଭଗବାନ୍ ଶିବ ସେହି ଦୁଇଜଣଙ୍କୁ ଅନ୍ତଃପୁରର ଦ୍ୱାରପାଳ ନିଯୁକ୍ତ କଲେ ।। ୩୧-୩୨ ।।

ଅଥ ତୌ ରେଣୁକଦାରୁକୌ ଶିବସେବା ଚକ୍ରତୁଭିତ୍ୟାହ -

ଗଣେଶ୍ୱରୌ ରେଣୁକଦାରୁକବୁଭୌ
ବିଶ୍ୱାସଭୂତୌ ନବଚନ୍ଦ୍ର ମୌଳେଃ ।
ଅନ୍ତଃପୁରଦ୍ୱାରଗତୌ ସଦା ତୌ
ବିତେନଦୁର୍ବିଶ୍ୱପତେସ୍ତୁ ସେବାମ୍ ।। ୩୩ ।।

ଇତି ଶ୍ରୀସିଦ୍ଧାନ୍ତଶିଖାମଣୌ ରେଣୁକଦାରୁକାବତରଣଂ ନାମ ଦ୍ୱିତୀୟଃ ପରିଚ୍ଛେଦଃ। ସ୍ୱଷ୍ଟମ୍ ।। ୩୩ ।।

- ଏହିପରି ରେଣୁକ ଏବଂ ଦାରୁକ ବାଳଚନ୍ଦ୍ର ଶୋଭିତ ମସ୍ତକଯୁକ୍ତ ଶିବଙ୍କର ବିଶ୍ୱାସପାତ୍ର ହୋଇ ସଦା ଅନ୍ତଃପୁରର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ବିଶ୍ୱରକ୍ଷକ ଭଗବାନ୍ ଶିବଙ୍କର ସେବା କରିବାକୁ ଲାଗିଲେ ।। ୩୩ ।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ଶ୍ରୀସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ରେଣୁକଦାରୁକା-ବତରଣଂ ନାମ ଦ୍ୱିତୀୟଃ ପରିଚ୍ଛେଦଃ ।। ୨ ।।

ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ରେଣୁକ-ଦାରୁକ ଅବତରଣ ନାମକ ଦ୍ୱିତୀୟ ପରିଚ୍ଛେଦର ପଦବାଚ୍ୟପ୍ରମାଣ ପାରାବାର ଧୁରୀଣ ଶ୍ରୀମରିତୋଣ୍ଟଦ ଆଚାର୍ଯ୍ୟଦ୍ୱାରା ବିରଚିତ ତତ୍ତ୍ୱପ୍ରଦୀପିକା ଆଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୨ ।।



# ତୃତୀୟଃ ପରିଚ୍ଛେଦଃ

ଅଥାତ୍ର ଶିବଯୋଗିନୋ ରେଣୁକସ୍ୟ ଭୂଲୋକାବତରଣପ୍ରସଙ୍ଗକଥନାର୍ଥଂ ପ୍ରଥମମଷ୍ଟଭିଃ ଶ୍ଲୋକୈଃ କୈଲାସବର୍ଣ୍ଣନଂ କରୋତି –

**କଦାଚିଦଥ କୈଲାସେ କଲଧୌତ ଶିଲାମୟେ ।**
**ଗନ୍ଧର୍ବବାମନୟନାକ୍ରୀଡ଼ାମୌକ୍ତିକଦର୍ପଣେ ।। ୧ ।।**

ଅଥ ରେଣୁକାବତରଣାନନ୍ତରଂ କଦାଚିତ୍ ରଜତମୟପାଷାଣପ୍ରଦେଶେ ଗନ୍ଧର୍ବବନିତା କ୍ରୀଡ଼ାୟା ମୌକ୍ତିକଦର୍ପଣେ ।। ୧ ।।

– ଏଠାରେ ସାତଟି ଶ୍ଲୋକରେ[୨୦] କୈଳାସପର୍ବତର ବର୍ଣ୍ଣନ କରାଯାଇଛି – ଏହାପରେ ଥରେ ରୂପା ପରି ଧବଳ ଶିଳାଯୁକ୍ତ ତଥା ଗନ୍ଧର୍ବସୁନ୍ଦରୀ ସ୍ତ୍ରୀମାନଙ୍କର କ୍ରୀଡ଼ା ନିମନ୍ତେ ମୋତିର ଦର୍ପଣପରି କୈଳାସରେ ଭଗବାନ୍ ବସିଥିଲେ ।। ୧ ।।

**ମନ୍ଦାରବକୁଲାଶୋକମାକନ୍ଦପ୍ରାୟ ଭୂରୁହେ ।**
**ମଲ୍ଲୀମରନ୍ଦନିଷ୍ୟନ୍ଦପାନପୀନମଧୁବ୍ରତେ ।। ୨ ।।**

ମନ୍ଦାରମାକଳାଦି ନାନା ବୃକ୍ଷବତି ମଲ୍ଲିକାକୁସୁମମକରନ୍ଦସ୍ରବଣପାନପରିପୁଷ୍ଟ ଭ୍ରମରେ।। ୨ ।।

– ସେହି ପର୍ବତ ଉପରେ କଳ୍ପବୃକ୍ଷ ମୌଳସିରୀ ଅଶୋକ ଆମ୍ଭ ଆଦି ବୃକ୍ଷ ତଥା ମଲ୍ଲୀଫୁଲର ରସପାନ କରିଥିବା ବଡ଼ ବଡ଼ ଭ୍ରମର ଥିଲେ ।। ୨ ।।

**କୁଙ୍କୁମସ୍ତବକାମୋଦକୂଲଙ୍କଂଷହରିନ୍ ମୁଖେ ।**
**କଲକଣ୍ଠକୁଲାଲାପକନ୍ଦଲଦ୍ ରାଗବନ୍ଧୁରେ ।। ୩ ।।**

କୁଙ୍କୁମ କୁସୁମଗୁଚ୍ଛା ମୋଦଭରିତ କୂଳସ୍ପୃଶନ୍ନଦୀପପ୍ରବାହବତି କୋକିଳସମୂହରବ-ବାହୁଲ୍ୟୋଦ୍ଭବ ପଞ୍ଚମସ୍ୱରମନୋହରେ ।। ୩ ।।

– ରକ୍ତପୁଷ୍ପର ଗୁଚ୍ଛର ଆମୋଦରେ ପୂର୍ଣ୍ଣ ନଦୀଗୁଡ଼ିକରେ ଦିଗମାନ ଶୋଭା ପାଉଥିଲେ । ସେହି ପର୍ବତ କୋକିଳମାନଙ୍କର ମଧୁର ଧ୍ୱନିରେ ମନୋହର ଥିଲା ।। ୩ ।।

**କିନ୍ନରୀଗୀତମାଧୁର୍ଯ୍ୟପରିବାହିତଗହ୍ୱରେ ।**
**ସାନନ୍ଦବରଯୋଗୀନ୍ଦ୍ରବୃନ୍ଦାଲଙ୍କୃତ କନ୍ଦରେ ।। ୪ ।।**

---

୨୦. କୌଣସି ପଦାର୍ଥ/ବିଷୟରେ ପାଞ୍ଚ ଅଥବା ଅଧିକ ଶ୍ଲୋକରେ ବର୍ଣ୍ଣନା କରାଗଲେ, ତାହାକୁ କୁଳକ କହନ୍ତି ।

କିନ୍ନରସ୍ତ୍ରୀଗୀତମାଧୁର୍ଯ୍ୟପ୍ରବାହିତଗୁହାପ୍ରଦେଶେ ସାନନ୍ଦଗଣେଶମୁଖ୍ୟଶିବଯୋଗି ସମୂହାଲଙ୍କୃତପ୍ରଦେଶଭାଗବତି ।। ୪।।

– ତାହାର ଗୁମ୍ଫାଗୁଡ଼ିକ କିନ୍ନରସ୍ତ୍ରୀମାନଙ୍କର ଗୀତମାଧୁର୍ଯ୍ୟରେ ବ୍ୟାପ୍ତ ଥିଲେ । କନ୍ଦରଗୁଡ଼ିକ ବ୍ରହ୍ମାନନ୍ଦାନୁଭବୀ ଶ୍ରେଷ୍ଠ ଯୋଗୀମାନଙ୍କ ଦ୍ୱାରା ଅଲଂକୃତ ଥିଲେ ।। ୪।।

**ହେମାରବିନ୍ଦକଳିକାସୁଗନ୍ଧିରସମାନସେ ।**
**ଶାତକୁମ୍ଭମୟସ୍ତମ୍ଭଗତୋତ୍ତୁଙ୍ଗ ବିରାଜିତେ ।। ୫।।**

ହେମାରବିନ୍ଦକଳିକାମୋଦରସଭରିତମାନସରୋବରେ ସ୍ୱର୍ଣ୍ଣମୟସ୍ତମ୍ଭଶତୌନ୍ନତ୍ୟ ପ୍ରକାଶମାନେ ।। ୫।।

– ମାନସରୋବର ସ୍ୱର୍ଣ୍ଣକମଳର କଢ଼ମାନଙ୍କର ସୁଗନ୍ଧରସରେ ଯୁକ୍ତ ଥିଲା । ସୁନାରେ ନିର୍ମିତ ଶହ ଶହ ସ୍ତମ୍ଭ ସେଠାରେ ବିରାଜମାନ ଥିଲେ ।। ୫।।

**ମାଣିକ୍ୟଦୀପକଳିକାମରୀଚିଦ୍ୟୋତିତାନ୍ତରେ ।**
**ଦ୍ୱାରତୋରଣସଂରୂଢ଼ଶଙ୍ଖପଦ୍ମନିଧିଦ୍ୱୟେ ।। ୬।।**

ମଣିପ୍ରଦୀପକଳିକାକାରଶିଖାମୟୂଖପ୍ରକାଶିତାନ୍ତଃପୁରେ ଦ୍ୱାରତୋରଣସ୍ତମ୍ଭସଂଲଗ୍ନ ଶଙ୍ଖପଦ୍ମନିଧିଦ୍ୱୟେ ।। ୬।।

– ସେହି ପର୍ବତର ଭିତର ଭାଗ ମାଣିକ୍ୟଦୀପଶିଖାର କିରଣରେ ପ୍ରକାଶମାନ ଥିଲା ତଥା ତାହାର ଦ୍ୱାରର ତୋରଣରେ ଶଙ୍ଖ ଏବଂ ପଦ୍ମ ନିଧି ଦୁଇ ସଂଲଗ୍ନ ହୋଇଥିଲେ ।। ୬।।

**ମୁକ୍ତାତାରକିତୋଦାରବିତାନାମ୍ବରମଣ୍ଡିତେ ।**
**ସ୍ପର୍ଶଲକ୍ଷିତବୈଡ଼ୂର୍ଯ୍ୟମୟଭିତ୍ତିପରମ୍ପରେ ।। ୭।।**

ମୁକ୍ତାମଣିରଚିତନକ୍ଷତ୍ରବନ୍ ମହାବିତାନପଟାଲଙ୍କୃତେ ସ୍ପର୍ଶବେଦ୍ୟୋପଲକ୍ଷିତବୈଡ଼ୂର୍ଯ୍ୟ-ରତ୍ନମୟଭିତ୍ତି ଶ୍ରେଣିମତି ।। ୭।।

– ସେହି ପର୍ବତମୋତିଗୁଡ଼ିକରେ ତାରାଙ୍କିତ (ଜଡ଼ିତ) ବିଶାଳ ବସ୍ତ୍ରର ତମ୍ବୁରେ ସୁଶୋଭିତ ଥିଲା । ତାହାର କାନ୍ଥ ଗୁଡ଼ିକ ସ୍ପର୍ଶରୁ ଅନୁମିତ ବୈଦୁର୍ଯ୍ୟ ମଣିରେ ସଜ୍ଜିତ ଥିଲା । ଅର୍ଥାତ୍ କାନ୍ଥରେ ଲାଗିଥିବା ବୈଦୁର୍ଯ୍ୟ ମଣିଗୁଡ଼ିକ ଦେଖିଲେ ଜାଣି ହେଉ ନଥିଲା, କେବଳ ସ୍ପର୍ଶ କରି ଜାଣି ହେଉଥିଲା ।। ୭।।

---

୨୧. ବୈଡ଼ୂର୍ଯ୍ୟ ଅଥବା ବୈଦୂର୍ଯ୍ୟ ମଣିର ଅପର ନାମ ନୀଲମ୍ ଅଟେ ।

**ସଞ୍ଚରତ୍ ପ୍ରମଥଶ୍ରେଣୀପଦବାଚାଳନୂପୁରେ ।**
**ପ୍ରବାଳବଲଭୀଶୃଙ୍ଗଶୃଙ୍ଗାରମଣିମଣ୍ଡପେ ।। ୮ ।।**

ସଞ୍ଚରତ୍ ପ୍ରମଥପାଦ ପ୍ରଦେଶକୂଜତ୍ କଟକେ ପ୍ରବାଳବଲଭୀମୁଖ୍ୟ ଶୃଙ୍ଗାରମଣିମଣ୍ଡପେ ।। ୮ ।।

– ସେଠାରେ ସଞ୍ଚରଣ କରୁଥିବା ପ୍ରମଥଗଣଙ୍କର ପାଦର ନୂପୁର (ଶୁଣାଯାଉଥିଲା) ନିରନ୍ତର ବାଜୁଥିଲା । ପ୍ରବାଳ ନିର୍ମିତ ବଲଭୀ (ଚାଳ) ତଥା ଶୃଙ୍ଗ (ଶିଖର)ରେ ଅଳଂକୃତ ମଣିଦ୍ୱାରା ନିର୍ମିତ ମଣ୍ଡପ ସେଠାରେ ଶୋଭା ପାଉଥିଲା ।। ୮ ।।

ସିଂହାସନମଧିଷ୍ଠିତଂ ପରମେଶ୍ୱରଂ ପଞ୍ଚଦଶଭିଃ ଶ୍ଳୋକୈର୍ବର୍ଣ୍ଣୟତି –

**ବନ୍ଦାରୁଦେବମୁକୁଟମନ୍ଦାରରସବାସିତମ୍ ।**
**ରତ୍ନସିଂହାସନଂ ଦିବ୍ୟମଧିଷ୍ଠଂ ପରମେଶ୍ୱରମ୍ ।। ୯ ।।**

ନମନଶୀଳତ୍ରୟସ୍ତ୍ରିଂଶଦ୍‌କୋଟିଦେବତାମୁକୁଟକଳ୍ପପ୍ରସୂନରସମନୋହରଂ ନବ ରତ୍ନମୟସିଂହାସନଂ ତନ୍ମଣ୍ଡପମଧ୍ୟେ ଭାତି ।। ୯ ।।

– ବନ୍ଦନାରତ ଦେବତାମାନଙ୍କର ମୁକୁଟରେ ଜଡ଼ିତ କଳ୍ପବୃକ୍ଷର ଫୁଲର ରେଣୁରେ ସୁବାସିତ ଦିବ୍ୟ ରତ୍ନସିଂହାସନ ଉପରେ ବିରାଜିତ ପରମେଶ୍ୱରଙ୍କର ତାଙ୍କର ପରିବାର ଜନ ସେବା କରୁଥିଲେ ।। ୯ ।।

**ତମାସ୍ଥାନଗତଂ ଦେବଂ ସର୍ବଲୋକମହେଶ୍ୱରମ୍ ।**
**ତ୍ରୟ୍ୟନ୍ତ [22] କମଳାରଣ୍ୟବିହାର କଳହଂସକମ୍ ।। ୧୦ ।।**

ତତ୍ର ବିଦ୍ୟମାନଃ ପରମେଶ୍ୱରଃ କୀଦୃଶ ଇତ୍ୟତ୍ରାହ – ଦେବମିତ୍ୟାଦିନା । କ୍ରୀଡ଼ାଶୀଳଃ ସର୍ବଲୋକେଶୋ ବେଦାନ୍ତମୟକମଳସମୂହବିହାରରାଜହଂସଃ ।। ୧୦ ।।

– ଏଠାରେ ପରମେଶ୍ୱରଙ୍କର ସ୍ୱରୂପ ଏବଂ ବୈଭବ ବର୍ଣ୍ଣନା କରାଯାଇଛି। ସେହି ସିଂହାସନ ଉପରେ ବିରାଜମାନ ସମସ୍ତ ଲୋକର ସ୍ୱାମୀ ସେହି ଦେବ ବେଦାନ୍ତ ଅର୍ଥାତ୍ ଉପନିଷଦ୍‌ରୂପୀ କମଳ ସମୂହରେ ବିହାର କରୁଥିବା ରାଜହଂସ ପରି ଦେଖାଯାଉଥିଲେ ।। ୧୦ ।।

**ଉଦାରଗୁଣମୋଂକାରଶୁକ୍ତିକାପୁଟମୌକ୍ତିକମ୍ ।**
**ସର୍ବମଙ୍ଗଳସୌଭାଗ୍ୟସମୁଦାୟ ନିକେତନମ୍ ।। ୧୧ ।।**

---

୨୨. ବିଦ୍ୱାନ୍ ଋକ୍-ଯଜୁ-ସାମ ନାମକ ତିନି ବେଦକୁ ତ୍ରୟୀ କହନ୍ତି । ବେଦର ଅନ୍ତ ଅର୍ଥାତ୍ ଅନ୍ତିମଭାଗ ଉପନିଷଦ୍ ଅଟେ. । ତେଣୁ ଉପନିଷଦ୍‌କୁ ବେଦାନ୍ତ କୁହାଯାଏ ।

ତ୍ୟାଗଶୀଲଓଁକାରଶୁକ୍ତିକାପୁଟମୌକ୍ତିକଃ ସର୍ବମଙ୍ଗଳସୌଭାଗ୍ୟସମୂହ-ସ୍ଥାନଭୂତଃ ।। ୧୧ ।।

– ସେହି ଉଦାରଗୁଣଯୁକ୍ତ ଦେବ ଓଁକାରରୂପୀ ଶୁକ୍ତିର ମୋତି ତଥା ସମ୍ପୂର୍ଣ୍ଣ ମଙ୍ଗଳକାରୀ ସୌଭାଗ୍ୟ ସମୁଦାୟର ଭଣ୍ଡାର ଥିଲେ ।। ୧୧ ।।

ସଂସାରବିଷମୂର୍ଚ୍ଛାଳୁଜୀବସଞ୍ଜୀବନୌଷଧମ୍ ।
ନିତ୍ୟପ୍ରକାଶନୈର୍ମଲ୍ୟକୈବଲ୍ୟସୁରପାଦପମ୍ ।। ୧୨ ।।

ସଂସାରବିଷମୂର୍ଚ୍ଛିତ ଜୀବସଞ୍ଜୀବନୌଷଧଃ ସ୍ୱପ୍ରକାଶେନୈବ ନିର୍ମଳଃ ପରମୁକ୍ତିପ୍ରଦାନ–କଳ୍ପଦ୍ରୁମଃ ।। ୧୨ ।।

– ସେହି ଭଗବାନ୍ ଶିବ ସଂସାରରୂପୀ ବିଷରେ ମୂର୍ଚ୍ଛିତ ଜୀବମାନଙ୍କ ପାଇଁ ସଞ୍ଜୀବନୀ ଅର୍ଥାତ୍ ଅମୃତ ଔଷଧ ତଥା ନିତ୍ୟପ୍ରକାଶ ଏବଂ ନିର୍ମଳତାରେ ଯୁକ୍ତ କୈବଲ୍ୟର କଳ୍ପଦ୍ରୁମ ଥିଲେ ।। ୧୨ ।।

ଅନନ୍ତପରମାନନ୍ଦମକରନ୍ଦମଧୁବ୍ରତମ୍ ।
ଆତ୍ମଶକ୍ତିଲତାପୁଷ୍ୟଦ୍ ତ୍ରିଲୋକୀପୁଷ୍ପକୋରକମ୍ ।। ୧୩ ।।

ଅପାରପରମାନନ୍ଦରସାସ୍ୱାଦନମଧୁବ୍ରତଃ ସ୍ୱସମବେତଶକ୍ତିକଳ୍ପଲତା–ପୁଷ୍ପଲ୍ଲୋକତ୍ରୟ-କୁସୁମକୋରକଃ ।। ୧୩ ।।

– ସେହି ପରମେଶ୍ୱର ଅନନ୍ତ ପରମାନନ୍ଦ ମକରନ୍ଦର ସେବନ କରୁଥିବା ମଧୁପ ତଥା ନିଜର ଶକ୍ତିରୂପୀ ଲତାରେ ପୁଷ୍ଟି ପ୍ରାପ୍ତ କରୁଥିବା ତ୍ରିଭୁବନ ରୂପୀ ପୁଷ୍ପର କଢ଼ ପରି ଶୋଭାୟମାନ ଥିଲେ ।।୧୩।।

ବ୍ରହ୍ମାଣ୍ଡକୁଣ୍ଡିକାଷଣ୍ଡପିଣ୍ଡୀକରଣପଣ୍ଡିତମ୍ ।
ସମସ୍ତଦେବତା ଚକ୍ର ଚକ୍ରବର୍ତ୍ତିପଦେ ସ୍ଥିତମ୍ ।। ୧୪ ।।

ବ୍ରହ୍ମାଣ୍ଡସମୂହଲୋଳୀକରଣପ୍ରବୀଣୋ ନାରାୟଣାଦିସକଳଦେବତା-ସମୂହଚକ୍ରବର୍ତ୍ତୀ ।। ୧୪ ।।

– ବ୍ରହ୍ମାଣ୍ଡରୂପୀ କୁଣ୍ଡିକା (ପାତ୍ର)ର ଖଣ୍ଡଗୁଡ଼ିକୁ ଜୋଡ଼ିବାରେ ପ୍ରବୀଣ ତଥା ସମସ୍ତ ଦେବତାମଣ୍ଡଳର ଚକ୍ରବର୍ତ୍ତୀ ପ୍ରତୀତ ହେଉଥିଲେ ।। ୧୪ ।।

ଚନ୍ଦ୍ରବିମ୍ବାୟୁତଚ୍ଛାୟାଦାୟାଦଦ୍ୟୁତି ବିଗ୍ରହମ୍ ।
ମାଣିକ୍ୟମୁକୁଟଜ୍ୟୋତିର୍ମଞ୍ଜରୀପିଞ୍ଜରାମ୍ବରମ୍ ।। ୧୫ ।।

ଚନ୍ଦ୍ରାୟୁତ ପ୍ରଭାସ୍ପର୍ଧ ମାନତେଜା ମୁକୁଟଗତନବରତ୍ନଜ୍ୟୋତିର୍ମଞ୍ଜରୀ-ବିଚିତ୍ରାମ୍ବରଃ ।। ୧୫ ।।

– ସେହି ଭଗବାନ୍ ଶଙ୍କର ହଜାର ହଜାର ଚନ୍ଦ୍ରବିମ୍ବର ଛାୟାର ଦାୟାଦ (ସମ୍ବନ୍ଧି) ଦ୍ୟୁତିଯୁକ୍ତ ଶରୀର ତଥା ମାଣିକ୍ୟ ଜଡ଼ିତ ମୁକୁଟର ଜ୍ୟୋତି ରୂପକ କିରଣରେ ବ୍ୟାପ୍ତ ବସ୍ତ୍ରକୁ ଧାରଣ କରିଥିଲେ ।। ୧୫ ।।

**ଚୂଡ଼ାଲଂ ସୋମକଳୟା ସୁକୁମାରବିସାଭୟା ।**
**କଲ୍ୟାଣପୁଷ୍ପକଳିକାକର୍ଣ୍ଣପୂରମନୋହରମ୍ ।। ୧୬ ।।**

କୋମଳକନ୍ଦାଭସୋମକଳାଶିରୋଭୂଷଣଃ ପରମମଙ୍ଗଳସୁମକୁଡ଼୍ମଳକର୍ଣ୍ଣାଭରଣ ମନୋହରଃ ।। ୧୬ ।।

– ସେହି ଦେବ କୋମଳ ବିସତନ୍ତୁ (ପଦ୍ମ ନାଡ଼) ପରି ଚୂଡ଼ା ଉପରେ ଚନ୍ଦ୍ରକୁ ଧାରଣ କରିଥିଲେ ତଥା କଲ୍ୟାଣରୂପୀ ପୁଷ୍ପକଳିକାର କର୍ଣ୍ଣପୂରରେ ମନୋହର ଲାଗୁଥିଲେ ।। ୧୬ ।।

**ମୁକ୍ତାବଲୟସମ୍ବନ୍ଧ ମୁଣ୍ଡମାଳାବିରାଜିତମ୍ ।**
**ପର୍ଯ୍ୟାପ୍ତଚନ୍ଦ୍ରସୌନ୍ଦର୍ଯ୍ୟପରିପନ୍ଥିମୁଖଶ୍ରିୟମ୍ ।। ୧୭ ।।**

ମୁକ୍ତା ପ୍ରକରବଳିତମୁଣ୍ଡମାଳାବିରାଜିତଃ ପୂର୍ଣ୍ଣଚନ୍ଦ୍ରସୌନ୍ଦର୍ଯ୍ୟ ପରିପନ୍ଥି-ମୁଖଶ୍ରୀଃ ।। ୧୭ ।।

– ସେହି ଦେବ ମୋତିମାଳାରେ ଗୁନ୍ଥା ଯାଇଥିବା ମୁଣ୍ଡମାଳାରେ ସୁଶୋଭିତ ତଥା ପ୍ରଚୁର ଚନ୍ଦ୍ର ସୌନ୍ଦର୍ଯ୍ୟର ପ୍ରତିସ୍ପର୍ଧୀ ମୁଖ ଶୋଭାଯୁକ୍ତ ଥିଲେ ।। ୧୭ ।।

**ପ୍ରାତଃ ସଂଫୁଲ୍ଲକମଳପରିଯାୟ ତ୍ରିଲୋଚନମ୍ ।**
**ମନ୍ଦସ୍ମିତମିତାଳାପମଧୁରାଧରପଲ୍ଲବମ୍ ।। ୧୮ ।।**

ପ୍ରାତଃ ପ୍ରଫୁଲ୍ଲକମଳପର୍ଯ୍ୟାୟ ତ୍ରିଲୋଚନଃ, ମନ୍ଦସ୍ମିତପରିମିତବଚୋବିଳାସ-ମନୋହରାଧରପଲ୍ଲବଃ ।। ୧୮ ।।

– ତାଙ୍କର ତ୍ରିନେତ୍ର ସକାଳର ପ୍ରସ୍ଫୁଟିତ ପଦ୍ମ ପରି, ଅଧର ପଲ୍ଲବ ସ୍ମିତହାସ୍ୟ ଯୁକ୍ତ ତଥା ବାଣୀ ମିତ ମଧୁର ଥିଲା ।। ୧୮ ।।

**ଗଣ୍ଡମଣ୍ଡଳପର୍ଯ୍ୟନ୍ତକ୍ରୀଡନ୍ ମକରକୁଣ୍ଡଳମ୍ ।**
**କାଳିମ୍ନା କାଳକୂଟସ୍ୟ କଣ୍ଠନାଳେ କଳଙ୍କିତମ୍ ।। ୧୯ ।।**

କପୋଳାଭୋଗପର୍ଯ୍ୟନ୍ତଚଳନମକରକୁଣ୍ଡଳଃ କାଳକୂଟକାଳିମ୍ନା କଳଙ୍କିତ କଣ୍ଠନାଳଃ।। ୧୯ ।।

– ମକର ଆକୃତିର କୁଣ୍ଡଳ ତାଙ୍କର ଗଣ୍ଡପ୍ରଦେଶ ପର୍ଯ୍ୟନ୍ତ ଝୁଲୁଥିଲା ତଥା କଣ୍ଠର ନାଳିକା (ନାଡ଼) କାଳକୂଟର କାଳିମାରେ କଳଙ୍କିତ ଅର୍ଥାତ୍ ନୀଳ ହୋଇଯାଇଥିଲା ।। ୧୯ ।।

ମଣିକଙ୍କଣକେୟୂରମରୀଚିକରପଲ୍ଲବୈଃ ।
ଚତୁର୍ଭିଃ ସଂବିରାଜନ୍ତଂ ବାହୁମନ୍ଦାରଶାଖିଭିଃ ।। ୨୦ ।।

ମଣିମୟକଙ୍କଣକେୟୂରପ୍ରକାଶମାନକରପଲ୍ଲବଚତୁଷ୍କଃ ବାହୁକଳ୍ପଦ୍ରୁମ-ଭାସମାନଃ ।। ୨୦ ।।

– କଳ୍ପବୃକ୍ଷର ଶାଖା ପରି ସୁନ୍ଦର ତଥା ମଣି ଜଡ଼ିତ କଙ୍କଣ ଧାରଣ କରିଥିବା କର ପଲ୍ଲବ ଥିବା ଚାରି ବାହୁରେ ସେହି ଦେବ ପରମ ଶୋଭାମାନ ଥିଲେ ।। ୨୦ ।।

ଗୌରୀପୟୋଧରାଶ୍ଳେଷ କୃତାର୍ଥଭୁଜମଧ୍ୟମମ୍ ।
ସୁବର୍ଣ୍ଣବ୍ରହ୍ମସୂତ୍ରାଙ୍କଂ ସୂକ୍ଷ୍ମକୌଶେୟବାସସମ୍ ।। ୨୧ ।।

ଉମାପୟୋଧରାଲିଙ୍ଗନକୃତାର୍ଥବକ୍ଷଃସ୍ଥଳଃ, କନକମୟବ୍ରହ୍ମସୂତ୍ରାଙ୍କିତଃ, ଅତିସୂକ୍ଷ୍ମ-ଦୁକୂଳାମ୍ବରଃ ।। ୨୧ ।।

– ତାଙ୍କର ଭୁଜମଧ୍ୟଭାଗ ଅର୍ଥାତ୍ ବକ୍ଷସ୍ଥଳ ଗୌରୀ ସଂସ୍ପର୍ଶରେ କୃତାର୍ଥ ହୋଇଥିଲା ତଥା ସେହି ଦେବ ସୁନାର ପଇତା ଏବଂ ସୂକ୍ଷ୍ମ ରେଶମ ବସ୍ତ୍ର ଧାରଣ କରିଥିଲେ ।। ୨୧ ।।

ନାଭିସ୍ଥାନାବଲମ୍ବିନ୍ୟା ନବମୌକ୍ତିକମାଳୟା ।
ଗଙ୍ଗୟେବ କୃତାଶ୍ଳେଷଂ ମୌଳିଭାଗାବତୀର୍ଣ୍ଣୟା ।। ୨୨ ।।

ନାଭିପର୍ଯ୍ୟନ୍ତଗତନବମୌକ୍ତିକମାଳୟା ମସ୍ତକାବତୀର୍ଣ୍ଣୟା ଗଙ୍ଗୟେବ କୃତାଲିଙ୍ଗିନଃ ।। ୨୨ ।।

– ନାଭି ପର୍ଯ୍ୟନ୍ତ ଲମ୍ବି ଥିବା ମୋତିମାଳା ଦେଖିଲେ ଲାଗୁଥିଲା ଯେପରି ଗଙ୍ଗା ତାଙ୍କର ଆଲିଙ୍ଗନ କରୁଛନ୍ତି ।। ୨୨ ।।

ପଦେନ ମଣିମଞ୍ଜୀରପ୍ରଭାପଲ୍ଲବିତଶ୍ରିୟା ।
ଚନ୍ଦ୍ରବତ୍ ସ୍ଫାଟିକଂ ପୀଠଂ ସମାବୃତ୍ୟ ସ୍ଥିତ ପୁରଃ ।। ୨୩ ।।

ମଣିମୟନୂପୁରପ୍ରକାଶପଲ୍ଲବିତଶ୍ରିୟା ପାଦେନ ସିଂହାସନସ୍ୟ ପୁରତଶ୍ଚନ୍ଦ୍ରକାନ୍ତମୟ ଫଳକମାବୃତ୍ୟ ବର୍ତ୍ତମାନ ଇତ୍ୟର୍ଥଃ ।। ୨୩ ।।

– ମଣିଜଡ଼ିତ ମଞ୍ଜୀର (ନୂପୁର)ର କାନ୍ତିରେ ପଲ୍ଲବ ପରି ଶୋଭା ପାଉଥିବା ପାଦକୁ ଚନ୍ଦ୍ରପରି ଉଜ୍ଜ୍ୱଳ ସ୍ଫଟିକ ନିର୍ମିତ ପୀଠ ଉପରେ ରଖିଥିଲେ ।। ୨୩ ।।

ଏବଂ ମହେଶ୍ୱରଂ ବର୍ଣ୍ଣୟିତ୍ୱାଦ୍ଧଥ ତଦ୍ୱାମାଙ୍କସଂସ୍ଥିତାଂ ଭବାନୀଂ ତ୍ରୟୋଦଶସୂତ୍ରୈର୍ବର୍ଣ୍ଣୟତି –

ବାମପାର୍ଶ୍ୱନିବାସିନ୍ୟା ମଙ୍ଗଳପ୍ରିୟବେଷୟା ।
ସମସ୍ତଲୋକନିର୍ମାଣସମବାୟ ସ୍ୱରୂପାୟ ।। ୨୪ ।।

ତଦ୍ବାମପାର୍ଶ୍ୱବର୍ତ୍ତିନୀ ମାଙ୍ଗଲ୍ୟେନାସେଚନକରୂପବତୀ ସକଲଲୋକସୃଷ୍ଟାବୁପାଦାନ କାରଣୀଭୂତା ।। ୨୪।।

– ଏଠାରେ ପରମେଶ୍ୱରୀ ଉମାଙ୍କର ବର୍ଣ୍ଣନା କରାଯାଇଛି –

ପରମେଶ୍ୱରଙ୍କର ବାମପାର୍ଶ୍ୱରେ ଉମା ବିରାଜମାନ ଥିଲେ । ସେ ମଙ୍ଗଳ ଏବଂ ପ୍ରିୟ ବେଶଭୂଷାଯୁକ୍ତା ତଥା ସମସ୍ତ ଲୋକ ରଚନାର ସମବାୟିକାରଣରୂପା ଥିଲେ ।। ୨୪।।

**ଇଚ୍ଛାଜ୍ଞାନକ୍ରିୟାରୂପବହୁଶକ୍ତିବିଳାସୟା ।**
**ବିଦ୍ୟାତତ୍ତ୍ୱପ୍ରକାଶିନ୍ୟା ବିନାଭାବବିହୀନୟା ।। ୨୫।।**

ଇଚ୍ଛାଜ୍ଞାନକ୍ରିୟାଦିବହୁଶକ୍ତିବିଳାସବତୀ ଆତ୍ମବିଦ୍ୟାପ୍ରକାଶିନୀ ଶିବେନାବିନାଭୂତା[୨୩] ।। ୨୫।।

– ସେହି ଭବାନୀ ଇଚ୍ଛା-ଜ୍ଞାନ-କ୍ରିୟା-ରୂପ ଅନେକ ଶକ୍ତିରେ ସୁଶୋଭିତ, ଶୁଦ୍ଧ ବିଦ୍ୟାଶକ୍ତିର ପ୍ରକାଶିକା ତଥା ଶିବଙ୍କ ସହିତ ଅବିନାଭାବ ସମ୍ବନ୍ଧବାଲୀ ଥିଲେ ।।୨୫।।

**ସଂସାରବିଷକାନ୍ତାରଦାହଦାବାଗ୍ନିଲେଖୟା ।**
**ଧମ୍ମିଲ୍ଲମଲ୍ଲିକାମୋଦଟଙ୍କୁର୍ବଦ୍‌ଭୃଙ୍ଗମାଳୟା ।। ୨୬।।**

ସଂସାରବିଷବିପିନଦାହଦାବାଗ୍ନିରାଜିଃ, ଧମ୍ମିଲ୍ଲମଲ୍ଲିକାମୋଦଟଙ୍କୁର୍ବଦଲିମାଳିକା ।। ୨୬।।

– ସେହି ଦେବୀ ସଂସାରରୂପୀ ବିଷଜଙ୍ଗଲକୁ ଜଳାଇବା ପାଇଁ ଦାବାଗ୍ନିର ଜ୍ୱାଳା ପରି ଶୋଭା ପାଉଥିଲେ । ତାଙ୍କର ବେଣୀରେ ଲାଗିଥିବା ଜୁଇଫୁଲର ସୁଗନ୍ଧରେ ଭ୍ରମର ଆକର୍ଷିତ ହୋଇ ଧ୍ୱନି କରୁଥିଲେ ।। ୨୬।।

**ସମ୍ପୂର୍ଣ୍ଣଚନ୍ଦ୍ରସୌଭାଗ୍ୟସଂବାଦିମୁଖପଦ୍ମୟା ।**
**ନାସାମୌକ୍ତିକଲାବଣ୍ୟନାଶୀରସ୍ମିତ ଶୋଭାୟା ।। ୨୭।।**

ପୂର୍ଣ୍ଣଚନ୍ଦ୍ରକାନ୍ତି ବିବଦନ୍ ମୁଖପଙ୍କଜା ନାସାମୌକ୍ତିକଲାବଣ୍ୟବାହୁଲ୍ୟଚ୍ଛୁରିତ-ମନ୍ଦସ୍ମିତକାନ୍ତିମତୀ ।। ୨୭।।

– ତାଙ୍କର ମୁଖକମଳ ପୂର୍ଣ୍ଣଚନ୍ଦ୍ରର ସୌନ୍ଦର୍ଯ୍ୟକୁ ତିରସ୍କୃତ କରୁଥିଲା । ମୋତି ନାକଫୁଲର ସୌନ୍ଦର୍ଯ୍ୟରେ ନାସାଛିଦ୍ର ମନ୍ଦହାସ କଲା ପରି ଲାଗୁଥିଲା ।। ୨୭।।

**ମଣିତାଟଙ୍କରଙ୍ଗାନ୍ତର୍ବଲିତାପାଙ୍ଗଲୀଳୟା ।**
**ନେତ୍ରଦ୍ୱିତୟ ସୌନ୍ଦର୍ଯ୍ୟନିନ୍ଦିତେନ୍ଦୀବରଦ୍ୱିଷା ।। ୨୮।।**

ରତ୍ନଖଚିତପଟଙ୍କରଙ୍ଗମଣ୍ଡପମଧ୍ୟଲାସ୍ୟମାନାପାଙ୍ଗଲୀଳା ନୟନଦ୍ୱୟସୌନ୍ଦର୍ଯ୍ୟ ନିନ୍ଦିତେନ୍ଦୀବରଶ୍ରୀଃ ।। ୨୮।।

୨୩. ଅବିନାଭାବ – ବୌଦ୍ଧ ଏବଂ ନୈୟାୟିକ ବିଦ୍ୱାନ୍ ବ୍ୟାପ୍ତି ଅର୍ଥରେ ଏହି ଶବ୍ଦର ପ୍ରୟୋଗ କରିଛନ୍ତି ।

– ମଣି ଜଡ଼ିତ ପଟଙ୍କ (କର୍ଣ୍ଣାଭରଣ) ରୂପୀ ରଙ୍ଗମଞ୍ଚରେ ଦେବୀ ଅପାଙ୍ଗଲୀଳା (କଟାକ୍ଷ ବିକ୍ଷେପଣ) କରୁଥିଲେ । ଦୁଇ ନେତ୍ରର ସୌନ୍ଦର୍ଯ୍ୟରେ ସେ ନୀଳକମଳର କାନ୍ତିକୁ ମଧ୍ୟ ତିରସ୍କୃତ କରୁଥିଲେ ।। ୨୮ ।।

**କୁସୁମାୟୁଧକୋଦଣ୍ଡକୁଟିଳ ଭ୍ରୂବିଳାସୟା ।**

**ବନ୍ଧୂକକୁସୁମଚ୍ଛାୟାବନ୍ଧୁଭୂତାଦ୍ଧଧରଶ୍ରିୟା ।। ୨୯ ।।**

ମାରକାର୍ମୁକକୁଟିଳଭ୍ରୂଲତା ବିଳାସବତୀ ବନ୍ଧୂକକୁସୁମକାନ୍ତିବନ୍ଧୁରାଧରଶ୍ରୀଃ ।। ୨୯ ।।

– ତାଙ୍କର ଭ୍ରୂବିଳାସ (ଭଙ୍ଗିମା) କାମଦେବଙ୍କର ଧନୁ ପରି ବକ୍ର ଥିଲା ଏବଂ ଓଷ୍ଠର ଶୋଭା ବନ୍ଧୂକପୁଷ୍ପର ଛାୟା ପରି ଥିଲା ।। ୨୯ ।।

**କଣ୍ଠନାଳଜିତାନଙ୍ଗକମ୍ବୁବିବ୍ବୋକସମ୍ପଦା ।**

**ବାହୁଦ୍ୱିତୟ ସୌଭାଗ୍ୟବିଞ୍ଚିତୋତ୍ପଳମାଳୟା ।। ୩୦ ।।**

କଣ୍ଠନାଳଜିତାନଙ୍ଗଜୟଶଙ୍ଖ ନିନାଦବତୀ ବାହୁଦ୍ୱିତୟସୌଭାଗ୍ୟନ୍ୟକ୍କୃତୋତ୍ପଳ-ମାଳିକା ।। ୩୦ ।।

– ସେହି ଉମା କଣ୍ଠରୁ ନିର୍ଗତ ଶବ୍ଦ କାମଦେବଙ୍କର ଶଙ୍ଖର ଧ୍ୱନି ସମ୍ପଦକୁ ଜିତି ଯାଉଥିଲା ଏବଂ ଦୁଇ ବାହୁର ସୌନ୍ଦର୍ଯ୍ୟ ନୀଳକମଳକୁ ତିରସ୍କୃତ କରୁଥିଲା ।। ୩୦ ।।

**ସ୍ଥିରଯୌବନଲାବଣ୍ୟଶୃଙ୍ଗାରିତଶରୀରୟା ।**

**ଅତ୍ୟନ୍ତକଠିନୋତ୍ତୁଙ୍ଗପୀବରସ୍ତନଭାରୟା ।। ୩୧ ।।**

ସ୍ଥିରଯୌବନଲାବଣ୍ୟାଲଙ୍କୃତକଳେବରା ଅତ୍ୟନ୍ତକଠିନୋତ୍ତୁଙ୍ଗସ୍ତନ-ଭାରବତୀ ।। ୩୧ ।।

– ତାଙ୍କର ଶରୀର ସ୍ଥିରଯୌବନର ଲାବଣ୍ୟରେ ଶୃଙ୍ଗାରଯୁକ୍ତ ପ୍ରତୀତ ହେଉଥିଲା । ସେ ଅତ୍ୟନ୍ତ କଠିନ ଉଚ୍ଚ ବିସ୍ତର ସ୍ତନଭାରରେ ନତ ଥିଲେ ।। ୩୧ ।।

**ମୃଣାଳବଲ୍ଲରୀତନ୍ତୁବନ୍ଧୁଭୂତାବଲଗ୍ନୟା ।**

**ଶୃଙ୍ଗାରତଟିନୀତୁଙ୍ଗପୁଳିନଶ୍ରୋଣିଭାରୟା ।। ୩୨ ।।**

କମଳାନାଳତନ୍ତୁନିଭାତିସୂକ୍ଷ୍ମମଧ୍ୟପ୍ରଦେଶା ଶୃଙ୍ଗାରତରଙ୍ଗିଣୀତୁଙ୍ଗପୁଳିନଶ୍ରୋଣି-ଭାରବିରାଜିତା ।। ୩୨ ।।

– ତାଙ୍କର ଅବଲଗ୍ନ ଅର୍ଥାତ୍ କଟି ପ୍ରଦେଶ କମଳନାଳର ତନ୍ତୁ ପରି କ୍ଷୀଣ ଥିଲା । ସେ ଶୃଙ୍ଗାରରୂପୀ ନଦୀର ଉଚ୍ଚ ବନ୍ଧ ପରି ନିତମ୍ବର ଭାରରେ ଅଳସଗମନା ଥିଲେ ।। ୩୨ ।।

**କୁସୁମ୍ଭକୁସୁମଚ୍ଛାୟାକୋମଳାମ୍ବର ଶୋଭୟା ।**
**ଶୃଙ୍ଗାରୋଦ୍ୟାନସଂରମ୍ଭରମ୍ଭାସ୍ତମ୍ଭୋରୁକାଣ୍ଡୟା ।। ୩୩।।**

କୁସୁମ୍ଭକୁସୁମକାନ୍ତିମଦ୍‌କୋମଳାମ୍ବରଶୋଭମାନା ଶୃଙ୍ଗାରୋଦ୍ୟାନସମ୍ଭ୍ରମରମ୍ଭା-ସ୍ତମ୍ଭାୟମାନୋରୁକାଣ୍ଡା ।। ୩୩।।

– କୁସୁମ୍ଭ ଫୁଲ ରଙ୍ଗର କୋମଳ ବସ୍ତ୍ରରେ ସେ ଶୋଭାୟମାନ ଥିଲେ । ତାଙ୍କର ଜଂଘଦ୍ୱୟ ଶୃଙ୍ଗାର ଉଦ୍ୟାନର ଶୋଭାଯୁକ୍ତ କଦଳୀଗଛର ଖମ୍ବ ପରି ଥିଲା ।। ୩୩।।

**ଚୂତପ୍ରବାଳ ସୁଷମା ସୁକୁମାର ପଦାବ୍‌ଜୟା ।**
**ସ୍ଥିରମଙ୍ଗଳଶୃଙ୍ଗାରଭୂଷଣାଲଙ୍କୃତାଙ୍ଗୟା ।। ୩୪।।**

ଚୂତପଲ୍ଲବ ମନୋହର ସୁକୁମାର ପଦାବ୍‌ଜା ସ୍ଥିରମାଙ୍ଗଲ୍ୟଭୂଷଣାଲଙ୍କୃତାଙ୍ଗୀ ।। ୩୪।।

– ତାଙ୍କର ପାଦ ଆମ୍ବଗଛର କୋମଳ ନବୀନ ପତ୍ର ପରି ସୁନ୍ଦର ଏବଂ ସୁକୁମାର ଥିଲା । ତାଙ୍କର ଅଙ୍ଗ ସ୍ଥାୟୀ ମଙ୍ଗଳମୟ ଶୃଙ୍ଗାରଯୁକ୍ତ ଆଭୂଷଣରେ ଅଳଂକୃତ ଥିଲା ।। ୩୪।।

**ହାରନୂପୁର କେୟୂର ଚମତ୍‌କୃତ ଶରୀରୟା ।**
**ଚକ୍ଷୁରାନନ୍ଦଲତୟା ସୌଭାଗ୍ୟକୁଳ ବିଦ୍ୟୟା ।। ୩୫।।**

ମୁକ୍ତାହାରମଞ୍ଜୀରକେୟୂର ଚମତ୍‌କୃତ ଶରୀରିଣୀ ନୟନାନନ୍ଦ ଲତିକା ସୌଭାଗ୍ୟସ୍ୟ କୁଳବିଦ୍ୟାରୂପିଣୀ ।। ୩୫।।

– ତାଙ୍କର ଶରୀର ହାର, ନୂପୁର ଏବଂ କେୟୂର (ବାହୁର ଆଭୂଷଣ)ରେ ଚମକୁ ଥିଲା । ଆଖି ଦୁଇଟି ଆନନ୍ଦଲତା ପରି ଥିଲେ । ତେଣୁ ସେ ସୌଭାଗ୍ୟ କୁଳବିଦ୍ୟା ସ୍ୱରୂପା ଥିଲେ ।। ୩୫।।

**ଉମୟା ସମମାସୀନଂ ଲୋକଜାଲ କୁଟୁମ୍ବୟା ।**
**ଅପୂର୍ବରୂପମଭଜନ୍ ପରିବାରାଃ ସମନ୍ତତଃ ।। ୩୬।।**

ଲୋକସମୂହକୁଟୁମ୍ବିନୀ ଏବଂ ରୂପୟୋମୟା ଦିବ୍ୟକନ୍ୟକୟା ସହ ଦିବ୍ୟ ସିଂହାସନେ ସମାସୀନମପୂର୍ବରୂପଂ ପରମେଶ୍ୱରଂ ସମନ୍ତାନ୍ନାରାୟଣାଦି ତ୍ରୟତ୍ରିଂଶଦ୍ କୋଟି ଦେବତା ଅଭଜନ୍ନିତ୍ୟର୍ଥଃ ।। ୩୬।।

– ଲୋକସମୂହର କୁଟୁମ୍ବବାଲୀ ସେହି ଉମାଙ୍କ ସହିତ ଭଗବାନ୍ ଶିବ ବସିଥିଲେ । ଏହିପରି ଅପୂର୍ବ ରୂପଧାରି ଭଗବାନ୍ ଶିବଙ୍କର ତାଙ୍କର ପରିବାର ଜନ ଚତୁଃପାର୍ଶ୍ୱରେ ସେବା କରୁଥିଲେ ।। ୩୬।।

ଏବଂ ପାର୍ବତୀପରମେଶ୍ୱରୌ ବର୍ଣ୍ଣୟିତ୍ୱାଗ୍ରେ ବିଂଶତିସୂତ୍ରୈସ୍ତାଭିର୍ଦେବତାଭି-ର୍ବିଧୀୟମାନଂ ସେବାଂ ବର୍ଣ୍ଣୟତି –

**ପୁଣ୍ଡରୀକାକୃତିଂ ସ୍ୱଚ୍ଛଂ ପୂର୍ଣ୍ଣଚନ୍ଦ୍ରସହୋଦରମ୍ ।**
**ଦଧୌ ତସ୍ୟ ମହାଲକ୍ଷ୍ମୀଃ ସିତମାତପବାରଣମ୍ ।। ୩୭ ।।**

ଶ୍ୱେତକମଲବନ୍ନିର୍ମଳଂ ପୂର୍ଣ୍ଣଚନ୍ଦ୍ରସହୋଦରଂ ଶ୍ୱେତଛତ୍ରଂ ମହାଲକ୍ଷ୍ମୀସ୍ତସ୍ୟ ପରମେଶ୍ୱରସ୍ୟ ଧୃତବତୀତ୍ୟର୍ଥଃ ।। ୩୭ ।।

– ମହାଲକ୍ଷ୍ମୀ ତାଙ୍କର ଛତ୍ର ଧାରଣ କରିଥିଲେ ଯାହାକି ପଦ୍ମାକାର ଉଜ୍ଜ୍ୱଳ ପୂର୍ଣ୍ଣଚନ୍ଦ୍ର ସଦୃଶ ତଥା ଶ୍ୱେତବର୍ଣ୍ଣର ଥିଲା ।। ୩୭ ।।

**ତନ୍ତ୍ରୀଝଙ୍କାରଶାଳିନ୍ୟା ସଙ୍ଗୀତାମୃତବିଦ୍ୟୟା ।**
**ଉପତସ୍ଥେ ମହାଦେବମୁପାନ୍ତେ ଚ ସରସ୍ୱତୀ ।। ୩୮ ।।**

କୂଜନ୍ନବରତ୍ନମୟକଙ୍କଣସମୂହଯୁକ୍ତହସ୍ତେନୋପନିଷଦ୍ଭାସ୍ୱରମଣ୍ଡଳତନ୍ତ୍ରୀଝଙ୍କାରଶୋଭମାନ ସଙ୍ଗୀତ ରସବିଦ୍ୟୟା ସରସ୍ୱତୀ ସମୀପେ ମହାଦେବଂ ସେବିତବତୀତ୍ୟର୍ଥଃ ।। ୩୮ ।।

– ପାର୍ଶ୍ୱରେ ସରସ୍ୱତୀ ବୀଣାର ଝଙ୍କାରରେ ଯୁକ୍ତ ସଙ୍ଗୀତମୟୀ ଅମୃତବିଦ୍ୟାରେ ମହାଦେବଙ୍କର ଉପାସନା କରୁଥିଲେ ।। ୩୮ ।।

**ଝଣତ୍କଙ୍କଣଜାତେନ ହସ୍ତେନୋପନିଷଦ୍ୱଧୂଃ ।**
**ଓଁକାରତାଲବୃନ୍ତେନ ବୀଜୟାମାସ ଶଙ୍କରମ୍ ।। ୩୯ ।।**

କୂଜନ୍ନବରତ୍ନମୟକଙ୍କଣସମୂହଯୁକ୍ତହସ୍ତେନୋପନିଷଦ୍ୱଧୂଃ ଓଁକାରବ୍ୟଜନେନ ଶିବଂ ବୀଜୟାମାସେତ୍ୟର୍ଥଃ ।। ୩୯ ।।

– ଉପନିଷଦ୍ ରୂପୀ ବଧୂ ଝଙ୍କୃତ କଙ୍କଣ ଯୁକ୍ତ ହାତରେ ଓଁକାର ରୂପୀ ପଙ୍ଖାରେ ଶଙ୍କରଙ୍କୁ ପଙ୍ଖା କରୁଥିଲେ ।। ୩୯ ।।

**ଚଲଚ୍ଚାମରିକାହସ୍ତା ଝଙ୍କୁର୍ବନ୍ ମଣିକଙ୍କଣାଃ ।**
**ଆସେବନ୍ତ ତମୀଶାନମଭିତୋ ଦିବ୍ୟକନ୍ୟକାଃ ।। ୪୦ ।।**

ଦିବ୍ୟକନ୍ୟକା ଇନ୍ଦ୍ରାଣୀ ପ୍ରଭୃତି ଦେବସ୍ତ୍ରିୟ ଇତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ ।। ୪୦ ।।

– ଯାହାଙ୍କର ହାତ ଚାମର ହଲାଉ ଥିଲା ଏବଂ ମଣି ଜଡ଼ିତ କଙ୍କଣର ଶବ୍ଦରେ ଝଙ୍କୃତ ହେଉଥିଲା, ସେହିପରି ଇନ୍ଦ୍ରାଣୀ ଆଦି ଦିବ୍ୟ କନ୍ୟାମାନେ ସେହି ପରମେଶ୍ୱରଙ୍କର ଚତୁଃପାର୍ଶ୍ୱରେ ସେବା କରୁଥିଲେ ।। ୪୦ ।।

**ଚାମରାଣାଂ ବିଲୋଲାନାଂ ମଧ୍ୟେ ତନ୍ମୁଖମଣ୍ଡଲମ୍ ।**
**ରରାଜ ରାଜହଂସାନାଂ ଭ୍ରମତାମିବ ପଙ୍କଜମ୍ ।। ୪୧ ।।**

ବିଲୋଲାନାଂ ଚାମରାଣାଂ ମଧ୍ୟେ ଶିବସ୍ୟ ମୁଖମଣ୍ଡଳଂ ଭ୍ରମଣଂ ରାଜହଂସାନାଂ ମଧ୍ୟେ କମଲମିବ ରରାଜେତ୍ୟର୍ଥଃ ।। ୪୧ ।।

– ହଲୁଥିବା ଚାମର ମଧ୍ୟରେ ଶଙ୍କରଙ୍କର ମୁଖ ଏପରି ଲାଗୁଥିଲା, ଯେପରି ରାଜହଂସ ମଧ୍ୟରେ କମଳ ଶୋଭା ପାଉଛି ।। ୪୧ ।।

**ମନ୍ତ୍ରେଣ ତମସେବନ୍ତ ବେଦାଃ ସାଙ୍ଗ ବିଭୂତୟଃ ।**
**ଭକ୍ତ୍ୟା ଚୂଡ଼ାମଣିଂ କାନ୍ତଂ ବହନ୍ତ ଇବ ମୌଳିଭିଃ ।। ୪୨ ।।**

ସାଙ୍ଗବିଭୂତୟଃ[୨୪] ଶିକ୍ଷାଦ୍ୟଙ୍ଗବିଶିଷ୍ଟା ଋଗାଦିବେଦପୁରୁଷା ଉପନିଷଦ୍ ଭାଗରୂପମସ୍ତକୈସ୍ତଂ ପରମେଶ୍ୱରଂ କାନ୍ତଂ ଚୂଡ଼ାରତ୍ନମିବ ବହନ୍ତଃ ସନ୍ତଃ ପ୍ରଣବମନ୍ତ୍ରେଣ ଭକ୍ତ୍ୟା ଅସେବନ୍ତେତ୍ୟର୍ଥଃ ।। ୪୨ ।।

– ଅଙ୍ଗରୂପୀ ବିଭୂତିରେ ଯୁକ୍ତ ବେଦପୁରୁଷ ନିଜର ଉପନିଷଦ୍‌ରୂପୀ ମସ୍ତକ ଉପରେ ମନୋହର ଚୂଡ଼ାମଣି ଲଗାଇ ଭକ୍ତିର ସହିତ ମନ୍ତ୍ରଦ୍ୱାରା ସେହି ଶଙ୍କରଙ୍କର ସେବା କରୁଥିଲେ ।। ୪୨ ।।

**ତଦୀୟାୟୁଧଧାରିଣ୍ୟସ୍ତଦ୍‌ସମାନବିଭୂଷଣାଃ ।**
**ଅଙ୍ଗଭୂତାଃ ସ୍ତ୍ରିୟଃ କାଶ୍ଚିଦାସେବନ୍ତ ତମୀଶ୍ୱରମ୍ ।। ୪୩ ।।**

ବେଦପୁରୁଷାୟୁଧଧାରିଣ୍ୟସ୍ତଦ୍‌ସମାନବିଭୂଷଣା ଅଙ୍ଗଦେବତାସ୍ତଂ ଶିବମା–ସେବନ୍ତେତ୍ୟର୍ଥଃ ।। ୪୩ ।।

– ସେହି ବେଦପୁରୁଷଙ୍କର ଅଙ୍ଗଭୂତ କେତେକ ଦିବ୍ୟ ସ୍ତ୍ରୀମାନେ ନିଜର ଅସ୍ତ୍ର–ଶସ୍ତ୍ର ତଥା ଆଭୂଷଣକୁ ଧାରଣ କରି ସେହି ଈଶ୍ୱରଙ୍କର ସେବା କରୁଥିଲେ ।। ୪୩ ।।

**ଆପ୍ତାଧିକାରିଣଃ କେଚିଦନନ୍ତପ୍ରମୁଖା ଅପି ।**
**ଅଷ୍ଟୌ ବିଦ୍ୟେଶ୍ୱରା ଦେବମଭଜନ୍ତ ସମନ୍ତତଃ ।। ୪୪ ।।**

ପରମାପ୍ତାଧିକାରିଣଃ କେଚିଦନନ୍ତସୂକ୍ଷ୍ମଶିବୋତ୍ତମୈକନେତ୍ରୈକରୁଦ୍ରତ୍ରିମୂର୍ତ୍ତି ଶ୍ରୀକଣ୍ଠଶିଖଣ୍ଡି ସଂଜ୍ଞକା ଅଷ୍ଟବିଦ୍ୟେଶ୍ୱରାଃ ପରମେଶ୍ୱରମଭିତୋଽସେବନ୍ତ ଇତ୍ୟର୍ଥଃ ।। ୪୪ ।।

– ଅଧିକାର ପ୍ରାପ୍ତ ଆନନ୍ଦ ଆଦି କେତେକ ଉତ୍ତମ କୋଟିର ଆଠ ବିଦ୍ୟେଶ୍ୱର[୨୫] ମଧ୍ୟ ଚତୁଃପାର୍ଶ୍ୱରେ ତାଙ୍କର ସେବା କରୁଥିଲେ ।। ୪୪ ।।

---

୨୪. ଅଙ୍ଗ – ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଏବଂ ଜ୍ୟୋତିଷ ବେଦପୁରୁଷର ଛଅ ଅଙ୍ଗ ଭାବରେ ସ୍ୱୀକୃତ ।

୨୫. ଅନନ୍ତ, ସୂକ୍ଷ୍ମ, ଶିବୋତ୍ତମ, ଏକନେତ୍ର, ଏକରୁଦ୍ର, ତ୍ରିମୂର୍ତ୍ତି, ଶ୍ରୀକଣ୍ଠ ଏବଂ ଶିଖଣ୍ଡ – ଆଠ ବିଦ୍ୟେଶ୍ୱର ଅଟନ୍ତି ।

**ତତୋ ନନ୍ଦୀ ମହାକାଲଶ୍ଚଣ୍ଡୋ ଭୃଙ୍ଗୀ ରିଟିସ୍ତତଃ ।**
**ଘଣ୍ଟାକର୍ଣ୍ଣଃ ପୁଷ୍ପଦନ୍ତଃ କପାଲୀ ବୀରଭଦ୍ରକଃ ।। ୪୫ ।।**
**ଏବମାଦ୍ୟା ମହାଭାଗା ମହାବଳପରାକ୍ରମାଃ ।**
**ନିରଙ୍କୁଶ ମହାସତ୍ତ୍ୱା ଭେଜିରେ ତଂ ମହେଶ୍ୱରମ୍ ।। ୪୬ ।।**

ସ୍ପଷ୍ଟମ୍ ।। ୪୫-୪୬ ।।

– ତାପରେ ନନ୍ଦୀ, ମହାକାଳ, ଚଣ୍ଡ, ଭୃଙ୍ଗୀ, ରିଟି, ଘଣ୍ଟାକର୍ଣ୍ଣ, ପୁଷ୍ପଦନ୍ତ, କପାଳୀ, ବୀରଭଦ୍ର ଆଦି ପ୍ରଥମଗଣ ଯେଉଁମାନେ କି ମହାବଳୀ, ମହା ପରାକ୍ରମୀ, ସ୍ୱତନ୍ତ୍ର ଏବଂ ମହାସତ୍ତ୍ୱବାନ୍ ଥିଲେ, ସେହି ମହେଶ୍ୱରଙ୍କର ସେବା କରୁଥିଲେ ।। ୪୫-୪୬ ।।

ଅଥ ପ୍ରମଥଗଣାନ୍ ପଞ୍ଚଭିଃ ସୂତ୍ରୈର୍ବର୍ଣ୍ଣୟତି –

**ଅଣିମାଦିକମୈଶ୍ୱର୍ଯ୍ୟଂ ଯେଷାଂ ସିଦ୍ଧେରପୋହନମ୍ ।**
**ବ୍ରହ୍ମାଦୟଃ ସୁରା ଯେଷାମାଜ୍ଞାଲଙ୍ଘନଭୀରବଃ ।। ୪୭ ।।**

ଅଣିମାଦ୍ୟଷ୍ଟୈଶ୍ୱର୍ଯ୍ୟଂ ଯେଷାଂ ପ୍ରମଥଗଣାନାଂ ସିଦ୍ଧେଃ ସକାଶାତ୍ତୁଚ୍ଛମ୍, ବ୍ରହ୍ମାଦୟଃ ସୁରା ଯେଷାଂ ଆଜ୍ଞାଲଙ୍ଘନେ ଭୟଶୀଳା ଇତ୍ୟର୍ଥଃ ।। ୪୭ ।।

– ଏହାପରେ ପାଞ୍ଚଟି ଶ୍ଳୋକରେ ପ୍ରମଥଗଣଙ୍କର ବିଶେଷତା ବତାଉଛନ୍ତି – ସେହି ପ୍ରମଥଗଣଙ୍କର ସିଦ୍ଧି ସମ୍ମୁଖରେ ଅଣିମା[୨୬] ଆଦି ସିଦ୍ଧି ତୁଚ୍ଛ ଅଟନ୍ତି । ବ୍ରହ୍ମା ଆଦି ଦେବତା ତାଙ୍କର ଆଜ୍ଞା ଉଲ୍ଲଙ୍ଘନ କରିବାକୁ ଡରନ୍ତି ।। ୪୭ ।।

**ମୋକ୍ଷଲକ୍ଷ୍ମୀପରିଷ୍ୱଙ୍ଗମୁଦିତା ଯେଦ୍ଦନ୍ତରାତ୍ମନା ।**
**ଯେଷାମୀଷତ୍କରଂ ବିଶ୍ୱସର୍ଗସଂହାରକଳ୍ପନମ୍ ।। ୪୮ ।।**

ଅନ୍ତର୍ମୁଖୀଭୂତବୁଦ୍ଧ୍ୟା ମୋକ୍ଷଲକ୍ଷ୍ମ୍ୟାଲିଙ୍ଗନେ ମୁଦିତାଃ ଯେଷାଂ ବିଶ୍ୱସୃଷ୍ଟ୍ୟାଦି-କଳ୍ପନମୀଷତ୍କରଂ ତୁଚ୍ଛମିତ୍ୟର୍ଥଃ ।। ୪୮ ।।

– ସେମାନେ (ପ୍ରମଥଗଣ) ଅନ୍ତରାତ୍ମାରେ ମୋକ୍ଷଲକ୍ଷ୍ମୀଙ୍କ ଆଲିଙ୍ଗନରେ ଆନନ୍ଦମୟ ଥିଲେ । ତେଣୁ ସେମାନଙ୍କ ପାଇଁ ବିଶ୍ୱର ସୃଷ୍ଟି ଏବଂ ସଂହାର ଅତ୍ୟନ୍ତ ସରଳ କାର୍ଯ୍ୟ ଅଥବା ବ୍ୟର୍ଥ ଥିଲା ।। ୪୮ ।।

**ଜ୍ଞାନଶକ୍ତିଃ ପରା ଯେଷାଂ ସର୍ବବସ୍ତୁପ୍ରକାଶିନୀ[୨୭] ।**
**ଆନନ୍ଦକଣିକା ଯେଷାଂ ହରିବ୍ରହ୍ମାଦିସମ୍ପଦଃ ।। ୪୯ ।।**

---

୨୬. ସିଦ୍ଧି – ଅଣିମା, ମହିମା, ଲଘିମା, ଗରିମା, ପ୍ରାପ୍ତି, ପ୍ରାକାମ୍ୟ, ଈଶିତ୍ୱ ଏବଂ ବଶିତ୍ୱ (ଅଥବା ଯତ୍ର କାମାବସାୟିତ୍ୱ) ହେଉଛନ୍ତି ଆଠ ସିଦ୍ଧି ।

୨୭. ଜ୍ଞାନଶକ୍ତିର୍ମହେଶସ୍ୟ ତପତ୍ୟାଦିତ୍ୟବିଗ୍ରହା । (ସ୍ୱ. ଟ.)

ଯେଷାଂ ଜ୍ଞାନଶକ୍ତିଃ ସର୍ବବସ୍ତୁପ୍ରକାଶିନୀ ବରା ଶ୍ରେଷ୍ଠା, ବ୍ରହ୍ମାଦୀନାଂ ସମ୍ପଦୋ ଯେଷାମ୍ ଆନନ୍ଦକଣିକାଃ, ଲେଶା ଇତ୍ୟର୍ଥଃ ।। ୪୯ ।।

– ତାଙ୍କର ପରା ଜ୍ଞାନ ଶକ୍ତି ସମସ୍ତ ବସ୍ତୁକୁ ପ୍ରକାଶିତ କରୁଥିଲା ତଥା ବିଷ୍ଣୁ, ବ୍ରହ୍ମା ଆଦି ଦେବଗଣଙ୍କର ସମ୍ପଦ ସେମାନଙ୍କ ପାଖରେ ଥିବା ଆନନ୍ଦର କଣିକା ମାତ୍ର ଥିଲା ।। ୪୯ ।।

**ଆକାଂକ୍ଷନ୍ତେ ପଦଂ ଯେଷାଂ ଯୋଗିନୋ ଯୋଗତତ୍ପରାଃ ।**
**କାଙ୍କ୍ଷଣୀୟଫଲୋ ଯେଷାଂ ସଙ୍କଳ୍ପଃ କଳ୍ପପାଦପଃ ।। ୫୦ ।।**

ଶିବଯୋଗତତ୍ପରା ଯୋଗିନୋ ଯେଷାଂ ପଦଂ କାଙ୍କ୍ଷନ୍ତେ ଅପେକ୍ଷନ୍ତେ, ଯେଷାଂ ସଙ୍କଳ୍ପଃ କାମିତାର୍ଥଫଲଯୁତକଳ୍ପପାଦପ ଇତ୍ୟର୍ଥଃ ।। ୫୦ ।।

– ଯୋଗରେ ତତ୍ପର ଯୋଗୀଗଣ ତାଙ୍କର ପଦର ଅଭିଳାଷୀ ରହନ୍ତି । ତାଙ୍କର ସଙ୍କଳ୍ପ ହିଁ ମନୋବାଞ୍ଛିତ ଫଳ ଦେଉଥିବା କଳ୍ପବୃକ୍ଷ ଅଟେ ।। ୫୦ ।।

***କର୍ମକାଳାଦିକାର୍ପଣ୍ୟଚିନ୍ତା ଯେଷାଂ ନ ବିଦ୍ୟତେ ।***
***ଯେଷାଂ ବିକ୍ରମସନ୍ନାହା ମୃତ୍ୟୋରପି ଚ ମୃତ୍ୟବଃ ।। ୫୧ ।।***
***ତେ ସାରୁପ୍ୟପଦଂ ପ୍ରାପ୍ତାଃ ପ୍ରମଥା ଭେଜିରେ ଶିବମ୍ ।***

ସଞ୍ଚିତାଦି[୨୮] କର୍ମଭୂତାଦି କାଳକାମପ୍ରବୃତ୍ତ୍ୟୁଦ୍ଭୂତକାର୍ପଣ୍ୟଚିନ୍ତା ଯେଷାଂ ନ ବିଦ୍ୟତେ, ଯେଷାଂ ପରାକ୍ରମପ୍ରସଙ୍ଗା ମୃତ୍ୟୋରପି ମୃତ୍ୟବଃ, ସାରୂପ୍ୟପଦଂ ପ୍ରାପ୍ତାସ୍ତେ ପ୍ରମଥା ହରଂ ଭେଜିରେ । 'ଭଜ' ସେବାୟାମିତି ଧାତୁଃ ।। ୫୧ ।।

– ଯାହାଙ୍କୁ କର୍ମ ଏବଂ କାଳ ଆଦିରୁ ଜନ୍ୟ ଦୁଃଖର ଚିନ୍ତା ନ ଥାଏ, ତାଙ୍କର ପରାକ୍ରମପୂର୍ଣ୍ଣ କାର୍ଯ୍ୟ ମୃତ୍ୟୁର ମଧ୍ୟ ମୃତ୍ୟୁ ହୋଇଥାଏ । ଭଗବାନ୍ ଶିବଙ୍କର ସାରୂପ୍ୟପଦ (ମୋକ୍ଷ)କୁ ପ୍ରାପ୍ତ ସେହି ପ୍ରମଥଗଣ ଶିବଙ୍କର ସେବାରେ ନିରତ ଥିଲେ ।। ୫୧ ।।

**ବ୍ରହ୍ମୋପେନ୍ଦ୍ରମହେନ୍ଦ୍ରାଦ୍ୟା ବିଶ୍ୱତନ୍ତ୍ରାଧିକାରିଣମ୍ ।**
**ଆୟୁଧାଲଙ୍କୃତପ୍ରାପ୍ତାଃ ପରିତସ୍ତଂ ସିଷେବିରେ ।। ୫୨ ।।**

ବ୍ରହ୍ମବିଷ୍ଣୁରୁଦ୍ରେନ୍ଦ୍ରପ୍ରଭୃତିତ୍ରୟସ୍ତ୍ରିଂଶତ୍ କୋଟି ଦେବାଃ ସ୍ୱକୀୟାୟୁଧାଲଙ୍କୃତଶ୍ରେଣିଯୁକ୍ତାଃ, ବିଶ୍ୱସୃଷ୍ଟାବଧିକାରବନ୍ତଂ ତଂ ଶିବଂ ପରିତଃ ସିଷେବିର ଇତ୍ୟର୍ଥଃ ।। ୫୨ ।।

– ବ୍ରହ୍ମା, ବିଷ୍ଣୁ, ଦେବରାଜ ଇନ୍ଦ୍ର ଆଦି ନିଜ ନିଜ ଶସ୍ତ୍ରରେ ସୁସଜ୍ଜିତ ହୋଇ ବିଶ୍ୱବିସ୍ତାରର ଅଧିକାରୀ ସେହି ଭଗବାନ୍ ଶିବଙ୍କର ସାର୍ବଭୌମ ସେବା କରନ୍ତି ।। ୫୨ ।।

---

୨୮. କର୍ମ – କର୍ମ ତିନି ପ୍ରକାରର । ସଞ୍ଚିତ, କ୍ରିୟାମାଣ ଏବଂ ପ୍ରାରବ୍ଧ । ବର୍ତ୍ତମାନ ଶରୀର ପ୍ରାରବ୍ଧ କର୍ମର ଫଳ । ସଞ୍ଚିତ କର୍ମ ଭବିଷ୍ୟତ ଜନ୍ମର କାରଣ ହୁଏ ।

ଆଦିତ୍ୟା ବସବୋ ରୁଦ୍ରା ଯକ୍ଷଗନ୍ଧର୍ବକିନ୍ନରାଃ ।
ଦାନବା ରାକ୍ଷସା ଦୈତ୍ୟାଃ ସିଦ୍ଧା ବିଦ୍ୟାଧରୋରଗାଃ ।।
ଅଭଜନ୍ତ ମହାଦେବମପରିଚ୍ଛିନ୍ନ ସୈନିକାଃ ।। ୫୩।।

ଆଦିତ୍ୟା ଦ୍ୱାଦଶାଦିତ୍ୟାଃ, ଅଷ୍ଟୌ ବସବଃ, ଏକାଦଶ ରୁଦ୍ରାଃ, କୁବେର ପ୍ରଭୃତିଯକ୍ଷାଃ, ହାହା ପ୍ରଭୃତି ଗନ୍ଧର୍ବାଃ, ଅଶ୍ୱମୁଖାଦି କିନ୍ନରାଃ, ବାଣାଦିଦାନବାଃ, ରାବଣାଦିରାକ୍ଷସାଃ, ତାରକାଦିଦୈତ୍ୟାଃ, ଆଦିନାଥାଦିସିଦ୍ଧାଃ, ମଣିଭଦ୍ରାଦିବିଦ୍ୟାଧରାଃ, ଶେଷାଦ୍ୟୁରଗାଃ, ଅବିଚ୍ଛିନ୍ନ ସୈନିକାଃ ସନ୍ତୋ ମହାଦେବମଭଜନ୍ତ ଇତ୍ୟର୍ଥଃ ।। ୫୩।।

– ଦ୍ୱାଦଶସୂର୍ଯ୍ୟ, ଆଠ ବସୁ, ଏଗାର ରୁଦ୍ର, କୁବେର ଆଦି ଯକ୍ଷ, ହାହା ହୂହୂ ଆଦି ଗନ୍ଧର୍ବ, ଅଶ୍ୱମୁଖ ଆଦି କିନ୍ନର, ବାଣ ଆଦି ଦାନବ, ରାବଣ ଆଦି ରାକ୍ଷସ, ତାରକ ଆଦି ଦୈତ୍ୟ, ଆଦିନାଥ ଆଦି ସିଦ୍ଧ, ମଣିଭଦ୍ର ଆଦି ବିଦ୍ୟାଧର, ଶେଷନାଗ ଆଦି ସର୍ପ, ଅସଂଖ୍ୟ ସୈନ୍ୟବଳ ସହିତ ମହାଦେବଙ୍କର ସେବା କରୁଥିଲେ।। ୫୩।।

ବଶିଷ୍ଠୋ ବାମଦେବଶ୍ଚ ପୁଲସ୍ତ୍ୟାଗସ୍ତ୍ୟଶୌନକାଃ ।
ଦଧୀଚିର୍ଗୌତମଶ୍ଚୈବ ସାନନ୍ଦଶୁକନାରଦାଃ ।। ୫୪ ।।
ଉପମନ୍ୟୁଭୃଗୁବ୍ୟାସପାରାଶରମରୀଚୟଃ ।
ଇତ୍ୟାଦ୍ୟା ମୁନୟଃ ସର୍ବେ ନୀଳକଣ୍ଠଂ ସିଷେବିରେ ।। ୫୫ ।।

– ବଶିଷ୍ଠ, ବାମଦେବ, ପୁଲସ୍ତ୍ୟ, ଅଗସ୍ତ୍ୟ, ଶୌନକ, ଦଧୀଚି, ଗୌତମ, ସାନନ୍ଦ, ଶୁକଦେବ, ନାରଦ, ଉପମନ୍ୟୁ, ଭୃଗୁ, ବ୍ୟାସ, ପରାଶର, ମରୀଚି ଇତ୍ୟାଦି ସମସ୍ତ ମୁନି ନୀଳକଣ୍ଠଙ୍କର ସେବା କରୁଥିଲେ ।। ୫୫ ।।

ପାର୍ଶ୍ୱସ୍ଥପରିବାରାଣାଂ ବିମଳାଙ୍ଗେଷୁ ବିମ୍ବିତଃ ।
ସର୍ବାନ୍ତର୍ଗତମାତ୍ମାନାଂ ସ ରେଜେ ଦର୍ଶୟନ୍ନିବ ।। ୫୬ ।।

– ପାଖରେ ଥିବା ପରିବାର ଜନଙ୍କର ନିର୍ମଳ ଅଙ୍ଗରେ ପ୍ରତିବିମ୍ବିତ ସେହି ଭଗବାନ୍ ଶିବ ନିଜକୁ ସମସ୍ତଙ୍କ ଅନ୍ତରରେ ବିରାଜମାନ ଦେଖାଇ ଶୋଭାୟମାନ ଥିଲେ ।। ୫୬ ।।

ଅଥ ପରମେଶ୍ୱରସ୍ୟ ରାଜବ୍ୟାପାରଂ ଦଶଭିଃ ସୂତ୍ରୈଃ ପ୍ରଦର୍ଶୟତି –

କ୍ଷଣଂ ସ ଶମ୍ଭୁର୍ଦେବାନାଂ କାର୍ଯ୍ୟଭାଗଂ ନିରୂପୟନ୍ ।
କ୍ଷଣଂ ଗନ୍ଧର୍ବରାଜାନାଂ[୨୯] ଗାନବିଦ୍ୟାଂ ବିଭାବୟନ୍ ।। ୫୭ ।।

---

୨୯. 'ରାଜାହଃ ସଖିଭ୍ୟଷ୍ଟଚ୍' ଇତି ସୂତ୍ରେଣ ସମାସାନ୍ତାଦ୍ରାଜନ୍ ଶବ୍ଦାତ୍ 'ଟଚ୍' ପ୍ରତ୍ୟୟଃ।

– ଭଗବାନ୍ ଶମ୍ଭୁ ଗୋଟିଏ ମୁହୂର୍ତ୍ତରେ ଦେବତାମାନଙ୍କର କାର୍ଯ୍ୟକୁ ନିର୍ଦ୍ଧାରିତ କରି ପର ମୁହୂର୍ତ୍ତରେ ଗନ୍ଧର୍ବମାନଙ୍କର ଗାନବିଦ୍ୟା ଶୁଣୁଥିଲେ ।। ୫୭।।

ବ୍ରହ୍ମବିଷ୍ଣ୍ୱାଦିଭିର୍ଦ୍ଦେବୈଃ କ୍ଷଣମାଳାପମାଚରନ୍ ।
କ୍ଷଣଂ ଦେବମୃଗାକ୍ଷୀଣାଂ ଲାଳୟନ୍ନୃତ୍ୟବିଭ୍ରମମ୍ ।। ୫୮ ।।

– କେତେବେଳେ କ୍ଷଣକ ପାଇଁ ବ୍ରହ୍ମା, ବିଷ୍ଣୁ ଆଦି ଦେବତାମାନଙ୍କ ସହିତ କଥା ହେଉଥିଲେ ତ କେତେବେଳେ ଦେବ ସ୍ତ୍ରୀମାନଙ୍କର ନୃତ୍ୟର ପ୍ରଶଂସା କରୁଥିଲେ ।। ୫୮ ।।

ବ୍ୟାସାଦୀନାଂ କ୍ଷଣଂ କୁର୍ବନ୍ ବେଦୋଚ୍ଚାରେଷୁ ଗୌରବମ୍।
ବିଦଧାନଃ କ୍ଷଣଂ ଦେବ୍ୟା ମୁଖେ ବିମ୍ବାଧରେ ଦୃଶଃ[୩୦] ।। ୫୯।।

– ଗୋଟିଏ ମୁହୂର୍ତ୍ତରେ ବେଦୋଚ୍ଚାରଣ ପାଇଁ ବ୍ୟାସ ଆଦିଙ୍କର ପ୍ରଶଂସା କରୁଥିଲେ ତ ପର ମୁହୂର୍ତ୍ତରେ ବିମ୍ବଫଳ ପରି ଅଧର ଯୁକ୍ତ ଦେବୀ ଉମାଙ୍କର ମୁଖକୁ ଦେଖୁଥିଲେ ।। ୫୯।।

ହାସ୍ୟନୃତ୍ୟଂ କ୍ଷଣଂ ପଶ୍ୟନ୍ ଭୃଙ୍ଗିଣା ପରିକଳ୍ପିତମ୍ ।
ନନ୍ଦିନା ବେତ୍ରହସ୍ତେନ ସର୍ବତନ୍ତ୍ରାଧିକାରିଣା ।। ୬୦।।
ଅମୁଞ୍ଚତା ସଦା ପାର୍ଶ୍ୱମାତ୍ମାଭିପ୍ରାୟ ବେଦିନା ।
ଚୋଦିତାଂ ବାସୟନ୍ କାଂଶ୍ଚିଦ୍ୱିସୃଜନ୍ ଭ୍ରୂବିଳାସତଃ ।
ସମ୍ଭାବୟଂ ସ୍ତଥା ଚାନ୍ୟାନନ୍ୟାନପି ନିୟାମୟନ୍ ।। ୬୧।।

ଭ୍ରୂସଂଜ୍ଞୟା କାଂଶ୍ଚିଦ୍ୱିସୃଜନ୍ ପ୍ରେଷୟଂସ୍ତଥାନ୍ୟାନ୍ ସମ୍ଭାବୟନ୍, ପ୍ରିୟୋକ୍ତିଂ ବଦନ୍ନନ୍ୟାନ୍ନିୟାମୟନ୍ ଶିକ୍ଷୟନ୍ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୦-୬୧।।

– କେତେବେଳେ ଭୃଙ୍ଗୀମାନଙ୍କଦ୍ୱାରା ପ୍ରସ୍ତୁତ ହାସ୍ୟ ନୃତ୍ୟକୁ ଦେଖୁଥିଲେ ତ କେତେବେଳେ ସର୍ବକାର୍ଯ୍ୟାଧିକାରୀ ପାର୍ଶ୍ୱରେ ଦଣ୍ଡାୟମାନ ବେତ୍ରହସ୍ତ ଏବଂ ଆତ୍ମାଭିପ୍ରାୟକୁ ଜାଣିପାରୁଥିବା ନନ୍ଦୀଦ୍ୱାରା ଆହୂତ ଲୋକମାନଙ୍କୁ ଆଣୁଥିଲେ ତଥା ଅନ୍ୟମାନଙ୍କୁ ଭ୍ରୂବିକ୍ଷେପରେ ପ୍ରେରିତ କରୁଥିଲେ । କାହାକୁ ପ୍ରିୟବାକ୍ୟରେ ସନ୍ତୁଷ୍ଟ କରୁଥିଲେ ତ କାହାକୁ ଶାସିତ କରୁଥିଲେ ।। ୬୦-୬୧।।

ସମସ୍ତଭୁବନାଧୀଶମୌଳିଲାଳିତଶାସନଃ ।
ଅକୁଣ୍ଠଶକ୍ତିରବ୍ୟାଜଲାବଣ୍ୟଲଳିତାକୃତିଃ ।। ୬୨।।

ସମସ୍ତଭୁବନାଧୀଶଃ, ବ୍ରହ୍ମମସ୍ତକସ୍ଥାପିତସମସ୍ତଜ୍ଞାନଶକ୍ତିମାନ ପ୍ରତିହତଶକ୍ତିଃ, ନିଜଲାବଣ୍ୟମନୋହରାକୃତିରିତ୍ୟର୍ଥଃ ।। ୬୨।।

---

୩୦. ତୁଳନୀୟ-ଉମାମୁଖେ ବିମ୍ବଫଳାଧରୋଷ୍ଠେ ବ୍ୟାପାରୟାମାସ ବିଲୋଚନାନି।(କୁ.ସଂ.)

– ତାଙ୍କର ଆଦେଶ ସମସ୍ତ ଭୁବନର ସ୍ୱାମୀମାନଙ୍କ ପାଇଁ ଶିରୋଧାର୍ଯ୍ୟ ଥିଲା । ତାଙ୍କର ଆକୃତି ସ୍ୱାଭାବିକ ସୌନ୍ଦର୍ଯ୍ୟରେ ସୁନ୍ଦର ଥିଲା ତଥା ଶକ୍ତି କୁଣ୍ଠା ରହିତ ଅର୍ଥାତ୍ ଅବ୍ୟାହତ ଥିଲା ।। ୬୨।।

ସ୍ଥିରଯୌବନସୌରଭ୍ୟଶୃଙ୍ଗାରିତକଳେବରଃ ।
ଆତ୍ମଶକ୍ତ୍ୟମୃତାସ୍ୱାଦରସୋଲ୍ଲାସିତମାନସଃ ।। ୬୩।।

ବୃଦ୍ଧିକ୍ଷୟ ରହିତ ଯୌବନୋଦ୍ରେକଶୃଙ୍ଗାରିତ କଳେବରଃ, ସ୍ୱସମବେତ ଶକ୍ତିଲକ୍ଷଣପରମାନନ୍ଦ ରସାସ୍ୱାଦନୋଜ୍ଜୃମ୍ଭିତାନ୍ତରଙ୍ଗଃ ।। ୬୩।।

– ତାଙ୍କର ଶରୀର ସ୍ଥିର ଯୌବନର ସୁରଭିରେ ସୁସଜ୍ଜିତ ତଥା ମନ ଆତ୍ମଶକ୍ତିରୂପୀ ଅମୃତର ରସାସ୍ୱାଦରେ ଉଲ୍ଲାସଯୁକ୍ତ ଥିଲା ।। ୬୩।।

ସ୍ୱାଭାବିକମହୈଶ୍ୱର୍ଯ୍ୟ ବିଶ୍ରାମପରମାବଧିଃ ।
ନିଷ୍କଳଙ୍କ ମହାସତ୍ତ୍ୱ ନିର୍ମିତାନେକବିଗ୍ରହଃ ।। ୬୪।।

ସ୍ୱାଭାବିକେତି । ଅନୌପାଧିକ ସର୍ବଜ୍ଞତା[୩୧] ଦି ମହୈଶ୍ୱର୍ଯ୍ୟବିଶ୍ରାନ୍ତିପର୍ଯ୍ୟନ୍ତଭୂମିଃ, ଅକଳଙ୍କମହାଶକ୍ତିନିର୍ମିତାନେକଦିବ୍ୟମଙ୍ଗଳମୂର୍ତ୍ତିମାନ୍ ।। ୬୪।।

– ସ୍ୱାଭାବିକ ମହାଐଶ୍ୱର୍ଯ୍ୟର ବିଶ୍ରାମର ଅନ୍ତିମ ସୀମା ତଥା ସ୍ୱରୂପର କଳଙ୍କରହିତ ମହାସତ୍ତ୍ୱ ଦ୍ୱାରା ଅନେକ ଶରୀରକୁ ଧାରଣ କରିବାବାଲା ଅଟନ୍ତି ।। ୬୪।।

ଅଖଣ୍ଡାରାତି ଦୋର୍ଦଣ୍ଡକଣ୍ଡୂଖଣ୍ଡନ ପଣ୍ଡିତଃ ।
ଚିନ୍ତାମଣିଃ ପ୍ରପନ୍ନାନାଂ ଶ୍ରୀକଣ୍ଠଃ ପରମେଶ୍ୱରଃ ।। ୬୫।।

ଅପରିମିତ ସଜ୍ଜନାରାତି ବାହୁଦଣ୍ଡକଣ୍ଡୂଖଣ୍ଡନ ବିଚକ୍ଷଣଃ, ଅତଏବ ନିର୍ମଳାନ୍ତଃକରଣା-ନାମିଷ୍ଟାର୍ଥପ୍ରଦଃ ଶ୍ରୀକଣ୍ଠଃ ପରମେଶ୍ୱରୋଦ୍ଵରାଜତ ଇତି ଶେଷଃ ।। ୬୫।।

– ସେହି ପରମେଶ୍ୱର ଶ୍ରୀକଣ୍ଠ ସମସ୍ତ ଶତ୍ରୁମାନଙ୍କର ହାତର କୁଣ୍ଡିଆକୁ ଅର୍ଥାତ୍ ଯୁଦ୍ଧ କରିବାର ଇଚ୍ଛାକୁ ଦୂର କରିବାରେ ପଣ୍ଡିତ, ଶରଣାଗତଙ୍କ ନିମନ୍ତେ ଚିନ୍ତାମଣି ପରି ଶୋଭାୟମାନ ଥିଲେ ।। ୬୫।।

ଏବଂ ଶିବସ୍ୟ ବୈଭବଂ ବର୍ଣ୍ଣୟିତ୍ୱାଗ୍ରେ ସୂତ୍ରୈକାଦଶକେନ ରେଣୁକଗଣେଶସ୍ୟ ଶିବଭକ୍ତିମହତ୍ତ୍ୱଂ ସୂଚୟତି –

---

୩୧. ସର୍ବଜ୍ଞତା ତୃପ୍ତିରନାଦିବୋଧଃ ସ୍ୱତନ୍ତ୍ରତା ନିତ୍ୟମଲୁପ୍ତଶକ୍ତିଃ ।
ଅନନ୍ତଶକ୍ତିଶ୍ଚ ବିଭୋର୍ବିଧିଜ୍ଞା ଆହୁଃ ଷଡ଼ଙ୍ଗାନି ମହେଶ୍ୱରସ୍ୟ ।। (ବାୟୁ. ପୁ.)

ସଭାନ୍ତରଗତଂ ତନ୍ତ୍ରଂ ରେଣୁକଂ ଗଣନାୟକମ୍ ।
ପ୍ରସାଦଂ ସୁଲଭଂ ଦାତୁଂ ତାମ୍ବୁଲଂ ସ ତମାହ୍ୱୟତ୍ ।। ୬୬।।

ସ ଶିବଃ ସଭାମଧ୍ୟଗତଂ ତନ୍ତ୍ରଂ ମୁଖ୍ୟମ୍ ଅଥବା ପ୍ରସିଦ୍ଧଂ ତଂ ରେଣୁକଂ ପ୍ରତି ସୁଲଭଂ ତାମ୍ବୁଲପ୍ରସାଦଂ ଦାତୁଂ ଶିରସା ଆହ୍ୱୟତ୍, ଆକାରିତବାନିତ୍ୟର୍ଥଃ ।। ୬୬।।

– ଏହିପରି ଭଗବାନ୍ ଶିବ ସଭା ମଧ୍ୟରେ ବସି ମୁଖ୍ୟ ଗଣନାୟକ ରେଣୁକକୁ ପ୍ରସାଦ ଭାବରେ ପାନ (ତାମ୍ବୁଳ) ଦେବା ପାଇଁ ଡାକିଲେ ।। ୬୬।।

ଶମ୍ଭୋରାହ୍ୱାନସନ୍ତୋଷସମ୍ଭ୍ରମେଣୈବ ଦାରୁକମ୍ ।
ଉଲ୍ଲଙ୍ଘ୍ୟ ପାର୍ଶ୍ୱମଗମଲ୍ଲୋକନାଥସ୍ୟ ରେଣୁକଃ ।। ୬୭।।

ପାର୍ଶ୍ୱଂ ବାମଭାଗମିତ୍ୟର୍ଥଃ ।। ୬୭।।

– ସେହି ରେଣୁକ ଶଙ୍କରଙ୍କର ଆହ୍ୱାନକୁ ଶୀଘ୍ର ସନ୍ତୁଷ୍ଟ କରିବା ପାଇଁ ଦାରୁକକୁ ପାରିହୋଇ (ଅତିକ୍ରମ କରି) ଲୋକନାଥ ପାଖରେ ଅର୍ଥାତ୍ ବାମପାର୍ଶ୍ୱରେ ଉପସ୍ଥିତ ହେଲେ ।। ୬୭।।

ତମାଲୋକ୍ୟ ବିଭୁସ୍ତତ୍ର ସମୁଲ୍ଲଙ୍ଘିତ ଦାରୁକମ୍ ।
ମାହାତ୍ମ୍ୟଂ ନିଜଭକ୍ତାନାଂ ଦ୍ୟୋତୟନ୍ନିଦମବ୍ରବୀତ୍ ।। ୬୮।।

ବିଭୁ ସ୍ୱତନ୍ତ୍ର ଇତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ ।। ୬୮।।

– ସର୍ବବ୍ୟାପୀ ପରମେଶ୍ୱର ନିଜର ଭକ୍ତର ମାହାତ୍ମ୍ୟ ଦେଖାଇବା ପାଇଁ ଦାରୁକକୁ ଅତିକ୍ରମ କରିଥିବା ସେହି ରେଣୁକକୁ କହିଲେ ।। ୬୮।।

ରେ ରେ ରେଣୁକ ଦୁର୍ବୁଦ୍ଧେ କଥମେଷ ତ୍ୱୟାଦ୍ଧୁନା ।
ଉଲ୍ଲଙ୍ଘିତଃ ସଭାମଧ୍ୟେ ମମ ଭକ୍ତୋ ହି ଦାରୁକଃ ।। ୬୯।।

– ରେ ଦୁର୍ବୁଦ୍ଧି ରେଣୁକ, ସଭା ମଧ୍ୟରେ ମୋର ଭକ୍ତ ଦାରୁକର ତୁ ଅତିକ୍ରମ କ'ଣ ପାଇଁ କଲୁ ? ।। ୬୯।।

ଲଙ୍ଘନଂ ମମ ଭକ୍ତାନାଂ ପରମାନର୍ଥକାରଣମ୍।
ଆୟୁଃ ଶ୍ରିୟଂ କୁଳଂ କୀର୍ତ୍ତି ନିହନ୍ତି ହି ଶରୀରିଣାମ୍ ।। ୭୦।।

ହି ପ୍ରସିଦ୍ଧମିତ୍ୟର୍ଥଃ ।। ୭୦।।

– ମୋର ଭକ୍ତଙ୍କୁ ଅତିକ୍ରମ କରିବା ମହା ଅନର୍ଥର କାରଣ ହୁଏ । ତାହା ମନୁଷ୍ୟର ଆୟୁ, ଲକ୍ଷ୍ମୀ, କୁଳ ଏବଂ କୀର୍ତ୍ତିକୁ ନଷ୍ଟ କରିଦିଏ ।। ୭୦।।

ମମ ଭକ୍ତମବଜ୍ଞାୟ ମାର୍କଣ୍ଡେୟଂ[୩୨] ପୁରା ଯମଃ ।
ମତ୍ପାଦତାଡ଼ନାଦାସୀତ୍ ସ୍ମରଣୀୟକଳେବରଃ ।। ୭୧ ।।

ବିନଷ୍ଟ କଳେବରତ୍ୱାତ୍ ସ୍ମରଣୀୟ କଳେବର ଆସୀଦିତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ ।। ୭୧ ।।

– ପ୍ରାଚୀନ କାଳରେ ଯମରାଜ ଭକ୍ତ ମାର୍କଣ୍ଡେୟଙ୍କର ଅବଜ୍ଞା କରି ମୋର ପଦାଘାତରେ ନଷ୍ଟ ହୋଇଯାଇଥିଲେ ।। ୭୧ ।।

ଭୃଗୋଶ୍ଚ ଶଙ୍କୁକର୍ଣ୍ଣସ୍ୟ ମମ ଭକ୍ତିମତୋସ୍ତୟୋଃ ।
କୃତ୍ୱାନିଷ୍ଟମଭୂଦ୍ ବିଷ୍ଣୁର୍ବିକେଶା ଦଶଯୋନିଭାକ୍ ।। ୭୨ ।।

ବିକେଶଃ ଶିରଃ ପୂର୍ବଭାଗୋତ୍ପାଦିତକେଶବାନିତ୍ୟର୍ଥଃ ।। ୭୨ ।।

– ମୋର ଭକ୍ତ ଭୃଗୁ ଏବଂ ଶଙ୍କୁକର୍ଣ୍ଣଙ୍କର ଅନିଷ୍ଟ କରି ବିଷ୍ଣୁ ବିଶିଷ୍ଟ କେଶଯୁକ୍ତ ହୋଇଥିଲେ ଅର୍ଥାତ୍ ତାଙ୍କର ମସ୍ତକରେ ବାଳ ହୋଇଗଲା ତଥା ସେ ଦଶ ଥର ଜନ୍ମ ନେଲେ ।। ୭୨ ।।

ମଦ୍ଭକ୍ତେନ ଦଧୀଚେନ କୃତ୍ୱା ଯୁଦ୍ଧଂ ଜନାର୍ଦନଃ ।
ଭଗ୍ନଚକ୍ରାୟୁଧଃ ପୂର୍ବଂ ପରାଭବମୁପାଗମତ୍ ।। ୭୩ ।।

– ପ୍ରାଚୀନ କାଳରେ ମୋର ଭକ୍ତ ଦଧୀଚି ସହିତ ଯୁଦ୍ଧ କରି ଜନାର୍ଦ୍ଦନ (ବିଷ୍ଣୁ) ଚକ୍ର ଓ ଧନୁଷ ଭାଙ୍ଗି ଯିବାରୁ ପରାଜୟକୁ ପ୍ରାପ୍ତ ହୋଇଥିଲେ ।। ୭୩ ।।

କୃତ୍ୱାଶ୍ୱମେଧୋ ଦକ୍ଷୋଽପି ମଦ୍ଭକ୍ତାଂଶ୍ଚ ଗଣେଶ୍ୱରାନ୍ ।
ଅବମତ୍ୟ ସଭାମଧ୍ୟେ ମେଷବକ୍ତ୍ରୋଽଭବତ୍ ପୁରା ।। ୭୪ ।।

ଅବମତ୍ୟ ଉଦାସ୍ୟେତ୍ୟର୍ଥଃ ।। ୭୪ ।।

– ଅଶ୍ୱମେଧ ଯଜ୍ଞ କରିଥିବା ଦକ୍ଷ ମଧ୍ୟ ସଭାରେ ମୋର ଭକ୍ତ ଗଣେଶ୍ୱର-ମାନଙ୍କର ଅପମାନ କରି ମେଣ୍ଢା ମୁଣ୍ଡକୁ ପ୍ରାପ୍ତ ହୋଇଥିଲେ ।। ୭୪ ।।

ଶ୍ୱେତସ୍ୟ ମମ ଭକ୍ତସ୍ୟ ଦୁରତିକ୍ରମତେଜସଃ ।
ଔଦାସୀନ୍ୟେନ କାଲୋଽପି ମୟା ଦଗ୍ଧଃ ପୁରାଽଭବତ୍ ।। ୭୫ ।।

ଦୁରତିକ୍ରମତେଜସଃ ଅନିନ୍ଦିତ ତେଜସ ଇତ୍ୟର୍ଥଃ ।। ୭୫ ।।

---

୩୨. ମାର୍କଣ୍ଡେୟ ମୃକଣ୍ଡୁ ଋଷିଙ୍କର ପୁତ୍ର ଥିଲେ । ତାଙ୍କର ଆୟୁ ମାତ୍ର ପାଞ୍ଚବର୍ଷ ପାଇଁ ଥିଲା । ସପ୍ତର୍ଷିଙ୍କର ଆଶୀର୍ବାଦରେ ତାଙ୍କୁ ବ୍ରହ୍ମାଙ୍କର ପାଞ୍ଚବର୍ଷର ଆୟୁ ପ୍ରାପ୍ତ ହୋଇଥିଲା ।

– ପୂର୍ବେ ଅନତିକ୍ରମଣୀୟ ତେଜଯୁକ୍ତ ମୋର ଭକ୍ତ ଶ୍ୱେତ ଉଦାସୀନ ହେବାରୁ ମୁଁ କାଳକୁ ମଧ ଜଳେଇ ଦେଇଥିଲି ।। ୭୫।।

**ଏବମନ୍ୟେଽପି ବହବୋ ମଦ୍‌ଭକ୍ତାନାମତିକ୍ରମାତ୍ ।**
**ପରିଭୂତା ହତାଶ୍ଚାସନ୍ ଭକ୍ତା ମେ ଦୁରତିକ୍ରମାଃ ।। ୭୬।।**

– ଏହିପରି ଅନ୍ୟ କେତେ ଲୋକ ମୋର ଭକ୍ତଗଣଙ୍କର ଅତିକ୍ରମଣ କରି ପରାଭବକୁ ପ୍ରାପ୍ତ ହେଲେ ଏବଂ ମରା ଗଲେ । ତେଣୁ ମୋର ଭକ୍ତ ଅଲଙ୍ଘନୀୟ ନୁହନ୍ତି ।। ୭୬।।

ଏବଂ ଭକ୍ତମାହାତ୍ମ୍ୟଂ ବର୍ଣ୍ଣୟିତ୍ୱା ତଦୁଲ୍ଲଙ୍ଘନଦୋଷସ୍ୟ ଫଳଂ ନିର୍ଦ୍ଦିଶତି –

**ଅବିଚାରେଣ ମଦ୍‌ଭକ୍ତୋ ଲଙ୍ଘିତୋ ଦାରୁକସ୍ତ୍ୱୟା ।**
**ଏଷ ତ୍ୱଂ ରେଣୁକାନେନ ଜନ୍ମବାନ୍ ଭବ ଭୂତଲେ ।। ୭୭।।**

ଏଷ ଦାରୁକ ଇତି ସମ୍ବନ୍ଧଃ ।। ୭୭।।

– ହେ ରେଣୁକ, ତୁ କୌଣସି ବିଚାର ନ କରି ମୋର ଭକ୍ତ ଦାରୁକର ଅତିକ୍ରମ କଲୁ । ତେଣୁ ତୁ ପୃଥିବୀ ପୃଷ୍ଠରେ ଜନ୍ମ ନେ ।। ୭୭।।

ଅଥ ରେଣୁକୋ ଜନ୍ମନି ଭୀତଃ ସନ୍ ପଞ୍ଚଭିଃ ସୂତ୍ରୈଃ ଶିବଂ ବିଜ୍ଞାପୟତି –

**ଇତ୍ୟୁକ୍ତଃ ପରମେଶେନ ଭକ୍ତମାହାତ୍ମ୍ୟଶଂସିନା ।**
**ପ୍ରାର୍ଥୟାମାସ ଦେବେଶଂ ପ୍ରଣିପତ୍ୟ ସ ରେଣୁକଃ ।। ୭୮।।**

ଇତ୍ୟୁକ୍ତୋ ଲୋକହିତାର୍ଥମିତ୍ୟୁକ୍ତୋ ଭବଦାହ୍ୱାନସମ୍ଭ୍ରାନ୍ତ୍ୟା ମୟା ଅଜ୍ଞାନାଦୟଂ ଲଙ୍ଘିତଃ, ମାଂ ପାହୀତି ପ୍ରାର୍ଥୟାମାସେତ୍ୟର୍ଥଃ ।। ୭୮।।

– ଭକ୍ତଙ୍କର ମାହାତ୍ମ୍ୟ ବତାଉଥିବା ପରମେଶ୍ୱରଙ୍କ ଦ୍ୱାରା ଏହିପରି କୁହାଯାଇଥିବା ସେହି ରେଣୁକ ଦେବେଶ ଭଗବାନ୍ ଶିବଙ୍କର ପାଦରେ ପଡ଼ି ପ୍ରାର୍ଥନା କଲା ।। ୭୮।।

**ମାନୁଷୀଂ ଯୋନିମାସାଦ୍ୟ ମହାଦୁଃଖବିବର୍ଦ୍ଧନୀମ୍ ।**
**[୩୩]ଜାତ୍ୟାୟୁର୍ଭୋଗବୈଷମ୍ୟ ହେତୁକର୍ମୋପପାଦିନୀମ୍ ।। ୭୯।।**
**ସମସ୍ତଦେବକୈଙ୍କର୍ଯ୍ୟକାର୍ପଣ୍ୟପ୍ରସବସ୍ଥଲୀମ୍ ।**
**ମହାତାପତ୍ରୟୋପେତାଂ ବର୍ଣ୍ଣାଶ୍ରମନିୟନ୍ତ୍ରିତାମ୍ ।।**
**ବିହାୟ ତ୍ୱତ୍ପଦାମ୍ଭୋଜସେବାଂ କିଂ ବା ବସାମ୍ୟହମ୍ ।। ୮୦।।**

ତ୍ୱଦ୍ ପଦାମ୍ବୁଜସେବାଂ ବିହାୟ ଏବଂରୂପମାନୁଷୀଂ ଯୋନିମାସାଦ୍ୟ ସ୍ଥାତୁଂ ଯୋଗ୍ୟଃ କିମହମିତ୍ୟର୍ଥଃ ।। ୭୯-୮୦।।

---

୩୩. ତୁଳନୀୟ – ସତି ମୂଳେ ତଦ୍‌ବିପାକୋ ଜାତ୍ୟାୟୁର୍ଭୋଗାଃ । (ପା. ଯୋ. ସୂ.)

**ଯଥା ମେ ମାନୁଷୋ ଭାବୋ ନ ଭବେତ୍ କ୍ଷିତିମଣ୍ଡଳେ ।**
**ତଥା ପ୍ରସାଦଂ ଦେବେଶ ବିଧେହି କରୁଣାନିଧେ ।। ୮୧ ।।**

– ହେ ଦେବେଶ, ମହାଦୁଃଖକୁ ବଢ଼ାଉଥିବା, ଜନ୍ମ, ଆୟୁ ଏବଂ ଭୋଗର ବୈଷମ୍ୟର କାରଣଭୂତ କର୍ମକୁ କରୁଥିବା, ସମସ୍ତ ଦେବତାଙ୍କର ସେବକତ୍ୱରୂପୀ ଦୀନତାର ଜନ୍ମସ୍ଥଳୀ, ଦୈହିକ, ଦୈବିକ, ଭୌତିକ ନାମକ ତିନି ତାପରେ ଯୁକ୍ତ, ବର୍ଣ୍ଣାଶ୍ରମ ଧର୍ମରେ ନିୟନ୍ତ୍ରିତ ମନୁଷ୍ୟ ଯୋନିକୁ ପ୍ରାପ୍ତ କରି ଆପଣଙ୍କର ଚରଣକମଳର ସେବାରୁ ବଞ୍ଚିତ ମୁଁ ସେଠାରେ କିପରି ରହିପାରିବି ? ହେ କରୁଣାନିଧି, ପୃଥିବୀ ଲୋକରେ ମୋର ମନୁଷ୍ୟ ଜନ୍ମ ଯେପରି ନ ହେବ, ସେହି କୃପା କର ।। ୭୯–୮୧ ।।

ଏବଂ ପ୍ରାର୍ଥିତବନ୍ତଂ ରେଣୁକଂ ସ୍ୱାମୃତ୍ୱେନ ନିଶ୍ଚିତ୍ୟାଭୟଂ ଦତ୍ୱା ଷଡ୍ଭିଃ ସୂତ୍ରୈଃ ପ୍ରୟୋଜନଂ ଦର୍ଶୟତି –

**ଇତି ସମ୍ପ୍ରାର୍ଥିତୋ ଦେବୋ ରେଣୁକେନ ମହେଶ୍ୱରଃ ।**
**ମା ଭୈଷୀର୍ମମ ଭକ୍ତାନାଂ କୃତୋ ଭୀତିରିହେଷ୍ୟତି ।। ୮୨ ।।**

– ରେଣୁକଦ୍ୱାରା ଏହିପରି ପ୍ରାର୍ଥନା କରାଯାଇ ମହେଶ୍ୱର କହିଲେ – ଡରେନି । ମୋର ଭକ୍ତର ଏ ଜଗତରେ କେଉଁଠାରୁ ଭୟ ହେବ ?

**ଶ୍ରୀଶୈଲସ୍ୟୋତ୍ତରେ ଭାଗେ ତ୍ରିଲିଙ୍ଗ ବିଷୟେ ଶୁଭେ ।**
**କୋଲ୍ଲିପାକ୍ୟଭିଧାନୋଽସ୍ତି କୋଽପି ଗ୍ରାମୋ ମହତ୍ତରଃ ।। ୮୩ ।।**

ତ୍ରିଲିଙ୍ଗ ବିଷୟେ ଆନ୍ଧ୍ରଦେଶେ କୋଲ୍ଲିପାକ୍ୟାଖ୍ୟମହାଗ୍ରାମୋଽସ୍ତି ।। ୮୩ ।।

– ଶ୍ରୀଶୈଳର ଉତ୍ତର ଭାଗରେ ସ୍ଥିତ ତେଲେଙ୍ଗାନା ଦେଶରେ କୋଲ୍ଲିପାକୀ ନାମକ କୌଣସି ବଡ଼ ଗ୍ରାମ (ନଗର) ଅଛି ।। ୮୩ ।।

**ସୋମେଶ୍ୱରାଭିଧାନସ୍ୟ ତତ୍ର ବାସବତୋ ମମ ।**
**ଅସ୍ପୃଶନ୍ ମାନୁଷଂ ଭାବଂ ଲିଙ୍ଗାତ୍ ପ୍ରାଦୁର୍ଭବିଷ୍ୟସି ।। ୮୪ ।।**

ତତ୍ର ବାସବଃ ସୋମେଶ୍ୱରାଭିଧାନସ୍ୟ ମମ ଲିଙ୍ଗାତ୍ ମାନୁଷଂ ଭାବମସ୍ପୃଶନ୍ ପ୍ରାଦୁର୍ଭବିଷ୍ୟସୀତ୍ୟର୍ଥଃ ।। ୮୪ ।।

– ସେଠାରେ ସୋମେଶ୍ୱର ନାମରେ ସ୍ଥାପିତ ଶିବଲିଙ୍ଗରୁ ମନୁଷ୍ୟଭାବକୁ ପ୍ରାପ୍ତ ନ କରି ତୁ ପ୍ରକଟ ହେବୁ ଅର୍ଥାତ୍ ମନୁଷ୍ୟଠାରୁ ତୋର ଉତ୍ପତ୍ତି ହେବ ନାହିଁ ।। ୮୪ ।।

**ମଦୀୟ ଲିଙ୍ଗସମ୍ଭୂତଂ ମଦ୍‌ଭକ୍ତପରିପାଳକମ୍ ।**
**ବିସ୍ମିତା ମାନୁଷାଃ ସର୍ବେ ତ୍ୱାଂ ଭଜନ୍ତୁ ମଦାଜ୍ଞୟା ।। ୮୫ ।।**

– ସମସ୍ତ ଲୋକ ଆଶ୍ଚର୍ଯ୍ୟଚକିତ ହୋଇ ମୋର ଆଜ୍ଞାରେ ମୋର ଶିବଲିଙ୍ଗରୁ ଉତ୍ପନ୍ନ ତଥା ମୋର ଭକ୍ତମାନଙ୍କର ପରିପାଳକ ତୋର ସେବା କରିବେ ।। ୮୫ ।।

ମଦଦ୍ୱୈତପରଂ ଶାସ୍ତ୍ରଂ ବେଦବେଦାନ୍ତସମ୍ମତମ୍ ।
ସ୍ଥାପୟିଷ୍ୟସି ଭୂର୍ଲୋକେ ସର୍ବେଷାଂ ହିତକାରକମ୍ ।। ୮୬ ।।

– ପୃଥିବୀ ଲୋକରେ ବେଦବେଦାନ୍ତସମ୍ମତ ତଥା ସମସ୍ତଙ୍କ ପାଇଁ ହିତକାରୀ ଶିବାଦ୍ୱୈତ ଶାସ୍ତ୍ର (ବୀରଶୈବ ସିଦ୍ଧାନ୍ତ)ର ତୁ ସ୍ଥାପନା କରିବୁ ।। ୮୬ ।।

ମମ ପ୍ରତାପମତୁଳଂ ମଦ୍‌ଭକ୍ତାନାଂ ବିଶେଷତଃ ।
ପ୍ରକାଶୟ ମହୀଭାଗେ ବେଦମାର୍ଗାନୁସାରତଃ ।। ୮୭ ।।

– ହେ ରେଣୁକ, ବେଦମାର୍ଗର ଅନୁସରଣ କରି ପୃଥିବୀଲୋକରେ ମୋର ଅତୁଳ ପ୍ରତାପକୁ ତୁ ବିଶେଷ ଭାବରେ ମୋର ଭକ୍ତଙ୍କୁ ବତାଇବୁ ।। ୮୭ ।।

ଅଥ ସଂଗ୍ରହକର୍ତ୍ତୁଃ ଶିବଯୋଗିନୋ ବାକ୍ୟମ୍ –

ଇତ୍ୟୁକ୍ତ୍ୱା ପରମେଶ୍ୱରଃ ସ ଭଗବାନ୍ ଭଦ୍ରାସନାଦୁତ୍‌ଥିତେ ।
ବ୍ରହ୍ମୋପେନ୍ଦ୍ରମୁଖାନ୍ ବିସୃଜ୍ୟ ବିବୁଧାନ୍ ଭ୍ରୂସଂଜ୍ଞୟା କେବଳମ୍ ।
ପାର୍ବତ୍ୟା ସହିତୋ ଗଣୈରଭିମତୈଃ ପ୍ରାପ ସ୍ୱମନ୍ତଃପୁରଂ
କ୍ଷୋଣୀଭାଗମବାତରତ୍ ପଶୁପତେରାଜ୍ଞାବଶାଦ୍ ରେଣୁକଃ ।। ୮୮ ।।

ଅଭିମତୈଃ ଅତ୍ୟାପ୍ତୈଃ ନନ୍ଦ୍ୟାଦିଭିଃ । ସ୍ୱକମନ୍ତଃପୁରଂ ଭଗବାନ୍ ପ୍ରାପ । ଅଥ ରେଣୁକୋ ବ୍ରହ୍ମାଧିପତେଃ ଶିବସ୍ୟ ଆଜ୍ଞାବଶାଦ୍ ଭୂଭାଗଂ ପ୍ରାପ୍ତବାନିତ୍ୟର୍ଥଃ ।। ୮୮ ।।

– ଏହା କହି କରି ସେହି ଭଗବାନ୍ ପରମେଶ୍ୱର ନିଜର ଭଦ୍ରାସନରୁ ଉଠି ଠିଆ ହେଲେ । କେବଳ ଭ୍ରୂକୁଟି ସଙ୍କେତରେ ବ୍ରହ୍ମା ଉପେନ୍ଦ୍ର ଆଦି ଦେବତାମାନଙ୍କୁ ଯିବାକୁ କହି ପ୍ରିୟ ଗଣ ତଥା ପାର୍ବତୀଙ୍କ ସହିତ ନିଜର ଅନ୍ତଃପୁରକୁ ଚାଲିଗଲେ । ପଶୁପତିଙ୍କର ଆଜ୍ଞାରେ ରେଣୁକ ମଧ୍ୟ ପୃଥିବୀଲୋକରେ ଅବତୀର୍ଣ୍ଣ ହେଲେ ।। ୮୮ ।।

ଇତି ଶ୍ରୀସିଦ୍ଧାନ୍ତଶିଖାମଣୌ ରେଣୁକସ୍ୟ ଭୂର୍ଲୋକାବଗତିର୍ନାମ
ତୃତୀୟଃ ପରିଚ୍ଛେଦଃ ।। ୩ ।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣ ଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ରେଣୁକସ୍ୟ ଭୂର୍ଲୋକାବତରଣଂ ନାମ ତୃତୀୟଃ ପରିଚ୍ଛେଦଃ ।। ୩ ।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ରେଣୁକ ଭୂଲୋକାବତରଣ ନାମକ ତୃତୀୟ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମ ଚତୁର୍ବେଦୀ କୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୩ ।।



# ଚତୁର୍ଥଃ ପରିଚ୍ଛେଦଃ

ଅଥାଷ୍ଟଭିଃ ସୂତ୍ରୈଃ ଶିବଯୋଗି ରେଣୁକ ଗଣେଶ୍ୱରସ୍ୟ ସ୍ୱରୂପଂ ବର୍ଣ୍ଣୟତି –

**ଅଥ ତ୍ରିଲିଙ୍ଗବିଷୟେ କୋଲ୍ଲିପାକ୍ୟଭିଧେ ପୁରେ ।**
**ସୋମେଶ୍ୱର ମହାଲିଙ୍ଗାତ୍ ପ୍ରାଦୁରାସୀତ୍ ସ ରେଣୁକଃ ।। ୧ ।।**

ରେଣୁକଙ୍କର ଅବତାର ତଥା ତାଙ୍କର ସ୍ୱରୂପ ବର୍ଣ୍ଣନ –

– ତା'ପରେ ରେଣୁକ ତେଲେଙ୍ଗାନା ଦେଶର କୋଲ୍ଲିପାକୀ ନାମକ ନଗରରେ ସୋମେଶ୍ୱର ମହାଦେବ ନାମକ ମହାଲିଙ୍ଗରୁ ପ୍ରକଟ ହେଲେ ।। ୧ ।।

**ପ୍ରାଦୁର୍ଭୂତଂ ତମାଲୋକ୍ୟ ଶିବଲିଙ୍ଗାତ୍ ତ୍ରିଲିଙ୍ଗଜାଃ ।**
**ବିସ୍ମିତାଃ ପ୍ରାଣିନଃ ସର୍ବେ ବଭୂବୁରତିତେଜସମ୍ ।। ୨ ।।**

– ତେଲେଙ୍ଗାନା ଦେଶର ସମସ୍ତ ପ୍ରାଣୀ ଶିବଲିଙ୍ଗରୁ ଅତ୍ୟନ୍ତ ତେଜସ୍ୱୀ ତାଙ୍କୁ ପ୍ରକଟ ହେବା ଦେଖି ବିସ୍ମିତ ହୋଇଗଲେ ।। ୨ ।।

**ଭସ୍ମୋଦ୍‌ଧୂଳିତସର୍ବାଙ୍ଗଂ ସାରରୁଦ୍ରାକ୍ଷଭୂଷଣମ୍ ।**
**ଜଟାମୁକୁଟ ସଂଯୁକ୍ତଂ ତ୍ରିପୁଣ୍ଡ୍ରାଙ୍କିତ ମସ୍ତକମ୍ ।। ୩ ।।**

ସାରଶବ୍ଦେନ ବାହୁଲ୍ୟମୁଚ୍ୟତେ ।। ୩ ।।

– ସେହି ରେଣୁକଙ୍କର ସମସ୍ତ ଶରୀର ଭସ୍ମରେ ଉଦ୍‌ଧୂଳିତ ଥିଲା । ରୁଦ୍ରାକ୍ଷ ମାଳାରେ ବିଭୂଷିତ ଜଟାମୁକୁଟ ସଂଯୁକ୍ତ ତାଙ୍କର ମସ୍ତକ ତ୍ରିପୁଣ୍ଡ୍ରରେ ଚିହ୍ନିତ ଥିଲା ।। ୩ ।।

**କଟୀତଟୀପଟୀଭୂତକନ୍ଥାପଟଲବନ୍ଧୁରମ୍ ।**
**ଦଧାନଂ ଯୋଗଦଣ୍ଡଂ ଚ ଭସ୍ମାଧାରଂ କମଣ୍ଡଳୁମ୍ ।। ୪ ।।**

– ସେ କଟି ପ୍ରଦେଶରେ ବସ୍ତ୍ର ଭାବରେ କନ୍ଥାକୁ ବାନ୍ଧିଲେ, ଯୋଗଦଣ୍ଡ ଧାରଣ କରି ଭସ୍ମ ପାତ୍ର ତଥା କମଣ୍ଡଳୁ ଧାରଣ କରିଥିଲେ ।। ୪ ।।

**ଶିବାଦ୍ୱୈତ ପରିଜ୍ଞାନ ପରମାନନ୍ଦମୋଦିତମ୍ ।**
**ନିର୍ଦ୍ଧୂତ ସର୍ବ ସଂସାରବାସନାଦୋଷପଞ୍ଜରମ୍ ।। ୫ ।।**

– ଶିବାଦ୍ୱୈତ ପରିପୂର୍ଣ୍ଣ ଜ୍ଞାନରୁ ଜାତ ପରମ ଆନନ୍ଦରେ ସେ ସଂସାରର ସମସ୍ତ ବାସନାଦୋଷରୂପୀ ପିଞ୍ଜରାକୁ ନଷ୍ଟ କରି ଦେଇଥିଲେ ।। ୫ ।।

**ଶିବାଗମସୁଧାସିନ୍ଧୁସମୁନ୍ମେଷସୁଧାକରମ୍ ।**
**ଚିତ୍ତାରବିନ୍ଦସଙ୍ଗୂଢ ଶିବପାଦାମ୍ବୁଜଦ୍ୱୟମ୍ ।। ୬ ।।**

– ଶୈବାଗମରୂପୀ ସୁଧାସିନ୍ଧୁର ବୃଦ୍ଧି ପାଇଁ ସେ ଚନ୍ଦ୍ରମା ପରି ଥିଲେ ତଥା ନିଜର ହୃଦୟ କମଳରେ ଶିବଙ୍କର ଦୁଇ ଚରଣକମଳକୁ ଲୁଚାଇ ରଖିଥିଲେ ।। ୬।।

**ଯମାଦିଯୋଗତନ୍ତ୍ରଜ୍ଞଂ ସ୍ୱତନ୍ତ୍ରଂ ସର୍ବକର୍ମସୁ ।**
**ସମସ୍ତ ସିଦ୍ଧସନ୍ତାନ ସମୁଦାୟ ଶିଖାମଣିମ୍ ।। ୭।।**

– ସେ ଯମ ଆଦି[୩୪] ଯୋଗ ସାଧନାର ଜ୍ଞାତା, ସମସ୍ତ କାର୍ଯ୍ୟ କରିବାରେ ସ୍ୱତନ୍ତ୍ର ତଥା ସମସ୍ତ ସିଦ୍ଧପରମ୍ପରା ସମୂହର ଶିଖାମଣି ଥିଲେ ।। ୭।।

**ବୀରସିଦ୍ଧାନ୍ତନିର୍ବାହକୃତପଟ୍ଟ ନିବନ୍ଧନମ୍ ।**
**ଆଲୋକମାତ୍ର ନିର୍ଭିନ୍ନ ସମସ୍ତପ୍ରାଣିପାତକମ୍ ।। ୮।।**

ବୀରସିଦ୍ଧାନ୍ତ ଶବ୍ଦେନ ବୀରଶୈବସିଦ୍ଧାନ୍ତ ଉଚ୍ୟତେ । ସ୍ପଷ୍ଟମନ୍ୟତ୍ ।। ୮।।

– ସେହି ରେଣୁକାଚାର୍ଯ୍ୟ ବୀର ଶୈବସିଦ୍ଧାନ୍ତର ନିର୍ବାହ କରିବା ପାଇଁ ଦୃଢ଼ ପ୍ରତିଜ୍ଞ ତଥା ଦର୍ଶନମାତ୍ରରେ ସମସ୍ତ ପ୍ରାଣୀଙ୍କର ପାପ ଦୂର କରିବା ବାଲା ଥିଲେ ।। ୮।।

ଅଥ ମର୍ତ୍ତ୍ୟଂ ପ୍ରାପ୍ତ ଏଷ ରେଣୁକୋ ଜନୈଃ ପୃଷ୍ଟଃ ସନ୍ନୁତ୍ତରଂ ଦତ୍ତ୍ୱା ମଳୟାଦ୍ରିମଗମଦିତ୍ୟାହ ତମପୃଚ୍ଛନ୍ନିତ୍ୟାଦିଶ୍ଳୋକପଞ୍ଚକେନ –

**ତମପୃଚ୍ଛନ୍ ଜନାଃ ସର୍ବେ ନମନ୍ତଃ କୋ ଭବାନିତି ।**
**ଇତି ପୃଷ୍ଟୋ ମହାଯୋଗୀ ଜନୈର୍ବିସ୍ମିତ ମାନସୈଃ ।। ୯।।**
**ପ୍ରତ୍ୟୁବାଚ ଶିବାଦ୍ୱୈତମହାନନ୍ଦପରାୟଣଃ ।**
**ପିନାକିନଃ ପାର୍ଶ୍ୱବର୍ତ୍ତୀ ରେଣୁକାଖ୍ୟଗଣେଶ୍ୱରଃ ।। ୧୦।।**

– ସମସ୍ତ ଲୋକ ତାଙ୍କୁ ପ୍ରଣାମ କରି ପଚାରିଲେ – ''ଆପଣ କିଏ ?'' ବିସ୍ମୟ ଚିତ୍ତଯୁକ୍ତ ଲୋକମାନେ ପଚାରିବାରୁ ସେହି ମହାଯୋଗୀ କହିଲେ, ''ମୁଁ ଶିବାଦ୍ୱୈତ ମହାନନ୍ଦରେ ଲୀନ ଶଙ୍କରଙ୍କର ପାର୍ଶ୍ୱବର୍ତ୍ତୀ ରେଣୁକ ନାମକ ଗଣେଶ୍ୱର ଅଟେ'' ।।୯–୧୦।।

**କେନଚିତ୍ କାରଣେନାହଂ ଶିବଲିଙ୍ଗାଦିହାଭବମ୍ ।**
**ନାମ୍ନା ରେଣୁକ ସିଦ୍ଧୋଽହଂ ସିଦ୍ଧସନ୍ତାନନାୟକଃ ।। ୧୧।।**

– କୌଣସି କାରଣରୁ ମୁଁ ଏ ସଂସାରରେ ଏଠାରେ ଶିବଲିଙ୍ଗରୁ ଜାତ ହେଲି । ମୋର ନାମ ରେଣୁକସିଦ୍ଧ ଅଟେ । ମୁଁ ହେଉଛି ସିଦ୍ଧପରମ୍ପରାର ନାୟକ ।।୧୧।।

---

୩୪. ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଏବଂ ସମାଧି ଯୋଗର ଆଠ ଅଙ୍ଗ । (ପା. ଯୋ. ସୂ.)

**ସ୍ୱଚ୍ଛନ୍ଦଚାରୀ ଲୋକେଽସ୍ମିନ୍ ଶିବସିଦ୍ଧାନ୍ତପାଳକଃ ।**
**ଖଣ୍ଡୟନ୍ ଜୈନଚାର୍ବାକବୌଦ୍ଧାଦୀନାଂ ଦୁରାଗମାନ୍ ।। ୧୨।।**

– ମୁଁ ଏହି ସଂସାରରେ ସ୍ୱଚ୍ଛନ୍ଦ ବିଚରଣ କରୁଥିବା ଜୈନ, ଚାର୍ବାକ, ବୌଦ୍ଧ ଆଦି ଦୁଷ୍ଟ (ନାସ୍ତିକ) ଆଗମ ଗୁଡ଼ିକର ଖଣ୍ଡନ କରି ଶିବସିଦ୍ଧାନ୍ତର ପରିପାଳକ ଅଟେ ।। ୧୨।।

**ଇତ୍ୟୁକ୍ତ୍ୱା ପଶ୍ୟେତାଂ ତେଷାଂ ବିଷୟସ୍ଥିରଚକ୍ଷୁଷାମ୍ ।**
**ଉତ୍‌ଥାୟ ବ୍ୟୋମମାର୍ଗେଣ ମଳୟାଦ୍ରିମୁପାଗମତ୍ ।। ୧୩।।**

– ଏହିପରି କହୁଥିବା ରେଣୁକଙ୍କୁ ଲୋକମାନେ ଯେତେବେଳେ ଅପଲକ ନେତ୍ରରେ ଚାହିଁ ରହିଥିଲେ, ସେ ଉଡ଼ିକରି ଆକାଶମାର୍ଗରେ ମଳୟ ପର୍ବତକୁ ଚାଲି ଗଲେ ।। ୧୩।।

ଅଥ ସୂତ୍ରତ୍ରୟେଣ ମଳୟାଦ୍ରିଂ ବର୍ଣ୍ଣୟତି –

**ନବଚନ୍ଦନକାନ୍ତାର କନ୍ଦଳନ୍ମନ୍ଦମାରୁତମ୍ ।**
**ଅଭଙ୍ଗୁର ଭୁଜଙ୍ଗସ୍ତ୍ରୀସଙ୍ଗୀତରସସଙ୍କୁଳମ୍ ।। ୧୪।।**

ନୂତନଶ୍ରୀଚନ୍ଦନ ଭେଦନକ୍ଷମମନ୍ଦମାରୁତଃ, ଅତିନିବିଡ଼ଭୁଜଙ୍ଗସ୍ତ୍ରୀ ସଙ୍ଗୀତରସ-ବ୍ୟାପ୍ତଃ।। ୧୪।।

– ସେହି ମଳୟ ପର୍ବତ ନୂତନ ଚନ୍ଦନ ବୃକ୍ଷର ଘନ ଜଙ୍ଗଲରେ ପୂର୍ଣ୍ଣ ଥିଲା । ସେଠାରେ ଧୀର ପବନ ବହୁଥିଲା । (ବୃକ୍ଷରେ) ଲାଗି ରହିଥିବା ସର୍ପିଣୀମାନଙ୍କର ସଙ୍ଗୀତରସ ସେଠାରେ ବ୍ୟାପ୍ତ ଥିଲା ।। ୧୪।।

**କରିପୋତକରାକୃଷ୍ଟସ୍ଫୁରଦେଳାତିବାସିତମ୍ ।**
**ବରାହଦଂଷ୍ଟ୍ରିକାଧ୍ୱସ୍ତମୁସ୍ତାସୁରଭିକନ୍ଦରମ୍ ।। ୧୫।।**

କରିକଳଭକରାକର୍ଷଣବିକୀର୍ଣ୍ଣୈଳାଫଳସୁଗନ୍ଧବାସିତୋ ବରାହଦଂଷ୍ଟ୍ରୋଦ୍-ଖାତଭଦ୍ରମୁସ୍ତାସୁରଭିସାନୁପ୍ରଦେଶଃ ।। ୧୫।।

– ହାତୀ ଛୁଆମାନଙ୍କର ଶୁଣ୍ଢରେ ଟଣାଯାଇଥିବା ଅଳେଇଚ (ଲଟା)ର ସୁଗନ୍ଧରେ ତାହା ସୁଗନ୍ଧିତ ଥିଲା । ଘୁଷୁରିମାନଙ୍କର ଛୋଟ ଛୋଟ ଦାନ୍ତରେ ଧ୍ୱସ୍ତ ହୋଇଥିବା ମୁସ୍ତା (ମୁଥା ଘାସ)ର ସୁଗନ୍ଧ ତାହାର କନ୍ଦରରେ ବ୍ୟାପ୍ତ ଥିଲା ।। ୧୫।।

**ପଟୀରଦଳପର୍ଯ୍ୟଙ୍କ ପ୍ରସୁପ୍ତବ୍ୟାଧଦମ୍ପତିମ୍ ।**
**ମାଧବୀମଲ୍ଲିକାଜାତୀମଞ୍ଜରୀରେଣୁରଞ୍ଜିତମ୍ ।। ୧୬।।**

କର୍ପୂରକଦଳୀପତ୍ରପର୍ଯ୍ୟଙ୍କନିଦ୍ରିତକିରାତଦମ୍ପତିଃ, ସେବନ୍ତ୍ୟାଦିକୁସୁମଗୁଚ୍ଛ-ପରାଗରଞ୍ଜିତଃ। ଏତାଦୃଶଂ ମଳୟାଦ୍ରିମଗମଦିତି ପୂର୍ବେଣାନ୍ୱୟଃ ।। ୧୬।।

– ସେଠାରେ ବ୍ୟାଧ ଦମ୍ପତି (ଶବର-ଶବରୁଣୀ) ଧବଳ କଦଳୀ ଦଳରେ ନିର୍ମିତ ପଲଙ୍କା ଉପରେ ଶୋଇଥିଲେ । ସେହି ପର୍ବତ ମାଧବୀ, ଜୁଇ, ଏବଂ ଚମ୍ପା ଫୁଲର ପରାଗରେ ରଞ୍ଜିତ ଥିଲା ।। ୧୬।।

ଅଥାଷ୍ଟାଭିଃ ସୂତ୍ରୈରଗସ୍ତ୍ୟାଶ୍ରମଂ ବର୍ଣ୍ଣୟତି –

**ତତ୍ର କୁତ୍ରଚିଦାଭୋଗସର୍ବର୍ତ୍ତୁକୁସୁମଦ୍ରୁମେ ।**
**ଅପଶ୍ୟଦାଶ୍ରମଂ ଦିବ୍ୟମଗସ୍ତ୍ୟସ୍ୟ ମହାମୁନେଃ ।। ୧୭ ।।**

ସମ୍ପୂର୍ଣ୍ଣ ବସନ୍ତାଦି ସର୍ବର୍ତ୍ତୁକୁସୁମମୟବୃକ୍ଷବତି ତତ୍ର ମଳୟାଚଳେ କୁତ୍ରଚିତ୍ କସ୍ମିଂଶ୍ଚିତ୍ ପ୍ରଦେଶେ ଦିବ୍ୟଂ ମନୋହରମ୍ ଅଗସ୍ତ୍ୟାଶ୍ରମମପଶ୍ୟତ୍, ଦୃଷ୍ଟବାନିତ୍ୟର୍ଥଃ ।।୧୭।।

– ରେଣୁକ ସେଠାରେ ସମସ୍ତ ଋତୁ ପୁଷ୍ପ ବୃକ୍ଷ ରାଜିରେ ପୂର୍ଣ୍ଣ ମହାମୁନି ଅଗସ୍ତ୍ୟଙ୍କର ଦିବ୍ୟ ବିଶାଳ ଆଶ୍ରମ ଦେଖିଲେ ।। ୧୭।।

**ମନ୍ଦାରଚନ୍ଦନପ୍ରାୟୈର୍ମଣ୍ଡିତଂ ତରୁମଣ୍ଡଳୈଃ ।**
**ଶାଖାଶିଖରସଂଲୀନତାରକାଗଣକୋରକୈଃ ।। ୧୮ ।।**

ଶାଖାଗ୍ରସଂବିଲୀନତାରକାଗଣରୂପକୁସୁମକୁଡ୍ମଳୈଃ କଳ୍ପବୃକ୍ଷ ଶ୍ରୀଚନ୍ଦନାଦିତରୁ-ସମୂହୈର୍ମଣ୍ଡିତଂ ଶୋଭିତମିତ୍ୟର୍ଥଃ ।। ୧୮।।

– ସେହି ଆଶ୍ରମ କଳ୍ପବୃକ୍ଷ, ଚନ୍ଦନ ଆଦି ବୃକ୍ଷରେ ପୂର୍ଣ୍ଣ ଥିଲା । ସେହି ବୃକ୍ଷ ସବୁର ଅଗ୍ରରେ ଥିବା କଢ଼ ସବୁ ତାରାପରି ଦେଖା ଯାଉଥିଲେ ।। ୧୮।।

**ମୁନିକନ୍ୟାକରାନୀତକଳଶାମ୍ବୁ ବିବର୍ଦ୍ଧିତୈଃ ।**
**ଆଲବାଲଜଳାସ୍ୱାଦମୋଦମାନମୃଗୀଗଣୈଃ ।। ୧୯ ।।**

– ସେହି ବୃକ୍ଷଗୁଡ଼ିକ ମୁନିକନ୍ୟାମାନେ କଳଶହାତରେ ଦେଇଥିବା ପାଣିରେ ବଢ଼ିଥିଲେ । ମନ୍ଦାରେ ଥିବା ପାଣିକୁ ପିଇ ହରିଣମାନେ ଖୁସୀ ହେଉଥିଲେ ।। ୧୯।।

**ହେମାରବିନ୍ଦନିଷ୍ୟନ୍ଦମକରନ୍ଦସୁଗନ୍ଧିଭିଃ ।**
**ମରାଳାଳାପବାଚାଳବୀଚିମାଳାମନୋହରୈଃ ।। ୨୦ ।।**

– ସ୍ୱର୍ଣ୍ଣକମଳରୁ ପଡୁଥିବା ପରାଗରେ ସୁଗନ୍ଧଯୁକ୍ତ ସେହି ଆଶ୍ରମ ହଂସ ସମୂହଙ୍କର ଧ୍ୱନିତରଙ୍ଗରେ ଅତ୍ୟନ୍ତ ମନୋହର ଥିଲା ।। ୨୦।।

**ଇନ୍ଦୀବରବରଜ୍ୟୋତିରନ୍ଧୀକୃତ ହରିନ୍ମୁଖୈଃ ।**
**ଲୋପାମୁଦ୍ରାପଦନ୍ୟାସଚରିତାର୍ଥତଟାଙ୍କିତୈଃ ।। ୨୧ ।।**

– ସେହି ଆଶ୍ରମର ଦିଗଗୁଡ଼ିକୁ ନୀଳକମଳର ଜ୍ୟୋତିରେ ଅନ୍ଧକାରମୟ ଅର୍ଥାତ୍

ନୀଳ ହୋଇଗଲା ପରି ଲାଗୁଥିଲା । ପୋଖରୀ କୂଳରେ ଲୋପାମୁଦ୍ରାଙ୍କର[୩୫] ପଦଚିହ୍ନ ଅଙ୍କିତ ଥିଲା ।। ୨୧ ।।

**ହାରନୀହାରକର୍ପୂରହରହାସାମଲୋଦକୈଃ ।**
**ନିତ୍ୟନୈମିତ୍ତିକସ୍ନାନନିୟମାର୍ଥୈସ୍ତପସ୍ୱିନାମ୍ ।। ୨୨ ।।**

– ସେହି ପୋଖରୀର ପାଣି ବରଫ (ନୀହାର) କର୍ପୂର ଅଥବା ଶିବଙ୍କର ହସ ପରି ସ୍ୱଚ୍ଛ ଥିଲା । ତାହା ତପସ୍ୱୀମାନଙ୍କର ନିତ୍ୟ, ନୈମିତ୍ତିକ ସ୍ନାନ ଏବଂ ନିୟମ ପାଇଁ ଉଦ୍ଦିଷ୍ଟ ଥିଲା ।। ୨୨ ।।

**ପ୍ରକୃଷ୍ଟମଣି ସୋପାନୈଃ ପରିବୀତଂ ସରୋବରୈଃ ।**
**ବିମୁକ୍ତସତ୍ତ୍ୱବୈରସ୍ୟଂ ବ୍ରହ୍ମଲୋକମିବାପରମ୍ ।। ୨୩ ।।**

– ଉତ୍ତମ ମଣିରେ ତିଆରି ହୋଇଥିବା ସିଡ଼ି ସେହି ପୋଖରୀର ଚାରି ପାଖରେ ଥିଲେ । ସେହି ଆଶ୍ରମ ପ୍ରାଣୀଙ୍କର ବୈର ଭାବରୁ ମୁକ୍ତ ଦ୍ୱିତୀୟ ବ୍ରହ୍ମଲୋକ ପରି ଥିଲା ।। ୨୩ ।।

**ହୂୟମାନାଜ୍ୟସନ୍ତାନଧୂମଗନ୍ଧିମହାସ୍ଥଳମ୍ ।**
**ଶୁକସଂସଦ୍ସମାରବ୍ଧଶ୍ରୁତିଶାସ୍ତ୍ରୋପବୃଂହଣମ୍ ।। ୨୪ ।।**

ଶୁକସଂସଦେତ୍ୟର୍ଥଃ । ସ୍ପଷ୍ଟମେନ୍ୟତ୍ । ଏତାଦୃଶମଗସ୍ତ୍ୟାଶ୍ରମମଗଣ୍ୟଦିତ୍ୟର୍ଥଃ ।। ୨୪ ।।

– ସେଠାରେ ପବିତ୍ର ଭୂମି ହବନ କରା ଯାଇଥିବା ଘିଅର ଧୂଆଁରେ ସୁଗନ୍ଧଯୁକ୍ତ ଥିଲା । ସେଠାରେ ଥିବା ଶୁକସମୂହଦ୍ୱାରା ଉଚ୍ଚାରିତ ବେଦଶାସ୍ତ୍ରର ଧ୍ୱନି ସର୍ବତ୍ର ବିସ୍ତୃତ ଥିଲା ।। ୨୪ ।।

ଅଥାଗସ୍ତ୍ୟମୁନିଂ ନବଭିଃ ସୂତ୍ରୈର୍ବର୍ଣ୍ଣୟତି –

**ତସ୍ୟ ମଧ୍ୟେ ସମାସୀନଂ ମୂଲେ ଚନ୍ଦନରୁହଃ ।**
**ସୁକୁମାରଦଳଚ୍ଛାୟାଦୂରିତାଦିତ୍ୟ ତେଜସଃ ।। ୨୫ ।।**

– ସେହି ଆଶ୍ରମର ମଧ୍ୟଭାଗରେ ସୁକୁମାର ପତ୍ରର ଛାୟାରେ ସୂର୍ଯ୍ୟଙ୍କର ପ୍ରତାପ ଅର୍ଥାତ୍ ତାପକୁ ଦୂର କରୁଥିବା ଚନ୍ଦନବୃକ୍ଷ ତଳେ ବସିଥିବା ଅଗସ୍ତ୍ୟଙ୍କୁ ରେଣୁକ ଦେଖିଲେ ।। ୨୫ ।।

---

୩୫. ଲୋପାମୁଦ୍ରା ଅଗସ୍ତ୍ୟଙ୍କର ପତ୍ନୀ ଥିଲେ । ଲୋପାମୁଦ୍ରା ଷୋଡ଼ଶୀ=ତ୍ରିପୁର ସୁନ୍ଦରୀଙ୍କର ଆରାଧନା ବିଧି ପିତାଙ୍କଠାରୁ ଜାଣିଥିଲେ । ଅଗସ୍ତ୍ୟ ଏହି ବିଧି ତାଙ୍କଠାରୁ ଶିଖିଥିଲେ ।

ତଡ଼ିଦ୍‌ପିଙ୍ଗଜଟାଭାରୈସ୍ତ୍ରିପୁଣ୍ଡ୍ରାଙ୍କିତ ମସ୍ତକୈଃ ।
ଭସ୍ମୋଦ୍‌ଧୂଳିତସର୍ବାଙ୍ଗୈଃ ସ୍ଫୁରଦ୍ରୁଦ୍ରାକ୍ଷଭୂଷଣୈଃ ।। ୨୬ ।।
ନବବଲ୍‌କଳବାସୋଭିର୍ନାନାନିୟମଧାରିଭିଃ ।
ପରିବୀତଂ ମୁନିଗଣୈଃ ପ୍ରମଥୈରିବ ଶଙ୍କରମ୍ ।। ୨୭ ।।

– ବିଜୁଳି ପରି ପିଙ୍ଗଳ (ଲାଲ) ଜଟା ଯୁକ୍ତ, ତ୍ରିପୁଣ୍ଡ ଚିହ୍ନିତ ମସ୍ତକବାଲା ସମସ୍ତ ଅଙ୍ଗରେ ଭସ୍ମ ଲଗାଇଥିବା, ରୁଦ୍ରାକ୍ଷର ଆଭୂଷଣ ପିନ୍ଧିଥିବା, ନବୀନ ବଲ୍‌କଳର ବସ୍ତ୍ରଧାରଣ କରିଥିବା, ଅନେକ ନିୟମକୁ ପାଳନ କରୁଥିବା ମୁନିମାନଙ୍କଦ୍ୱାରା ସେହି ଅଗସ୍ତ୍ୟ ଘେରି ହୋଇଥିଲେ, ଯେପରି ପ୍ରମଥଗଣଙ୍କ ଦ୍ୱାରା ଶିବଙ୍କର ଭଗବାନ୍ ।। ୨୬-୨୭ ।।

ସମୁଜ୍ଜ୍ୱଳଜଟାଜାଲୈସ୍ତପଃପାଦପ ପଲ୍ଲବୈଃ ।
ସ୍ଫୁରତ୍‌ସୌଦାମିନୀକଳ୍ପୈର୍ଜ୍ୱାଳାଜାଲୈରିବାନଳମ୍ ।। ୨୮ ।।

ଶିବପ୍ରସାଦଭୂତତପୋବୃକ୍ଷପଲ୍ଲବୈଃ ସ୍ଫୁରଦ୍ୱିଦ୍ୟୁଲ୍ଲତାସଦୃଶୈର୍ଜଟାଜାଲୈରଗ୍ନିମିବ ସମୁଜ୍ଜ୍ୱଳନ୍ତମିତ୍ୟର୍ଥଃ ।। ୨୮ ।।

– ତପସ୍ୟାରୂପୀ ବୃକ୍ଷର ପଲ୍ଲବ (ପତ୍ର) ପରି ଚମକୁଥିବା ବିଜୁଳି ପରି ଉଜ୍ଜ୍ୱଳ ଜଟାରେ ସେ ଜ୍ୱାଳାଜାଳରେ ବେଷ୍ଟିତ ଅଗ୍ନି ପରି ଦେଖାଯାଉଥିଲେ ।। ୨୮ ।।

ବିଶୁଦ୍ଧଭସ୍ମକୃତୟା ତ୍ରିପୁଣ୍ଡ୍ରାଙ୍କିତରେଖୟା ।
ତ୍ରିସ୍ରୋତସେବ ସମ୍ବଦ୍ଧଶିଳାଭାଗଂ ହିମାଚଳମ୍ ।। ୨୯ ।।

ତ୍ରିଭାଗେନ ପ୍ରବହଦ୍‌ଗଙ୍ଗାସମ୍ବଦ୍ଧଶିଳାଭାଗଂ ହିମାଦ୍ରିମିବ ଶିତତ୍ରିପୁଣ୍ଡ୍ରରେଖାଙ୍କିତ-ମସ୍ତକମିତ୍ୟର୍ଥଃ ।। ୨୯ ।।

– ବିଶୁଦ୍ଧ ଭସ୍ମରେ ଅଙ୍କା ହୋଇଥିବା ତ୍ରିପୁଣ୍ଡର ତିନୋଟି ରେଖା ସହିତ ସେ ଗଙ୍ଗାର ତିନୋଟି ଧାରା ଯୁକ୍ତ ହିମାଳୟର ଶିଳାଖଣ୍ଡ ପରି ଦେଖା ଯାଉଥିଲେ ।। ୨୯ ।।

ଭସ୍ମାଲଂକୃତସର୍ବାଙ୍ଗଂ ଶଶାଙ୍କମିବ ଭୂଗତମ୍ ।
ବସାନଂ ବଲ୍‌କଲଂ ନବ୍ୟଂ ବାଲାତପସମପ୍ରଭମ୍ ।। ୩୦ ।।

– ତାଙ୍କର ସମସ୍ତ ଶରୀର ଭସ୍ମରେ ଅଳଂକୃତ ଥିଲା । ଚନ୍ଦ୍ରମା ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ କଲା ପରି ଦେଖା ଯାଉଥିଲା । ସେ ଉଦୀୟମାନ ସୂର୍ଯ୍ୟର କାନ୍ତିମାନ୍ କିରଣ ପରି ନବୀନ ବଲ୍‌କଳ ଧାରଣ କରିଥିଲେ ।। ୩୦ ।।

**ବଡ଼ବାଗ୍ନିଶିଖାଜାଲସମାଲୀଢ଼ମିବାର୍ଣ୍ଣବମ୍ ।**
**ସର୍ବାସାମପି ବିଦ୍ୟାନାଂ ସମୁଦାୟ ନିକେତନମ୍ ।। ୩୧ ।।**

ସମାଲୀଢ଼ଂ ବ୍ୟାପ୍ତମିତ୍ୟର୍ଥଃ ।। ୩୧ ।।

– ବାଡ଼ବାଗ୍ନି ଶିଖାବ୍ୟାପ୍ତ ସମୁଦ୍ର ପରି ଦେଖା ଯାଉଥିବା ସେହି ଅଗସ୍ତ୍ୟ ସମସ୍ତ ବିଦ୍ୟା ସମୁଦାୟର ଆଶ୍ରୟ ଥିଲେ ।। ୩୧ ।।

**ନ୍ୟକ୍କୃତ ପ୍ରାକୃତାହନ୍ତଂ ନିରୂଢ଼ଶିବଭାବନମ୍ ।**
**ତୃଣୀକୃତଜଗଜ୍ଜାଲଂ ସିଦ୍ଧୀନାମୁଦୟସ୍ଥଳମ୍ ।। ୩୨ ।।**

ତିରସ୍କୃତ ପ୍ରାକୃତ ଶରୀରାଦ୍ୟହଙ୍କାରବନ୍ତମିତ୍ୟର୍ଥଃ । ସିଦ୍ଧୀନାମଣିମାଦିସିଦ୍ଧୀନାମିତ୍ୟର୍ଥଃ।। ୩୨ ।।

– ପ୍ରାକୃତ ଅର୍ଥାତ୍ ଜନସାଧାରଣରେ ଥିବା ଅଥବା ପ୍ରକୃତି ତତ୍ତ୍ୱରୁ ଉତ୍ପନ୍ନ ଅହଙ୍କାରରୁ ମୁକ୍ତ, ଶିବଭାବନାରେ ଦୃଢ଼ ସେହି ଅଗସ୍ତ୍ୟ ସଂସାର ବନ୍ଧନକୁ ତୃଣ/ତୁଚ୍ଛ ମନେ କରୁଥିଲେ ଏବଂ ସିଦ୍ଧିଗୁଡ଼ିକର ଉଦ୍‌ଗମ ସ୍ଥଳ ଥିଲେ ।। ୩୨ ।।

**ମୋହାନ୍ଧକାରତପନଂ ମୂଳବୋଧମହୀରୁହମ୍ ।**
**ଦଦର୍ଶ ସ ମହାଯୋଗୀ ମୁନିଂ କଳଶସମ୍ଭବମ୍ ।। ୩୩ ।।**

ମୂଳବୋଧସ୍ୟ ସ୍ୱରୂପଜ୍ଞାନସ୍ୟ କଳ୍ପଦ୍ରୁମମିତ୍ୟର୍ଥଃ । ଏବମାଦିବିଶେଷଣବିଶିଷ୍ଟଂ କଳଶସମ୍ଭବାଗସ୍ତ୍ୟଂ ସ ରେଣୁକାଚାର୍ଯ୍ୟୋ ଦଦର୍ଶକ ଦୃଷ୍ଟବାନିତ୍ୟର୍ଥଃ ।। ୩୩ ।।

– ମୋହରୂପୀ ଅନ୍ଧକାର ନିମନ୍ତେ ସୂର୍ଯ୍ୟ ସମାନ, ମୂଳବୋଧ/ସ୍ୱରୂପଜ୍ଞାନ ରୂପୀ ବୃକ୍ଷର ମୂଳ ସଦୃଶ ତଥା କୁମ୍ଭରୁ ଉତ୍ପନ୍ନ ଅଗସ୍ତ୍ୟଙ୍କୁ ସେହି ମହାଯୋଗୀ ରେଣୁକ ଦେଖିଲେ ।। ୩୩ ।।

ଅଥ ସମାଗତଂ ତଂ ରେଣୁକାଚାର୍ଯ୍ୟମଗସ୍ତ୍ୟଃ ପୂଜୟାମାସେତି ଚତୁର୍ଭିଃ ସୂତ୍ରୈଃ ପ୍ରତିପାଦୟତି –

**ତମାଗତଂ ମହାସିଦ୍ଧଂ ସମୀକ୍ଷ୍ୟ କଳଶୋଦ୍‌ଭବଃ ।**
**ଗଣେନ୍ଦ୍ରଂ ରେଣୁକାଭିଖ୍ୟଂ ବିବେଦ ଜ୍ଞାନଚକ୍ଷୁଷା ।। ୩୪ ।।**

– କଳଶରୁ ଜାତ (କଳଶୋଦ୍‌ଭବ) ଋଷି ଜ୍ଞାନଚକ୍ଷୁରେ ସେହି ଆସିଥିବା ମହାସିଦ୍ଧଙ୍କୁ ଦେଖି ରେଣୁକ ନାମକ ଗଣେଶ୍ୱର ବୋଲି ଜାଣିଲେ ।। ୩୪ ।।

ତସ୍ୟାନୁଭାବଂ ବିଜ୍ଞାୟ ସହସୈବ ସମୁତ୍‌ଥିତଃ ।
ଲୋପାମୁଦ୍ରାକରାନୀତୈରୁଦକୈରତିପାବନୈଃ ।।
ପାଦୌ ପ୍ରକ୍ଷାଳୟାମାସ ସ ତସ୍ୟ ଶିବଯୋଗିନଃ ।। ୩୫ ।।

ସ ଅଗସ୍ତ୍ୟଃ, ତସ୍ୟ ରେଣୁକସ୍ୟାନୁଭାବଂ ସାମର୍ଥ୍ୟଂ ସମନ୍ୱୀକ୍ଷ୍ୟ ତସ୍ମିନ୍ନେବ କ୍ଷଣେ ସମୁତ୍‌ଥାୟ ପ୍ରଣମ୍ୟାସନେ ଉପାବେଶୟଦିତ୍ୟର୍ଥଃ ।। ୩୫ ।।

– ସେହି ଶିବଯୋଗୀଙ୍କର ପ୍ରଭାବକୁ ଜାଣି ସେହି ଅଗସ୍ତ୍ୟ ଋଷି ତତ୍‌କ୍ଷଣ ଠିଆ ହୋଇଗଲେ ତଥା ଲୋପାମୁଦ୍ରା ହସ୍ତରେ ଆଣିଥିବା ଅତି ପବିତ୍ର ଜଳରେ ତାଙ୍କର ପଦଦ୍ୱୟକୁ ପ୍ରକ୍ଷାଳନ କଲେ ।। ୩୫ ।।

ସମ୍ପୂଜ୍ୟ ତଂ ଯଥାଶାସ୍ତ୍ରଂ ତନ୍ନିଯୋଗପୁରସ୍‌ସରମ୍ ।
ମୁନିର୍ବିନୟସମ୍ପନ୍ନୋ ନିଷସାଦାସନାନ୍ତରେ ।। ୩୬ ।।

ଅଥେତି ଶେଷଃ । ତଂ ରେଣୁକଂ ଶାସ୍ତ୍ରୋକ୍ତପ୍ରକାରେଣ ଭକ୍ତିପୂତଃ ସନ୍ ଅଗସ୍ତ୍ୟମୁନିଃ ସମ୍ପୂଜ୍ୟ ତଦାଜ୍ଞାପୁରଃସରଂ ଯଥା ତଥା ପୀଠାନ୍ତରେ ଉପବିଷ୍ଟ ଇତ୍ୟର୍ଥଃ ।। ୩୬ ।।

– ବିନୟ ସମ୍ପନ୍ନ ମୁନି ଅଗସ୍ତ୍ୟ ତାଙ୍କର ଶାସ୍ତ୍ରବିଧି ଅନୁସାରେ ପୂଜା କରି ତାଙ୍କର ଆଜ୍ଞାନୁସାରେ ଅନ୍ୟ ଏକ ଆସନରେ ବସିଲେ ।। ୩୬ ।।

## ରେଣୁକାଗସ୍ତ୍ୟସମ୍ବାଦଃ

ସମାସୀନଂ ମୁନିବରଂ ସର୍ବତେଜସ୍ୱିତାଂ ବିଭୁମ୍ ।
ଉବାଚ ଶାନ୍ତୟା ବାଚା ରେବଣଃ ସିଦ୍ଧଶେଖରଃ ।। ୩୭ ।।

– ସମସ୍ତ ତେଜସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବସିଥିବା ମୁନିବରଙ୍କୁ ସିଦ୍ଧଶେଖର ରେଣୁକ ଶାନ୍ତ ବାଣୀରେ କହିଲେ ।। ୩୭ ।।

ଅଥାଷ୍ଟଭିଃ ସୂତ୍ରୈଃ ଶ୍ରୀରେଣୁକୋଽଗସ୍ତ୍ୟଂ କୁଶଳପ୍ରଶ୍ନପୂର୍ବକଂ ପ୍ରଷ୍ଟୌତି –

ନିର୍ବିଘ୍ନଂ ବର୍ତ୍ତସେ କିଂ ନୁ ନିତ୍ୟା ତେ ନିୟମକ୍ରିୟା ।
ଅଥ ବାଽଗସ୍ତ୍ୟ ତେଜସ୍ୱିନ୍ କୁତଃ ସ୍ୟୁସ୍ତେଽନ୍ତରାୟକାଃ ।। ୩୮ ।।

ଭୋ ତେଜସ୍ୱିନ୍ ଅଗସ୍ତ୍ୟ, ଅଥ ମାଙ୍ଗଲ୍ୟେନ ନିର୍ବିଘ୍ନଂ ଭବାନ୍ ବର୍ତ୍ତସେ, କିଂ ନୁ ତେ ନିୟମକ୍ରିୟା ନିତ୍ୟା ବା ବିଚ୍ଛେଦରହିତା ବେତ୍ୟର୍ଥଃ, ତେ ଅନ୍ତରାୟକା ବିଘ୍ନକାରିଣଃ କୁତଃ ସ୍ୟୁଃ ? ନ ସ୍ୟୁରିତ୍ୟର୍ଥଃ ।। ୩୮ ।।

– ହେ ତେଜସ୍ୱୀ ଅଗସ୍ତ୍ୟ, କ'ଣ ଆପଣ ନିର୍ବିଘ୍ନରେ ରହୁଛନ୍ତି ? ଆପଣଙ୍କର ନିତ୍ୟକ୍ରିୟା ସବୁ ନିୟମରେ ଚାଲିଛି ତ ? ଅଥବା ଆପଣଙ୍କର କେଉଁଠାରୁ ବିଘ୍ନ ହୋଇପାରିବ ?

ତର୍ହି ତୟୋଃ କା ଗତିରିତ୍ୟତ୍ରାହ –

**ଏତେଷ୍ୱେତେନ ବିଧିନା ଯଥାଭାବଂ ଯଥାକ୍ରମମ୍ ।**
**ଜପେଦ୍ ପଞ୍ଚାକ୍ଷରୀମିତାଂ ବିଦ୍ୟାଂ ପାଶବିମୁକ୍ତୟେ ।। ୩୩।।**

ଏତେଷୁ ବିଷୟେଷୁ ବାଚିକାଦିଜପବିଷୟେଷୁ ଏତେନ ବିଧିନା ଏତଦୁକ୍ତପ୍ରକାରେଣ ଯଥାକ୍ରମଂ କ୍ରମମନତିକ୍ରମ୍ୟ ଯଥା ଭାବଂ ଯଥା ସମ୍ଭବମ୍ ଏତାଂ ପଞ୍ଚାକ୍ଷରୀଂ ବିଦ୍ୟାଂ ପାଶବିମୁକ୍ତୟେ ମଳମାୟାଦି ପଞ୍ଚପାଶବିମୁକ୍ତ୍ୟର୍ଥଂ ଜପେଦ୍, ଉଚ୍ଚରେଦିତ୍ୟର୍ଥଃ ।। ୩୩।।

– ଏହି ତିନି ପ୍ରକାର ମଧ୍ୟରୁ କୌଣସି ଗୋଟିଏ ପ୍ରକାରରେ ଭକ୍ତି ଭାବନା ସହିତ ବତା ଯାଇଥିବା କ୍ରମରେ ଭବପାଶରୁ ମୁକ୍ତି ପାଇବା ନିମନ୍ତେ ଏହି ପଞ୍ଚାକ୍ଷର ମନ୍ତ୍ରର ଜପ କରାଯିବା ଉଚିତ୍ ।। ୩୩।।

ଅଥ ଅନେନୈବ ମନ୍ତ୍ରେଣ ଶିବଲିଙ୍ଗାର୍ଚ୍ଚନଂ ଚ କର୍ତ୍ତବ୍ୟମିତ୍ୟତ୍ରାହ –

**ଅନେନ ମୂଳମନ୍ତ୍ରେଣ ଶିବଲିଙ୍ଗଂ ପ୍ରପୂଜୟେଦ୍ ।**
**ନିତ୍ୟଂ ନିୟମସମ୍ପନ୍ନଃ ପ୍ରୟତାତ୍ମା ଶିବାତ୍ମକଃ ।। ୩୪।।**

ନିୟମସମ୍ପନ୍ନଃ ଯମନିୟମାଦିସମ୍ପନ୍ନଃ ସନ୍, ପ୍ରୟତାତ୍ମା ଶୁଦ୍ଧାନ୍ତଃକରଣବାନ୍ ସନ୍, ଶିବାତ୍ମକଃ 'ନାରୁଦ୍ରୋ ରୁଦ୍ରମର୍ଚ୍ଚୟେଦ୍' ଇତି ଶ୍ରୁତେଃ ଶିବଭାବସମ୍ପନ୍ନଃ, ଅନେନ ମୂଳମନ୍ତ୍ରେଣ ଏତଦ୍ ପ୍ରଣବପଞ୍ଚାକ୍ଷରମନ୍ତ୍ରେଣ ଶିବଲିଙ୍ଗଂ ନିତ୍ୟଂ ସଦା ପୂଜୟେଦ୍ ବିଭବେନ ପୂଜୟେଦିତ୍ୟର୍ଥଃ ।। ୩୪।।

– ଶିବଭକ୍ତ ବିଶୁଦ୍ଧଚିତ୍ତ ଯୁକ୍ତ ହୋଇ ନିୟମାନୁସାରେ ଏହି ମୂଳମନ୍ତ୍ରରେ ଶିବଲିଙ୍ଗର ନିତ୍ୟ ପୂଜନ କରିବା ଉଚିତ୍ ।। ୩୪।।

ନନ୍ୱସ୍ୟ ସମନ୍ତ୍ରକଶିବପୂଜନସ୍ୟ କିଂ ଫଳମିତ୍ୟତ୍ରାହ –

**ଭକ୍ତ୍ୟା ପଞ୍ଚାକ୍ଷରେଣୈବ ଯଃ ଶିବଂ ସକୃଦର୍ଚ୍ଚୟେଦ୍ ।**
**ସୋଽପି ଗଚ୍ଛେଚ୍ଛିବସ୍ଥାନଂ ମନ୍ତ୍ରସ୍ୟାସ୍ୟୈବ ଗୌରବାଦ୍ ।। ୩୫।।**

ସ୍ପଷ୍ଟମ୍ ।। ୩୫।।

– ଯେଉଁ ବ୍ୟକ୍ତି ଏହି ପଞ୍ଚାକ୍ଷର ମନ୍ତ୍ରରେ ଭକ୍ତି ପୂର୍ବକ ଶିବଙ୍କର ଥରେ ମାତ୍ର ପୂଜା କରେ, ସେ ମଧ୍ୟ ଏହି ମନ୍ତ୍ରର ମହିମାରେ ଶିବସ୍ଥାନକୁ ଯାଏ ।। ୩୫।।

ନନୁ ବ୍ରତନିୟମାଦିନା ସଦ୍‌ଗତି ସମ୍ଭବାତ୍ ପୂଜା କିମର୍ଥଂ ବିଧେୟେତ୍ୟତ୍ରାହ –

**ଅବ୍‌ଭକ୍ଷା ବାୟୁଭକ୍ଷାଶ୍ଚ ଯେ ଚାନ୍ୟେ ବ୍ରତକର୍ଶିତାଃ ।**
**ତେଷାମେତୈର୍ବ୍ରତୈର୍ନାସ୍ତି ଶିବଲୋକସମାଗମଃ ।। ୩୬।।**

ଅବ୍‌ଭକ୍ଷା ଜଳାହାରିଣଃ, ବାୟୁଭକ୍ଷାଶ୍ଚ ବାୟୁପର୍ଣ୍ଣାହାରିଣଃ, ଯେ ଚାନ୍ୟେ ବ୍ରତକର୍ଶିତାଃ

କୃଚ୍ଛ୍ରଚାନ୍ଦ୍ରାୟଣାଦିବ୍ରତକୃଶା ଯେ ସନ୍ତି, ତେଷାମେତୈର୍ବ୍ରତୈଃ ଶିବଲୋକପ୍ରାପ୍ତିର୍ନାସ୍ତୀ-ତ୍ୟର୍ଥଃ ।। ୩୬।।

– ଯେଉଁ ବ୍ୟକ୍ତିମାନେ କେବଳ ଜଳ ପିଇ କରି ଅଥବା ବାୟୁ ସେବନ କରି ବ୍ରତ କରନ୍ତି ତଥା ଅନ୍ୟପ୍ରକାର ବ୍ରତ କରିବାବାଲା ଅଛନ୍ତି, ସେହି ବ୍ରତରେ ସେମାନଙ୍କୁ ଶିବଲୋକର ପ୍ରାପ୍ତି ହେବ ନାହିଁ ।। ୩୬।।

ତସ୍ମାଜ୍ଜପଯଜ୍ଞାଦୟଃ ସର୍ବେ ଲିଙ୍ଗାର୍ଚ୍ଚନସ୍ୟ କୋଟ୍ୟଂଶେନାପି ନୋ ସମା ଇତ୍ୟାହ –

**ତସ୍ମାତ୍ତପାଂସି ଯଜ୍ଞାଶ୍ଚ ବ୍ରତାନି ନିୟମାସ୍ତଥା ।**
**ପଞ୍ଚାକ୍ଷରାର୍ଚ୍ଚନସ୍ୟୈତେ କୋଟ୍ୟଂ ଶେନାପି ନୋ ସମାଃ ।। ୩୭।।**

ସ୍ପଷ୍ଟମ୍ ।। ୩୭।।

– ତେଣୁ ତପସ୍ୟା, ଯଜ୍ଞ, ବ୍ରତ ଓ ନିୟମ – ଏ ସମସ୍ତ ପଞ୍ଚାକ୍ଷର ମନ୍ତ୍ରଦ୍ୱାରା ପୂଜନ ଓ ଜପର କୋଟିଏ ଭାଗରୁ ଏକ ଭାଗ ସହିତ ସମାନ ନୁହଁନ୍ତି ।। ୩୭।।

ନନୁ ଶିବାର୍ଚ୍ଚନେ ନିର୍ମଳଜ୍ଞାନାଦିସମ୍ପନ୍ନୋଽଧିକାରୀତ୍ୟୁକ୍ତତ୍ୱାଦ୍ ଅଶୁଦ୍ଧବୁଦ୍ଧୀନାଂ କା ଗତିରିତ୍ୟତ୍ରାହ –

**ଅଶୁଦ୍ଧୋ ବା ବିଶୁଦ୍ଧୋ ବା ସକୃଦ୍ ପଞ୍ଚାକ୍ଷରେଣ ଯଃ ।**
**ପୂଜୟେଦ୍ ପତିତୋ ବାପି ମୁଚ୍ୟତେ ନାତ୍ର ସଂଶୟଃ ।। ୩୮ ।।**

ପତିତୋ ବ୍ରତଭ୍ରଷ୍ଟ ଇତ୍ୟର୍ଥଃ । ମୁଚ୍ୟତେ ସର୍ବପାପୈଃ ପ୍ରମୁଚ୍ୟତ ଇତ୍ୟର୍ଥଃ ।। ୩୮ ।।

– ଅଶୁଦ୍ଧ (ଜନ୍ମରୁ ଅଶୁଦ୍ଧ ଅଥବା ପରେ ଅଶୁଦ୍ଧ ହୋଇଥିବା) ଅଥବା ପତିତ, ଯେ କେହି ମଧ୍ୟ ଥରେ ମାତ୍ର ପଞ୍ଚାକ୍ଷର ମନ୍ତ୍ରରେ ପୂଜା କରେ ସେ ମୁକ୍ତ ହୋଇଯାଏ, ଏଥିରେ ସନ୍ଦେହ ନାହିଁ ।। ୩୮ ।।

ଅଥ ପଞ୍ଚାକ୍ଷରମନ୍ତ୍ରସ୍ୟ ସକୃଦୁଚ୍ଚାରଣାଦେବ ସର୍ବେଷାମପି ସର୍ବପାପକ୍ଷୟଃ ସ୍ୟାଦିତ୍ୟାହ –

**ସକୃଦୁଚ୍ଚାରମାତ୍ରେଣ ପଞ୍ଚାକ୍ଷରମହାମନୋଃ ।**
**ସର୍ବେଷାମପି ଜନ୍ତୂନାଂ ସର୍ବପାପକ୍ଷୟୋ ଭବେତ୍ ।। ୩୯ ।।**

ସ୍ପଷ୍ଟମ୍ ।। ୩୯ ।।

– ପଞ୍ଚାକ୍ଷର ମହାମନ୍ତ୍ରର କେବଳ ଥରେ ମାତ୍ର ଉଚ୍ଚାରଣ କରିଲେ ସମସ୍ତ ଜୀବଙ୍କର ପାପକ୍ଷୟ ହୋଇଥାଏ ।। ୩୯ ।।

ନନୁ ଶିବାଗମପ୍ରସିଦ୍ଧା ମନ୍ତ୍ର ବହବଃ ସନ୍ତି, ତେଭ୍ୟଃ କସ୍ମାଦସ୍ୟ ବୈଶିଷ୍ଟ୍ୟ-ମିତ୍ୟତ୍ରାହ –

**ଅନ୍ୟେଦ୍ଧପି ବହବଃ ମନ୍ତ୍ରା ବିଦ୍ୟନ୍ତେ ସକଳାଗମେ ।**
**ଭୂୟୋ ଭୂୟଃ ସମଭ୍ୟାସାଦ୍ ପୁରୁଷାର୍ଥପ୍ରଦାୟିନଃ ।। ୪୦।।**
**ଏଷ ମନ୍ତ୍ରୋ ମହାଶକ୍ତିରୀଶ୍ୱରପ୍ରତିପାଦକଃ ।**
**ସକୃଦୁଚ୍ଚାରଣାଦେବ ସର୍ବସିଦ୍ଧିପ୍ରଦାୟକଃ ।। ୪୧।।**

ସକଳାଗମେ ସମସ୍ତଶିବାଗମେ, ଏତତ୍‌ପଞ୍ଚାକ୍ଷରୀବ୍ୟତିରିକ୍ତମନ୍ତ୍ରା ବହବଃ ସନ୍ତି, ତେ ପୁରଶ୍ଚରଣବାହୁଲ୍ୟାଦ୍ ପୁରୁଷାର୍ଥପ୍ରଦାୟିନଃ । ଏଷ ପଞ୍ଚାକ୍ଷରମନ୍ତ୍ରୋ ମହାଶକ୍ତିଃ ମହାସାମର୍ଥ୍ୟବାନ୍, ଈଶ୍ୱରସ୍ୟ ବିଶ୍ୱମୟବିଶ୍ୱୋତ୍ତୀର୍ଣ୍ଣସାମରସ୍ୟ ଲକ୍ଷଣମାହାତ୍ମ୍ୟ ପ୍ରତିପାଦକଃ । ତସ୍ମାଦ୍ ସକୃଦୁଚ୍ଚାରଣାଦେବ ସର୍ବସିଦ୍ଧିପ୍ରଦାୟକ ଇତ୍ୟସ୍ୟ ବୈଶିଷ୍ଟ୍ୟମିତ୍ୟର୍ଥଃ ।। ୪୦-୪୧ ।।

– ସମସ୍ତ ଆଗମରେ ଅନ୍ୟ ବହୁତ ମନ୍ତ୍ର ମଧ୍ୟ ଅଛନ୍ତି । କିନ୍ତୁ ସେ ସମସ୍ତ ବାରମ୍ବାର ଅଭ୍ୟାସ କଲା ପରେ ଫଳ ଦେଇଥା'ନ୍ତି । ଏହି ମନ୍ତ୍ର ମହାଶକ୍ତି ସମ୍ପନ୍ନ ଏବଂ ଈଶ୍ୱରଙ୍କର ବାଚକ ଅଟେ । ଏଥିପାଇଁ ଥରେ ମାତ୍ର ଉଚ୍ଚାରଣ କଲେ ସମସ୍ତ ସିଦ୍ଧିକୁ ପ୍ରଦାନ କରିଥାଏ ।। ୪୦-୪୧ ।।

ଅଥ ସମନ୍ତ୍ରକ ପୂଜାଫଳଂ ପ୍ରକାଶୟତି –

**ପଞ୍ଚାକ୍ଷରୀଂ ସମୁଚ୍ଚାର୍ଯ୍ୟ ପୁଷ୍ପଂ ଲିଙ୍ଗେ ବିନିଃକ୍ଷିପେଦ୍ ।**
**ଯସ୍ତସ୍ୟ ବାଜପେୟାନାଂ ସହସ୍ରଫଳମିଷ୍ୟତେ ।। ୪୨ ।।**

ନିକ୍ଷିପେଦ୍ ସମର୍ପୟେଦିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୨ ।।

– ଯେଉଁ ବ୍ୟକ୍ତି ପଞ୍ଚାକ୍ଷର ମନ୍ତ୍ରର ଉଚ୍ଚାରଣ କରି ଶିବଲିଙ୍ଗ ଉପରେ ପୁଷ୍ପ ଚଢାଏ, ତାକୁ ହଜାରେ ବାଜପେୟ ଯଜ୍ଞର ଫଳପ୍ରାପ୍ତି ହୋଇଥାଏ ।। ୪୨ ।।

ଅଥ ପଞ୍ଚାକ୍ଷରୀ ଜପଫଳଂ ପ୍ରକାଶୟତି –

**ଅଗ୍ନିହୋତ୍ରଂ ତ୍ରୟୋବେଦା ଯଜ୍ଞାଶ୍ଚ ବହୁଦକ୍ଷିଣାଃ ।**
**ପଞ୍ଚାକ୍ଷରଜପସ୍ୟୈତେ କୋଟ୍ୟଂଶେନାପି ନୋ ସମାଃ ।। ୪୩।।**

ଅଗ୍ନିହୋତ୍ରଂ ସାୟଂପ୍ରାତର୍ବିଧୀୟମାନାଗ୍ନିହୋତ୍ରମ୍, ତ୍ରୟୋ ବେଦା ଋଗ୍-ଯଜୁଃ ସାମାଧ୍ୟୟନମ୍, ଯଜ୍ଞା ଜ୍ୟୋତିଷ୍ଟୋମାଦ୍ୟାଃ, ବହୁଦକ୍ଷିଣାଃ ଷୋଡ଼ଶମହାଦାନରୂପାଃ, ଏତେ ପଞ୍ଚାକ୍ଷରଜପସ୍ୟ କୋଟ୍ୟଂଶେନାପି ସମାନା ନ ଭବନ୍ତୀତ୍ୟର୍ଥଃ ।। ୪୩।।

– ଅଗ୍ନିହୋତ୍ର, ତିନି ବେଦର ସ୍ୱାଧ୍ୟାୟ, ବହୁତ ଦକ୍ଷିଣାଯୁକ୍ତ ଯଜ୍ଞ – ଏ ସମସ୍ତ ପଞ୍ଚାକ୍ଷର ଜପର କୋଟିଏ ଭାଗରୁ ଏକ ଭାଗର ସମକକ୍ଷ ନୁହଁନ୍ତି ।। ୪୩।।

ଅଥୈତନ୍ମନ୍ତ୍ରସିଦ୍ଧିମତାଂ ମହାପୁରୁଷାଣାଂ ମାହାତ୍ମ୍ୟପ୍ରତିପାଦନଦ୍ୱାରା ତସ୍ୟାଧିକ୍ୟଂ ବର୍ଣ୍ଣୟତି –

**ପୁରା ସାନନ୍ଦଯୋଗୀନ୍ଦ୍ରଃ ଶିବଜ୍ଞାନପରାୟଣଃ ।**
**ପଞ୍ଚାକ୍ଷରଂ ସମୁଚ୍ଚାର୍ଯ୍ୟ ନାରକାନୁଦତାରୟତ୍ ।। ୪୪ ।।**

ପୁରା ଶିବଜ୍ଞାନ ଯୋଗନିଷ୍ଠଃ ସାନନ୍ଦଗଣେଶଃ ପଞ୍ଚାକ୍ଷରମନ୍ତ୍ରଂ ବାଚକରୂପେଣୋଚ୍ଚାର୍ଯ୍ୟ ନାରକାନ୍ ଅଷ୍ଟାବିଂଶତି କୋଟି ନାୟକନରକସ୍ଥିତାନ୍ ପାପିନ ଉଦତାରୟଦ୍ ଉଦ୍ଧୃତବାନିତ୍ୟର୍ଥଃ ।। ୪୪ ।।

– ପ୍ରାଚୀନକାଳରେ ଶିବଜ୍ଞାନପରାୟଣ ସାନନ୍ଦ ଯୋଗୀନ୍ଦ୍ର ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣ କରି ଅଠେଇଶ କୋଟି ନରକବାସୀଙ୍କୁ ଉଦ୍ଧାର କରିଥିଲେ ।। ୪୪ ।।

**ସିଦ୍ଧ୍ୟା ପଞ୍ଚାକ୍ଷରସ୍ୟାସ୍ୟ ଶତାନନ୍ଦଃ ପୁରା ମୁନିଃ ।**
**ନରକଂ ସ୍ୱର୍ଗମକରୋଦ୍ ସଙ୍ଗିରସ୍ୟାପି ପାପିନଃ ।। ୪୫ ।।**

ପୁରା ଶତାନନ୍ଦଃ ପଞ୍ଚାକ୍ଷରୀଜପସ୍ୟ ସିଦ୍ଧ୍ୟା ପାପିନଃ ସଙ୍ଗିରସ୍ୟ ନରକମପି ସ୍ୱର୍ଗମକରୋଦିତ୍ୟର୍ଥଃ ।। ୪୫ ।।

– ପ୍ରାଚୀନକାଳରେ ଶତାନନ୍ଦ ନାମକ ଋଷି ଏହି ପଞ୍ଚାକ୍ଷରର ସିଦ୍ଧିଦ୍ୱାରା ସଙ୍ଗିର ନାମକ ପାପୀର ନର୍କକୁ ସ୍ୱର୍ଗ କରି ଦେଇଥିଲେ ।। ୪୫ ।।

**ଉପମନ୍ୟୁଃ ପୁରା ଯୋଗୀ ମନ୍ତ୍ରେଣାନେନ ସିଦ୍ଧିମାନ୍ ।**
**ଲବ୍ଧବାନ୍ ପରମେଶାନାଚ୍ଛୈବଶାସ୍ତ୍ରପ୍ରବକ୍ତୃତାମ୍ ।। ୪୬ ।।**

ଶିବଶାସ୍ତ୍ରାଚାର୍ଯ୍ୟତାଂ ଲବ୍ଧବାନିତ୍ୟର୍ଥଃ ।। ୪୬ ।।

– ପ୍ରାଚୀନକାଳରେ ଉପମନ୍ୟୁ ନାମକ ଯୋଗୀ ଏହି ମନ୍ତ୍ରରେ ସିଦ୍ଧିକୁ ପ୍ରାପ୍ତ କରି ପରମେଶ୍ୱରଙ୍କଠାରୁ ଶୈବଶାସ୍ତ୍ରର ପ୍ରବକ୍ତୃତାକୁ ପ୍ରାପ୍ତ କରିଥିଲେ ।। ୪୬ ।।

**ବଶିଷ୍ଠବାମଦେବାଦ୍ୟା ମୁନୟୋ ମୁକ୍ତକିଲ୍ବିଷାଃ ।**
**ମନ୍ତ୍ରେଣାନେନ ସଂସିଦ୍ଧା ମହାତେଜସ୍ୱିନୋଽଭବନ୍ ।। ୪୭ ।।**

ମୁକ୍ତକିଲ୍ବିଷା ବିମୁକ୍ତପାପକର୍ମାଣଃ, ବଶିଷ୍ଠ–ବାମଦେବାଦ୍ୟା ଋଷୟଃ, ଅନେନ ପଞ୍ଚାକ୍ଷରମନ୍ତ୍ରେଣ, ସିଦ୍ଧିମନ୍ତଃ ସନ୍ତଃ, ମହାତେଜସ୍ୱିନଃ ଶାପାନୁଗ୍ରହସମର୍ଥା ଅଭବନ୍ନିତ୍ୟର୍ଥଃ ।। ୪୭ ।।

– ଏହି ମନ୍ତ୍ରଦ୍ୱାରା ବଶିଷ୍ଠ–ବାମଦେବ ଆଦି ମୁନିମାନେ ପାପ ରହିତ ହୋଇ ପୂର୍ଣ୍ଣ ସିଦ୍ଧ ଏବଂ ମହାତେଜସ୍ୱୀ ହୋଇଥିଲେ ।। ୪୭ ।।

ଅଥ ବ୍ରହ୍ମାଦୟୋଽପ୍ୟେତନ୍ମନ୍ତ୍ର ସାମର୍ଥ୍ୟାଦେବ ସୃଷ୍ଟ୍ୟାଦିକୃତ୍ୟାଧିକାରିଣୋ ଜାତା ଇତ୍ୟାହ –

**ବ୍ରହ୍ମାଦୀନାଂ ଚ ଦେବାନାଂ ଜଗତ୍ସୃଷ୍ଟ୍ୟାଦିକର୍ମଣି ।**
**ମନ୍ତ୍ରସ୍ୟାସ୍ୟୈବ ମାହାତ୍ମ୍ୟାତ୍ ସାମର୍ଥ୍ୟମୁପଜାୟତେ ।। ୪୮ ।।**

ବ୍ରହ୍ମା-ବିଷ୍ଣୁ-ରୁଦ୍ରାଦି ଦେବାନାଂ ବିଶ୍ୱସୃଷ୍ଟି-ସ୍ଥିତି-ସଂହାରାଦି କର୍ମଣି ସାମର୍ଥ୍ୟମସ୍ୟ ମନ୍ତ୍ରସ୍ୟ ପ୍ରଭାବାଦେବେତ୍ୟର୍ଥଃ ।। ୪୮।।

– ଜଗତର ସୃଷ୍ଟି (ସ୍ଥିତି, ପ୍ରଳୟ) ଆଦି କାର୍ଯ୍ୟରେ ବ୍ରହ୍ମା (ବିଷ୍ଣୁ, ରୁଦ୍ର) ଆଦିଙ୍କର ସାମର୍ଥ୍ୟ ଏହି ମନ୍ତ୍ରର ମହିମାରେ ହୋଇଥାଏ ।। ୪୮।।

କିଂ ବହୁନା, ଅସ୍ୟ ପ୍ରଣବ ସହିତ ଷଡ଼ାକ୍ଷରମନ୍ତ୍ରସ୍ୟ ଜପେନ ତଦ୍‌କୃତ ଶିବଲିଙ୍ଗପୂଜନେନ ଚ ମୋକ୍ଷମେବାପ୍ନୋତୀତ୍ୟୁକ୍ତ୍ୱା ପଞ୍ଚାକ୍ଷରୀଜପସ୍ଥଳଂ ସମାପୟତି –

କିମିହ ବହୁଭିରୁକ୍ତୈର୍ମନ୍ତ୍ରମେବଂ ମହାତ୍ମା
ପ୍ରଣବ ସହିତମାଦୌ ଯସ୍ତୁ ପଞ୍ଚାକ୍ଷରାଖ୍ୟମ୍ ।
ଜପତି ପରମଭକ୍ତ୍ୟା ପୂଜୟନ୍ ଦେବଦେବଂ
ସ ଗତଦୁରିତବନ୍ଧୋ ମୋକ୍ଷଲକ୍ଷ୍ମୀଂ ପ୍ରୟାତି ।। ୪୯।।

ଅତ୍ର ଯାଦି ସୃଷ୍ଟିଷଡ଼କ୍ଷର୍ଯ୍ୟା ଶରୀରନ୍ୟାସମ୍, ନାଦିପ୍ରଣବାନ୍ତସଂହାର ପଞ୍ଚାକ୍ଷର୍ଯ୍ୟା ଅଙ୍ଗନ୍ୟାସମ୍, ଶିବାୟ ନମ ଓମିତି ସ୍ଥିତିପଞ୍ଚାକ୍ଷର୍ଯ୍ୟା କରନ୍ୟାସଂ କୃତ୍ୱା ଗୁରୂପଦିଷ୍ଟ-ମାର୍ଗେଣ ପ୍ରଣବପଞ୍ଚାକ୍ଷରୀଂ ଜପେତ୍ । ସ୍ତ୍ରୀଶୂଦ୍ରାଦିଜାତୀନାଂ ଶିବାୟ ନମ ଇତି ଜପବିଧିଃ ।। ୪୯।।

– ଆହୁରି ଅଧିକ କହିବାର କ'ଣ ଆବଶ୍ୟକତା ଅଛି ? ଯେଉଁ ମହାତ୍ମା ପ୍ରଣବ ଯୁକ୍ତ ଏହି ପଞ୍ଚାକ୍ଷର ନାମକ ମନ୍ତ୍ରର ପରମ ଭକ୍ତି ସହିତ ଦେବାଧିଦେବ ଭଗବାନ୍ ଶଙ୍କରଙ୍କର ପୂଜା କରି ଜପ କରେ, ସେ ପାପରୂପୀ ବନ୍ଧନକୁ ନାଶ କରି ମୋକ୍ଷରୂପୀ ଐଶ୍ୱର୍ଯ୍ୟକୁ ପ୍ରାପ୍ତ କରିଥାଏ ।। ୪୯।।

ଇତି ଶ୍ରୀମଦ୍ ଷଟ୍‌ସ୍ଥଳବ୍ରହ୍ମିଣା ଶିବଯୋଗିନାମ୍ନା ମାହେଶ୍ୱରେଣ ବିରଚିତେ ସିଦ୍ଧାନ୍ତ ଶିଖାମଣୌ ଭକ୍ତସ୍ଥଳେ ପଞ୍ଚାକ୍ଷରୀଜପପ୍ରସଙ୍ଗୋ ନାମ ଅଷ୍ଟମଃ ପରିଚ୍ଛେଦଃ ସମାପ୍ତଃ ।। ୮।।

ଇତି ଶ୍ରୀମତପଦବାକ୍ୟପ୍ରମାଣପାରାବାରଧୁରୀଣ ଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତ ଶିଖାମଣି ବ୍ୟାଖ୍ୟାୟାଂ ଭକ୍ତସ୍ଥଳେ ପଞ୍ଚାକ୍ଷରୀ ଜପପ୍ରସଙ୍ଗୋ ନାମ ଅଷ୍ଟମଃ ପରିଚ୍ଛେଦଃ ।। ୮।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ପଞ୍ଚାକ୍ଷରୀଜପ ପ୍ରସଙ୍ଗ ନାମକ ଅଷ୍ଟମ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦି ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୮।।

ଇତି ପଞ୍ଚାକ୍ଷରୀଜପସ୍ଥଳମ୍ ।



# ନବମଃ ପରିଚ୍ଛେଦଃ

## ଅଥ ଭକ୍ତମାର୍ଗକ୍ରିୟାସ୍ଥଲମ୍

ଅଥ ଭକ୍ତମାର୍ଗକ୍ରିୟାସ୍ଥଲଂ ନିରୂପୟିତୁଂ ପୂର୍ବମୁକ୍ତମପି ଭକ୍ତସ୍ଥଲଂ ବିଶେଷତଃ ସ୍ମାରୟତି ଶ୍ରୀରେଣୁକଃ –

**ଭୂତିରୁଦ୍ରାକ୍ଷସଂଯୁକ୍ତୋ ଲିଙ୍ଗଧାରୀ ସଦାଶିବଃ ।**
**ପଞ୍ଚାକ୍ଷରଜପୋଦ୍ୟୋଗୀ ଶିବଭକ୍ତ ଇତି ସ୍ମୃତଃ ।। ୧ ।।**

ସ୍ପଷ୍ଟମ୍ ।। ୧ ।।

– ଭସ୍ମ ଏବଂ ରୁଦ୍ରାକ୍ଷରେ ଯୁକ୍ତ ଲିଙ୍ଗଧାରୀ ସଦାଶିବ ପଞ୍ଚାକ୍ଷରର ଜପରେ ରତ ରହନ୍ତି । ତେଣୁ ସେମାନଙ୍କୁ ଶିବଭକ୍ତ କୁହାଯାଏ ଅଥବା ଯେଉଁ ବ୍ୟକ୍ତି ସଦା ଶିବପଞ୍ଚାକ୍ଷର ଜପରେ ଉଦ୍ୟମୀ, ତାଙ୍କୁ ଶିବଭକ୍ତ ଭାବରେ ଗଣାଯାଏ ।। ୧ ।।

ଭକ୍ତିଭେଦଂ ନିରୂପୟତି –

**ଶ୍ରବଣଂ କୀର୍ତ୍ତନଂ ଶମ୍ଭୋଃ ସ୍ମରଣଂ ପାଦସେବନମ୍ ।**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ।। ୨ ।।**
**ଏବଂ ନବବିଧା ଭକ୍ତିଃ ପ୍ରୋକ୍ତା ଦେବେନ ଶମ୍ଭୁନା ।**
**ଦୁର୍ଲଭା ପାପିନାଂ ଲୋକେ ସୁଲଭା ପୁଣ୍ୟକର୍ମଣାମ୍ ।। ୩ ।।**

ଶମ୍ଭୋଃ ଶ୍ରବଣଂ ଶିବକଥାଶ୍ରବଣମ୍, କୀର୍ତ୍ତନଂ ସ୍ତୋତ୍ରମ୍, ସ୍ମରଣଂ ଧ୍ୟାନମ୍, ପଦସେବନଂ ପାଦମର୍ଦ୍ଦନମ୍, ଅର୍ଚ୍ଚନଂ ପୂଜନମ୍, ବନ୍ଦନଂ ନତିଃ, ଦାସ୍ୟଂ ଭୃତ୍ୟତ୍ୱମ୍, ସଖ୍ୟଂ ମିତ୍ରତ୍ୱମ୍, ଆତ୍ମନିବେଦନଂ ସ୍ୱାତ୍ମସର୍ପଣମ୍। ଏବଂ ଭକ୍ତିର୍ନବବିଧେତି କ୍ରୀଡାଶୀଳେନ ଦେବେନ ପ୍ରୋକ୍ତା । ଲୋକେ ପାପିନାଂ ଦୁର୍ଲଭା, ପୁଣ୍ୟକର୍ମଣାଂ ଧର୍ମଶାଳିନାଂ ସୁଲଭେତ୍ୟର୍ଥଃ।।୨–୩।।

ଭଗବାନ୍ ଶଙ୍କରଙ୍କର କଥାର ଶ୍ରବଣ, ତାଙ୍କର ସ୍ମରଣ, ତାଙ୍କର ପଦଯୁଗଳର ପୂଜା, ଅର୍ଚ୍ଚନା ତଥା ବନ୍ଦନା କରିବା, ନିଜକୁ ତାଙ୍କର ଦାସ ଭାବିବା, ତାଙ୍କୁ ନିଜର ମିତ୍ର ଭାବିବା ତଥା ନିଜକୁ ସମ୍ପୂର୍ଣ୍ଣ ଭାବରେ ତାଙ୍କ ପ୍ରତି ସମର୍ପିତ କରିବା – ଏହିପରି ଭଗବାନ୍ ଶମ୍ଭୁ ନବ ପ୍ରକାର ଭକ୍ତିର ବର୍ଣ୍ଣନ କରିଛନ୍ତି। ଏହି ଭକ୍ତିମାର୍ଗ ସଂସାରରେ ପ୍ରାଣୀମାନଙ୍କ ପାଇଁ ଦୁର୍ଲଭ ଅଟେ ଓ ପୁଣ୍ୟକର୍ମା ଲୋକମାନଙ୍କ ପାଇଁ ସୁଲଭ ଅଟେ।। ୨–୩।।

ଅଥୈବଂବିଧଭକ୍ତିମାନେବ ଭକ୍ତ ଇତ୍ୟାହ –

**ଅଧମେ ଚୋତ୍ତମେ ବାପି ଯତ୍ର କୁତ୍ରଚିଦୂର୍ଜିତା ।**
**ବର୍ତ୍ତତେ ଶାଙ୍କରୀ ଭକ୍ତିଃ ସ ଭକ୍ତ ଇତି ଗୀୟତେ ।। ୪ ।।**

ସ୍ପଷ୍ଟମ୍ ।। ୪ ।।

ଅଧମ ଅଥବା ଉତ୍ତମ ଯେ କୌଣସି ବ୍ୟକ୍ତିଠାରେ ଶଙ୍କରଙ୍କର ଭକ୍ତି ତୀବ୍ର ହେଲେ ତାହାକୁ ଭକ୍ତ କୁହାଯାଏ ।। ୪ ।।

ଅଥ ଭକ୍ତିମାନେବ ଶିବପ୍ରିୟ ଇତ୍ୟାହ –

**ଭକ୍ତିଃ ସ୍ଥିରୀକୃତା ଯସ୍ମିନ୍ ମ୍ଲେଚ୍ଛେ ବା ଦ୍ୱିଜସତ୍ତମେ ।**
**ଶମ୍ଭୋଃ ପ୍ରିୟଃ ସବିପ୍ରଶ୍ଚ ନ ପ୍ରିୟୋ ଭକ୍ତିବର୍ଜିତଃ ।। ୫ ।।**

ସ୍ପଷ୍ଟମ୍ ।। ୫ ।।

ଯେଉଁ ମ୍ଲେଚ୍ଛ ଅଥବା ଉତ୍ତମ ବ୍ରାହ୍ମଣର ଭକ୍ତି ସ୍ଥିର ଅଟେ, ସେହି ମ୍ଲେଚ୍ଛ ଅଥବା ବ୍ରାହ୍ମଣ ଶିବଙ୍କର ପ୍ରିୟ ହୋଇଥାଏ । ଯିଏ ଭକ୍ତିବର୍ଜିତ, ସେ ବ୍ୟକ୍ତି ପ୍ରିୟ ନୁହେଁ ।। ୫ ।।

ଅନେନ ପୂର୍ବୋକ୍ତୋତ୍ତମାଧମାବପି ସ୍ଫୁଟୀକୃତୌ । ଅଥ ସା ଭକ୍ତିର୍ଦ୍ୱିବିଧେତ୍ୟାହ –

**ସା ଭକ୍ତିର୍ଦ୍ୱିବିଧା ଜ୍ଞେୟା ବାହ୍ୟାଭ୍ୟନ୍ତରଭେଦତଃ ।**
**ବାହ୍ୟା ସ୍ଥୂଳାନ୍ତରା ସୂକ୍ଷ୍ମା ବୀରମାହେଶ୍ୱରାଦୃତା ।। ୬ ।।**

ବୀରମାହେଶ୍ୱରପ୍ରୀତିବିଷୟିଣୀ ଭକ୍ତିର୍ବାହ୍ୟାଭ୍ୟନ୍ତର ଲକ୍ଷଣସ୍ଥୂଳସୂକ୍ଷ୍ମଭେଦେନ ଦ୍ୱିବିଧେତ୍ୟର୍ଥଃ ।। ୬ ।।

ସେହି ଭକ୍ତି ବାହ୍ୟ ଓ ଆଭ୍ୟନ୍ତର ଭେଦରେ ଦୁଇ ପ୍ରକାରର ଜାଣିବା ଉଚିତ୍। ସ୍ଥୂଳ ଭକ୍ତିକୁ ବାହ୍ୟ କୁହାଯାଏ। ସୂକ୍ଷ୍ମ ଭକ୍ତି ଆଭ୍ୟନ୍ତର ଭକ୍ତି ଅଟେ। ଏହା (ଆଭ୍ୟନ୍ତର ଭକ୍ତି) ଅଧିକ ଆଦରଣୀୟ ଅଟେ ବୀରମାହେଶ୍ୱରଦ୍ୱାରା ।। ୬ ।।

ଅଥ ନାମ ବାହ୍ୟେତ୍ୟତ୍ରାହ –

**ସିଂହାସନେ ଶୁଦ୍ଧଦେଶେ ସୁରମ୍ୟେ ରତ୍ନଚିତ୍ରିତେ ।**
**ଶିବଲିଙ୍ଗସ୍ୟ ପୂଜା ଯା ସା ବାହ୍ୟା ଭକ୍ତିରୁଚ୍ୟତେ ।। ୭ ।।**

ସୁରମ୍ୟେ ଅତ୍ୟନ୍ତମନୋହରେ, ଶୁଦ୍ଧଦେଶେ ଷଟ୍ ସମ୍ମାର୍ଜନ ପରିଶୁଦ୍ଧସ୍ଥାନେ, ରତ୍ନଚିତ୍ରିତେ ନବରତ୍ନୈର୍ବିଚିତ୍ରୀକୃତେ, ସିଂହାସନେ ସିଂହବିଷ୍ଟରେ, ଶିବଲିଙ୍ଗସ୍ୟ ଯା ପୂଜା, ସା ବାହ୍ୟା ଭକ୍ତିରିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୭ ।।

ଶୁଦ୍ଧ ଏବଂ ରମଣୀୟ ସ୍ଥାନରେ ରତ୍ନଜଟିତ ସିଂହାସନ ଉପରେ ଶିବଲିଙ୍ଗର ଯେଉଁ ପୂଜା କରାଯାଏ, ତାହାକୁ ବାହ୍ୟଭକ୍ତି କୁହାଯାଏ ।। ୭ ।।

ଏବଂ ଶିବଭକ୍ତବିଧୀୟମାନାଂ ବାହ୍ୟାଂ ଭକ୍ତିମୁକ୍ତ୍ୱାଦଥ ଶିବଯୋଗିବିଧୀୟମାନାମାନ୍ତରାଂ ଭକ୍ତିମୁପପାଦୟତି –

**ଲିଙ୍ଗେ ପ୍ରାଣଂ ସମାଧାୟ ପ୍ରାଣେ ଲିଙ୍ଗଂ ତୁ ଶାମ୍ଭବମ୍ ।**
**ସ୍ୱଛଂ ମନସ୍ତଥା କୃତ୍ୱା ନ କିଞ୍ଚିଚ୍ଚିନ୍ତୟେଦ୍ ଯଦି ।। ୮ ।।**
**ସାଭ୍ୟନ୍ତରା ଭକ୍ତିରିତି ପ୍ରୋଚ୍ୟତେ ଶିବଯୋଗିଭିଃ ।**
**ସା ଯସ୍ମିନ୍ ବର୍ତ୍ତତେ ତସ୍ୟ ଜୀବନଂ ଭ୍ରଷ୍ଟବୀଜବତ୍ ।। ୯ ।।**

ଶିବଲିଙ୍ଗେ ପ୍ରାଣଂ ସମାଧାୟ ସଂସ୍ଥାପ୍ୟ, ପ୍ରାଣେ ଜୀବକଳାରୂପେ ପ୍ରାଣେ ଶାମ୍ଭବଂ ଲିଙ୍ଗଂ ତୁ ଶିବକଳାରୂପଂ ଲିଙ୍ଗଂ ସମାଧାୟ ସଂସ୍ଥାପ୍ୟ, ମନଃ ସ୍ୱଛଂ କୃତ୍ୱା, ଯଦି ନ କିଞ୍ଚିଚ୍ଚିନ୍ତୟେତ୍, ସା ଲିଙ୍ଗପ୍ରାଣସମରସରୂପା ଚିନ୍ତା, ଆଭ୍ୟନ୍ତରା ଭକ୍ତିରିତି ଶିବଯୋଗିଭିଃ ପ୍ରୋଚ୍ୟତେ । ସାଦଭ୍ୟନ୍ତରା ଭକ୍ତିର୍ଯସ୍ମିନ୍ ବର୍ତ୍ତତେ, ତସ୍ୟ ଜୀବନଂ ଭ୍ରଷ୍ଟବୀଜବତ୍ ଭର୍ଜିତବୀଜବତ୍ ପୁନର୍ନ ଜନନକାରଣମିତ୍ୟର୍ଥଃ ।। ୮–୯ ।।

ଲିଙ୍ଗରେ ପ୍ରାଣ ତଥା ପ୍ରାଣରେ ଲିଙ୍ଗକୁ ସମାହିତ କରି ମନକୁ ସ୍ୱଛ ରଖି ସାଧକ ଯଦି ଅନ୍ୟ କାହାରି ଚିନ୍ତା ନ କରେ, ତେବେ ଶିବଯୋଗୀମାନେ ତାହାକୁ ଆଭ୍ୟନ୍ତର ଭକ୍ତି କହିଥାନ୍ତି। ସେପରି ଭକ୍ତି ଯାହା ଭିତରେ ଥାଏ, ସେହି ବ୍ୟକ୍ତିର ଜୀବନ ଭଜା ହୋଇଥିବା ବୀଜ ପରି ହୋଇଥାଏ ଅର୍ଥାତ୍ ଯେପରି ଭଜା ବୀଜର ଅଙ୍କୁରୋଦ୍‌ଗମ ହୁଏ ନାହିଁ, ସେହିପରି ସେହି ବ୍ୟକ୍ତିର ପୁନର୍ଜନ୍ମ ହୁଏ ନାହିଁ ।। ୮–୯ ।।

ଏବଂ ନିର୍ବୀଜଦୀକ୍ଷାପ୍ରସିଦ୍ଧାଭ୍ୟନ୍ତରଭକ୍ତିମାନେବ ମୁକ୍ତ ଇତ୍ୟାହ –

**ବହୁନାତ୍ର କିମୁକ୍ତେନ ଗୁହ୍ୟାଦ୍ ଗୁହ୍ୟତରା ପରା ।**
**ଶିବଭକ୍ତିର୍ନ ସନ୍ଦେହସ୍ତୟା ଯୁକ୍ତୋ ବିମୁଚ୍ୟତେ ।। ୧୦ ।।**

ସ୍ପଷ୍ଟମ୍ ।। ୧୦ ।।

ଏହି ବିଷୟରେ ଅଧିକ କହିବାରେ କ'ଣ ଲାଭ ? ଶିବଭକ୍ତି ପରା ତଥା ଗୁହ୍ୟଠାରୁ ମଧ୍ୟ ଗୁହ୍ୟତର ଅଟେ । ସେଥିରେ ଯୁକ୍ତ ମନୁଷ୍ୟ ମୁକ୍ତ ହୋଇ ଯାଏ, ଏଥିରେ କୌଣସି ସନ୍ଦେହ ନାହିଁ ।। ୧୦ ।।

ନନ୍ୱେତାଦୃଶୀ ଭକ୍ତିଃ କସ୍ମାଦ୍ ଭବତୀତ୍ୟତ୍ରାହ –

**ପ୍ରସାଦାଦେବ ସା ଭକ୍ତିଃ ପ୍ରସାଦୋ ଭକ୍ତିସମ୍ଭବଃ ।**
**ଯଥୈବାଙ୍କୁରତୋ ବୀଜଂ ବୀଜତୋ ବା ଯଥାଙ୍କୁରଃ ।। ୧୧ ।।**

ସ୍ପଷ୍ଟମ୍ ।। ୧୧ ।।

ସେହି ଭକ୍ତି ପ୍ରସାଦ ଅର୍ଥାତ୍ କୃପାରୁ ମିଳିଥାଏ । ପ୍ରସାଦ ଭକ୍ତିରୁ ଉତ୍ପନ୍ନ ହୋଇଥାଏ ଯେପରି ବୀଜରୁ ଅଙ୍କୁର ଏବଂ ଅଙ୍କୁରରୁ ବୀଜ ଉତ୍ପନ୍ନ ହୋଇଥାଏ ସେହିପରି ସମ୍ବନ୍ଧ ଭକ୍ତି ଏବଂ କୃପା ମଧ୍ୟରେ ଅଛି ଅର୍ଥାତ୍ ଉଭୟ ଅନାଦି ଅଟନ୍ତି ।।୧୧ ।।

ଅଥୈବଂରୂପାଭକ୍ତିରେକେନୈବ ଜନ୍ମନା ଦୁର୍ଲଭେତ୍ୟାହ –

**ପ୍ରସାଦପୂର୍ବିକା ଯେୟଂ ଭକ୍ତିର୍ମୁକ୍ତିବିଧାୟିନୀ ।**

**ନୈବ ସା ଶକ୍ୟତେ ପ୍ରାପ୍ତୁଂ ନରୈରେକେନ ଜନ୍ମନା ।। ୧୨।।**

ସ୍ପଷ୍ଟମ୍ ।। ୧୨।।

ଯେଉଁ ଭକ୍ତି ପ୍ରସାଦ ପରେ ମିଳି ଥାଏ, ତାହା ମୁକ୍ତି ପ୍ରଦାନ କରେ । ଏ ପ୍ରକାର ଭକ୍ତି ମନୁଷ୍ୟମାନେ ଗୋଟିଏ ଜନ୍ମାରେ ପ୍ରାପ୍ତ କରିପାରିବେ ନାହିଁ ।। ୧୨।।

ତର୍ହି କତିଜନ୍ମଭିର୍ଲଭ୍ୟତ ଇତ୍ୟତ୍ରାହ –

**ଅନେକଜନ୍ମ ଶୁଦ୍ଧାନାଂ[୧୨୩] ଶ୍ରୌତସ୍ମାର୍ତ୍ତାନୁବର୍ତ୍ତିନାମ୍ ।**

**ବିରକ୍ତାନାଂ ପ୍ରବୁଦ୍ଧାନାଂ ପ୍ରସୀଦତି ମହେଶ୍ୱରଃ ।। ୧୩।।**

ଅନେକ ଜନ୍ମ କୃତ ଶିବ ଧ୍ୟାନପୂଜାଦିପରିଶୁଦ୍ଧଚିତ୍ତାନାଂ ଶ୍ରୁତିସ୍ମୃତ୍ୟୁକ୍ତ-ନିତ୍ୟନୈମିତ୍ତିକକର୍ମାନୁଷ୍ଠାନାନାଂ କାମ୍ୟକର୍ମନିସ୍ପୃହାଣାଂ ସୁଜ୍ଞାନିନାଂ ଶିବଃ ପ୍ରସନ୍ନୋ ଭବତି, ତତ୍‌ପ୍ରସାଦାତ୍ତାଦୃଶୀ ଭକ୍ତିର୍ଲଭ୍ୟତ ଇତ୍ୟର୍ଥଃ । ମ୍ଲେଚ୍ଛାଦୀନାଂ ଶ୍ରୌତସ୍ମାର୍ତ୍ତ କର୍ମନିଷ୍ଠତ୍ୱାଭାବେଽପି ପୂର୍ବଜନ୍ମନି ଶିବଭକ୍ତେଭ୍ୟଃ କୃତୋପକାରବଶାତ୍ ଶିବଭକ୍ତି–ରାବିର୍ଭବେଦିତି ଭାବଃ ।। ୧୩।।

ଅନେକ ଜନ୍ମରେ (ଉତ୍ତମ କର୍ମ ଫଳରେ) ଶୁଦ୍ଧ ହୋଇଥିବା ଲୋକମାନେ, ବେଦ, ପୁରାଣ ଓ ସ୍ମୃତିଦ୍ୱାରା ନିର୍ଦ୍ଦିଷ୍ଟ ମାର୍ଗରେ ଚାଲନ୍ତି । ବିରାଗଯୁକ୍ତ ତଥା ଜ୍ଞାନୀ ହୋଇଥାନ୍ତି, ପରମେଶ୍ୱର ସେହି ବ୍ୟକ୍ତିମାନଙ୍କ ଉପରେ କୃପା କରିଥାନ୍ତି ।। ୧୩।।

ନନ୍ୱନେକଜନ୍ମଲଭ୍ୟଶିବଭକ୍ତ୍ୟା କତିଜନ୍ମଭିର୍ମୁକ୍ତିଃ, ସା କୀଦୃଶୀ ସ୍ୟାଦିତ୍ୟତ୍ରାହ–

**ପ୍ରସନ୍ନେ ସତି ମୁକ୍ତୋଽଦ୍ଧଭୂନ୍ମୁକ୍ତଃ ଶିବସମୋ ଭବେତ୍ ।**

**ଅଳ୍ପଭକ୍ତ୍ୟାପି ଯୋ ମର୍ତ୍ତ୍ୟସ୍ତସ୍ୟ ଜନ୍ମତ୍ରୟାତ୍‌ପରମ୍ ।। ୧୪।।**

ଶିବେ ପ୍ରସନ୍ନେ ସତି ମୁକ୍ତୋ ଭବେତ୍, ମୁକ୍ତଃ ଶିବସମୋ ଭବେତ୍ ଯୋ ମର୍ତ୍ତସ୍ତସ୍ୟ ଅଳ୍ପଭକ୍ତ୍ୟା ଜନ୍ମତ୍ରୟାତ୍‌ପରଂ ମୁକ୍ତିଃ, ପୂର୍ଣ୍ଣଭକ୍ତିମତ ଏକେନୈବ ଜନ୍ମନା ମୁକ୍ତିରିତି ଭାବଃ । ଅତ୍ର ଶିବସମାନତ୍ୱଂ ଶିବାଭେଦ ଏବ ନ ତତ୍‌ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।[୧୨୪] ଇତି ଶ୍ରୁତେଃ ଶିବସମାନତ୍ୱାଭାବାତ୍, ଶିବାନ୍ନିକୃଷ୍ଟସ୍ୟ ତତ୍‌ସମତ୍ୱାସମ୍ଭବାତ୍ । 'ଗଗନଂ ଗଗନାକାରମ୍' ଇତ୍ୟାଦ୍ୟନନ୍ୟୋପମୈବାଭେଦ ଇତି ଭାବଃ, 'ଶିବସ୍ୱରୂପୋ ଭବତି ଶିବସ୍ୱରୂପୋ ଭବତି' ଇତି ବୃଦ୍ଧଜାବାଲଶ୍ରୁତେଶ୍ଚ ।

---

୧୨୩. ତୁଳନୀୟ– ଅନେକଜନ୍ମ ସଂସିଦ୍ଧିସ୍ତତୋ ଯାତି ପରାଂ ଗତିମ୍ । (ଭ.ଗୀ., ୬/୪୫)

୧୨୪. ଶ୍ୱେ. ଉ., ୬/୮

ଏକେନ ଜନ୍ମନା ମୁକ୍ତିର୍ବୀରାଣାଂ ତୁ ମହେଶ୍ୱରି ।
ଇତରେଷାଂ ତୁ ଶୈବାନାଂ ମୁକ୍ତିର୍ଜନ୍ମତ୍ରୟାଦ୍‌ପରମ୍ ।।

ଇତି ବୀରାଗମବଚନାଦ୍ ବୀରଶୈବାନାମେକେନୈବ ଜନ୍ମନା ମୁକ୍ତିଃ, ଇତରେଷାଂ ଶୈବାନାଂ ଜନ୍ମତ୍ରୟାଦ୍‌ପରଂ ମୁକ୍ତିରିତି ଭାବଃ ।। ୧୪ ।।

– (ଶିବ) ପ୍ରସନ୍ନ ହେଲେ ମନୁଷ୍ୟ ମୁକ୍ତ ହୁଏ (ସେ) ମୁକ୍ତ ହୋଇ ଶିବ ସମ ହୋଇଯାଏ । ଯେଉଁ ମନୁଷ୍ୟ ଅଳ୍ପ ଭକ୍ତିରେ ମଧ୍ୟ ଯୁକ୍ତ ହୁଏ, ତାହାକୁ ତିନି ଜନ୍ମ ପରେ (ମୁକ୍ତି) ମିଳିଥାଏ ।। ୧୪ ।।

ନନୁ କା ନାମାଳ୍ପଭକ୍ତିଃ ? ମୁକ୍ତସ୍ୟ ପୁନରୁଦ୍‌ପତ୍ତିରସ୍ତି ବା ନ ବେତ୍ୟତ୍ରାହ –

**ନ ଯୋନିଯନ୍ତ୍ରପୀଡ଼ା ବୈ ଭବେନ୍ନୈବାତ୍ର ସଂଶୟଃ ।**
**ସାଙ୍ଗା ନ୍ୟୂନା ଚ ଯା ସେବା ସା ଭକ୍ତିରିତି କଥ୍ୟତେ ।। ୧୫ ।।**

'ନ ସ ପୁନରାବର୍ତ୍ତତେ ନ ସ ପୁନରାବର୍ତ୍ତତେ'[୧୨୫] ଇତି ଶ୍ରୁତେର୍ଯୋନିଯନ୍ତ୍ରପୀଡ଼ା ପୁନରୁତ୍ପତ୍ତିର୍ନାସ୍ତି । ଉକ୍ତନବବିଧାଙ୍ଗଯୁକ୍ତା ସେବା ପୂର୍ଣ୍ଣଭକ୍ତିଃ, କିଞ୍ଚିନ୍ନ୍ୟୂନାଦଳ୍ପ ଭକ୍ତିରିତ୍ୟର୍ଥଃ ।। ୧୫ ।।

– (ଶିବଭକ୍ତକୁ) ଗର୍ଭବାସର ଦୁଃଖ ସହିବାକୁ ପଡ଼ି ନ ଥାଏ, ଏଥିରେ ସନ୍ଦେହ ନାହିଁ । ନବ ପ୍ରକାର ଭକ୍ତି ଅଙ୍ଗ (ପ୍ରକାର) ସହିତ ଯାହା ନ୍ୟୂନ ସେବା, ତାହା ଅଳ୍ପଭକ୍ତି କୁହାଯାଏ ।। ୧୫ ।।

ଅଥ – 'ଯଦ୍ଧି ମନସା ଧ୍ୟାୟତି ତଦ୍‌ବାଚା ବଦତି ତତ୍‌କର୍ମଣା କରୋତି' ଇତି ଶ୍ରୁତେଃ ସା ଭକ୍ତିସ୍ତ୍ରିବିଧେତ୍ୟାହ –

**ସା ପୁନର୍ଭିଦ୍ୟତେ ତ୍ରେଧା ମନୋବାକ୍‌କାୟସାଧନୈଃ ।**
**ଶିବରୂପାଦିଚିନ୍ତା ଯା ସା ସେବା ମାନସୀ ସ୍ମୃତା ।**
**ଜପାଦି ବାଚିକୀସେବା କର୍ମପୂଜା ଚ କାୟିକୀ ।। ୧୬ ।।**

ସା ସାଙ୍ଗା ଭକ୍ତିର୍ମନୋବଚନକାୟଲକ୍ଷଣ କରଣୈସ୍ତ୍ରିଧା ଭିନ୍ନା ଭବତି । ତତ୍ର ଶିବଲିଙ୍ଗାଦି ସ୍ୱରୂପଚିନ୍ତା ମାନସୀ, ଶିବମନ୍ତ୍ର ଜପସ୍ତୁତିରୂପା ବାଚିକୀ, କାୟେନ ବିଧୀୟମାନା ଶିବଲିଙ୍ଗପୂଜା କାୟିକୀ ସେବେତ୍ୟର୍ଥଃ ।। ୧୬ ।।

– ମନ, ବାଣୀ ଏବଂ ଶରୀର ରୂପୀ ତିନି ସାଧନ ଅନୁସାରେ ସେହି ଭକ୍ତି ମଧ୍ୟ (ମାନସିକ, ବାଚିକ, ଦୈହିକ ଭେଦରେ) ତିନି ପ୍ରକାରର । ଶିବଙ୍କର ରୂପ (ରଙ୍ଗ, ସ୍ଥାନ, ଆଭରଣ, ବାହନ, ଗୁଣ, ଲୀଳା) ଆଦି ଚିନ୍ତନ ମାନସୀ ସେବା କୁହାଯାଏ । ଜପ ଆଦି ବାଚିକୀ ସେବା ତଥା କର୍ମଦ୍ୱାରା ପୂଜା କାୟିକୀ ଭକ୍ତି ଅଟେ ।। ୧୬ ।।

---

୧୨୫. ଛା. ଉ., ୮/୧୫/୧

ଅଥୈବଂ ବିଧରୂପା ସେବା ବାହ୍ୟାଦିଭେଦେନ ତ୍ରିବିଧେତ୍ୟାହ –

**ବାହ୍ୟମାଭ୍ୟନ୍ତରଂ ଚୈବ ବାହ୍ୟାଭ୍ୟନ୍ତରମେବ ବା ।**
**ମନୋବାକ୍ କାୟଭେଦୈଶ୍ଚ ତ୍ରିଧା ତଦ୍ ଭଜନଂ ବିଦୁଃ ।। ୧୭।।**

ଦୀକ୍ଷାତ୍ରୟଯୁକ୍ତ ମନୋବାକ୍ କାୟଭେଦବତ୍ ପୂର୍ବୋକ୍ତଭଜନଂ ବାହ୍ୟମିତ୍ୟାଭ୍ୟନ୍ତରମିତି ବାହ୍ୟାଭ୍ୟନ୍ତରମିତି ତ୍ରିଧା ବିଦୁଃ, ଅଭିଜ୍ଞା ଜାନନ୍ତୀତ୍ୟର୍ଥଃ ।। ୧୭।।

– ବିଦ୍ୱାନ୍‌ମାନେ ମନ, ବାଣୀ ଓ ଶରୀର ଭେଦରେ ତିନି ପ୍ରକାରର ଭକ୍ତିକୁ ମାନନ୍ତି । ସେହି ଭକ୍ତି ବାହ୍ୟ, ଆଭ୍ୟନ୍ତର ତଥା ବାହ୍ୟାଭ୍ୟନ୍ତର ଭେଦରେ ତିନି ପ୍ରକାରର ଅଟେ ।। ୧୭।।

ଅଥ କିମେଷାଂ ସ୍ୱରୂପମିତ୍ୟତ୍ର ମାନସାଦିସ୍ୱରୂପକଥନପୂର୍ବକମାହ –

**ମନୋ ମହେଶଧ୍ୟାନାଢ୍ୟଂ ନାନ୍ୟଧ୍ୟାନରତଂ ମନଃ ।**
**ଶିବନାମରତା ବାଣୀ ବାଙ୍‌ମତା ଚୈବ ନେତରା ।। ୧୮।।**
**ଲିଙ୍ଗୈଃ ଶିବସ୍ୟ ଚୋଦ୍ଦିଷ୍ଟୈସ୍ତ୍ରିପୁଣ୍ଡ୍ରାଦିଭିରଙ୍କିତଃ ।**
**ଶିବୋପଚାରନିରତଃ କାୟଃ କାୟୋ ନ ଚେତରଃ ।। ୧୯।।**

ଉଦ୍ଦିଷ୍ଟୈଃ ଶାସ୍ତ୍ରୋକ୍ତୈଃ, ତ୍ରିପୁଣ୍ଡ୍ରାଦିଭିଃ ଭସ୍ମତ୍ରିପୁଣ୍ଡ୍ରରୁଦ୍ରାକ୍ଷାଭରଣରୂପୈଃ, ଶିବସ୍ୟ ଲିଙ୍ଗୈଃ, ଚିହ୍ନୈଃ, ଅଙ୍କିତଃ ମୁଦ୍ରିତଃ ସନ୍ ଶିବୋପଚାରନିରତଃ ଶିବଲିଙ୍ଗପୂଜାତତ୍ପର ଏବ କାୟଃ, ଅନ୍ୟୋ ନ କାୟ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୮–୧୯।।

– ମନ ମହେଶ୍ୱରଙ୍କର ଧ୍ୟାନରେ ପୂର୍ଣ୍ଣ ରହିବା ଉଚିତ୍, ଅନ୍ୟ ଧ୍ୟାନରେ ନୁହେଁ । ବାଣୀ ଶିବଙ୍କ ନାମର ଜପ–କୀର୍ତ୍ତନ କରିବା ଉଚିତ୍, ଅନ୍ୟ ନାମର ନୁହେଁ । ଶିବଙ୍କର ଉଦ୍ଦେଶ୍ୟରେ ଲିଙ୍ଗାଦି ତ୍ରିପୁଣ୍ଡ୍ର ଚିତ୍ରିତ ଶରୀର ଶିବପୂଜା ରତ ହେବା ଉଚିତ୍, ଅନ୍ୟ ବ୍ୟାପାରରେ ନୁହଁ (ଏହିପରି ମାନସିକ, ବାଚିକ ଓ ଶାରୀରିକ ତିନି ପ୍ରକାରର ଭକ୍ତି ହୋଇଥାଏ) ।। ୧୮–୧୯।।

ଅଥ ବାହ୍ୟାଦିକଂ ଲକ୍ଷୟତି –

**ଅନ୍ୟାତ୍ମବିଦିତଂ ବାହ୍ୟଂ ଶମ୍ଭୋରଭ୍ୟର୍ଚ୍ଚନାଦିକମ୍ ।**
**ତଦେବ ତୁ ସ୍ୱସଂବେଦ୍ୟମାଭ୍ୟନ୍ତରମୁଦାହୃତମ୍ ।**
**ମନୋ ମହେଶପ୍ରବଣଂ ବାହ୍ୟାଭ୍ୟନ୍ତରମୁଚ୍ୟତେ ।। ୨୦।।**

ଶମ୍ଭୋରଭ୍ୟର୍ଚ୍ଚନାଦିକଂ ଶିବପୂଜାଦିକର୍ମ ଅନ୍ୟାତ୍ମବିଦିତଂ ପରଦୃଷ୍ଟିଗୋଚରୀଭୂତଂ ବାହ୍ୟମ୍, ତଦେବ ତୁ ତଦର୍ଚ୍ଚନାଦିକଂ ସ୍ୱ ସଂବେଦ୍ୟଂ ପରଦୃଷ୍ଟି ଶ୍ରୁତ୍ୟଗୋଚରତ୍ୱେନ ସ୍ୱମାତ୍ରଗୋଚରମାଭ୍ୟନ୍ତରମ୍, ମନୋ ମହେଶପ୍ରବଣଂ ଶିବଲିଙ୍ଗାସକ୍ତଂ ମନୋ

ବାହ୍ୟାଭ୍ୟନ୍ତରମ୍, କାକାକ୍ଷିନ୍ୟାୟେନୋଭୟତ୍ର[126] ବ୍ୟାପ୍ତମିତି ଶାସ୍ତ୍ର ଜ୍ଞୈରୁଚ୍ୟତ ଇତ୍ୟର୍ଥଃ ।। ୨୦।।

– ଶିବଙ୍କର ଯେଉଁ ଅଭ୍ୟର୍ଚ୍ଚନା ଆଦିକୁ ଅନ୍ୟମାନେ ଜାଣନ୍ତି–ଦେଖନ୍ତି, ତାହା ବାହ୍ୟପୂଜା ଅଟେ । ନିଜ ମନରେ ନିଜପାଇଁ କରାଯାଇଥିବା ପୂଜା, ଯାହାକୁ କେବଳ ପୂଜକ ହିଁ ଜାଣିଥାଏ, ଆଭ୍ୟନ୍ତର ପୂଜା କୁହାଯାଏ । ନିଜର ମନକୁ ଶିବଙ୍କଠାରେ ଆସକ୍ତ କରିଦେବାକୁ ବାହ୍ୟାଭ୍ୟନ୍ତରପୂଜା କୁହାଯାଏ ।। ୨୦।।

ଅଥୈବଂ ରୂପମାନସାଦି ବାହ୍ୟାଦିତ୍ରିବିଧଭଜନମେବ ପଞ୍ଚଧା ଭବତୀତ୍ୟାହ –

**ପଞ୍ଚଧା କଥ୍ୟତେ ସଦ୍‌ଭିସ୍ତଦେବ ଭଜନଂ ପୁନଃ ।**
**ତପଃ କର୍ମ ଜପୋ ଧ୍ୟାନଂ ଜ୍ଞାନଂ ଚେତ୍ୟନୁପୂର୍ବକମ୍ ।। ୨୧ ।।**

ସ୍ପଷ୍ଟମ୍ ।। ୨୧ ।।

– ସନ୍ଥମାନଙ୍କଦ୍ୱାରା ସେହି ଭକ୍ତି ପାଞ୍ଚପ୍ରକାରର କୁହାଯାଇଛି । କ୍ରମରେ ସେଗୁଡ଼ିକ ହେଉଛି – ତପସ୍ୟା, କର୍ମ, ଜପ, ଧ୍ୟାନ ଓ ଜ୍ଞାନ ।। ୨୧ ।।

ଅଥ କିମେଷାଂ ସ୍ୱରୂପମିତ୍ୟତ୍ରାହ –

**ଶିବାର୍ଥେ ଦେହସଂଶୋଷସ୍ତପଃ କୃଚ୍ଛାଦି ନୋ ମତମ୍ ।**
**ଶିବାର୍ଚ୍ଚା କର୍ମ ବିଜ୍ଞେୟଂ ବାହ୍ୟଂ ଯାଗାଦି ନୋଚ୍ୟତେ ।। ୨୨ ।।**
**ଜପଃ ପଞ୍ଚାକ୍ଷରାଭ୍ୟାସଃ ପ୍ରଣବାଭ୍ୟାସ ଏବ ବା ।**
**ରୁଦ୍ରାଧ୍ୟାୟାଦିକାଭ୍ୟାସୋ ନ ବେଦାଧ୍ୟୟନାଦିକମ୍ ।। ୨୩ ।।**
**ଧ୍ୟାନଂ ଶିବସ୍ୟ ରୂପାଦିଚିନ୍ତା ନାମ୍ୟାଦିଚିନ୍ତନମ୍ ।**
**ଶିବାଗମାର୍ଥବିଜ୍ଞାନଂ ଜ୍ଞାନଂ ନାନ୍ୟାର୍ଥବେଦନମ୍ ।**
**ଇତି ପଞ୍ଚପ୍ରକାରୋଦ୍ଦିଷ୍ଟଂ ଶିବଯଜ୍ଞଃ ପ୍ରକୀର୍ତ୍ତିତଃ ।। ୨୪ ।।**

ଶିବପୂଜାର୍ଥଂ ସାମ୍ରଗୀସମ୍ପାଦନେ ଶରୀରସଂଶୋଷ ଏବ ତପଃ, କୃଚ୍ଛାଦି କୃଚ୍ଛଚାନ୍ଦ୍ରାୟଣାଦିନା ଦେହଶୋଷୋ ନ ତପ ଇତି ସମ୍ମତମ୍ । ଶିବାର୍ଚ୍ଚା ଶିବଲିଙ୍ଗପୂଜୈବ କର୍ମେତି ବିଜ୍ଞେୟମ୍, ତତ୍‌ଫଳସ୍ୟ ଶାଶ୍ୱତତ୍ୱାତ୍ । ବାହ୍ୟଂ ଯାଗାଦି ତଦ୍‌ଭିନ୍ନବହୁବିତ୍ତବ୍ୟାୟାସସାଧ୍ୟଜ୍ୟୋତିଷ୍ଟୋମଯାଗାଦି କର୍ମେତି ନୋଚ୍ୟତେ, ତତ୍‌ଫଳସ୍ୟ ନଶ୍ୱରତ୍ୱାତ୍ ।

୧୨୬. କୁଆର ଆଖିଡୋଳା ଦୁଇଟି ଥାଏ, କିନ୍ତୁ ପୁତଳୀ ଗୋଟିଏ ଥାଏ । ତାହାକୁ ସେ ଦୁଇ ଡୋଳାରେ କ୍ରମରେ ବୁଲାଇଥାଏ ଦେଖିବା ପାଇଁ । ସେହିପରି ଗୋଟିଏ ପଦ ପୂର୍ବପଦ ଓ ଉତ୍ତର ପଦ ସହିତ କ୍ରମରେ ଯୋଡ଼ିହୋଇ ଅର୍ଥ ପ୍ରକାଶ କଲେ ତାକୁ କାକାକ୍ଷିନ୍ୟାୟ କୁହାଯାଏ ।

ବେଦାଧ୍ୟୟନାଦିକଂ ନ ଜପଃ, "ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ[127]" ଇତି ଭଗବତୈବ ନିୟମିତତ୍ୱାଦିତି, କିନ୍ତୁ ପଞ୍ଚାକ୍ଷରାଭ୍ୟାସଃ ପ୍ରଣବାଭ୍ୟାସ ଏବ ବା ରୁଦ୍ରାଧ୍ୟାୟାଦିକାଭ୍ୟାସଃ। ଆଦିଶବ୍ଦେନ ଅଥର୍ବଶିରଶ୍ଶିଖାଦି, ଏତେଷାମାବୃତ୍ତି-ଲକ୍ଷଣୋଽଭ୍ୟାସୋ ଜପ ଇତ୍ୟର୍ଥଃ । ନାତ୍ମାଦିଚିନ୍ତନଂ ଧ୍ୟାନଂ ପରିମିତଶରୀରେନ୍ଦ୍ରିୟା-ଦ୍ୟୁପାଧିସଂବଳିତାହମାତ୍ମଚିନ୍ତନଂ ନ ଧ୍ୟାନମିତ୍ୟର୍ଥଃ, କିନ୍ତୁ ଶିବସ୍ୟ ରୂପାଦିଚିନ୍ତା ଶିବଲିଙ୍ଗଚିନ୍ତା ଚନ୍ଦ୍ରଶେଖରତ୍ୱାଦି ବିଶିଷ୍ଟ ମୂର୍ତ୍ତିଚିନ୍ତା ଚ ଧ୍ୟାନମିତ୍ୟର୍ଥଃ । ନାନ୍ୟାର୍ଥ ବେଦନଂ ଜ୍ଞାନଂ ସାଂଖ୍ୟାଦ୍ୟନ୍ୟଶାସ୍ତ୍ରାର୍ଥଜ୍ଞାନଂ ନ ଜ୍ଞାନମ୍ । କିନ୍ତୁ ଶିବାଗମାର୍ଥବିଜ୍ଞାନମିତ୍ୟର୍ଥଃ । ଏବଂ ବିଧକାୟ ବାଙ୍ମାନସ ଲକ୍ଷଣ ପୂଜା ତପୋଜପଧ୍ୟାନ ଜ୍ଞାନରୂପ-ପଞ୍ଚ ପ୍ରକାରୋଽୟଂ ଶିବଯଜ୍ଞ ଇତି ପ୍ରକୀର୍ତ୍ତିତଃ ।। ୨୨-୨୪ ।।

– ଶିବଙ୍କ ନିମନ୍ତେ ଦେହକୁ ଶୁଖାଇବା ତପ ଅଟେ, ନ କି କୃଚ୍ଛ୍ର[128] ଆଦି[129] । ଶିବଲିଙ୍ଗର ପୂଜାକୁ କର୍ମ କୁହାଯାଏ । ବାହ୍ୟଯାଗ ଆଦି କର୍ମ କୁହାଯାଏ ନାହିଁ ।। ୨୨।।

ପଞ୍ଚାକ୍ଷର ମନ୍ତ୍ର ଅଥବା ପ୍ରଣବର ଅଭ୍ୟାସକୁ ଜପ କୁହାଯାଏ ଅଥବା ରୁଦ୍ରାଷ୍ଟାଧ୍ୟାୟୀ ପାଠ ଜପ କୋଟିରେ ଆସେ, ବେଦାଧ୍ୟୟନ ନୁହେଁ । ଶିବଙ୍କର ରୂପ ଆଦି ଚିନ୍ତନ ଧ୍ୟାନ ଅଟେ, ଆତ୍ମଚିନ୍ତନ ନୁହେଁ । ଶୈବାଗମର ଅର୍ଥକୁ ଜାଣିବା ବିଜ୍ଞାନ ଅଟେ, ଅନ୍ୟ ସାଂଖ୍ୟ ଆଦି ବିଷୟକୁ ଜାଣିବା ନୁହେଁ । ଏହିପରି ଶିବଯଜ୍ଞ ପାଞ୍ଚ ପ୍ରକାରର ଅଟେ ।। ୨୩-୨୪ ।।

ଅଥାନେନ ପଞ୍ଚଯଜ୍ଞେନ ପରୟା ଭକ୍ତ୍ୟା ଯଃ ଶଙ୍କରଂ ପୂଜୟତି ସ ଭକ୍ତ ଇତ୍ୟାହ -

**ଅନେନ ପଞ୍ଚଯଜ୍ଞେନ ଯଃ ପୂଜୟତି ଶଙ୍କରମ୍ ।**
**ଭକ୍ତ୍ୟା ପରମୟା ଯୁକ୍ତଃ ସ ବୈ ଭକ୍ତ ଇତୀରିତଃ ।। ୨୫ ।।**

ସ୍ପଷ୍ଟମ୍ ।। ୨୫ ।।

---

୧୨୭. ଭ. ଗୀ., ୨/୪୫

୧୨୮. ଗୋମୂତ୍ର, ଗୋବର, ଗୋଦୁଗ୍ଧ, ଗୋଦଧି, ଗୋଘୃତ ଏବଂ କୁଶୋଦକର ଭକ୍ଷଣ ତଥା ଏକରାତ୍ରି ଉପବାସକୁ କୃଚ୍ଛ୍ର ବ୍ରତ କୁହାଯାଏ ।

୧୨୯. 'ଆଦି' ପଦରେ ଚାନ୍ଦ୍ରାୟଣ, ସାନ୍ତପନ ଆଦି ବ୍ରତ ବୁଝାଯାଏ । ଚାନ୍ଦ୍ରାୟଣ ବ୍ରତରେ ପୂର୍ଣ୍ଣିମା ଦିନ ପନ୍ଦର ଗ୍ରାସ, ତା'ପରେ କୃଷ୍ଣପକ୍ଷ ପ୍ରତିପଦାଠାରୁ ଗୋଟିଏ ଗୋଟିଏ କମ୍ କରି ଅମାବାସ୍ୟା ଦିନ ଉପବାସ ତଥା ଶୁକ୍ଳ ପ୍ରତିପଦାଠାରୁ ଗୋଟିଏ ଗୋଟିଏ ଗ୍ରାସ ବଢ଼ାଇ ପୂର୍ଣ୍ଣିମା ଦିନ ପୁନଃ ପନ୍ଦର ଗ୍ରାସ ଭୋଜନ କରାଯାଏ । ସାନ୍ତପନ ବ୍ରତରେ ସୂର୍ଯ୍ୟ ଓ ଚାରିଦିଗରେ ଅଗ୍ନି ଜଳାଇ ଶରୀରକୁ ତପ୍ତ କରାଯାଏ ।

– ଏହି ପାଞ୍ଚଯଜ୍ଞ ଦ୍ୱାରା ଯିଏ ଶିବଙ୍କର ପୂଜା କରନ୍ତି, ପରମ ଭକ୍ତିରେ ଯୁକ୍ତ ସେହି ବ୍ୟକ୍ତିଙ୍କୁ ଭକ୍ତ କୁହାଯାଏ ।। ୨୫।।

ଅଥୈବଂ ବିଧଶିବଭକ୍ତପୂଜନେ ସଦ୍‌ଗତିରବମାନେ ଘୋରନରକ ଇତ୍ୟାହ –

**ପୂଜନାଚ୍ଛିବଭକ୍ତସ୍ୟ ପୁଣ୍ୟା ଗତିରବାପ୍ୟତେ ।**
**ଅବମାନାନ୍ମହା ଘୋରୋ ନରକୋ ନାତ୍ର ସଂଶୟଃ ।। ୨୬।।**

ସ୍ପଷ୍ଟମ୍ ।। ୨୬।।

– ଶିବଭକ୍ତଙ୍କର ପୂଜନ ଦ୍ୱାରା ଉତ୍ତମ ଗତି ମିଳିଥାଏ । ତାଙ୍କର ଅପମାନ କଲେ ମହାଭୟଙ୍କରକ ନର୍କ ପ୍ରାପ୍ତ ହୋଇଥାଏ, ଏଥିରେ ସଂଶୟ ନାହିଁ ।। ୨୬।।

ଅଥ ଶିବଭକ୍ତସ୍ୟ ବିଧେୟାବିଧେୟମାହ –

**ଶିବଭକ୍ତୋ ମହାତେଜାଃ ଶିବଭକ୍ତିପରାଙ୍ମୁଖାନ୍ ।**
**ନ ସ୍ପୃଶେନ୍ନୈବ ବୀକ୍ଷେତ ନ ତୈଃ ସହ ବସେତ୍ କ୍ୱଚିତ୍ ।। ୨୭।।**

ଶିବଭକ୍ତୋ ମହାତେଜସ୍ୱୀ ଭବତି । ତସ୍ମାଦଶିବଭକ୍ତାନାଂ ଦର୍ଶନସ୍ପର୍ଶନ ସହବାସଂ ସକୃଦପି ନ କୁର୍ଯ୍ୟାତ୍, ଯଦି କୁର୍ଯ୍ୟାତ୍ତେଜୋନ୍ମାନ୍ଦ୍ୟଂ ଭବେଦିତି ଭାବଃ ।। ୨୭।।

– ମହାତେଜସ୍ୱୀ ଶିବଭକ୍ତ ଶିବଭକ୍ତିରୁ ପରାଙ୍ମୁଖ (ବିମୁଖ) ବ୍ୟକ୍ତିଙ୍କର ସ୍ପର୍ଶ, ଦର୍ଶନ ଏବଂ କେଉଁ ସ୍ଥାନରେ ତାଙ୍କ ସହିତ ନିବାସ କରିବା ଉଚିତ୍ ନୁହେଁ । (କାରଣ ଏଥିରେ ତେଜ କ୍ଷୀଣ ହେବାର ସମ୍ଭାବନା ଥାଏ) ।। ୨୭।।

ଅଥ ବିଧେୟମାହ –

**ଯଦା ଦୀକ୍ଷାପ୍ରବେଶଃ ସ୍ୟାଲ୍ଲିଙ୍ଗଧାରଣପୂର୍ବକଃ ।**
**ତଦା ପ୍ରଭୃତି ଭକ୍ତୋଦ୍ଧସୌ ପୂଜୟେତ୍ ସ୍ୱାଗମସ୍ଥିତାମ୍ ।। ୨୮।।**

ଲିଙ୍ଗଦୀକ୍ଷାନନ୍ତରଂ ଭକ୍ତଃ ସ୍ୱାଗମସ୍ଥିତାନ୍ ବୀରଶୈବାଗମସ୍ଥିତାନ୍ ପ୍ରତିଦିନଂ ପୂଜୟେଦିତ୍ୟର୍ଥଃ ।। ୨୮।।

– ଯେତେବେଳେ (ଶିବଭକ୍ତର) ଲିଙ୍ଗଧାରଣ ପୂର୍ବକ ଦୀକ୍ଷା ହୋଇଯାଏ, ତା'ପରେ ଏହି ଭକ୍ତ ନିଜର (ଅର୍ଥାତ୍ ଶୈବ) ଆଗମରେ ବିଶ୍ୱାସ ରଖୁଥିବା ବ୍ୟକ୍ତିମାନଙ୍କର ପୂଜା କରିବା ଉଚିତ୍ ।। ୨୮।।

**ସ୍ୱମାର୍ଗାଚାରନିରତାଃ ସଜାତୀୟା ଦ୍ୱିଜାସ୍ତୁ ଯେ ।**
**ତେଷାଂ ଗୃହେଷୁ ଭୁଞ୍ଜୀତ ନେତରେଷାଂ କଦାଚନ ।। ୨୯।।**

'ଶିବୋକ୍ତାଂ ଜାତିମର୍ଯ୍ୟାଦାଂ ଯୋଦ୍ଧତୀତ୍ୟ ଭୁବି ବର୍ତ୍ତତେ । ସ ଚଣ୍ଡାଳ ଇତି ଜ୍ଞେୟଃ' ଇତ୍ୟାଦିବଚନପ୍ରାମାଣ୍ୟାତ୍ ଶିବଦୀକ୍ଷାଗ୍ନିଦଗ୍ଧମଳତ୍ରୟପୂର୍ବକପ୍ରାପ୍ତମନ୍ତ୍ରପିଣ୍ଡତ୍ୱାଦ୍ ଦ୍ୱିଜନ୍ମନାଂ

ବୀରଶୈବମତୋଚିତାଚାର ନିଷ୍ଠାନାଂ ସ୍ୱଜାତିସମ୍ଭବାନାଂ ଭକ୍ତମାହେଶ୍ୱରାଣା–ମାଳୟେଷୁ ତେଷାଂ ପଙ୍‌କ୍ତୌ ଚ ଭୁଞ୍ଜୀୟାତ୍, ନାନ୍ୟତ୍ରେତି ତାତ୍ପର୍ଯ୍ୟମ୍ ।। ୨୯ ।।

– ଯେଉଁ ବ୍ରାହ୍ମଣ ନିଜର ମାର୍ଗ ତଥା ନିଜର ଆଚାରରେ ନିରତ ହୋଇଥିବାରୁ ସଜାତୀୟ ଅଟେ, ଭକ୍ତ ତାଙ୍କରି ଘରେ ଭୋଜନ କରିବା ଉଚିତ୍, କେବେହେଲେ ଅନ୍ୟମାନଙ୍କ ଘରେ ନୁହେଁ ।। ୨୯ ।।

**ସ୍ୱମାର୍ଗାଚାରବିମୁଖୈର୍ଭବିଭିଃ ପ୍ରାକୃତାତ୍ମଭିଃ ।**
**ପ୍ରେଷିତଂ ସକଳଂ ଦ୍ରବ୍ୟମାତ୍ମଲୀନମପି ତ୍ୟଜେତ୍ ।। ୩୦ ।।**

ଆତ୍ମଲୀନମପି ସ୍ୱାଧୀନମପି ତ୍ୟଜେଦିତ୍ୟର୍ଥଃ ।। ୩୦ ।।

– ନିଜର ମାର୍ଗ ଏବଂ ଆଚାରରୁ ବିମୁଖ ସଂସାରୀ ଲୋକଦ୍ୱାରା ଦିଆଯାଇଥିବା ଅନ୍ନ ଆଦି ଯଦି ନିଜର ଅଧିକାରରେ ଆସୁଛି, ତେବେ ବି ତା'ର ତ୍ୟାଗ କରିଦେବା ଉଚିତ୍ ।। ୩୦ ।।

**ନାର୍ଚ୍ଚୟେଦନ୍ୟଦେବାଂସ୍ତୁ ନ ସ୍ମରେନ୍ନ ଚ କୀର୍ତ୍ତୟେତ୍ ।**
**ନ ତନ୍ନିବେଦ୍ୟମାଶ୍ନୀୟାଚ୍ଛିବଭକ୍ତୋ ଦୃଢ଼ବ୍ରତଃ ।। ୩୧ ।।**

ଦୃଢ଼ବ୍ରତୋ ଦୃଢ଼ତରଶିବବ୍ରତୀ ଶିବଭକ୍ତଃ, ଅନ୍ୟଦେବାନ୍ ବିଷ୍ଣ୍ୱାଦ୍ୟନ୍ୟଦେବାନ୍ ନାର୍ଚ୍ଚୟେଦ୍ ହସ୍ତାଭ୍ୟାଂ ନ ପୂଜୟେତ୍, ନ ଚ କୀର୍ତ୍ତୟେଦ୍ ନ ସ୍ତୁତିଂ କୁର୍ଯ୍ୟାତ୍, ନ ସ୍ମରେଦ୍ ମନସାପି ନ ଧ୍ୟାୟେତ୍, ତଦର୍ପିତାନ୍ନାଦିଦ୍ରବ୍ୟଂ ନାଶ୍ନୀୟାନ୍ନ ଭୁଞ୍ଜୀୟାଦିତ୍ୟାର୍ଥଃ ।। ୩୧ ।।

– ଦୃଢ଼ ଶିବଭକ୍ତ ଅନ୍ୟ ଦେବତାମାନଙ୍କର ପୂଜା କରିବା, ସ୍ମରଣ କରିବା ତଥା କୀର୍ତ୍ତନ କରିବା ଉଚିତ୍ ନୁହେଁ (ଆବଶ୍ୟକ ନୁହେଁ) । ଅନ୍ୟ ଦେବତାଙ୍କୁ ନିବେଦିତ ନୈବେଦ୍ୟ ମଧ୍ୟ ଖାଇବା ଉଚିତ୍ ନୁହେଁ ।। ୩୧ ।।

**ଯଦ୍‌ଗୃହେଷ୍ୱନ୍ୟଦେବୋଽସ୍ତି ତଦ୍‌ଗୃହାଣି ପରିତ୍ୟଜେତ୍ ।**
**ନାନ୍ୟଦେବାର୍ଚ୍ଚକାନ୍ ମର୍ତ୍ତ୍ୟାନ୍ ପୂଜାକାଳେ ନିରୀକ୍ଷୟେତ୍ ।। ୩୨ ।।**

ପୂଜାକାଳେ ଶିବଲିଙ୍ଗ ପୂଜାକାଳ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୨ ।।

– ଯେଉଁ ଘରେ ଅନ୍ୟ ଦେବତାଙ୍କର ସ୍ଥାପନା କରାଯାଇଛି, ସେହି ଘରକୁ ଛାଡ଼ି ଦେବା ଉଚିତ୍ । ଶିବପୂଜା ସମୟରେ ଅନ୍ୟ ଦେବତାଙ୍କୁ ପୂଜା କରୁଥିବା ମନୁଷ୍ୟକୁ ଦେଖିବା ଉଚିତ୍ ନୁହେଁ ।। ୩୨ ।।

**ସଦା ଶିବୈକନିଷ୍ଠାନାଂ ବୀରଶୈବାଧ୍ୱବର୍ତ୍ତିନାମ୍ ।**
**ନ ହି ସ୍ଥାବରଲିଙ୍ଗାନାଂ ନିର୍ମାଲ୍ୟାଦ୍ୟୁପଯୁଜ୍ୟତେ ।। ୩୩ ।।**

ସଦା ନିରନ୍ତରମ୍, ଶିବଲିଙ୍ଗୈକନିଷ୍ଠାନାଂ ବୀରଶୈବମାର୍ଗବର୍ତ୍ତନବତାଂ

ଦେବର୍ଷିମାନବପ୍ରତିଷ୍ଠିତାଦିସ୍ଥାବରଲିଙ୍ଗନିର୍ମାଲ୍ୟପ୍ରସାଦଦ୍ରବ୍ୟମଯୋଗ୍ୟମ୍, ହି ପ୍ରସିଦ୍ଧମ୍ ।। ୩୩।।

– ଯିଏ ସଦାଶିବଙ୍କ ପ୍ରତି ଶ୍ରଦ୍ଧା–ବିଶ୍ୱାସ ଯୁକ୍ତ ଅଟନ୍ତି, ବୀରଶୈବମାର୍ଗର ଅନୁଯାୟୀ, ତାଙ୍କୁ ମାଳା ଆଦି ଅର୍ପଣ କରିବା ଉଚିତ୍, ସ୍ଥାବର ଲିଙ୍ଗ (ଅର୍ଥାତ୍ ପ୍ରସ୍ତର ଆଦିରେ ନିର୍ମିତ) କୁ ନୁହେଁ ।। ୩୩ ।।

ନନୁ ବୀରଶୈବାନାଂ ସ୍ଥାବରଲିଙ୍ଗପ୍ରସାଦମଯୋଗ୍ୟଂ ଚିତ୍ତଲିଙ୍ଗସ୍ୟାପାୟେ ପ୍ରାପ୍ତେ ସତ୍ୟୌଦାସୀନ୍ୟଂ କର୍ତ୍ତବ୍ୟଂ କିମିତ୍ୟତ୍ରାହ –

**ଯତ୍ର ସ୍ଥାବରଲିଙ୍ଗାନାମପାୟଃ ପରିବର୍ତ୍ତତେ ।**
**ଅଥବା ଶିବଭକ୍ତାନାଂ ଶିବଲାଞ୍ଛନଧାରିଣାମ୍ ।। ୩୪ ।।**
**ତତ୍ର ପ୍ରାଣାନ୍ ବିହାୟାପି ପରିହାରଂ ସମାଚରେତ୍ ।**
**ଶିବାର୍ଥଂ ମୁକ୍ତଜୀବଶ୍ଚେଚ୍ଛିବସାୟୁଜ୍ୟମାପ୍ନୁୟାତ୍ ।। ୩୫ ।।**

ଯତ୍ର ସ୍ଥାନେ ସ୍ଥାବର ଲିଙ୍ଗାନାଂ ପ୍ରତ୍ୟୁହଃ ପ୍ରବର୍ତ୍ତତେ, ଅଥବା ଗଜାଜିନଗଙ୍ଗାକପାଳ–କାଳଦଗ୍ଧକାମକାଳପୁରଭସ୍ମନିଭକଣ୍ଠାକମଣ୍ଡଳୁଭିକ୍ଷାପାତ୍ରଦଣ୍ଡଭସ୍ମଘୁଟିକାରୂପଶିବଲାଞ୍ଛନ ଧାରିଣାଂ ଜଙ୍ଗମଦେବାନାମୁକ୍ତନବବିଧ ଭକ୍ତିମତାଂ ଶିବଭକ୍ତାନାମପାୟୋ ବା ଯତ୍ର ପ୍ରବର୍ତ୍ତତେ, ତତ୍ର ପାର୍ବତ୍ୟାଚାରେଣ ପ୍ରାଣାନ୍ ବିହାୟାପି ନିବାରଣଂ କୁର୍ଯ୍ୟାତ୍ ।। ୩୪–୩୫ ।।

– ଯେଉଁଠାରେ ସ୍ଥାବର ଲିଙ୍ଗର ଅଥବା ଶିବଙ୍କର ଚିହ୍ନ ଭସ୍ମ ଆଦି ଧାରଣ କରିବା ବ୍ୟକ୍ତିର ବିନାଶ ହୁଏ, ସେଠାରେ ପ୍ରାଣର ଆହୁତି ମଧ୍ୟ ଦେଇ ତାହାର ନିରାକରଣ କରିବା ଉଚିତ୍ । ଯିଏ ଶିବଙ୍କ ପାଇଁ ପ୍ରାଣତ୍ୟାଗ କରେ, ସେ ଶିବ ସାୟୁଜ୍ୟ ପ୍ରାପ୍ତ କରେ ।

(ପ୍ରାଣତ୍ୟାଗ ଅପମୃତ୍ୟୁ ବୋଲି ମନରେ ଭାବନା ନ ଆଣିବା ପାଇଁ ଏପରି କୁହାଯାଇଛି ।) ।। ୩୪–୩୫ ।।

ଅଥ ବୀରଭଦ୍ରାଚାର–ବସବେଶ୍ୱରାଚାରଂ ସୂଚୟନ୍ ଭକ୍ତାଚାରଭେଦଂ ପ୍ରତିପାଦୟତି –

**ଶିବନିନ୍ଦାକରଂ ଦୃଷ୍ଟ୍ୱା ଘାତୟେଦଥବା ଶପେତ୍ ।**
**ସ୍ଥାନଂ ବା ତତ୍ପରିତ୍ୟଜ୍ୟ ଗଚ୍ଛେଦ୍ ଯଦ୍ୟକ୍ଷମୋ ଭବେତ୍ ।। ୩୬ ।।**

ହନ୍ତୁଂ ଶପ୍ତୁଂ ଯଦ୍ୟସମର୍ଥଃ, କର୍ଣ୍ଣୌ ପିଧାୟ ତତ୍ ସ୍ଥାନଂ ପରିତ୍ୟଜ୍ୟ ଗଚ୍ଛେଦିତ୍ୟର୍ଥଃ ।। ୩୬।।

– ଶିବଙ୍କର ନିନ୍ଦକକୁ ଦେଖି ତାକୁ ମାରିଦେବା ଉଚିତ୍ ଅଥବା ଅଭିଶାପ ଦେଇ ନିବୃତ୍ତ କରିବାକୁ ଚେଷ୍ଟା କରିବା ଉଚିତ୍ । ଯଦି ଏହି ଉଭୟ ଉପାୟରେ ସମ୍ଭବ ନୁହେଁ, ତେବେ ସେହି ସ୍ଥାନ ଛାଡ଼ି ଚାଲିଯିବା ଉଚିତ୍ ।। ୩୬।।

ଯତ୍ର ଚାଚାରନିନ୍ଦାଽସ୍ତି କଦାଚିତ୍ତତ୍ର ନ ବ୍ରଜେତ୍ ।
ଯଦ୍‌ଗୃହେ ଶିବନିନ୍ଦାଽସ୍ତି ତଦ୍‌ଗୃହାଣି ପରିତ୍ୟଜେତ୍ ।। ୩୭ ।।

ଆଚାରନିନ୍ଦା ଶିବାଚାର ନିନ୍ଦେତ୍ୟର୍ଥଃ । ଶିଷ୍ଟଂ ସ୍ୱଷ୍ଟମ୍ ।। ୩୭ ।।

– ଯେଉଁଠାରେ ଶିବାଚାରର ନିନ୍ଦା କରାଯାଏ, ସେଠାକୁ ଯିବା ଉଚିତ୍ ନୁହେଁ । ଯେଉଁ ଘରେ ଶିବନିନ୍ଦା ହୁଏ, ସେ ଘର ଛାଡ଼ିଦେବା ଉଚିତ୍ ।। ୩୭ ।।

ନନୁ ଶିବନିନ୍ଦାକରସ୍ୟ ପ୍ରାୟଶ୍ଚିତ୍ତମସ୍ତି ବା ନ ବେତ୍ୟତ୍ରାହ –

ଯଃ ସର୍ବଭୂତାଧିପତିଂ ବିଶ୍ୱେଶାନଂ ବିନିନ୍ଦତି ।
ନ ତସ୍ୟ ନିଷ୍କୃତିଃ ଶକ୍ୟା କର୍ତ୍ତୁଂ ବର୍ଷଶତୈରପି ।। ୩୮ ।।

'ଈଶ୍ୱରଃ ସର୍ବଭୂତାନାମ୍[୧୩୦]' ଇତି ଶ୍ରୁତେଃ ସକଳପ୍ରାଣ୍ୟଧିପତିଂ ସର୍ବେଶ୍ୱରଂ ଯୋ ନିନ୍ଦତି, ତସ୍ୟ ବର୍ଷଶତୈରପି ନିଷ୍କୃତିଃ କର୍ତ୍ତୁଂ ଶକ୍ୟା ନ ଭବତୀତ୍ୟର୍ଥଃ ।। ୩୮ ।।

– ଯିଏ ସମସ୍ତ ପ୍ରାଣୀଙ୍କର ସ୍ୱାମୀ, ବିଶ୍ୱର ଈଶ୍ୱରଙ୍କର ନିନ୍ଦା କରେ, ତାହାର ପ୍ରାୟଶ୍ଚିତ ଶହେ ବର୍ଷରେ ମଧ୍ୟ କରାଯାଇ ପାରିବ ନାହିଁ ।। ୩୮ ।।

ନନ୍ୱେବଂ ଶିବଭକ୍ତସ୍ୟାନ୍ୟଦେବତାସ୍ମରଣଂ ଚାଯୋଗ୍ୟଂ ଚେତ୍ ସନ୍ଧ୍ୟାବନ୍ଦନାଦିପୂର୍ବକର୍ମଣଃ କା ଗତିଃ ? ତସ୍ୟ ସୂର୍ଯ୍ୟାଦ୍ୟୁପାସନାରୂପତ୍ୱାଦିତ୍ୟତ୍ରାହ –

ଶିବପୂଜାପରୋ ଭୂତ୍ୱା ପୂର୍ବକର୍ମ ବିସର୍ଜୟେତ୍ ।
ଅଥବା ପୂର୍ବକର୍ମ ସ୍ୟାତ୍ ସା ପୂଜା ନିଷ୍ଫଳା ଭବେତ୍ ।। ୩୯ ।।

ଶିବପୂଜାପରଃ ଶିବଲିଙ୍ଗ ଦୀକ୍ଷାଯୁକ୍ତଃ ସନ୍ ଶିବପୂଜାପର ଇତ୍ୟର୍ଥଃ । ଶିଷ୍ଟଂ ସ୍ୱଷ୍ଟମ୍ ।। ୩୯ ।।

– ଶିବପୂଜାରେ ତତ୍ପର ହୋଇ ଅନ୍ୟ ପୂର୍ବକର୍ମ (ଅନ୍ୟ ପ୍ରକାର ଉପାସନା) ର ତ୍ୟାଗ କରିଦେବା ଉଚିତ୍ । ଯଦି (ଶିବପୂଜା ସହିତ) ପୂର୍ବକର୍ମର ମଧ୍ୟ ଅଭ୍ୟାସ ରହିବ, ତେବେ ସେହି ଶିବପୂଜା ନିଷ୍ଫଳ ହୋଇଥାଏ ।। ୩୯ ।।

ଅଥ ନୈତାବନ୍ମାତ୍ରମ୍, ପାତିତ୍ୟଂ ଚ ସ୍ୟାଦିତ୍ୟାହ –

ଉତ୍ତମାଂ ଗତିମାଶ୍ରିତ୍ୟ ନୀଚାଂ ବୃତ୍ତିଂ ସମାଶ୍ରିତଃ ।
ଆରୂଢ଼ପତିତୋ ଜ୍ଞେୟଃ ସର୍ବକର୍ମବହିଷ୍କୃତଃ ।। ୪୦ ।।

ସ୍ୱଷ୍ଟମ୍ ।। ୪୦ ।।

– (ଶିବପୂଜା ରୂପକ) ଉତ୍ତମ ଗତିକୁ ପ୍ରାପ୍ତ କରି ମଧ୍ୟ ଯିଏ ନୀଚବୃତ୍ତି (ନିମ୍ନକୋଟି

---

୧୩୦. ଭ. ଗୀ. – ୧୮/୬୧

ଅର୍ଚ୍ଚନ-ପୂଜନ)କୁ ସ୍ୱୀକାର କରେ, ତାକୁ ଆରୂଢ଼ପତିତ (ଉଚ୍ଚପଦରୁ ପତିତ) ଏବଂ ସର୍ବକର୍ମ ବହିଷ୍କୃତ ଜାଣିବା ଦରକାର ।। ୪୦।।

ଅଥ ତସ୍ୟ ପ୍ରଣବପଞ୍ଚାକ୍ଷରୀଜପଶୀଲତ୍ୱାଦ୍ ନରସ୍ତୁତିଶ୍ଚ ଗର୍ହିତେତ୍ୟାହ –

**ପଞ୍ଚାକ୍ଷରୋପଦେଶୀ ଚ ନରସ୍ତୁତିକରୋ ଯଦି ।**
**ସୋଦ୍ଧଲିଙ୍ଗୀ ସ ଦୁରାଚାରୀ କୁକବିଃ ସ ତୁ ବିଶ୍ଚ୍ୟୁତଃ ।। ୪୧ ।।**

ପଞ୍ଚାକ୍ଷରୋପଦେଶୀ ପ୍ରଣବପଞ୍ଚାକ୍ଷରୋପଦେଶୀ ଶିବଭକ୍ତୋ ଯଦି ନରସ୍ତୁତିକରଃ ସ୍ୟାତ୍, ସ ଅଲିଙ୍ଗୀ ଶିବଲିଙ୍ଗ ରହିତଃ, ଦୁରାଚାରୀ କୁକବିଃ କୁତ୍ସିତକବିଃ, ବିଶ୍ଚ୍ୟୁତୋ ବିଗତଶାସ୍ତ୍ର ଇତ୍ୟର୍ଥଃ ।। ୪୧ ।।

– ପଞ୍ଚାକ୍ଷରର ଉପଦେଶ ପ୍ରାପ୍ତ କରିଥିବା ସାଧକ ଯଦି ମନୁଷ୍ୟଙ୍କର ସ୍ତୁତି କରେ, ତେବେ ସେ ଅଲିଙ୍ଗୀ, ଦୁରାଚାରୀ ଓ କୁକବି ଭାବରେ ପରିଚିତ ହୁଏ ।। ୪୧ ।।

**ଚର୍ମପାତ୍ରେ ଜଲଂ ତୈଲଂ ନ ଗ୍ରାହ୍ୟଂ ଭକ୍ତିତତ୍ପରୈଃ ।**
**ଗୃହ୍ୟତେ ଯଦି ଭକ୍ତେନ ରୌରବଂ ନରକଂ ବ୍ରଜେତ୍ ।। ୪୨ ।।**

ଭକ୍ତିତତ୍ପରୈଃ ଶିବଭକ୍ତିତତ୍ପରୈରିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୨ ।।

– (ଶିବ) ଭକ୍ତିରେ ନିରତ ବ୍ୟକ୍ତିମାନେ ଚମଡ଼ାର ପାତ୍ରରେ ଜଳ କିମ୍ବା ତୈଳ ଗ୍ରହଣ କରିବା ଉଚିତ୍ ନୁହେଁ । ଯଦି ଶିବ ଭକ୍ତ (ଏପରି) ଗ୍ରହଣ କରେ, ତେବେ ରୌରବ ନାମକ ନର୍କକୁ ଯାଏ ।। ୪୨ ।।

ନନୁ ଲିଙ୍ଗିଭିଃ ପୂର୍ବକର୍ମ ତ୍ୟଜନୀୟମିତ୍ୟୁକ୍ତତ୍ୱାଦ୍ ତସ୍ୟ ଜାତାଶୌଚାଦି କର୍ମାଚରଣୀୟଂ ବା ନ ବେତ୍ୟତ୍ରାହ –

**ନ ତସ୍ୟ ସୂତକଂ କିଞ୍ଚିତ୍ ପ୍ରାଣଲିଙ୍ଗାଙ୍ଗସଙ୍ଗିନଃ ।**
**ଜନ୍ମନୋତ୍‌ଥଂ ମୃତୋତ୍‌ଥଂ ଚ ବିଦ୍ୟତେ ପରମାର୍ଥତଃ ।। ୪୩ ।।**

'ପ୍ରାଣଲିଙ୍ଗାଙ୍ଗସଙ୍ଗିନଃ ଶିବଭକ୍ତସ୍ୟ ଜନ୍ମନୋତ୍‌ଥଂ ମରଣେନୋତ୍‌ଥଂ କିଞ୍ଚିଦପି କୁଲୋଚ୍ଛିଷ୍ଟସୂତକଂ ଚ ପରମାର୍ଥତୋ ନ ବିଦ୍ୟତ ଇତ୍ୟର୍ଥଃ ।। ୪୩ ।।

– ପ୍ରାଣଲିଙ୍ଗଧାରୀ ବ୍ୟକ୍ତିର ପ୍ରକୃତପକ୍ଷେ (ପରମାର୍ଥତଃ) ଜନନାଶୌଚ ଅଥବା ମରଣାଶୌଚ ସାମାନ୍ୟମାତ୍ର ହୋଇ ନ ଥାଏ ।। ୪୩ ।।

ତର୍ହି ସ୍ତ୍ରୀଣାଂ ରଜଃସୂତକମସ୍ତି କିମିତ୍ୟତ୍ରାହ –

**ଲିଙ୍ଗାର୍ଚ୍ଚନରତାୟାସ୍ତୁ ଋତୌ ନାର୍ଯ୍ୟା ନ ସୂତକମ୍ ।**
**ତଥା ପ୍ରସୂତିକାୟାସ୍ତୁ ସୂତକଂ ନୈବ ବିଦ୍ୟତେ ।। ୪୪ ।।**

ଶିବଲିଙ୍ଗପୂଜାନିଷ୍ଠାୟାଃ ସ୍ତ୍ରିୟଃ, ରତୌ ସୂତକଂ ମାସିକରଜୋଦର୍ଶନକୃତସୂତକମ୍, ତଥା ପ୍ରସୂତିକାୟାଃ ଶିଶୁପ୍ରସୂତିପ୍ରଯୁକ୍ତାୟାଶ୍ଚ ସୂତକଂ ଚ ନ ବିଦ୍ୟେତ ଇତ୍ୟର୍ଥଃ ।। ୪୪।।

– ସଦା ଲିଙ୍ଗାର୍ଚ୍ଚନ କରୁଥିବା ସ୍ତ୍ରୀଲୋକ ରଜସ୍ୱଳା ହେଲେ ମଧ୍ୟ ଅଶୁଦ୍ଧ ହୁଏ ନାହିଁ । ସେହିପରି ସନ୍ତାନ ଜନ୍ମ ହେଲେ ମଧ୍ୟ ସୂତକ ଅଶୁଦ୍ଧି ହୋଇ ନ ଥାଏ ।। ୪୪।।

ତର୍ହି ଗୃହସୂତକସ୍ୟ କା ଗତିରିତ୍ୟତ୍ରାହ –

**ଗୃହେ ଯସ୍ମିନ୍ ପ୍ରସୂତା ସ୍ତ୍ରୀ ସୂତକଂ ନାତ୍ର ବିଦ୍ୟତେ ।**
**ଶିବପାଦାମ୍ବୁସଂସ୍ପର୍ଶାତ୍ ସର୍ବପାପଂ ପ୍ରଣଶ୍ୟତି ।। ୪୫।।**

ତଦ୍‌ଗୃହେ ତୟା ଶିବପୂଜାକରଣସମୟେ ଶିବପାଦାମ୍ବୁପତନାତ୍ ସର୍ବପାପଂ ସକଳସୂତକୋତ୍‌ଥପାପଂ ନଶ୍ୟତୀତି ଗୃହସୂତକଂ ଚ ନାସ୍ତୀତ୍ୟର୍ଥଃ ।

ଲିଙ୍ଗାର୍ଚ୍ଚନରତା ନାରୀ ସୂତକୀ ତୁ ରଜସ୍ୱଳା ।
ରବିରଗ୍ନିର୍ଯଥା ବାୟୁସ୍ତଦ୍ୱତ୍ କୋଟିଶୁଚିର୍ଭବେତ୍ ।।

ଇତି ଶିବାଗମବଚନାତ୍ ଶିବଭକ୍ତାନାଂ ନ କିମପି ସୂତକମସ୍ତୀତି ଭାବଃ ।। ୪୫।।

– ଏହିପରି ସ୍ତ୍ରୀଲୋକ ଯେଉଁ ଘରେ ଶିଶୁ ଜନ୍ମ କରନ୍ତି, ସେହି ଘର ସୂତକ ଅଶୌଚ ହୁଏ ନାହିଁ । ଶିବ ପାଦୋଦକ ସ୍ପର୍ଶରେ ସମସ୍ତ ପାପ ନଷ୍ଟ ହୋଇଯାଏ (ଯେଉଁଠାରେ ଶିବଭକ୍ତା ସ୍ତ୍ରୀ ଶିବପୂଜାରେ ରତ ଥାଏ, ସେହି ଘରେ ପ୍ରସୂତି ଅଶୌଚ ହୁଏ ନାହିଁ) ।। ୪୫।।

ନନୁ ପୁରା ବିଧୀୟମାନଶିବକ୍ଷେତ୍ରତୀର୍ଥଯାତ୍ରାଦିକଂ ଚ ପରିତ୍ୟଜନୀୟଂ କିମିତ୍ୟତ୍ରାହ –

**ଶିବସ୍ଥାନାନି ତୀର୍ଥାନି ବିଶିଷ୍ଟାନି ଶିବାର୍ଚ୍ଚକଃ ।**
**ଶିବଯାତ୍ରୋତ୍ସବଂ ନିତ୍ୟଂ ସେବେତ ପରୟା ମୁଦା ।। ୪୬।।**

ଶିବାର୍ଚ୍ଚକ ଇଷ୍ଟଲିଙ୍ଗପୂଜକଃ ଶିବଭକ୍ତୋ ବିଶିଷ୍ଟାନି ଶ୍ରେଷ୍ଠାନି ଶିବସ୍ଥାନାନି ଶ୍ରୀପର୍ବତାଦିସ୍ଥାନାନି, ତୀର୍ଥାନି ତ୍ରିମକୁଟାଦିତୀର୍ଥାନି, ଶିବଯାତ୍ରୋତ୍ସବଂ ଚ ନିତ୍ୟଂ ସେବେ-ତେତ୍ୟର୍ଥଃ ।। ୪୬।।

– ଶିବପୂଜା କରୁଥିବା ଭକ୍ତ ଶିବସ୍ଥାନ ଭାବରେ ପ୍ରସିଦ୍ଧ ତୀର୍ଥସ୍ଥାନ, ଶିବଯାତ୍ରା ଓ ଶିବୋତ୍ସବକୁ ପରମ ଆନନ୍ଦର ସହିତ ନିତ୍ୟ ସେବନ କରିବା ଉଚିତ୍ ।। ୪୬।।

**ଶିବକ୍ଷେତ୍ରୋତ୍ସବମହାଯାତ୍ରାଦର୍ଶନକାଙ୍କ୍ଷିଣାମ୍ ।**
**ମାର୍ଗେଽନ୍ନପାନଦାନଂ ଚ କୁର୍ଯ୍ୟାନ୍ମାହେଶ୍ୱରୋ ଜନଃ ।। ୪୭।।**

ଶିବକ୍ଷେତ୍ରୋତ୍ସବୋଦ୍‌ଭୂତ ଯାତ୍ରାଦର୍ଶନକାଙ୍କ୍ଷିଣାଂ ସର୍ବେଷାଂ ଚ ମାହେଶ୍ୱରୋ ଜନଃ ଶିବଭକ୍ତଜନୋ ମାର୍ଗେଽନ୍ନୋଦକଦାନଂ ଚ କୁର୍ଯ୍ୟାଦିତ୍ୟର୍ଥଃ ।। ୪୭।।

– ଶିବକ୍ଷେତ୍ରରେ ହେଉଥିବା ଉତ୍ସବ ଓ ଯାତ୍ରାକୁ ଦେଖିବାକୁ ଚାହୁଁଥିବା ଲୋକମାନଙ୍କୁ ଶିବଭକ୍ତମାନେ ମାର୍ଗରେ ଅନ୍ନ–ଜଳ ଆଦି ଦାନ କରିବା ଉଚିତ୍ ।। ୪୭ ।।

ନନୁ ବସ୍ତ୍ରାଦିଦାନଂ ବିହାୟ ଅନ୍ନତୋୟଦାନମେବ କିମିତ୍ୟତ୍ରାହ –

**ନାନ୍ନତୋୟସମଂ ଦାନଂ ଚ ଚାହିଂସାପରଂ ତପଃ ।**
**ତସ୍ମାନ୍ମାହେଶ୍ୱରୋ ନିତ୍ୟମନ୍ନତୋୟପ୍ରଦୋ ଭବେତ୍ ।। ୪୮ ।।**

ସ୍ପଷ୍ଟମ୍ ।। ୪୮ ।।

– ଅନ୍ନ ଏବଂ ଜଳଦାନ ପରି ଦାନ ନାହିଁ । ଅହିଂସାଠାରୁ ଶ୍ରେଷ୍ଠ ତପ ନାହିଁ । ତେଣୁ ଶିବଭକ୍ତ ପ୍ରତ୍ୟହ ଅନ୍ନ–ଜଳର ଦାନ କରିବା ଉଚିତ୍ ।। ୪୮ ।।

ନନୁ ତର୍ହି କନ୍ୟାଦାନଂ ଚ କସ୍ମାୟ (ଅ)ପି ଦାତୁଂ ଯୋଗ୍ୟଂ କିମିତ୍ୟତ୍ରାହ –

**ସ୍ୱମାର୍ଗାଚାରବର୍ତ୍ତିଭ୍ୟଃ ସ୍ୱଜାତିଭ୍ୟଃ ସଦବ୍ରତୀ ।**
**ଦଦ୍ୟାତ୍ ତେଭ୍ୟଃ ସମାଦଦ୍ୟାତ୍ କନ୍ୟାଂ କୁଳ ସମୁଦ୍ଭବାମ୍ ।। ୪୯ ।।**

ସଦାବ୍ରତୀ ନିତ୍ୟଶିବାଚାରବ୍ରତୀ ଶିବଭକ୍ତଃ ସ୍ୱମାର୍ଗାଚାରବର୍ତ୍ତିଭ୍ୟୋ ବୀରଶୈବାଚାରମାର୍ଗବର୍ତ୍ତିଭ୍ୟଃ ସ୍ୱଜାତୀୟଶିବଭକ୍ତେଭ୍ୟଃ କୁଳସମୁଦ୍ଭବାଂ ସ୍ୱକୀୟ କୁଳସମୁତ୍ପନ୍ନାଂ କନ୍ୟାଂ ଦଦ୍ୟାତ୍ ତେଭ୍ୟଃ ସମାଦଦ୍ୟାତ୍, ଆନୟେଦିତ୍ୟର୍ଥଃ ।। ୪୯ ।।

– ସର୍ବଦା ଶିବଙ୍କର ବ୍ରତ କରୁଥିବା ବ୍ୟକ୍ତି ନିଜର ଜାତି ତଥା ସମ୍ପ୍ରଦାୟର ଆଚାରର ପାଳନ କରୁଥିବା ବ୍ୟକ୍ତିଙ୍କୁ କନ୍ୟାଦାନ କରିବା ଉଚିତ୍ ଏବଂ ସେହିପରି କୁଳୋତ୍ପନ୍ନ କନ୍ୟାକୁ ବିବାହ କରିବା ଉଚିତ୍ ।। ୪୯ ।।

ଏବଂ ବହୁବିଧଶିବାଚାରସମ୍ପନ୍ନୋ ବୀରବ୍ରତୀ ଶିବଭକ୍ତଃ ଶ୍ରୀଗୁରୁଂ ଲିଙ୍ଗଂ ଚ ପୂଜୟେଦିତ୍ୟୁଭୟସ୍ଥଳଂ ସୂଚୟନ୍ ଭକ୍ତସ୍ଥଳଂ ସମାପୟତି –

**ଏବମାଚାରସଂଯୁକ୍ତୋ ବୀରଶୈବୋ ମହାବ୍ରତୀ ।**
**ପୂଜୟେତ୍ ପରୟା ଭକ୍ତ୍ୟା ଗୁରୁଂ ଲିଙ୍ଗଂ ଚ ସନ୍ତତମ୍ ।। ୫୦ ।।**

ସ୍ପଷ୍ଟମ୍ ।। ୫୦ ।।

– ଏହିପରି ଆଚାରଯୁକ୍ତ ମହାବ୍ରତୀ ବୀରଶୈବ ଅତ୍ୟନ୍ତ ଭକ୍ତିର ସହିତ ଗୁରୁ ଏବଂ ଶିବଲିଙ୍ଗର ପୂଜା କରେ ।। ୫୦ ।।

**ଇତି ଭକ୍ତମାର୍ଗକ୍ରିୟାସ୍ଥଳମ୍**

## ଅଥୋଭୟସ୍ଥଲମ୍

'ଯସ୍ୟ ଦେବେ ପରା ଭକ୍ତିର୍ଯଥା ଦେବେ ତଥା ଗୁରୌ'[୧୩୧] ଇତି ଶ୍ୱେତାଶ୍ୱତର-ଶ୍ରୁତ୍ୟନୁସାରେଣ ଶିବଗୁର୍ବୋରଭେଦଂ ସୂତ୍ରଦ୍ୱୟେନ କଥୟତି –

**ଗୁରୋରଭ୍ୟର୍ଚ୍ଚନେନାପି ସାକ୍ଷାଦଭ୍ୟର୍ଚ୍ଚିତଃ ଶିବଃ ।**
**ତୟୋର୍ନାସ୍ତି ଭିଦା କିଞ୍ଚିଦେକତ୍ୱାଦ୍ ତତ୍ତ୍ୱରୂପତଃ ।। ୫୧ ।।**

ଗୁରୋଃ ପୂଜନେନ ଶିବଃ ସାକ୍ଷାଦ୍ ପ୍ରତ୍ୟକ୍ଷେଣ ପୂଜିତଃ, ତୟୋଃ ଶିବଗୁର୍ବୋଃ, ତତ୍ତ୍ୱରୂପତଃ, ପରମାର୍ଥତଃ, ଏକତ୍ୱାଦ୍ ଏକରୂପତ୍ୱାଦ୍, କିଞ୍ଚିଦପି ଭିଦା ଭେଦୋ ନାସ୍ତୀତ୍ୟର୍ଥଃ ।। ୫୧ ।।

– ଗୁରୁଙ୍କର ପୂଜା କଲେ ମଧ ଭଗବାନ୍ ଶିବ ସାକ୍ଷାତ୍ ପୂଜିତ ହୋଇଥାନ୍ତି । ତାତ୍ତ୍ୱିକ ଦୃଷ୍ଟିରୁ ଏକ ହୋଇଥିବାରୁ ଉଭୟଙ୍କ ମଧରେ ସାମାନ୍ୟ ପାର୍ଥକ୍ୟ ମଧ ନାହିଁ ।। ୫୧ ।।

ତସ୍ମାତ୍ –

**ଯଥା ଦେବେ ଜଗନ୍ନାଥେ ସର୍ବାନୁଗ୍ରହକାରକେ ।**
**ତଥା ଗୁରୁବରେ କୁର୍ଯ୍ୟାଦୁପଚାରାନ୍ ଦିନେ ଦିନେ ।। ୫୨ ।।**

ଉପଚାରାନ୍ ଭକ୍ତ୍ୟାଦ୍ୟୁପଚାରାନିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୨ ।।

– (ଭକ୍ତ) ପ୍ରତିଦିନ ସମସ୍ତଙ୍କର ଉପରେ କୃପା କରୁଥିବା ବିଶ୍ୱର ସ୍ୱାମୀ ଶିବଙ୍କୁ ଯେମିତି ପୂଜା କରେ, ସେହିପରି ଶ୍ରେଷ୍ଠ ଗୁରୁଙ୍କୁ ପୂଜା କରିବା ଉଚିତ୍ ।। ୫୨ ।।

ନନୁ ଶିବଗୁର୍ବୋରଭେଦେ ଶିବବଦ୍ ଗୁରୁରତ୍ୟପ୍ରତ୍ୟକ୍ଷଃ ସ୍ୟାଦିତ୍ୟତ୍ରାହ –

**ଅପ୍ରତ୍ୟକ୍ଷୋ ମହାଦେବଃ ସର୍ବେଷାମାତ୍ମମାୟୟା ।**
**ପ୍ରତ୍ୟକ୍ଷୋ ଗୁରୁରୂପେଣ ବର୍ତ୍ତତେ ଭକ୍ତିସିଦ୍ଧୟେ ।। ୫୩ ।।**

ମହାଦେବଃ ପରମେଶ୍ୱରଃ ସର୍ବେଷାମାତ୍ମମାୟୟା ଶକ୍ତ୍ୟା ଅପ୍ରତ୍ୟକ୍ଷୋଽପି ଭକ୍ତିସିଦ୍ଧୟେ ଲଲାଟନେତ୍ରଚନ୍ଦ୍ରକଳାଭୁଜଦ୍ୱୟତିରୋଧାନଂ କୃତ୍ୱା ଗୁରୁରୂପେଣ ପ୍ରତ୍ୟକ୍ଷଃ ସନ୍ ବର୍ତ୍ତତ ଇତ୍ୟର୍ଥଃ ।। ୫୩ ।।

– (ଯେଉଁ) ମହାଦେବ ନିଜର ମାୟାରେ ସମସ୍ତଙ୍କ ପାଇଁ ଅପ୍ରତ୍ୟକ୍ଷ ଅଟନ୍ତି, (ସେ) ଭକ୍ତିର ସିଦ୍ଧି ପାଇଁ ଗୁରୁରୂପରେ ପ୍ରତ୍ୟକ୍ଷ ଅଟନ୍ତି ।। ୫୩ ।।

ନନୁ ଶିବବଦ୍ ଗୁରୋରିଷ୍ଟାର୍ଥପ୍ରଦତ୍ୱାଦର୍ଶନାତ୍ କିମର୍ଥଂ ପୂଜନୀୟ ଇତ୍ୟତ୍ରାହ –

---

୧୩୧. ଶ୍ୱେ. ଉ., ୬/୨୩

**ଶିବଜ୍ଞାନଂ ମହାଘୋରସଂସାରାର୍ଣବତାରକମ୍ ।**
**ଧ୍ରି (ଦୀ)ୟତେ ଯେନ ସ ଗୁରୁଃ କସ୍ୟ ବନ୍ଦ୍ୟୋ ନ ଜାୟତେ ।। ୫୪ ।।**

ଯେନ ଗୁରୁଣା ମହାଭୟଙ୍କର ସଂସାର ସମୁଦ୍ରତାରକଂ ଶିବଜ୍ଞାନଂ ଦୀୟତେ ଉପଦିଶ୍ୟତେ, ସ ଗୁରୁଃ କସ୍ୟ କେନ ବନ୍ଦ୍ୟୋ ନ ଭବତି, ଜନନମରଣ ପରିପୀଡ଼ିତୈଃ ସର୍ବୈରପି ବନ୍ଦ୍ୟ ଇତ୍ୟର୍ଥଃ ।। ୫୪ ।।

– ଯାହାଦ୍ୱାରା ମହାଭୟଙ୍କର ସଂସାରରୂପୀ ସମୁଦ୍ର ପାରି କରୁଥିବା ଶିବଜ୍ଞାନ ଦିଆଯାଉଛି, ସେହିଗୁରୁ କାହାଦ୍ୱାରା ବନ୍ଦନୀୟ ନୁହନ୍ତି ? (ଅର୍ଥାତ୍ ସମସ୍ତଙ୍କର ପୂଜ୍ୟ) ।। ୫୪ ।।

ନନୁ ତାଦୃଶଶିବଜ୍ଞାନଂ କୀଦୃଶମିତି ତଓନ୍ମାହାତ୍ମ୍ୟପୂର୍ବକଂ ପ୍ରକାଶୟତି –

**ଯତ୍କଟାକ୍ଷକଳାମାତ୍ରାତ୍ ପରମାନନ୍ଦଲକ୍ଷଣମ୍ ।**
**ଲଭ୍ୟତେ ଶିବରୂପତ୍ୱଂ ସ ଗୁରୁଃ କେନ ନାର୍ଚ୍ଚିତଃ ।। ୫୫ ।।**

ଯତ୍କଟାକ୍ଷକଳାମାତ୍ରାଦିତି । ଅୟଂ ଭାବଃ – ଅତ୍ର ବନ୍ଧମୋକ୍ଷଦଶୟୋରପ୍ୟହମିତି ଧର୍ମିଣଃ ପ୍ରସିଦ୍ଧତ୍ୱେନାନ୍ଧଜାତ୍ୟନ୍ଧବଧିରମୂକାଦି (ଦେ)ରପି ସ୍ୱାତ୍ମନି ସଂଶୟ–ବିପର୍ଯ୍ୟୟାଭାବାତ୍ 'ସର୍ବଂ ଜ୍ଞାନଂ ଧର୍ମିଣ୍ୟଭ୍ରାନ୍ତଂ ପ୍ରକାରେ ତୁ ବିପର୍ଯ୍ୟୟଃ' ଇତି ସର୍ବସମ୍ମତତ୍ୱେନାଣ୍ଡରସନ୍ୟାୟେନ ସ୍ୱାତ୍ମତାଦାତ୍ମ୍ୟାପନ୍ନସ୍ୟ ପୁରୁଷସ୍ୟ ବିଭାଗ ପରାମର୍ଶମହିମ୍ନା ବହ୍ନେର୍ବିସ୍ଫୁଲିଙ୍ଗା ଇବ ବିଚ୍ଛିନ୍ନତ୍ୱାତ୍, ଅଥୈବଂ ସ୍ୱାତନ୍ତ୍ର୍ୟାପରପର୍ଯ୍ୟାୟ ମାୟାଶକ୍ତିପରିକଳ୍ପିତବ୍ୟାମୋହବିଶାଦବିଜ୍ଞାତପରମାନନ୍ଦ ଲକ୍ଷଣସ୍ୱାତ୍ମଶିବତ୍ୱଂ ଦଶମଦୃଷ୍ଟାନ୍ତେନ ଲଭ୍ୟତେ ପ୍ରକାଶ୍ୟତେ, ସ ଗୁରୁଃ କେନ ନାର୍ଚ୍ଚ୍ୟତେ, ସର୍ବୈଣାପି ମୁମୁକ୍ଷୁଣାଦ୍ଧର୍ଚ୍ଚନୀୟ ଏବେତ୍ୟର୍ଥଃ ।। ୫୫ ।।

– ଯାହାଙ୍କର କୃପା କଟାକ୍ଷର ଏକ କଳାରେ ପରମ ଆନନ୍ଦ ସ୍ୱରୂପ ଶିବଭାବର ପ୍ରାପ୍ତି ହୋଇଥାଏ, ସେହି ଗୁରୁଙ୍କର କିଏ ପୂଜା ନ କରେ ? (ଅର୍ଥାତ୍ ସମସ୍ତେ ଶ୍ରେଷ୍ଠଗୁରୁଙ୍କର ପୂଜା କରନ୍ତି ।)

ଏବଂ ରୂପଶ୍ରୀଗୁରୋର୍ହିତମେବାଚରଣୀୟମ୍, ତଦାଜ୍ଞୋଲ୍ଲଘଂନଂ ନ କର୍ତ୍ତବ୍ୟ–ମିତ୍ୟୁକ୍ତ୍ୱୋଭୟଫଳଂ ସମାପୟତି ସୂତ୍ରଦ୍ୱୟେନ –

**ହିତମେବ ଚରେନ୍ନିତ୍ୟଂ ଶରୀରେଣ ଧନେନ ଚ ।**
**ଆଚାର୍ଯ୍ୟସ୍ୟୋପଶାନ୍ତସ୍ୟ ଶିବଜ୍ଞାନମହାନିଧେଃ ।। ୫୬ ।।**

– ଶରୀର ଏବଂ ଧନଦ୍ୱାରା ଉପଶାନ୍ତ (ଅର୍ଥାତ୍ ରାଗଦ୍ୱେଷ ଆଦିରୁ ରହିତ) ତଥା ଶିବଜ୍ଞାନର ମହାନିଧିସ୍ୱରୂପ ଗୁରୁଙ୍କର ନିତ୍ୟ ହିତ କରିବା ଉଚିତ୍ ।। ୫୬ ।।

ଗୁରୋରାଜ୍ଞାଂ ନ ଲଙ୍ଘେତ ସିଦ୍ଧିକାମୀ ମହାମତିଃ ।
ତଦାଜ୍ଞାଲଙ୍ଘନେନାପି ଶିବାଜ୍ଞାଚ୍ଛେଦକୋ ଭବେତ୍ ।। ୫୭।।

ମହାମତିଃ ବିବେକୀ ସନ୍ ସିଦ୍ଧିକାମ ମୋକ୍ଷାର୍ଥୀ ଗୁରୋରାଜ୍ଞାଂ ନ ଲଙ୍ଘେତ, ଯଦି ଲଙ୍ଘେତ ଶିବାଜ୍ଞାଭଙ୍ଗକୃଦ୍ ଭବେଦିତ୍ୟର୍ଥଃ ।। ୫୭।।

– ସିଦ୍ଧିକୁ ଚାହୁଁଥିବା ମହାମତିମାନ୍ (ଶିଷ୍ୟ) ଗୁରୁ ଆଜ୍ଞାର ଉଲଂଘନ ନ କରିବା ଉଚିତ୍ । ତାଙ୍କର ଆଜ୍ଞାର ଉଲ୍ଲଘନ କଲେ ଶିବାଜ୍ଞା ର ଉଲଘନକର୍ତ୍ତା ହୋଇଥାଏ ।। ୫୭।।

ଇତ୍ୟୁଭୟସ୍ଥଲମ୍

## ଅଥ ତ୍ରିବିଧସମ୍ପତ୍ତିସ୍ଥଲମ୍

ଯଥା ଗୁରୌ ଯଥା ଲିଙ୍ଗେ ଭକ୍ତିମାନ୍ ପରିବର୍ତ୍ତତେ ।
ଜଙ୍ଗମେ ଚ ତଥା ନିତ୍ୟଂ ଭକ୍ତିଂ କୁର୍ଯ୍ୟାଦ୍ ବିଚକ୍ଷଣଃ ।। ୫୮।।

ବିଚକ୍ଷଣଃ ପ୍ରବୀଣଶିବଭକ୍ତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୮।।

– ତ୍ରିବିଧ ସମ୍ପତ୍ତିସ୍ଥଳର ବର୍ଣ୍ଣନ – ଭକ୍ତିମାନ ଏବଂ ବୁଦ୍ଧିମାନ (ଶିଷ୍ୟ/ସାଧକ) ଯେପରି ଗୁରୁ ଏବଂ ଲିଙ୍ଗ ପ୍ରତି ଭକ୍ତିପୂର୍ଣ୍ଣ ଆଚରଣ କରେ, ସେହିପରି ଜଙ୍ଗମ (ଶିବଯୋଗୀ)ଙ୍କ ପ୍ରତି ମଧ୍ୟ ନିତ୍ୟ ଭକ୍ତି କରିବା ଉଚିତ୍ ।। ୫୮।।

ନନୁ ଭକ୍ତିସିଦ୍ଧ୍ୟର୍ଥଂ ଶିବ ଏବ ଗୁରୁରୂପେଣାବତୀର୍ଣ୍ଣ ଇତ୍ୟୁକ୍ତତ୍ୱେନ ଶିବବଦ୍ ଗୁରୌ ଭକ୍ତିଃ କର୍ତ୍ତୁମୁଚିତା, ଜଙ୍ଗମେ ଚ ତଥା ଭକ୍ତିଃ, କିମର୍ଥଂ ବିଧେୟେତ୍ୟତ୍ରାହ –

ଏକ ଏବ ଶିବଃ ସାକ୍ଷାଦ୍ ସର୍ବାନୁଗ୍ରହକାରକଃ ।
ଗୁରୁଜଙ୍ଗମଲିଙ୍ଗାତ୍ମା ବର୍ତ୍ତତେ ଭୁକ୍ତିମୁକ୍ତିଦଃ ।। ୫୯।।

ସାକ୍ଷାଦ୍ 'ଅତୋଽସ୍ମିନ୍ ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ[୩୨]' ଇତି ଭଗବଦୁକ୍ତେର୍ଲୋକବେଦପ୍ରସିଦ୍ଧଃ ସନ୍ ସକଳଭକ୍ତାନୁଗ୍ରହକରଃ ପ୍ରଭୁଃ ସ୍ୱତନ୍ତ୍ରଃ ପରମେଶ୍ୱର ଏକ ଏବ ଗୁରୁଜଙ୍ଗମଲିଙ୍ଗାତ୍ମା ଗୁରୁଲିଙ୍ଗଜଙ୍ଗମାତ୍ମକଃ ସନ୍ ଭୁକ୍ତିମୁକ୍ତିଦୋ ଭୋଗମୋକ୍ଷପଦଃ ସନ୍ ବର୍ତ୍ତତ ଇତି ଶିବବଜ୍ଜଙ୍ଗମେଷ୍ୱପି ଭକ୍ତିଃ କର୍ତ୍ତବ୍ୟେତ୍ୟର୍ଥଃ ।। ୫୯।।

– ସମସ୍ତଙ୍କ ପ୍ରତି ଅନୁଗ୍ରହ କରୁଥିବା, ଭୋଗ (ଭୁକ୍ତି) ଓ ମୋକ୍ଷ (ମୁକ୍ତି) ଦେଉଥିବା ଏକମାତ୍ର ଶିବ ଗୁରୁ, ଜଙ୍ଗମ ତଥା ଲିଙ୍ଗ ରୂପରେ ଅଛନ୍ତି ।। ୫୯।।

ଅଥ ଲିଙ୍ଗାପେକ୍ଷୟା ଜଙ୍ଗମସ୍ୟାଧିକ୍ୟଂ ବକ୍ତୁଂ ଲିଙ୍ଗସ୍ୱରୂପଂ ପ୍ରଥମମୁପପାଦୟତି

ଲିଙ୍ଗଂ ଚ ଦ୍ୱିବିଧଂ ପ୍ରୋକ୍ତଂ ଜଙ୍ଗମାଜଙ୍ଗମାତ୍ମନା ।
ଅଜଙ୍ଗମେ ଯଥା ଭକ୍ତିର୍ଜଙ୍ଗମେ ଚ ତଥା ସ୍ମୃତା ।। ୬୦।।

ଜଙ୍ଗମାଜଙ୍ଗମାତ୍ମନା ଚରସ୍ଥିରଭେଦେନ ଲିଙ୍ଗଂ ଶିବଲିଙ୍ଗଂ ଦ୍ୱିବିଧମିତି ପ୍ରୋକ୍ତମ୍ । ଅଜଙ୍ଗମେ ସ୍ଥିରଲିଙ୍ଗେ ଯଥା ଭକ୍ତିର୍ବିଧୀୟତେ ତଥା ଜଙ୍ଗମେଷ୍ୱପି ଚରଲିଙ୍ଗେଷ୍ୱପି ଭକ୍ତିଃ କର୍ତ୍ତବ୍ୟେତ୍ୟର୍ଥଃ ।। ୬୦।।

– ଜଙ୍ଗମ ଓ ଅଜଙ୍ଗମ (ସ୍ଥାବର) ଭାବରେ ଲିଙ୍ଗ ଦୁଇପ୍ରକାରର କୁହାଯାଇଛି । ଅଜଙ୍ଗମ ପ୍ରତି ଯେପରି ଭକ୍ତି, ଜଙ୍ଗମ ପ୍ରତି ମଧ୍ୟ ସେହିପରି ଭକ୍ତି କୁହାଯାଇଛି ।। ୬୦।।

ନନୁ କିମନୟୋଃ ସ୍ୱରୂପମିତ୍ୟତ୍ରାହ –

**ଅଜଙ୍ଗମଂ ତୁ ଯଲ୍ଲିଙ୍ଗଂ ମୃଚ୍ଛିଲାଦିବିନିର୍ମିତମ୍ ।**
**ତଦ୍ୱରଂ ଜଙ୍ଗମଂ ଲିଙ୍ଗଂ ଶିବଯୋଗୀତି ବିଶ୍ରୁତମ୍ ।। ୬୧।।**

ମୃଚ୍ଛିଲାଦିବିନିର୍ମିତଂ ଯଲ୍ଲିଙ୍ଗମସ୍ତି, ତଦଜଙ୍ଗମଂ ସ୍ଥିରଲିଙ୍ଗମ୍ ଇତ୍ୟର୍ଥଃ ।। ୬୧ ।।

– ଯେଉଁ ଲିଙ୍ଗ ଅଜଙ୍ଗମ (ସ୍ଥାବର), ତାହା ମାଟି ଅଥବା ପଥର ଆଦିରେ ନିର୍ମିତ । ଜଙ୍ଗମ ଲିଙ୍ଗ ତାହା ଅପେକ୍ଷା ଶ୍ରେଷ୍ଠ ଅଟେ ଏବଂ ତାହା ଶିବଯୋଗୀ ନାମରେ ପ୍ରସିଦ୍ଧ ।। ୬୧ ।।

ତତ୍ କଥମିତ୍ୟତ୍ରାହ –

**ଅଚରେ ମନ୍ତ୍ରସଂସ୍କାରଲ୍ଲିଙ୍ଗେ ବସତି ଶଙ୍କରଃ ।**
**ସଦାକାଲଂ ବସତ୍ୟେବ ଚରଲିଙ୍ଗେ ମହେଶ୍ୱରଃ ।। ୬୨ ।।**

ସ୍ପଷ୍ଟମ୍ ।। ୬୨ ।।

– ଶ୍ରେଷ୍ଠତାର କାରଣ ବତାଉଛନ୍ତି –

ସ୍ଥାବର ଲିଙ୍ଗରେ ଶିବଙ୍କର ନିବାସ ମନ୍ତ୍ରଦ୍ୱାରା ସଂସ୍କାର କରିବା ପରେ ହୋଇଥାଏ । କିନ୍ତୁ ଚରଲିଙ୍ଗ (ଶିବଯୋଗୀ)ରେ ମହେଶ୍ୱର ସର୍ବଦା (ସଂସ୍କାର ର ଆବଶ୍ୟକତା ନାହିଁ) ନିବାସ କରନ୍ତି ।। ୬୨ ।।

ତସ୍ମାଚ୍ଛିବଯୋଗିନଂ ପ୍ରତି କୃତଦାନପୂଜାଫଲଂ ସୂତ୍ରଦ୍ୱୟେନ ବିଶେଷୟତି –

**ଶିବଯୋଗିନି ଯଦ୍ ଦତ୍ତଂ ତଦକ୍ଷୟଫଲଂ ଭବେତ୍ ।**
**ତସ୍ମାତ୍ ସର୍ବପ୍ରଯତ୍ନେନ ତସ୍ମୈ ଦେୟଂ ମହାତ୍ମନେ ।। ୬୩।।**
**ଯତ୍ ଫଲଂ ଲଭତେ ଜନ୍ତୁଃ ପୂଜୟା ଶିବଯୋଗିନଃ ।**
**ତଦକ୍ଷୟମିତି ପ୍ରୋକ୍ତଂ ସକଳାଗମପାରଗୈଃ ।। ୬୪।।**

ଅସ୍ମିନ୍ନର୍ଥେ ଆଗମଃ ପ୍ରମାଣମିତି ସୂଚିତମ୍ । ଅତ୍ର –

---

୧୩୨. ଭ. ଗୀ., ୧୫/୧୮

ଦର୍ଶନାଦର୍ଚ୍ଚନାତ୍ ତସ୍ୟ ତ୍ରିସପ୍ତକୁଳସଂଯୁତାଃ ।
ଜନା ମୁକ୍ତିପ୍ରଦଂ ଯାନ୍ତି କିଂ ପୁନସ୍ତଦ୍‌ପରାୟଣାଃ ।।

ଇତି ଯୋଗଜାଗମବଚନମନୁସନ୍ଧେୟମ୍ ।। ୬୩-୬୪ ।।

– ଶିବଯୋଗୀକୁ ଯାହା କିଛି ଦିଆଯାଏ, ତାହା ଅକ୍ଷୟ ଫଳକାରକ ହୋଇଥାଏ । ତେଣୁ ସେହି ମହାତ୍ମାଙ୍କୁ ସମସ୍ତ ପ୍ରୟାସରେ ଦେବା ଉଚିତ୍ । ଶିବଯୋଗୀଙ୍କର ପୂଜା କରି ଜୀବ ଯେଉଁ ଫଳକୁ ପ୍ରାପ୍ତ କରିଥାଏ, ସମସ୍ତ ଆଗମର ବିଦ୍ୱାନ୍ ତାହାକୁ (ଫଳକୁ) ଅକ୍ଷୟ ବୋଲି କହିଥାନ୍ତି ।। ୬୩-୬୪ ।।

ଏବଂ ତତ୍‌ପୂଜାଫଳମୁକ୍ତ୍ୱା ତଦବମାନଫଳଂ ଚ ପ୍ରକାଶୟତି –

**ନାବମନ୍ୟେତ କୁତ୍ରାପି ଶିବଯୋଗିନମାଗତମ୍ ।**
**ଅବମାନାତ୍ ଭବେତ୍ତସ୍ୟ ଦୁର୍ଗତିଶ୍ଚ ନ ସଂଶୟଃ ।। ୬୫ ।।**

କୁତ୍ରାପି ଅନ୍ତର୍ବହିଃ କ୍ୱାପି ସମାଗତମିତ୍ୟର୍ଥଃ ।। ୬୫ ।।

– ସମ୍ମୁଖକୁ ଆସିଥିବା ଶିବଯୋଗୀଙ୍କର କେଉଁଠାରେ ହେଲେ ଅପମାନ କରିବା ଉଚିତ୍ ନୁହେଁ । ଅପମାନ କଲେ ତାଙ୍କର (ଅପମାନ କର୍ତ୍ତାଙ୍କର) ଦୁର୍ଗତି ହୋଇଥାଏ, ଏଥିରେ ସନ୍ଦେହ ନାହିଁ ।। ୬୫ ।।

ତସ୍ମାଚ୍ଛିବଯୋଗୀ ପୂଜନୀୟ ଇତି ବଦନ୍ ତ୍ରିବିଧସମ୍ପତ୍ତିସ୍ଥଳଂ ସମାପୟତି –

**ଶିବଯୋଗୀ ଶିବଃ ସାକ୍ଷାଦିତି କୈଂକର୍ଯ୍ୟଭକ୍ତିତଃ ।**
**ପୂଜୟେଦାଦରେଣୈବ ଯଥା ଲିଙ୍ଗଂ ଯଥା ଗୁରୁଃ ।। ୬୬ ।।**

କୈଂକର୍ଯ୍ୟଭକ୍ତିର୍ଭୃତ୍ୟାଚାର ରୂପା ଭକ୍ତିରିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୬ ।।

– ଶିବଯୋଗୀ ସାକ୍ଷାତ୍ ଶିବ ଅଟେ – ଏହିପରି ଭାବି ସେବକ ଭାବରେ ଯେପରି ଲିଙ୍ଗ ଏବଂ ଗୁରୁଙ୍କର ପୂଜା (ସେବା) କରାଯାଏ, ସେହିପରି ପୂଜା କରିବା ଉଚିତ୍ ।। ୬୬ ।।

ଇତି ତ୍ରିବିଧସମ୍ପତ୍ତିସ୍ଥଳମ୍

## ଅଥ ଚତୁର୍ବିଧସାରାୟସ୍ଥଳମ୍

**ପାଦୋଦକଂ ଯଥା ଭକ୍ତ୍ୟା ସ୍ୱୀକରୋତି ମହେଶିତୁଃ ।**
**ତଥା ଶିବାମ୍ବୁନୋର୍ନିତ୍ୟଂ ଗୁରୁଜଙ୍ଗମୟୋରପି ।। ୬୭ ।।**

ଅତ୍ର ମହେଶିତୁଃ ଶିବଲିଙ୍ଗସ୍ୟେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୭ ।।

– ଚତୁର୍ବିଧ ସାରାୟସ୍ଥଳ ବର୍ଣ୍ଣନ –

(ସାଧକ) ଯେପରି ଭଗବାନ୍ ଶଙ୍କରଙ୍କର ଚରଣୋଦକ ଭକ୍ତିର ସହିତ ଗ୍ରହଣ କରିଥାଏ, ସେହିପରି ନିତ୍ୟ ଗୁରୁ ତଥା ଜଙ୍ଗମଙ୍କର ଚରଣୋଦକ ନେବା ଉଚିତ୍ ।। ୬୭।।

ଅଥ ପାଦୋଦକ ଧାରଣସ୍ୱରୂପ କଥନପୂର୍ବକଂ ତତ୍ ଫଳମାହ –

**ସର୍ବମଙ୍ଗଳମାଙ୍ଗଲ୍ୟଂ ସର୍ବପାବନପାବନମ୍ ।**
**ସର୍ବସିଦ୍ଧିକରଂ ପୁଂସାଂ ଶମ୍ଭୋଃ ପାଦାମ୍ବୁଧାରଣମ୍ ।। ୬୮ ।।**

ଶିବଲିଙ୍ଗଚରଣତୀର୍ଥଧାରଣଂ ସମସ୍ତମଙ୍ଗଳାନାଂ ମଙ୍ଗଳଂ ସତ୍ ସକଳପାବନାନାଂ ପାବନଂ ସତ୍ ପୁରୁଷାଣାଂ ସର୍ବସିଦ୍ଧିକରଂ ଭବତୀତ୍ୟର୍ଥଃ ।। ୬୮ ।।

– ଶିବଙ୍କର ପାଦୋଦକ ସମସ୍ତ ମଙ୍ଗଳର ମଙ୍ଗଳ, ସମସ୍ତ ପବିତ୍ରର ପବିତ୍ର ଏବଂ ମନୁଷ୍ୟମାନଙ୍କର ସମସ୍ତ ସିଦ୍ଧିର ଦାତା । (ତେଣୁ ତାହା ଗ୍ରହଣ କରିବା ଉଚିତ୍)।। ୬୯ ।।

ଅଥ ନିର୍ମାଲ୍ୟପତ୍ର ପୁଷ୍ପଧାରଣଫଳଂ ନିରୂପୟତି –

**ଶିରସା ଧାରୟେଦ୍ୟସ୍ତୁ ପତ୍ରଂ ପୁଷ୍ପଂ ଶିବାର୍ପିତମ୍ ।**
**ପ୍ରତିକ୍ଷଣଂ ଭବେତ୍ ତସ୍ୟ ପୌଣ୍ଡରୀକକ୍ରିୟାଫଳମ୍ ।। ୬୯ ।।**

ସ୍ପଷ୍ଟମ୍ ।। ୬୯ ।।

– (ଯେଉଁ ଭକ୍ତ) ଶିବଙ୍କୁ ଚଢ଼ା ଯାଇଥିବା ପତ୍ର ଓ ପୁଷ୍ପକୁ ମସ୍ତକରେ ଧାରଣ କରେ, ତାହାକୁ ପ୍ରତିକ୍ଷଣ ପୌଣ୍ଡରୀକ କ୍ରିୟା (ଭାଗ)ର ଫଳ ପ୍ରାପ୍ତ ହୋଇଥାଏ ।। ୬୯ ।।

ନନୁ ଶିବନିର୍ମାଲ୍ୟମଗ୍ରାହ୍ୟମିତି ପୁରାଣାଦୌ ଶ୍ରୂୟତେ (ତତ୍) କଥଂ ଗ୍ରାହ୍ୟମିତ୍ୟତ୍ରାହ –

**ଭୁଞ୍ଜୀୟାଦ୍ ରୁଦ୍ରଭୁକ୍ତାନ୍ନଂ ରୁଦ୍ରପୀତଂ ଜଳଂ ପିବେତ୍ ।**
**ରୁଦ୍ରାଘାତଂ ସଦା ଜିଘ୍ରେଦିତି ଜାବାଲିକୀ ଶ୍ରୁତିଃ ।। ୭୦ ।।**

ରୁଦ୍ରଭକ୍ତାନ୍ନଂ ରୁଦ୍ରସମର୍ପିତପ୍ରସାଦାନ୍ନଂ ଭୁଞ୍ଜୀୟାଦ୍ ଭକ୍ଷୟେତ୍, ରୁଦ୍ରପୀତଂ ରୁଦ୍ରପ୍ରସାଦୋଦକଂ ପିବେତ୍, ରୁଦ୍ରାଘ୍ରାତଂ ରୁଦ୍ରସମର୍ପିତକୁସୁମଂ ଜିଘ୍ରେତ୍, ଇତି ଜାବାଲିକୀ ଶ୍ରୁତିରାହେତ୍ୟର୍ଥଃ। 'ରୁଦ୍ରେଣାତ୍ତମଶ୍ନନ୍ତି, ରୁଦ୍ରେଣ ପୀତଂ ପିବନ୍ତି, ରୁଦ୍ରେଣାଘ୍ରାତଂ ଜିଘ୍ରନ୍ତି' ଇତି ଜାବାଲଶ୍ରୁତିଃ। ତସ୍ମାତ୍ ପୁରାଣାଦିଷୁ ଶ୍ରୂୟମାଣାତନ୍ନିଷେଧସ୍ତୁ ଚଣ୍ଡାଧିକାରବିଶିଷ୍ଟସ୍ଥାବରଲିଙ୍ଗପରୋ ନ ତୁ ବାଣାଦିଲିଙ୍ଗପରଃ,

ବାଣଲିଙ୍ଗେ ସ୍ୱୟଂ ଭୂତେ ଚନ୍ଦ୍ରକାନ୍ତେ ହୃଦି ସ୍ଥିତେ।
ଶାଳଗ୍ରାମଶିଳୋଦ୍ଭୂତେ ଶମ୍ଭୋର୍ନୈ ବେଦ୍ୟୋଭକ୍ଷଣମ୍ ।।

ଇତି ବଚନାତ୍। ଅନ୍ୟଥା ଶ୍ରୁତିବିରୁଦ୍ଧପୁରାଣବଚନ ପ୍ରମାଣମେବ ଭବେଦିତି ନ ସାର୍ବତ୍ରିକ ଇତି ସଂକ୍ଷେପଃ, ଏବଂ ଶ୍ରୁତିସିଦ୍ଧତ୍ୱାତ୍ ।। ୭୦ ।।

ରୁଦ୍ରଙ୍କୁ ସମର୍ପିତ ଅନ୍ନର ଭୋଜନ କରିବା ଉଚିତ୍। ରୁଦ୍ରଙ୍କୁ ସମର୍ପିତ ଜଳ ପାନ କରିବା ଉଚିତ୍। ରୁଦ୍ରଙ୍କର ଆଘ୍ରାଣଯୁକ୍ତ ପୁଷ୍ପକୁ ଆଘ୍ରାଣ କରିବା ଉଚିତ୍, ଏପରି ଜାବାଲୋପନିଷଦ୍‌ରେ[୧୩୩] କୁହାଯାଇଛି।। ୭୦।।

**ଅର୍ପୟିତ୍ୱା ନିଜେ ଲିଙ୍ଗେ ପତ୍ରଂ ପୁଷ୍ପଂ ଫଳଂ ଜଳମ୍ ।**
**ଅନ୍ନାଦ୍ୟଂ ସର୍ବଭୋଜ୍ୟଂ ଚ ସ୍ୱୀକୁର୍ଯ୍ୟାଦ୍ ଭକ୍ତିମାନ୍ନରଃ ।। ୭୧ ।।**

ସ୍ପଷ୍ଟମ୍ ।। ୭୧ ।।

ଭକ୍ତିମାନ୍ ମନୁଷ୍ୟ ପତ୍ର, ପୁଷ୍ପ, ଫଳ, ଜଳ, ଅନ୍ନ ଆଦି ସମ୍ପୂର୍ଣ୍ଣ ଭୋଜ୍ୟ ପଦାର୍ଥକୁ ନିଜର ଇଷ୍ଟ ଲିଙ୍ଗକୁ ଅର୍ପିତ କରି ଗ୍ରହଣ କରିବା ଉଚିତ୍ ।। ୭୧ ।।

ଅଥ ଗୁରୁପ୍ରସାଦବିମୁଖାନାଂ ମୁକ୍ତିର୍ନାସ୍ତୀତି ସର୍ବସମ୍ମତତ୍ୱେନାପରିମିତିତେଜସଃ ଶିବସ୍ୟ 'ଈଶାନଃ ସର୍ବବିଦ୍ୟାନାମ୍'[୧୩୪] ଇତି ଶ୍ରୁତେଃ ସକଳବିଦ୍ୟାଧୀଶ୍ୱରତ୍ୱାତ୍, ତତ୍ରୈବ 'ମେ ଅସ୍ତୁ ସଦାଶିବମ୍' ଇତି ତାରକବ୍ରହ୍ମରୂପପ୍ରଣବାଭେଦେନ ଶ୍ରୂୟମାଣତ୍ୱାଚ୍ଚ ସକଳଲୋକଗୁରୁତ୍ୱାତ୍ ତତ୍ ପ୍ରସାଦୋଦ୍ଧବଶ୍ୟଂ ଗ୍ରାହ୍ୟ ଇତ୍ୟାହ –

**ଗୁରୁତ୍ୱାତ୍ ସର୍ବଭୂତାନାଂ ଶମ୍ଭୋରମିତତେଜସଃ ।**
**ତସ୍ମୈ ନିବେଦିତଂ ସର୍ବଂ ସ୍ୱୀକାର୍ଯଂ ତତ୍ ପରାୟଣୈଃ ।। ୭୨ ।।**

ସ୍ପଷ୍ଟମ୍ ।। ୭୨ ।।

– ସମସ୍ତ ପ୍ରାଣୀଙ୍କ ଅପେକ୍ଷା ଅମିତ ତେଜସ୍ୱୀ ଶିବ ଶ୍ରେଷ୍ଠ ହୋଇ ଥିବାରୁ ତାଙ୍କୁ ଅର୍ପିତ ସବୁ କିଛି ତାଙ୍କର ଭକ୍ତଙ୍କଦ୍ୱାରା ସ୍ୱୀକାର କରାଯିବା ଉଚିତ୍ ।। ୭୨ ।।

ତର୍ହ୍ୟସ୍ୟ ଶିବଲିଙ୍ଗପ୍ରସାଦସ୍ୟ କୋଽଧିକାରୀତ୍ୟତ୍ରାହ –

**ଯେ ଲିଙ୍ଗଧାରିଣୋ ଲୋକେ ଯେ ଶିବୈକପରାୟଣାଃ ।**
**ତେଷାଂ ତୁ ଶିବନିର୍ମାଲ୍ୟମୁଚିତଂ ନାନ୍ୟଜନ୍ତୁଷୁ ।। ୭୩ ।।**

ସ୍ପଷ୍ଟମ୍ ।। ୭୩ ।।

– ଏହି ସଂସାରରେ ଯେଉଁ ଜନ ଶିବଲିଙ୍ଗ ଧାରଣ କରିଥାନ୍ତି ଏବଂ ଯିଏ ଏକମାତ୍ର ଶିବଙ୍କର ଭକ୍ତ, ସେମାନଙ୍କର ଶିବଙ୍କର ପ୍ରସାଦ ଗ୍ରହଣ କରିବା ଉଚିତ୍, ଅନ୍ୟ ଜୀବଙ୍କର ନୁହେଁ ।। ୭୩ ।।

---

୧୩୩. ଅହରହରଭ୍ୟର୍ଚ୍ୟ ବିଶ୍ୱେଶ୍ୱରଂ ଲିଙ୍ଗଂ ତତ୍ର ରୁଦ୍ରସୂକ୍ତୈରଭିଷିଚ୍ୟ ତଦେବ ସ୍ନପନପୟଃ ତ୍ରିଃପୀତ୍ୱା ମହାପାତକେଭ୍ୟୋ ବିମୁଚ୍ୟତେ । ଭସ୍ମଜାବାଲୋ.

୧୩୪. ବା. ସଂ., ୮/୭

ତର୍ହି ଶିବପ୍ରସାଦାନ୍ନଭୋଜନସ୍ୟ କିଂ ଫଳମିତ୍ୟତ୍ରାହ –

**ଅନ୍ନଜାତେ ତୁ ଭକ୍ତେନ ଭୁଜ୍ୟମାନେ ଶିବାର୍ପିତେ ।**

**ସିକ୍ଥେ ସିକ୍ଥେଽଶ୍ୱମେଧସ୍ୟ ଯତ୍ଫଳଂ ତଦବାପ୍ୟତେ ।। ୭୪ ।।**

ପରିପକ୍ୱତଣ୍ଡୁଳବ୍ୟକ୍ତିଃ ସିକ୍ଥଶବ୍ଦେନୋଚ୍ୟତେ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୪ ।।

– ଶିବଙ୍କୁ ସମର୍ପିତ ଅନ୍ନର ଗୋଟିଏ ଗୋଟିଏ କଣ (ଅନ୍ନ)କୁ ପ୍ରାପ୍ତ କଲେ ଭକ୍ତଦ୍ୱାରା ଅଶ୍ୱମେଧ ଯଜ୍ଞର ଯାହା ଫଳ, ତାହା ପ୍ରାପ୍ତ ହୋଇଥାଏ ।। ୭୫ ।।

ଅଥାସ୍ୟାନଧିକାରିଣଃ ସୂଚୟତି –

**ନିର୍ମାଲ୍ୟଂ ନିର୍ମଳଂ ଶୁଦ୍ଧଂ ଶିବେନ ସ୍ୱୀକୃତଂ ଯତଃ ।**

**ନିର୍ମଲୈସ୍ତତ୍ପରୈର୍ଧାର୍ଯ୍ୟଂ ନାନ୍ୟୈଃ ପ୍ରାକୃତଜନ୍ତୁଭିଃ ।। ୭୫ ।।**

ଶିବଲିଙ୍ଗଦୀକ୍ଷାରହିତାଃ ପ୍ରାକୃତାଃ, ତେଽନଧିକାରିଣଃ, ତୈର୍ନ ଧାର୍ଯ୍ୟମିତ୍ୟର୍ଥଃ । ଶିବଦୀକ୍ଷାୟା ନିର୍ମଲୈଃ, ତତ୍ପରୈଃ ଶିବଲିଙ୍ଗନିଷ୍ଠୈର୍ଧାର୍ଯ୍ୟମିତ୍ୟର୍ଥଃ ।। ୭୫ ।।

– ଯେହେତୁ ଶିବଙ୍କଦ୍ୱାରା ସ୍ୱୀକୃତ ହୋଇଥାଏ, ତେଣୁ ନିର୍ମାଲ୍ୟ (ନୈବେଦ୍ୟ) ନିର୍ମଳ ଓ ଶୁଦ୍ଧ ହୋଇଥାଏ । ତାହା ଅତ୍ୟନ୍ତ ଶୁଦ୍ଧ ବ୍ୟକ୍ତିଙ୍କ ଦ୍ୱାରା ଗୃହୀତ ହେବା ଉଚିତ୍, ଅନ୍ୟ ସାମାନ୍ୟ (ପ୍ରାକୃତ, ଅଶୁଦ୍ଧ) ଲୋକ (ଜନ୍ତୁ)ଙ୍କ ଦ୍ୱାରା ନୁହେଁ ।। ୭୫ ।।

ତଦେବ ସ୍ଫୁଟୟତି –

**ଶିବଭକ୍ତିବିହୀନାନାଂ ଜନ୍ତୁନାଂ ପାପକର୍ମଣାମ୍ ।**

**ବିଶୁଦ୍ଧେ ଶିବନିର୍ମାଲ୍ୟେ ନାଧିକାରୋଽସ୍ତି କୁତ୍ରଚିତ୍ ।। ୭୬ ।।**

ଅୟଂ ଭାବଃ – ବ୍ୟାପକୀଭୂତଶିବସ୍ୟାଷ୍ଟତନୁ ପରିକଳ୍ପିତତ୍ୱେନ ସାଧାରଣୀଭୂତଦେବତାନ୍ତରପୂଜାୟାଂ ଶିବସମ୍ବନ୍ଧିପୁଷ୍ପୋଦକୀଭୂତଚନ୍ଦ୍ରଗଙ୍ଗାଭ୍ୟାଂ ପରିପୁଷ୍ଟସ୍ୟ ଧାନ୍ୟସ୍ୟାଗ୍ନିରୂପରୁଦ୍ରଜିହ୍ୱୟା ପରିପଚ୍ୟମାନତ୍ୱାଦ୍ ଏତଦୁଭୟତ୍ର ସର୍ବପ୍ରାଣିନାମପ୍ୟଧିକାରୋଽସ୍ତି, ତଥାପ୍ୟସାଧାରଣଶିବଲିଙ୍ଗପୂଜାୟାଂ ଶିବଲିଙ୍ଗପ୍ରସାଦସ୍ୱୀକାରେ ଚ ଶିବଦୀକ୍ଷାସମ୍ପନ୍ନ ଏବାଧିକାରୀତି ସର୍ବଶାସ୍ତ୍ରପ୍ରସିଦ୍ଧମ୍ ।। ୭୬ ।।

– ଶିବଭକ୍ତି ରହିତ ପାପକର୍ମରେ ରତ ଜୀବମାନଙ୍କର ବିଶୁଦ୍ଧ ଶିବନିର୍ମାଲ୍ୟ ବିଷୟରେ କୌଣସି ଅଧିକାର ନାହିଁ ।। ୭୬ ।।

ଅଥ ପ୍ରସାଦମହତ୍ତ୍ୱଂ ସଂସୂଚୈତତ୍ସ୍ଥଲଂ ସମାପୟତି ସୂତ୍ରଦ୍ୱୟେନ –

**ଶିବଲିଙ୍ଗପ୍ରସାଦସ୍ୟ ସ୍ୱୀକାରାଦ୍ୟତ୍ଫଳଂ ଭବେତ୍ ।**

**ତଥା ପ୍ରସାଦସ୍ୱୀକାରାଦ୍ ଗୁରୁଜଙ୍ଗମୟୋରପି ।। ୭୭ ।।**

**ତସ୍ମାଦ୍ ଗୁରୁଂ ମହାଦେବଂ ଶିବଯୋଗିନମେବ ଚ ।**
**ପୂଜୟେଦ୍ ତଦ୍ ପ୍ରସାଦାନ୍ନଂ ଭୁଞ୍ଜୀୟାଦ୍ ପ୍ରତିବାସରମ୍ ।। ୭୮ ।।**

ପୂଜୟେଦ୍ ତନୁ ମନୋଧନୈଃ ପୂଜୟେଦିତ୍ୟର୍ଥଃ । ତଦ୍ ପ୍ରସାଦାନ୍ନମେବ ପ୍ରତିବାସରଂ ଭୁଞ୍ଜୀୟାଦ୍ ।। ୭୭-୭୮ ।।

– ଶିବଲିଙ୍ଗ ପ୍ରସାଦ ଗ୍ରହଣରେ ଯେଉଁଫଳ ମିଳିଥାଏ, ସେହିଫଳ ଗୁରୁ ଏବଂ ଜଙ୍ଗମ (ଶିବଯୋଗୀ)ଙ୍କର ପ୍ରସାଦରୁ ମଧ୍ୟ ପ୍ରାପ୍ତ ହୋଇଥାଏ । ତେଣୁ ଗୁରୁ, ଲିଙ୍ଗ (ମହାଦେବ) ତଥା ଶିବଯୋଗୀଙ୍କର ପ୍ରତିଦିନ ପୂଜା କରିବା ଉଚିତ୍ ଏବଂ ତାଙ୍କର ପ୍ରସାଦ ସ୍ୱରୂପ ଅନ୍ନକୁ ସ୍ୱୀକାର କରିବା ଉଚିତ୍ ।। ୭୭-୭୮ ।।

ଇତି ଚତୁର୍ବିଧସାରାୟସ୍ଥଳମ୍

## ସୋପାଧି-ନିରୁପାଧି ସହଜଦାନସ୍ଥଲାନି

ଅଥ – ଦେହଦାନାଦ୍ ସତ୍ୟସିଦ୍ଧିରର୍ଥଦାନାଚ୍ଚ ନିର୍ବୃତ୍ତିଃ ।
ପ୍ରାଣଦାନାଦ୍ ଜ୍ଞାନସିଦ୍ଧିରେବଂ ସର୍ବଂ ସ୍ଥିରଂ ଭବେଦ୍ ।।

ଇତି ଯୋଗଜାଗମବଚନାନୁସାରେଣ ଗୁରୁଲିଙ୍ଗ ଜଙ୍ଗମୋଦ୍ଦେଶେନ ଯଥାଶକ୍ତି ଦାନଂ କୁର୍ଯ୍ୟାଦିତ୍ୟାହ –

**ଶିବଲିଙ୍ଗେ ଶିବାଚାର୍ଯ୍ୟେ ଶିବଯୋଗିନି ଭକ୍ତିମାନ୍ ।**
**ଦାନଂ କୁର୍ଯ୍ୟାଦ୍ ଯଥାଶକ୍ତିତଦ୍ପ୍ରସାଦଯୁତଃ ସଦା ।। ୭୯ ।।**

ତଦ୍ବିଷୟ ଇତି ଶେଷଃ ।। ଶିଷ୍ଟଂ ସ୍ପଷ୍ଟମ୍ ।। ୭୯ ।।

– ସୋପାଧି ନିରୁପାଧି ସହଜଦାନ ସ୍ଥଲବର୍ଣ୍ଣନ –

ଭକ୍ତିମାନ୍ (ସାଧକ) ଶିବଲିଙ୍ଗ, ଶିବାଚାର୍ଯ୍ୟ ଏବଂ ଶିବଯୋଗୀଙ୍କର କୃପାରେ ଯୁକ୍ତ ହୋଇ ସଦା ନିଜର ଶକ୍ତି ଅନୁସାରେ ଦାନ କରିବା ଉଚିତ୍ ।। ୭୯ ।।

ଅଥ ତଦ୍ଦାନସ୍ୱରୂପଂ ବିଶଦୟତି –

**ଦାନଂ ଚ ତ୍ରିବିଧଂ ପ୍ରୋକ୍ତଂ ସୋପାଧିନିରୁପାଧିକମ୍ ।**
**ସହଜଂ ଚେତି ସର୍ବେଷାଂ ସର୍ବତନ୍ତ୍ର ବିଶାରଦୈଃ ।। ୮୦ ।।**

ଦାନଂ ଚ ପ୍ରାଣଦେହାର୍ଥରୂପଦାନତ୍ରୟଂ ସୋପାଧିକଂ ନିରୁପାଧିକଂ ସହଜଂ ଚେତି ତ୍ରିରୂପବଦିତି ସମସ୍ତାଗମପ୍ରବୀଣୈଃ ସର୍ବେଷାଂ ଶିବଭକ୍ତାନାଂ ପ୍ରୋକ୍ତମିତ୍ୟର୍ଥଃ ।। ୮୦ ।।

– ସମସ୍ତ ଶାସ୍ତ୍ରର ବିଦ୍ୱାନମାନଙ୍କ ଦ୍ୱାରା ସୋପାଧି, ନିରୁପାଧି ଓ ସହଜ ଭେଦରେ ଦାନ ସମସ୍ତଙ୍କ ପାଇଁ ତିନି ପ୍ରକାରର କୁହାଯାଇଛି ।। ୮୦ ।।

ତତ୍ର ସୋପାଧିଦାନସ୍ଥଳଂ ନିରୂପୟତି –

**ଫଳାଭିସନ୍ଧିସଂଯୁକ୍ତଂ ଦାନଂ ଯଦ୍ବିହିତଂ ଭବେତ୍ ।**

**ତତ୍ ସୋପାଧିକମାଖ୍ୟାତଂ ମୁମୁକ୍ଷୁଭିରନାଦୃତମ୍ ।। ୮୧ ।।**

ତୁଚ୍ଛଫଳାଭିଳାଷସଂଯୁକ୍ତମତମେବ ମୁମୁକ୍ଷୁଭିରୁପେକ୍ଷିତଂ ଯଦ୍‌ଦାନଂ ବିହିତଂ ସ୍ୟାତ୍, ତତ୍ ସୋପାଧିକମିତ୍ୟୁକ୍ତମିତ୍ୟର୍ଥଃ ।। ୮୧ ।।

– ଯେଉଁ ଦାନ ଫଳର ଇଚ୍ଛା (ଅଭିସନ୍ଧି)ରେ କରାଯାଏ, ତାହାକୁ ସୋପାଧିକ ଦାନ କୁହାଯାଏ । ମୋକ୍ଷାର୍ଥୀ ଜନ ଏପରି ଦାନକୁ ଆଦର କରି ନ ଥାନ୍ତି ।। ୮୧ ।।

ଅଥ ନିରୁପାଧିଦାନସ୍ଥଳଂ ଲକ୍ଷୟତି –

**ଫଳାଭିସନ୍ଧିନିର୍ମୁକ୍ତମୀଶ୍ୱରାର୍ପିତକାଙ୍‌କ୍ଷିତମ୍ ।**

**ନିରୁପାଧିକମାଖ୍ୟାତଂ ଦାନଂ ଦାନବିଶାରଦୈଃ ।। ୮୨ ।।**

ତୁଚ୍ଛଫଳେଚ୍ଛାରହିତମୀଶ୍ୱରାର୍ପଣାଭିବାଞ୍ଛୟା ବିହିତଂ ଯଦ୍ ଦାନଂ ତଦ୍ ଦାନତତ୍ତ୍ୱସ୍ୱରୂପ-ଜ୍ଞୈର୍ନିରୁପାଧିକଦାନମିତ୍ୟାଖ୍ୟାତମିତ୍ୟର୍ଥଃ ।। ୮୨ ।।

– ଦାନର ବିଶାରଦ ଦ୍ୱାରା ଫଳର ଇଚ୍ଛା ନ ରଖି ଈଶ୍ୱରାର୍ପଣବୁଦ୍ଧିରେ ଦିଆଯାଇଥିବା ଦାନକୁ ନିରୁପାଧିକ ଦାନ କୁହାଯାଏ ।। ୮୨ ।।

ସହଜଦାନସ୍ଥଳଂ ନିରୂପୟତି –

**ଅଦାତୃଦାତୃଦେୟାନାଂ ଶିବଭାବଂ ବିଚିନ୍ତୟନ୍ ।**

**ଆତ୍ମନୋଽକର୍ତ୍ତୃଭାବଂ ଚ ଯଦ୍‌ଦତ୍ତଂ ସହଜଂ ଭବେତ୍ ।। ୮୩ ।।**

ପରିଗୃହୀତୃପ୍ରଦାତୃଦେୟାନାଂ ଶିବତ୍ୱଂ ଚିନ୍ତୟନ୍, ଆତ୍ମନଃ ସ୍ୱସ୍ୟାକର୍ତ୍ତୃତ୍ୱଂ ଭାବୟନ୍ ଯଦ୍‌ଦାନଂ ଦତ୍ତମ୍, ତତ୍ ସହଜଦାନଂ ସ୍ୟାଦିତ୍ୟର୍ଥଃ । 'ଭୋକ୍ତା ଭୋଜ୍ୟଂ ପ୍ରେରିତାରଂ ଚ ମତ୍ୱା ସର୍ବଂ ପ୍ରୋକ୍ତଂ ତ୍ରିବିଧଂ ବ୍ରହ୍ମମେକମ୍[୧୩୫]' ଇତି ଶ୍ୱେତାଶ୍ୱତରଶ୍ରୁତ୍ୟୋପକ୍ରମଗତିପିଣ୍ଡସ୍ଥଳ ରହସ୍ୟମନ୍ତ୍ରୋପସଂହାରରୂପସହଜଦାନସ୍ଥଳେଽପି ବୋଧ୍ୟମ୍ ।। ୮୩ ।।

– ପରିଗୃହୀତ ଦାତା ଏବଂ ଦେୟକୁ ଶିବରୂପ ଭାବି ତଥା (ଦାନ ବିଷୟରେ) ନିଜକୁ କର୍ତ୍ତା ବୋଲି ନ ଭାବି ଦିଆଯାଉଥିବା ଦାନକୁ ସହଜଦାନ କୁହାଯାଏ ।। ୮୩ ।।

ଏଷୁ କିଂ ଶ୍ରେଷ୍ଠମିତ୍ୟତ୍ରାହ –

**ସହଜଂ ଦାନମୁତ୍କୃଷ୍ଟଂ ସର୍ବଦାନୋତ୍ତମୋତ୍ତମମ୍ ।**

**ଶିବଜ୍ଞାନପ୍ରଦଂ ପୁଂସାଂ ଜନ୍ମରୋଗନିବର୍ତ୍ତକମ୍ ।। ୮୪ ।।**

---

୧୩୫. ଶ୍ୱେ. ଉ., ୧/୧୨

ସହଜଂ ଦାନଂ ସର୍ବଦାନୋତ୍ତମାନାମୁତ୍ତମମିତି, ଉତ୍କୃଷ୍ଟଂ ଶ୍ରେଷ୍ଠମିତ୍ୟର୍ଥଃ । କଥମିତ୍ୟତ୍ର ପୁଂସାଂ ଜନନମରଣଲକ୍ଷଣମହାରୋଗ ନିବାରକୀଭୂତଶିବତାଦାତ୍ମ୍ୟଜ୍ଞାନପ୍ରଦମିତ୍ୟୁତ୍ତରମ୍ ।।୮୪।।

– ସହଜଦାନ ଉତ୍କୃଷ୍ଟ ଏବଂ ସବୁପ୍ରକାର ଦାନ ମଧ୍ୟରେ ଉତ୍ତମ ଅଟେ । ତାହା ମନୁଷ୍ୟକୁ ଶିବଜ୍ଞାନ ଦେବାବାଲା ତଥା ଜନ୍ମରୂପୀ ରୋଗକୁ ଦୂର କରିବାବାଲା ଅଟେ ।।୮୪।।

ନନୁ ଗୁରୁଲିଙ୍ଗଜଙ୍ଗମୋଦ୍ଦେଶେ ନୈବଂ ଭାବନୟା ଦତ୍ତମେବ ସହଜଂ ବେତ୍ୟତ୍ରାହ –

**ଶିବାୟ ଶିବଭକ୍ତାୟ ଦୀୟତେ ଯଦି କିଞ୍ଚନ ।**
**ଭକ୍ତ୍ୟା ତଦପି ବିଖ୍ୟାତଂ ସହଜଂ ଦାନମୁତ୍ତମମ୍ ।।୮୫।।**

ଶିବାୟ ଇଷ୍ଟଲିଙ୍ଗାତିରିକ୍ତସ୍ଥାବରଲିଙ୍ଗରୂପିଣେ ଶିବାୟ ଦତ୍ତଂ କ୍ଷେତ୍ରାଦିଦାନମ୍, ବିରକ୍ତ ମୂର୍ତ୍ତିବ୍ୟତିରିକ୍ତଶିବଭକ୍ତେଭ୍ୟଶ୍ଚ ଦତ୍ତମପି ସହଜଂ ଦାନମିତ୍ୟର୍ଥଃ ।।୮୫।।

– ଶିବଙ୍କୁ ଅଥବା ଶିବଭକ୍ତକୁ ଯାହା କିଛି ଭକ୍ତିପୂର୍ବକ ଦିଆଯାଏ, ତାହା ମଧ୍ୟ ଉତ୍ତମ ସହଜ ଦାନ ଭାବରେ ପରିଚିତ ।।୮୫।।

ଅଥ ତଦ୍ଦାନଫଲମାହ –

**ଦାନାଦ୍ ସ୍ୱର୍ଣ୍ଣସହସ୍ରସ୍ୟ ସତ୍ପାତ୍ରେ ଯତ୍ଫଲଂ ଭବେଦ୍ ।**
**ଏକପୁଷ୍ପପ୍ରଦାନେନ ଶିବେ ତତ୍ଫଲମିଷ୍ୟତେ ।।୮୬।।**

ସ୍ପଷ୍ଟମ୍ ।।୮୬।।

– ଉତ୍ତମ ଏବଂ ଯୋଗ୍ୟ ବ୍ୟକ୍ତିଙ୍କୁ ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ଦେଲେ ଯେଉଁ ଫଳ ହୋଇଥାଏ, ଶିବଙ୍କୁ ଗୋଟିଏ ପୁଷ୍ପ (ଭକ୍ତି ପୂର୍ବକ) ଅର୍ପଣ କରିଲେ ସେହି ଫଳ ମିଳିଥାଏ (ହୋଇଥାଏ) ।।୮୬।।

ତତ୍ କଥମିତ୍ୟତ୍ର – 'ଈଶାନଃ ସର୍ବବିଦ୍ୟାନାମ୍[୧୩୬]' ଇତି ଶ୍ରୁତେଃ ସକଳ-ବିଦ୍ୟାନିଧିତ୍ୱାଜ୍ଜଗଦ୍ଗୁରୁତ୍ୱେନ ସତ୍ପାତ୍ରତମତ୍ୱାଦିତ୍ୟଭିପ୍ରାୟେଣାହ –

**ଶିବ ଏବ ପରଂ ପାତ୍ରଂ ସର୍ବବିଦ୍ୟାନିଧିର୍ଗୁରୁଃ ।**
**ତସ୍ମୈଦତ୍ତଂ ତୁ ଯତ୍କିଞ୍ଚିତ୍ତଦନନ୍ତଫଲଂ ଭବେତ୍ ।।୮୭।।**

ଅୟମପ୍ୟେକୋକ୍ତାର୍ଥଃ – ଶିବ ଏବ ପରଂ ପାତ୍ରଂ ତଥା ସର୍ବବିଦ୍ୟାନିଧିର୍ଗୁରୁଶ୍ଚ ପରଂ ପାତ୍ରମ୍ । ତସ୍ମୈ ଶିବାୟ ଗୁରବେ ଚ ଦତ୍ତମନନ୍ତଫଲମିତି ।।୮୭।।

– ସମସ୍ତ ବିଦ୍ୟାର ଆକର ଗୁରୁରୂପୀ ଶିବ ହିଁ (ଦାନର) ସର୍ବୋତ୍କୃଷ୍ଟ ପାତ୍ର

---

୧୩୬. ବା. ସଂ. – ୮/୭

ଅଟନ୍ତି ଅଥବା ଶିବ ଏବଂ ସର୍ବବିଦ୍ୟାନିଧି ଗୁରୁ ଉଭୟ ଉତ୍ତମୋତ୍ତମ ପାତ୍ର ଅଟନ୍ତି । ତାଙ୍କୁ ଯାହା କିଛି ଦିଆଯାଏ, ତାହା ଅନନ୍ତ ଫଳବାଳା ହୁଏ ।। ୮୭।।

ଏବଂ ଶିବଯୋଗିନୋଽପି ଦତ୍ତମପୀତ୍ୟାହ –

**ଶିବଯୋଗୀ ଶିବଃ ସାକ୍ଷାଚ୍ଛିବଜ୍ଞାନମହୋଦଧିଃ ।**
**ଯତ୍ କିଞ୍ଚିଦ୍ ଦୀୟତେ ତସ୍ମୈ ତଦ୍ଦାନଂ ପରମାର୍ଥିକମ୍ ।। ୮୮ ।।**

ପରମାର୍ଥିକମ୍ ଅପରିମିତ ଫଳଦସହଜଦାନମିତ୍ୟର୍ଥଃ ।। ୮୮ ।।

– ଶିବଜ୍ଞାନର ସମୁଦ୍ରରୂପ ଶିବଯୋଗୀ ସାକ୍ଷାତ୍ ଶିବ ଅଟନ୍ତି । ତାଙ୍କୁ ଯାହା କିଛି ଦିଆଯାଏ, ସେହି ଦାନ ପରମ ଅର୍ଥ (ଶିବ ସାଯୁଜ୍ୟ)କୁ ଦେବାବାଲା ହୋଇଥାଏ ।। ୮୮ ।।

ଅଥ ଶିବଯୋଗୀଶ୍ୱରମହତ୍ତ୍ୱମେବ ବିଶେଷୟତି –

**ଶିବଯୋଗୀ ମହତ୍ପାତ୍ରଂ ସର୍ବେଷାଂ ଦାନକର୍ମଣି ।**
**ତସ୍ମାନ୍ନାସ୍ତି ପରଂ କିଞ୍ଚିତ୍ ପାତ୍ରଂ ଶାସ୍ତ୍ରବିଚାରତଃ ।। ୮୯ ।।**

ଦାନକର୍ମଣି ଦାନକର୍ମବିଷୟେ ସର୍ବେଷାଂ ସତ୍ପାତ୍ରାଣାଂ ଶିବଯୋଗୀ ମହାପାତ୍ରମ୍, ତସ୍ମାଦ୍ ପରଂ ଶ୍ରେଷ୍ଠଂ ପାତ୍ରଂ ଶାସ୍ତ୍ରବିଚାରତଃ କିଞ୍ଚିଦପି ନାସ୍ତୀତ୍ୟର୍ଥଃ ।। ୮୯ ।।

– ଦାନକର୍ମ ନିମନ୍ତେ ସମସ୍ତଙ୍କ ପାଇଁ ଶିବଯୋଗୀ ଉତ୍ତମପାତ୍ର ଅଟେ । ଶାସ୍ତ୍ର ଦୃଷ୍ଟିରୁ ତାଙ୍କଠାରୁ ଅଧିକ କେହି ସତ୍ପାତ୍ର ନାହାନ୍ତି ।। ୮୯ ।।

ଅଥ ତଦ୍ ଦାନଫଳମାହ –

**ଭିକ୍ଷାମାତ୍ରପ୍ରଦାନେନ ଶାନ୍ତାୟ ଶିବଯୋଗିନେ ।**
**ଯତ୍ଫଳଂ ଲଭ୍ୟତେ ନୈତଦ୍ ଯଜ୍ଞକୋଟିଶତୈରପି ।। ୯୦ ।।**

ଭିକ୍ଷାମାତ୍ରଂ କେବଳମାତ୍ରମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୯୦ ।।

– ଶାନ୍ତ ଶିବଯୋଗୀକୁ କେବଳଭିକ୍ଷା ଅର୍ଥାତ୍ ଏକ ଗ୍ରାସ ଦେବାରେ ଯେଉଁ ଫଳ ପ୍ରାପ୍ତ ହୋଇଥାଏ, ତାହା କୋଟି ଯଜ୍ଞରୁ ମଧ୍ୟ ପ୍ରାପ୍ତ ହୋଇ ନ ଥାଏ ।। ୯୦ ।।

ତତ୍ କଥମିତ୍ୟତ୍ରାହ –

**ଶିବଯୋଗିନି ସନ୍ତୃପ୍ତେ ତୃପ୍ତୋ ଭବତି ଶଙ୍କରଃ ।**
**ତତ୍ତୃପ୍ତ୍ୟା ତନ୍ମୟଂ ବିଶ୍ୱଂ ତୃପ୍ତିମେତି ଚରାଚରମ୍ ।। ୯୧ ।।**

'ବ୍ରହ୍ମବିଦ୍ (ବେଦ) ବ୍ରହ୍ମୈବ ଭବତି[୧୩୭]' ଇତି ଶ୍ରୁତେଃ ଶିବଯୋଗିନଃ ସାକ୍ଷାଚ୍ଛିବରୂପତ୍ୱାଦ୍ ତତ୍ତୃପ୍ତ୍ୟା ଶିବସ୍ତୃପ୍ତୋ ଭବତି, ତତ୍ତୃପ୍ତ୍ୟା 'ସର୍ବୋ ବୈ ରୁଦ୍ରଃ' ଇତି ଶ୍ରୁତେସ୍ତନ୍ମୟଂ ବିଶ୍ୱଂ ତୃପ୍ତିମେତୀତ୍ୟର୍ଥଃ ।। ୯୧ ।।

---

୧୩୭. ମୁ. ଉ., ୨/୨/୯

– ଶିବଯୋଗୀ ତୃପ୍ତ ହେବା ପରେ ସ୍ୱୟଂ ଶିବ ତୃପ୍ତ ହୁଅନ୍ତି । ତାଙ୍କର ତୃପ୍ତିରେ ତାଙ୍କଠାରୁ ବ୍ୟାପ୍ତ ଚର-ଅଚର ସମସ୍ତ ବିଶ୍ୱ ତୃପ୍ତ ହୁଅନ୍ତି ।। ୯୧ ।।

ତସ୍ମାଦ୍ ସର୍ବପ୍ରଯତ୍ନେନ ଶିବଯୋଗିନ ଏବ ତୃପ୍ତି କୁର୍ଯ୍ୟାଦିତ୍ୟାହ –

**ତସ୍ମାଦ୍ ସର୍ବପ୍ରଯତ୍ନେନ ଯେନ କେନାପି କର୍ମଣା ।**
**ତୃପ୍ତିଂ କୁର୍ଯ୍ୟାଦ୍ ସଦାକାଲମନ୍ନାଦ୍ୟୈଃ ଶିବଯୋଗିନଃ ।। ୯୨ ।।**

ସର୍ବପ୍ରଯତ୍ନେନ ଯଯା କୟାଚିଦ୍ କ୍ରିୟୟା ସଦାକାଲମନ୍ନପାନାଦିନା ଶିବଯୋଗିନସ୍ତୃପ୍ତିଂ କୁର୍ଯ୍ୟାଦିତ୍ୟର୍ଥଃ ।। ୯୨ ।।

– ଏହି କାରଣରୁ ସମ୍ପୂର୍ଣ୍ଣ ପ୍ରୟାସ କରି ଯେକୌଣସି କର୍ମଦ୍ୱାରା ସବୁ ସମୟରେ ଅନ୍ନ ଆଦିଦ୍ୱାରା ଶିବଯୋଗୀକୁ ତୃପ୍ତ କରିବା ଉଚିତ୍ ।। ୯୨ ।।

ଅଥୈବଂ ରୂପସତ୍ପାତ୍ରେଷୁ ସହଜଦାନସମ୍ପନ୍ନଃ ସାକ୍ଷାଚ୍ଛିବ ଏବେତ୍ୟାହ –

**ନିରୁପାଧିକଚିଦ୍ରୂପପରାନନ୍ଦାତ୍ମବସ୍ତୁନି ।**
**ସମାପ୍ତଂ ସକଲଂ ଯସ୍ୟ ସ ଦାନୀ ଶଙ୍କରଃ ସ୍ୱୟମ୍ ।। ୯୩ ।।**

ସମ୍ପୂର୍ଣ୍ଣ ସଚ୍ଚିଦାନନ୍ଦଲକ୍ଷଣଗୁରୁଲିଙ୍ଗଜଙ୍ଗମାତ୍ମନି ପରମଶିବେ ଯସ୍ୟ ଶିବଭକ୍ତସ୍ୟ ଶରୀରାର୍ଥପ୍ରାଣରୂପଂ ସକଲଂ ବସ୍ତୁ ସମାପ୍ତଂ ସମର୍ପିତଂ ଭବେତ୍, ସ ସହଜଦାନୀ ସ୍ୱୟମେବ ଶିବ ଇତ୍ୟର୍ଥଃ ।। ୯୩ ।।

– କୌଣସି ଆକାଂକ୍ଷା ନ ଥିବା ଚିଦ୍ରୂପ ପରାନନ୍ଦତତ୍ତ୍ୱ ବିଷୟରେ ଅର୍ଥାତ୍ ତାଙ୍କ ନାମରେ ଯାହାର ସବୁକିଛି ସମାପ୍ତ ଅର୍ଥାତ୍ ସମର୍ପିତ ହୋଇଥାଏ, ସେହି ଦାନୀ ସ୍ୱୟଂ ଶଙ୍କର ହୋଇଯାଏ ।। ୯୩ ।।

ଅଥୈବମୁକ୍ତାଖିଳାଚାରସମ୍ପନ୍ନଃ ସହଜଦାନୀ ଶିବଭକ୍ତ ଏବ ମାହେଶ୍ୱରତାମୁପୈତୀତି ବୃତ୍ତେନାହ –

**ଉକ୍ତାଖିଳାଚାରପରାୟଣୋଽସୌ**
**ସଦା ବିତନ୍ୱନ୍ ସହଜଂ ତୁ ଦାନମ୍ ।**
**ବ୍ରହ୍ମାଦିସମ୍ପତ୍ସୁ ବିରକ୍ତଚିତ୍ତୋ**
**ଭକ୍ତୋ ହି ମାହେଶ୍ୱରତାମୁପୈତି ।। ୯୪ ।।**

ଅକ୍ଷରାର୍ଥସ୍ୟ ସ୍ପଷ୍ଟତ୍ୱାଦ୍ ଭାବାର୍ଥୋ ଲିଖ୍ୟତେ –

ଦେହଦ୍ରବ୍ୟ କ୍ଷେତ୍ରାଣି ଗୁରୁଲିଙ୍ଗ ଜଙ୍ଗମେଷୁ ସମର୍ପ୍ୟ ଶ୍ରୀଗୁରୁକରକମଳେ ସମୁତ୍ପତ୍ୟ ଜଙ୍ଗମଦେବତୀର୍ଥପ୍ରସାଦେନୈବ ଶରୀରଂ ଧୃତ୍ୱା ମହାଲିଙ୍ଗୈକ୍ୟାପେକ୍ଷୀ ଶିବଭକ୍ତୋ ମାହେଶ୍ୱରୀୟସଦାଚାରବାନ୍ ସନ୍ ମାହେଶ୍ୱର ଇତି ପ୍ରସିଦ୍ଧୋ ଭବେତ୍ ।। ୯୪ ।।

– ପୂର୍ବୋକ୍ତ ସମସ୍ତ ଆଚରଣକୁ କରୁଥିବା, ସଦା ସହଜଦାନ ଦେଉଥିବା ଏବଂ ବ୍ରହ୍ମା ଆଦିଙ୍କର ସମ୍ପତ୍ତି ପ୍ରତି ମଧ୍ୟ ମନରେ ଆଗ୍ରହ (ରାଗ) ନ ରଖିଥିବା ଏହି ଭକ୍ତ ମାହେଶ୍ୱର ହୋଇଯାଏ ।। ୯୪।।

ଇତି ଶ୍ରୀମଦ୍ ଷଟ୍‌ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାର୍ଯ୍ୟେଣ ବିରଚିତେ ସିଦ୍ଧାନ୍ତଶିଖାମଣୌ ମାହେଶ୍ୱରସ୍ୟ ନବବିଧସ୍ଥଲପ୍ରସଙ୍ଗୋ ନାମ ନବମ ପରିଚ୍ଛେଦଃ ।। ୯ ।।

ଇତି ଶ୍ରୀମଦ୍ ପଦବାକ୍ୟପ୍ରମାଣପାରାବାର ଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତ ଶିଖାମଣିବ୍ୟାଖ୍ୟାୟାଂ ଭକ୍ତିମାର୍ଗ କ୍ରିୟାସ୍ଥଳ ବର୍ଣ୍ଣନ ନାମ ନବମଃ ପରିଚ୍ଛେଦଃ ।। ୯ ।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ଭକ୍ତମାର୍ଗକ୍ରିୟାସ୍ଥଲବର୍ଣ୍ଣନ ନାମକ ନବମ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମ ଚତୁର୍ବେଦୀ କୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୯ ।।

ଇତି ଦାନତ୍ରୟସ୍ଥଲମ୍



# ଦଶମଃ ପରିଚ୍ଛେଦଃ

## ଅଥ ମାହେଶ୍ୱରସ୍ଥଲମ୍

ଅଥ ଭକ୍ତସ୍ଥଲନିରୂପଣାନନ୍ତରମଗସ୍ତ୍ୟଃ ଶ୍ରୀରେଣୁକଂ ପରିପୃଚ୍ଛତି –

ଅଗସ୍ତ୍ୟ ଉବାଚ

**ଭକ୍ତସ୍ଥଲଂ ସମାଖ୍ୟାତଂ ଭବତା ଗଣନାୟକ ।**
**କେନ ବା ଧର୍ମଭେଦେନ ଭକ୍ତୋ ମାହେଶ୍ୱରୋ ଭବେତ୍ ।। ୧ ।।**

ଭକ୍ତଃ ଶିବଭକ୍ତଃ କେନ ଧର୍ମଭେଦେନ ଆଚାରଭେଦେନେତ୍ୟର୍ଥଃ, ମାହେଶ୍ୱରଃ ସ୍ୟାଦିତି ପ୍ରଶ୍ନାର୍ଥଃ ।। ୧ ।।

– ମାହେଶ୍ୱରସ୍ଥଳ ବର୍ଣ୍ଣନ –

ଅଗସ୍ତ୍ୟ କହିଲେ – ହେ ଗଣନାୟକ, ଭକ୍ତସ୍ଥଳର ବର୍ଣ୍ଣନ ଆପଣ କଲେ । (ଏବେ କୁହନ୍ତୁ) କେଉଁ ଧର୍ମଭେଦରେ ଭକ୍ତ ମାହେଶ୍ୱର ହୁଏ ।। ୧ ।।

ରେଣୁକ ଉବାଚ

**କେବଲେ ସହଜେ ଦାନେ ନିଷ୍ଣାତଃ ଶିବତତ୍ପରଃ ।**
**ବ୍ରହ୍ମାଦିସ୍ଥାନବିମୁଖୋ ଭକ୍ତୋ ମାହେଶ୍ୱରଃ ସ୍ମୃତଃ ।। ୨ ।।**

କେବଲେ ସହଜେ ଦାନେ ନିଷ୍ଣାତଃ କୁଶଲଃ ସନ୍ ବ୍ରହ୍ମାଦିପଦନିସ୍ପୃହଃ ଶିବଭକ୍ତଃ ଶିବତତ୍ପରଃ ଶିବୈକନିଷ୍ଠଃ ସନ୍ ମାହେଶ୍ୱରଃ ସ୍ମୃତ ଇତ୍ୟର୍ଥଃ ।। ୨ ।।

– ରେଣୁକାଚାର୍ଯ୍ୟ କହିଲେ –

(ଯେଉଁ ବ୍ୟକ୍ତି) କେବଲ ସହଜ ଦାନରେ ନିଷ୍ଣାତ ଏବଂ ଶିବଭକ୍ତିରେ ନିରତ ତଥା ବ୍ରହ୍ମା ଆଦି ପଦର ଅଭିଳାଷୀ ନୁହେଁ, ସେହି ଭକ୍ତକୁ ମାହେଶ୍ୱର କୁହାଯାଏ ।। ୨ ।।

ତଦେବ ସୂଚୟତି –

**ଭକ୍ତେର୍ଯଦା ସମୁତ୍କର୍ଷୋ ଭବେଦ୍ ବୈରାଗ୍ୟଗୌରବାତ୍ ।**
**ତଦା ମାହେଶ୍ୱରଃ ପ୍ରୋକ୍ତୋ ଭକ୍ତଃ ସ୍ଥିରବିବେକବାନ୍ ।। ୩ ।।**

ଭକ୍ତେଃ ଶିବଭକ୍ତେଃ ସମୁତ୍କର୍ଷଃ ସମୁଚିତୋତ୍କର୍ଷୋ ବୈରାଗ୍ୟଗୌରବାଦ୍ ବୈରାଗ୍ୟ–ମହତ୍ତ୍ୱାଦ୍ ଯଦା କାଲେ ଭବେତ୍, ତଦା ତସ୍ମିନ୍ କାଲେ ସ୍ଥିରବିବେକବାନ୍ ସ୍ଥିରୀଭୂତ–ନିତ୍ୟାନିତ୍ୟବସ୍ତୁବିବେକବାନ୍ ଶିବଭକ୍ତୋ ମାହେଶ୍ୱର ଇତି ପ୍ରୋକ୍ତ ଇତ୍ୟର୍ଥଃ ।। ୩ ।।

– ଯେତେବେଳେ ବୈରାଗ୍ୟର ଅଧିକତା ରୁ ଭକ୍ତିର ଉତ୍କର୍ଷ ହୁଏ, ସେତେବେଳେ ସେହି ସ୍ଥିର ବିବେକବାଲା ଭକ୍ତ ମାହେଶ୍ୱର କୁହାଯାଏ ।। ୩ ।।

ନନ୍ୱସ୍ୟାପି ସ୍ଥଳଭେଦାଃ ସନ୍ତି କିମିତ୍ୟତ୍ର ତଦ୍‌ଭେଦମୁପଦିଶତି –

**ମାହେଶ୍ୱରସ୍ଥଳଂ ବକ୍ଷ୍ୟେ ଯଥୋକ୍ତଂ ଶମ୍ଭୁନା ପୁରା ।**
**ମାହେଶ୍ୱରପ୍ରଶଂସାଦୌ ଲିଙ୍ଗନିଷ୍ଠା ତତଃ ପରମ୍ ।। ୪ ।।**
**ପୂର୍ବାଶ୍ରୟନିରାସଶ୍ଚ ତଥା ଦ୍ୱୈତନିରାକୃତିଃ ।**
**ଆହ୍ୱାନବର୍ଜନଂ ପଶ୍ଚାଦଷ୍ଟମୂର୍ତ୍ତିନିରାକୃତିଃ ।। ୫ ।।**
**ସର୍ବଗତ୍ୱନିରାସଶ୍ଚ ଶିବତ୍ୱଂ ଶିବଭକ୍ତୟୋଃ ।**
**ଏବଂ ନବବିଧଂ ପ୍ରୋକ୍ତଂ ମାହେଶ୍ୱରମହାସ୍ଥଳମ୍ ।। ୬ ।।**

ପୁରା ପୂର୍ବକାଳେ ଶିବେନ ଯଥୋକ୍ତଂ ତଥା ମାହେଶ୍ୱରସ୍ଥଳଭେଦଂ ବକ୍ଷେ, ଶୃଣ୍ୱିତି ଶେଷଃ । ଆଦୌ ମାହେଶ୍ୱରପ୍ରଶଂସାସ୍ଥଳମ୍, ତତଃପରଂ ତଦନନ୍ତରଂ ଲିଙ୍ଗନିଷ୍ଠାସ୍ଥଳମ୍, ତଦନନ୍ତରଂ ପୂର୍ବାଶ୍ରୟନିରସନସ୍ଥଳମ୍, ତଥା ତଦନନ୍ତରମ୍ ଅଦ୍ୱୈତନିରସନସ୍ଥଳମ୍, ପଶ୍ଚାଦାହ୍ୱାନନିରସନସ୍ଥଳମ୍, ଅନନ୍ତରମଷ୍ଟମୂର୍ତ୍ତିନିରସନସ୍ଥଳମ୍, ଅନନ୍ତରଂ ସର୍ବଗତ୍ୱନିରାସନ-ସ୍ଥଳମ୍, ଅନନ୍ତରମଷ୍ଟମୂର୍ତ୍ତିନିରସନସ୍ଥଳମ୍, ଅନନ୍ତରଂ ସର୍ବଗତ୍ୱନିରାସନସ୍ଥଳମ୍, ଅନନ୍ତରଂ ଶିବଜଗନ୍ମୟସ୍ଥଳମ୍, ଅଥ ଭକ୍ତଦେହିକ ଲିଙ୍ଗସ୍ଥଳମ୍ । ଏବଂ ମାହେଶ୍ୱର ମହାସ୍ଥଳଂ ନବବିଧଂ ନବପ୍ରକାରବଦିତି ପ୍ରୋକ୍ତଂ କଥିତମିତ୍ୟର୍ଥଃ । ଅତ୍ର ପୁରା ଶମ୍ଭୁନା ଯଥୋକ୍ତଂ ତଥା ବକ୍ଷ୍ୟ ଇତ୍ୟନେନୋକ୍ତଂ ବକ୍ଷ୍ୟମାଣଂ ଚ ସର୍ବଂ ନ ସ୍ୱ କପୋଳକଳ୍ପିତମିତି ସୂଚିତମ୍ । ଅତ୍ରାଷ୍ଟମୂର୍ତ୍ତିତ୍ୱ-ନିରସନାନନ୍ତରମାହ୍ୱାନ ନିରସନଂ ବକ୍ତୁମୁଚିତମିତି କେଷାଞ୍ଚିଦାଶୟଃ ପରାସ୍ତଃ, ଶିବୋକ୍ତକ୍ରମ-ବିରୋଧାଦିତି, ତଥାପି ଶିବସ୍ୟ ବ୍ୟାପକତ୍ୱାଦାହ୍ୱାନଂ ନ ସମ୍ଭବତୀତି ନୋକ୍ତମ୍, କିନ୍ତୁ ସ୍ୱେଷ୍ଟଲିଙ୍ଗ ପ୍ରତିପତ୍ତିବିରୋଧାଦ୍ ପୁନରାହ୍ୱାନଂ ନ ସମ୍ଭବତୀତି କଥିତତ୍ୱାନ୍ନ ଶଙ୍କାବକାଶଃ ।। ୫–୬ ।।

– ଯେପରି ପୂର୍ବେ ଭଗବାନ୍ ଶିବ ମାହେଶ୍ୱର ସ୍ଥଳ ବିଷୟରେ କହିଛନ୍ତି (ମୁଁ) ବତାଇବି । ପ୍ରଥମେ ମାହେଶ୍ୱରସ୍ଥଳର ପ୍ରଶଂସା, ତା'ପରେ ଲିଙ୍ଗାର୍ଚ୍ଚନରେ ନିଷ୍ଠା ଏବଂ ପୂର୍ବ ଆଶ୍ରମର ତ୍ୟାଗ, ସେହିପରି ଅଦ୍ୱୈତର ନିରାକରଣ, ଆହ୍ୱାନବର୍ଜନ, ଅଷ୍ଟମୂର୍ତ୍ତିର ନିରାକରଣ ତଥା ସର୍ବଗତ୍ୱର ନିରାସ, ଶିବଜଗନ୍ମୟ ସ୍ଥଳ ଏବଂ ଶେଷରେ ଭକ୍ତଦେହିକ ଲିଙ୍ଗସ୍ଥଳ – ଏହିପରି ମାହେଶ୍ୱର ମହାସ୍ଥଳ ନଅ ପ୍ରକାରର କୁହାଯାଇଛି ।। ୪–୬ ।।

ଅଥୋଦ୍ଦେଶ କ୍ରମେଣ ତଦବାନ୍ତରସ୍ଥଳାନାଂ ଲକ୍ଷଣଂ ବକ୍ଷ୍ୟେ, ଶ୍ରୂୟତାମିତ୍ୟାହ –

**ଆଦିତଃ କ୍ରମଶୋ ବକ୍ଷ୍ୟେ ସ୍ଥଳଭେଦସ୍ୟ ଲକ୍ଷଣମ୍ ।**
**ସମାହିତେନ ମନସା ଶ୍ରୂୟତାଂ ଭବତା ମୁନେ ।। ୭ ।।**

ସ୍ପଷ୍ଟମ୍ ।। ୭ ।।

– ହେ ମୁନି, (ମୁଁ) ସ୍ଥଳଭେଦର ଲକ୍ଷଣ ପ୍ରାରମ୍ଭରୁ କହିବି । ଆପଣ ମନଯୋଗ ପୂର୍ବକ ଶୁଣନ୍ତୁ ।। ୭।।

ଅତ୍ର – 'ବିଶ୍ୱାଧିକୋ ରୁଦ୍ରୋ ମହର୍ଷିଃ । ହିରଣ୍ୟଗର୍ଭଂ ଜନୟାମାସ ପୂର୍ବଂ ସ ନୋ ବୁଦ୍ଧ୍ୟା ଶୁଭୟା ସଂଯୁନକ୍ତୁ'[୧୩୮] ଇତି ଶ୍ୱେତାଶ୍ୱତରାଦିଶ୍ରୁତ୍ୟନୁସାରେଣ ସପ୍ତଭିଃ ସୂତ୍ରୈର୍ମହେଶ୍ୱରପ୍ରଶଂସାପୂର୍ବକଂ ମାହେଶ୍ୱରସ୍ୱରୂପଂ ପ୍ରପଞ୍ଚେନ ପ୍ରକାଶୟତି –

**ବିଶ୍ୱସ୍ମାଦଧିକୋ ରୁଦ୍ରୋ ବିଶ୍ୱାନୁଗ୍ରହକାରକଃ ।**
**ଇତି ଯସ୍ୟ ସ୍ଥିରା ବୁଦ୍ଧିଃ ସ ବୈ ମାହେଶ୍ୱରଃ ସ୍ମୃତଃ ।। ୮ ।।**

ସମସ୍ତଦେବଦାନବାଦିବିଶ୍ୱାନୁଗ୍ରାହକଃ ରୁଦ୍ରଃ 'ଏକ ଏବ (ଏକୋ ହି) ରୁଦ୍ରୋ ନ ଦ୍ୱିତୀୟୋଦ୍ଧବତସ୍ଥେ ଦ୍ୱିତୀୟାୟ ତସ୍ଥୁଃ'[୧୩୯] ଇତି ଶ୍ରୁତି ପ୍ରସିଦ୍ଧରୁଦ୍ରଃ, ବିଶ୍ୱସ୍ମାତ୍ 'ବିଶ୍ୱଂ ନାରାୟଣଂ ହରିମ୍' ସ ଇତି ଶ୍ରୁତିପ୍ରସିଦ୍ଧବିଶ୍ୱରୂପନାରାୟଣାଦ୍ ଅଧିକ ଇତି ଯସ୍ୟ ବୁଦ୍ଧିର୍ଦୃଢା, ସ ବୈ ମାହେଶ୍ୱର ଇତି ସ୍ମୃତ ଇତ୍ୟର୍ଥଃ ।। ୮ ।।

– ଭଗବାନ୍ ଶିବ ବିଶ୍ୱଠାରୁ ଅଧିକ ଅଟନ୍ତି । ସେ ହେଉଛନ୍ତି ବିଶ୍ୱ ଉପରେ ଅନୁଗ୍ରହ କରିଲାବାଲା – ଏହିପରି ଯାହାଙ୍କର ବୁଦ୍ଧି (ଧାରଣା) ନିଶ୍ଚିତ ହୋଇଯାଏ, ତାହାଙ୍କୁ ମାହେଶ୍ୱର କୁହାଯାଏ ।। ୮ ।।

ଅଥ 'ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ[୧୪୦]' ଇତି ଶ୍ରୁତ୍ୟର୍ଥମନୁସରନ୍ ମାହେଶ୍ୱରସ୍ୱରୂପମାହ –

**ବ୍ରହ୍ମାଦ୍ୟୈର୍ମଳିନପ୍ରାୟୈର୍ନିର୍ମଳେ ପରମେଶ୍ୱରେ ।**
**ସାମ୍ୟୋକ୍ତିଂ ଯୋ ନ ସହତେ ସ ବୈ ମାହେଶ୍ୱରାଭିଧଃ ।। ୯ ।।**

'ବ୍ରହ୍ମବିଷ୍ଣୁରୁଦ୍ରେନ୍ଦ୍ରାସ୍ତେ ସମ୍ପ୍ରସୂୟନ୍ତେ' ଇତି ଶ୍ରୁତେର୍ବ୍ରହ୍ମାଦୀନାଂ ଜନନମରଣ-ପରିପୀଡ଼ିତତ୍ୱେନ ସମଳତ୍ୱାତ୍, 'ନ କାରଣମ୍' ଇତି ଶ୍ରୁତେରେତତ୍ କାରଣୀଭୂତଶିବସ୍ୟା-ଜାତତ୍ୱେନ ନିର୍ମଳତ୍ୱାତ୍, 'କାରଣଂ ତୁ ଧ୍ୟେୟଃ ସର୍ବୈଶ୍ୱର୍ଯ୍ୟସମ୍ପନ୍ନଃ ସର୍ବେଶ୍ୱରଶ୍ଚ ଶମ୍ଭୁରାକାଶମଧ୍ୟେ' ଇତ୍ୟଗ୍ରେଶ୍ରୂୟମାଣତ୍ୱାତ୍ ତୈଃ ସହ ସାମ୍ୟୋକ୍ତିଂ ଯୋ ନ ସହତେ, ସ ମାହେଶ୍ୱରାଖ୍ୟ ଇତ୍ୟର୍ଥଃ ।। ୯ ।।

– ଯିଏ ମଳିନପ୍ରାୟ ବ୍ରହ୍ମା ଆଦିଙ୍କ ସହିତ ନିର୍ମଳ ପରମେଶ୍ୱରଙ୍କର ତୁଳନାକୁ ସହି ପାରେନି, ତାହାର ନାମ ମାହେଶ୍ୱର ଅଟେ ।। ୯ ।।

---

୧୩୮. ଶ୍ୱେ. ଉ., ୩/୪
୧୩୯. ଶ୍ୱେ. ଉ., ୩/୨
୧୪୦. ଶ୍ୱେ. ଉ., ୬/୮

ଅଥ – 'ଈଶାନଃ ସର୍ବବିଦ୍ୟାନାମୀଶ୍ୱରଃ ସର୍ବଭୂତାନାଂ ବ୍ରହ୍ମାଧିପତିର୍ବ୍ରହ୍ମଣୋଽଧିପତିର୍ବ୍ରହ୍ମା ଶିବୋ ମେ ଅସ୍ତୁ ସଦାଶିବୋମ୍'[୧୪୧] ? ଇତି ଈଶାନମନ୍ତ୍ରାର୍ଥମ୍ –

ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।
ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ[୧୪୨] ।।

ଇତି ଭଗବଦ୍‌ଗୀତାର୍ଥଂ ଚାନୁସ୍ମରନ୍ ମାହେଶ୍ୱରସ୍ୱରୂପଂ ପ୍ରକାଶୟତି –

**ଈଶ୍ୱରଃ ସର୍ବଭୂତାନାଂ ବ୍ରହ୍ମାଦୀନାଂ ମହାନିତି ।**
**ବୁଦ୍ଧିଯୋଗାତ୍ ତଦାସକ୍ତୋ ଭକ୍ତୋ ମାହେଶ୍ୱରଃ ସ୍ମୃତଃ ।। ୧୦ ।।**

ବ୍ରହ୍ମାଦୀନାଂ ଚତୁର୍ମୁଖପ୍ରଭୃତୀନାଂ ସର୍ବଭୂତାନାଂ ସମସ୍ତପଶୁପ୍ରାଣିନାମ୍ ଈଶ୍ୱରଃ ପ୍ରେରକୀଭୂତପରମେଶ୍ୱର ଏବ ଏକ ମହାନ୍ ଶ୍ରେଷ୍ଠ ଇତି ବୁଦ୍ଧିଯୋଗାତ୍ ତଦାସକ୍ତଃ ମହେଶ୍ୱରାସକ୍ତୋ ଭକ୍ତଃ ଶିବଭକ୍ତୋ ମାହେଶ୍ୱର ଇତି ସ୍ମୃତ ଇତ୍ୟର୍ଥଃ ।। ୧୦ ।।

– 'ବ୍ରହ୍ମା ଆଦି ସମସ୍ତ ପ୍ରାଣୀ ମଧ୍ୟରେ ପରମେଶ୍ୱର ମହାନ୍ ଅଟନ୍ତି' – ଏହିପରି ବିଚାରରେ ଯେଉଁ ଭକ୍ତ ସେହି ପରମେଶ୍ୱରଙ୍କଠାରେ ଆସକ୍ତ ରହେ, ତାକୁ ମାହେଶ୍ୱର କୁହାଯାଏ ।। ୧୦ ।।

ଅଥ ଶିବ ଏକ ଏକୋ ମୁକ୍ତିଦ ଇତି ଯୋ ଜାନାତି ସ ମାହେଶ୍ୱର ଇତି ସୂତ୍ରଦ୍ୱୟେନ କଥୟତି –

**ବ୍ରହ୍ମାଦିଦେବତାଜାଲଂ ମୋହିତଂ ମାୟୟା ସଦା ।**
**ଅଶକ୍ତଂ ମୁକ୍ତିଦାନେ ତୁ କ୍ଷୟାତିଶୟସଂଯୁତମ୍ ।। ୧୧ ।।**
**ଅନାଦିମୁକ୍ତୋ ଭଗବାନେକ ଏବ ମହେଶ୍ୱରଃ ।**
**ମୁକ୍ତିଦଶ୍ଚେତି ଯୋ ବେଦ ସ ବୈ ମାହେଶ୍ୱରଃ ସ୍ମୃତଃ ।। ୧୨ ।।**

କ୍ଷୟାତିଶୟସଂଯୁତଂ ଜନନମରଣାତିଶୟେନ ସଂଯୁକ୍ତଂ ବ୍ରହ୍ମବିଷ୍ଣ୍ୱାଦି ଦେବତାନୀକଂ ନିରନ୍ତଂ ମାୟୟା ପରମେଶ୍ୱରସ୍ୱାତନ୍ତ୍ର୍ୟାପରପର୍ଯ୍ୟାୟମାୟାଶକ୍ତ୍ୟା ମୋହିତମ୍ ଅନ୍ଧୀକୃତଂ ସଦ୍ ମୁକ୍ତିଦାନେ ତୁ ପରାପରମୁକ୍ତିପ୍ରଦାନେ ଅଶକ୍ତମ୍ ଅସମର୍ଥମ୍ । ଅନାଦିମୁକ୍ତୋ ନିତ୍ୟମୁକ୍ତୋ ଭଗବାନ୍ ଷଡ୍‌ଗୁଣୈଶ୍ୱର୍ଯ୍ୟସମ୍ପନ୍ନୋ ମହେଶ୍ୱରଃ 'ତତ୍ ପରଂ ବ୍ରହ୍ମ (ଯତ୍ ପରଂ ବ୍ରହ୍ମ) ସ ଏକଃ (ଯ ଏକଃ) ସ ଏକୋ ରୁଦ୍ରଃ ସ ଈଶାନଃ ସ ଭଗବାନ୍ ସ ମହେଶ୍ୱରଃ ସ ମହାଦେବଃ'[୧୪୩] ? ଇତ୍ୟଥର୍ବଶିରଃ ପ୍ରସିଦ୍ଧପରମେଶ୍ୱର ଏକ ଏବ ମୁକ୍ତିଦଶ୍ଚେତି

୧୪୧. ନାରାୟଣୋପ. ୪/୨୧ ୧୪୨. ଭ. ଗୀ., ୧୮/୬୧
୧୪୩. ଅଥ. ଉ., ୨/୩

ପରାପରମୁକ୍ତିପ୍ରଦ ଇତି ଯୋ ବେଦ ଜାନାତି, ସ ବୈ ମାହେଶ୍ୱର ଇତି ସ୍ମୃତ ଇତ୍ୟର୍ଥଃ ।। ୧୧-୧୨ ।।

– ବ୍ରହ୍ମା ଆଦି ଦେବତାଙ୍କର ସମୂହ ସର୍ବଦା ମାୟାଗ୍ରସ୍ତ ଅଟେ । କ୍ଷୟ ଏବଂ ଅତିଶୟରେ ଯୁକ୍ତ ସେହି ସମୂହ ମୁକ୍ତି ଦେବା ପାଇଁ ଅସମର୍ଥ ଅଟନ୍ତି । କେବଳ ଭଗବାନ୍ ଶିବ ହିଁ ଅନାଦିମୁକ୍ତ ଅଟନ୍ତି ଏବଂ ସେ ମୁକ୍ତି ପ୍ରଦାତା ବୋଲି ଯିଏ ଜାଣେ, ତାକୁ ମାହେଶ୍ୱର କୁହାଯାଏ ।। ୧୧-୨ ।।

ଅଥ ବ୍ରହ୍ମାଦିମାହୈଶ୍ୱର୍ଯ୍ୟଂ ତୃଣବଦ୍ ଜ୍ଞାତ୍ୱା ଶିବାନନ୍ଦ ତତ୍ପରୋ ବୀରମାହେଶ୍ୱର ଇତ୍ୟାହ ସୂତ୍ରଦ୍ୱୟେନ –

କ୍ଷୟାତିଶୟସଂଯୁକ୍ତା ବ୍ରହ୍ମବିଷ୍ଣ୍ୱାଦିସମ୍ପଦଃ ।
ତୃଣବନ୍ମନ୍ୟତେ ଯୁକ୍ତ୍ୟା ବୀରମାହେଶ୍ୱରଃ ସଦା ।। ୧୩ ।।
ଶବ୍ଦସ୍ପର୍ଶାଦିସମ୍ପନ୍ନେ ସୁଖଲେଶେ ତୁ ନିଃସ୍ପୃହଃ ।
ଶିବାନନ୍ଦେ ସମୁତ୍କଣ୍ଠୋ ବୀରମାହେଶ୍ୱରୋ ଭବେତ୍ ।। ୧୪ ।।

ବିନାଶାତିଶୟେନ (ଯାଭ୍ୟାଂ) ସଂଯୁକ୍ତା ବ୍ରହ୍ମାବିଷ୍ଣ୍ୱାଦିସମ୍ପଦୋ ବୀରମାହେଶ୍ୱରଃ ଶିବଭକ୍ତୋ ଯୁକ୍ତ୍ୟା ଅନିତ୍ୟମିତି ବୁଦ୍ଧ୍ୟା ତୃଣବତ୍ ସଦା ମନୁତେ ଜାନାତି । ତସ୍ମାତ୍ ଶବ୍ଦସ୍ପର୍ଶାଦିସମ୍ପନ୍ନେ ସୋପାଧିକେ ସୁଖଲେଶେ ତୁଚ୍ଛସୁଖେ ନିଃସ୍ପୃହଃ ସନ୍ ଶିବାନନ୍ଦେ ନିତ୍ୟସୁଖେ ସମୁତ୍କଣ୍ଠଃ ପ୍ରୀତିମାନ୍ ବୀରମାହେଶ୍ୱରୋ ଭବେତ୍ ସ୍ୟାଦିତ୍ୟର୍ଥଃ ।। ୧୩-୧୪ ।।

– ବ୍ରହ୍ମା, ବିଷ୍ଣୁ ଆଦିଙ୍କର ଐଶ୍ୱର୍ଯ୍ୟ କ୍ଷୟଶୀଳ ଏବଂ ଅତିଶୟଯୁକ୍ତ ଅଟେ । ବୀର ମାହେଶ୍ୱର ତାହାକୁ ସଦା ତୃଣବତ୍ (ତୁଚ୍ଛ) ମନେ କରେ । ସେ ଶବ୍ଦ, ସ୍ପର୍ଶ ଆଦିରେ ଯୁକ୍ତ କ୍ଷଣିକ ସୁଖର ଇଚ୍ଛା ରଖେ ନାହିଁ ତଥା ଶିବାନନ୍ଦର ପ୍ରାପ୍ତି ପାଇଁ ଉତ୍କଣ୍ଠିତ ରହେ । ଏହିପରି ବ୍ୟକ୍ତି ବୀର ମାହେଶ୍ୱର ହୋଇଥାଏ ।। ୧୩-୧୪ ।।

ଅଥ ତଦାଚାରଭେଦସ୍ଥିତିଂ ଚ ଷଡ୍‌ଭିଃ ସୂତ୍ରୈଃ ପ୍ରତିପାଦୟତି –

ପରସ୍ତ୍ରୀସଙ୍ଗନିର୍ମୁକ୍ତଃ ପରଦ୍ରବ୍ୟପରାଙ୍ମୁଖଃ ।
ଶିବାର୍ଥକାର୍ଯ୍ୟସମ୍ପନ୍ନଃ ଶିବାଗମପରାୟଣଃ ।। ୧୫ ।।
ଶିବସ୍ତୁତିରସାସ୍ୱାଦମୋଦମାନମନାଃ ଶୁଚିଃ ।
ଶିବୋତ୍କର୍ଷପ୍ରମାଣାନାଂ ସମ୍ପାଦନସମୁଦ୍ୟତଃ ।। ୧୬ ।।
ନିର୍ମମୋ ନିରହଙ୍କାରୋ ନିରସ୍ତକ୍ଲେଶପଞ୍ଜରଃ ।
ଅସ୍ପୃଷ୍ଟମଦସମ୍ବନ୍ଧୋ ମାତ୍ସର୍ଯ୍ୟାବେଶବର୍ଜିତଃ ।। ୧୭ ।।

**ନିରସ୍ତମଦନୋନ୍ମେଷୋ ନିର୍ଧୂତକ୍ରୋଧବିପ୍ଲବଃ ।**
**ସଦା ସନ୍ତୁଷ୍ଟହୃଦୟଃ ସର୍ବପ୍ରାଣିହିତେ ରତଃ ।। ୧୮ ।।**
**ନିବାରଣସମୁଦ୍ୟୋଗୀ ଶିବକାର୍ଯ୍ୟବିରୋଧିନାମ୍ ।**
**ସହଚାରୀ ସଦାକାଲଂ ଶିବୋତ୍କର୍ଷାଭିଧାୟିଭିଃ ।। ୧୯ ।।**
**ଶିବାପକର୍ଷସମ୍ପ୍ରାପ୍ତୌ ପ୍ରାଣତ୍ୟାଗେଽପ୍ୟଶଙ୍କିତଃ ।**
**ଶିବୈକନିଷ୍ଠଃ ସର୍ବାତ୍ମା ବୀରମାହେଶ୍ୱରୋ ଭବେତ୍ ।। ୨୦ ।।**

ନିରସ୍ତକ୍ଲେଶପଞ୍ଜରୋ ନିବାରିତାବିଦ୍ୟା(ଦି)କ୍ଲେଶସମୂହବାନ୍, ନିର୍ଧୂତକ୍ରୋଧବିପ୍ଲବଃ ନିବାରିତକ୍ରୋଧବାଧାବାନ୍, ଶିବୈକନିଷ୍ଠଃ ଶିବଲିଙ୍ଗୈକନିଷ୍ଠଃ, ସର୍ବାତ୍ମା ପୂର୍ଣ୍ଣୋଽହଂ ଭାବବାନ୍, ନିରହଙ୍କାରଃ ପରିଚ୍ଛିନ୍ନଶରୀରାଦ୍ୟହଂଭାବଶୂନ୍ୟଃ। ଶିଷ୍ଟଂ ସ୍ପଷ୍ଟମ୍ । ଏବମାଦିବିଶେଷଣ-ବିଶିଷ୍ଟଃ ଶ୍ରୀବୀରଶୈବୋ ମାହେଶ୍ୱରଃ ସ୍ୟାଦିତ୍ୟର୍ଥଃ । ଅତ୍ର ନିରସ୍ତକ୍ଲେଶପଞ୍ଜକ ଇତି ପାଠାନ୍ତରମ୍ ।। ୧୫-୨୦ ।।

– ପରସ୍ତ୍ରୀ ସମାଗମ କରୁ ନଥିବା, ଅନ୍ୟର ଧନକୁ ଚାହୁଁ ନ ଥିବା, ଶିବଙ୍କ ପାଇଁ କାର୍ଯ୍ୟ କରୁଥିବା, ଶୈବାଗମର ଅଧ୍ୟୟନ କରୁଥିବା, ଶିବସ୍ତୁତି ରସର ଆସ୍ୱାଦ ପାଇ ପ୍ରସନ୍ନ ହେଉଥିବା, ପବିତ୍ର, ଶିବଙ୍କର ମହାନତାର ପ୍ରମାଣଗୁଡ଼ିକ ଏକତ୍ରିତ କରିବାରେ ଉଦ୍ୟତ, (ଆସକ୍ତି) ମମତା ରହିତ, ଅହଙ୍କାର ଶୂନ୍ୟ, (ଅବିଦ୍ୟା ଅସ୍ମିତା ଆଦି) କ୍ଲେଶର ବନ୍ଧନରୁ ମୁକ୍ତ, ମଦର ସମ୍ବନ୍ଧରୁ ଅସ୍ପୃଷ୍ଟ, ମାତ୍ସର୍ଯ୍ୟର ଆବେଶରୁ ରହିତ, କାମଭାବନା ଶୂନ୍ୟ, କ୍ରୋଧର ପ୍ରଭାବରୁ ଦୂର, ସଦା ସନ୍ତୋଷଯୁକ୍ତ, ସମସ୍ତ ପ୍ରାଣୀଙ୍କର ହିତରେ ରତ, ଶିବଙ୍କର କାର୍ଯ୍ୟରେ ବିରୋଧ କରୁଥିବା ବ୍ୟକ୍ତିଙ୍କର ନିବାରଣରେ ରତ, ଶିବୋତ୍କର୍ଷର ପ୍ରଚାରରେ ରତ ବ୍ୟକ୍ତିମାନଙ୍କର ସହ ସହଚାରୀ, ଶିବଙ୍କର ଅପକର୍ଷ ସ୍ଥଳରେ ପ୍ରାଣତ୍ୟାଗ କରିବା ପାଇଁ ତତ୍ପର, କେବଳ ଶିବଙ୍କଠାରେ ନିଷ୍ଠା ରଖିଥିବା ବ୍ୟକ୍ତି ବୀରମାହେଶ୍ୱର ଅଟେ ।। ୧୫-୨୦ ।।

### ଇତି ମାହେଶ୍ୱରପ୍ରଶଂସାସ୍ଥଳମ୍

### ଅଥ ଲିଙ୍ଗନିଷ୍ଠାସ୍ଥଳମ୍

ଅଥ ଅନେନ ମାହେଶ୍ୱରେଣ ବିଧୀୟମାନାଂ ଲିଙ୍ଗନିଷ୍ଠାଂ ନବଭିଃ ସୂତ୍ରୈଃ ପ୍ରତିପାଦୟତି –

**ଅସ୍ୟ ମାହେଶ୍ୱରସ୍ୟୋକ୍ତଂ ଲିଙ୍ଗନିଷ୍ଠାମହାସ୍ଥଳମ୍ ।**
**ପ୍ରାଣାତ୍ୟୟେଽପି ସମ୍ପନ୍ନେ ଯଦତ୍ୟାଜ୍ୟଂ ବିଧୀୟତେ ।। ୨୧ ।।**

ଯଦ୍ ଯଲ୍ଲିଙ୍ଗନିଷ୍ଠାସ୍ଥଲଂ ପ୍ରାଣାତ୍ୟୟେ ସମ୍ପନ୍ନେଽପି ପ୍ରାଣସଙ୍କଟେ ପ୍ରାପ୍ତେ ସତ୍ୟପି ଅତ୍ୟାଜ୍ୟଂ ତ୍ୟକ୍ତୁମଯୋଗ୍ୟଂ ବିଧୀୟତେ, ତଲ୍ଲିଙ୍ଗନିଷ୍ଠାମହାସ୍ଥଲମ୍ ଅସ୍ୟ ମାହେଶ୍ୱରସ୍ୟ ଶିବଲିଙ୍ଗୈକତତ୍ପରସ୍ୟ ମାହେଶ୍ୱରସ୍ୟ ଉକ୍ତଂ କଥିତମିତ୍ୟର୍ଥଃ ।। ୨୧ ।।

– ଲିଙ୍ଗନିଷ୍ଠାସ୍ଥଳ ବର୍ଣ୍ଣନ – ପ୍ରାଣ ସଙ୍କଟ ସ୍ଥିତିରେ ମଧ୍ୟ ଯେଉଁ ଲିଙ୍ଗର ତ୍ୟାଗର ବିଧାନ ନାହିଁ, ତାହାକୁ ଏହି ମାହେଶ୍ୱରର ଲିଙ୍ଗନିଷ୍ଠାସ୍ଥଳ କୁହାଯାଏ ।। ୨୧ ।।

କୀଦୃଶୋଽୟଂ ପ୍ରାଣସଙ୍କଟ ଇତ୍ୟତ୍ର –

ଭବେଦ୍ ପ୍ରାଣପରିତ୍ୟାଗଚ୍ଛେଦନଂ ଶିରସୋଽପି ବା ।
ନ ତ୍ୱନଭ୍ୟର୍ଚ୍ଚ୍ୟ ଭୁଞ୍ଜୀୟାଦ୍ ଭଗବନ୍ତଂ ତ୍ରିୟମ୍ବକମ୍ ।।

ଇତି ଶିବଧର୍ମବଚନାନୁସାରେଣ କଥୟତି –

**ଅପଗଚ୍ଛତୁ ସର୍ବସ୍ୱଂ ଶିରଚ୍ଛେଦନମସ୍ତୁ ବା ।**
**ମାହେଶ୍ୱରୋ ନ ମୁଞ୍ଚେତ ଲିଙ୍ଗପୂଜାମହାବ୍ରତମ୍ ।। ୨୨ ।।**

ସ୍ପଷ୍ଟମ୍ ।। ୨୨ ।।

– ସମସ୍ତ ଧନ–ସମ୍ପତ୍ତି ଚାଲିଯାଉ ଅଥବା ମୁଣ୍ଡ କଟିଯାଉ, ମାହେଶ୍ୱର ଲିଙ୍ଗପୂଜା ରୂପକ ମହାବ୍ରତକୁ କେବେ ତ୍ୟାଗ କରେ ନାହିଁ ।। ୨୨ ।।

ଅଥ ଯେ ଶିବପୂଜାବ୍ୟତିରେକେଣ ନ ଭୁଞ୍ଜନ୍ତି, ତେଷାଂ ହସ୍ତେ କରତଲାମଲ–କବନ୍ମୋକ୍ଷଲକ୍ଷ୍ମୀରୁଲ୍ଲସତୀତ୍ୟାହ –

**ଲିଙ୍ଗପୂଜାମକୃତ୍ୱା ତୁ ଯେ ନ ଭୁଞ୍ଜନ୍ତି ମାନବାଃ ।**
**ତେଷାଂ ମହାତ୍ମନାଂ ହସ୍ତେ ମୋକ୍ଷଲକ୍ଷ୍ମୀରୁପସ୍ଥିତା ।। ୨୩ ।।**

ମୋକ୍ଷଲକ୍ଷ୍ମୀରୁପସ୍ଥିତା ବର୍ତ୍ତତ ଇତ୍ୟର୍ଥଃ । ଇଦଂ ଲିଙ୍ଗନିଷ୍ଠାୟାଃ ଫଳମିତ୍ୟୁକ୍ତଂ ଭବତି ।। ୨୩ ।।

– ଯେଉଁ ମନୁଷ୍ୟ ଲିଙ୍ଗପୂଜା ନ କରି ଭୋଜନ କରନ୍ତି ନାହିଁ, ସେହି ମହାତ୍ମାଙ୍କ ହାତରେ ମୋକ୍ଷଲକ୍ଷ୍ମୀ ସଦା ଉପସ୍ଥିତ ରହନ୍ତି ।। ୨୩ ।।

ଅଥେମମର୍ଥମେବ ସୂତ୍ରଦ୍ୱୟେନ ବିଶେଷୟତି –

**କିମନ୍ୟୈର୍ଧର୍ମକଲିଲୈଃ କୀକଷାର୍ଥପ୍ରଦାୟିଭିଃ ।**
**ସାକ୍ଷାନ୍ମୋକ୍ଷପ୍ରଦଃ ଶମ୍ଭୋର୍ଧର୍ମୋ ଲିଙ୍ଗାର୍ଚ୍ଚନାତ୍ମକଃ ।। ୨୪ ।।**

ଶମ୍ଭୋଃ ଶିବସ୍ୟ ଲିଙ୍ଗାର୍ଚ୍ଚନାତ୍ମକୋ ଧର୍ମଃ ସାକ୍ଷାନ୍ମୋକ୍ଷପ୍ରଦଃ । ତସ୍ମାଦ୍ ଅନ୍ୟୈଃ ଶିବଲିଙ୍ଗପୂଜାତିରିକ୍ତୈଃ କୀକଷାର୍ଥପ୍ରଦାୟିଭିଃ କୁତ୍ସିତାର୍ଥଦାୟିଭିଃ ଧର୍ମକଲିଲୈଃ କ୍ଷୁଦ୍ରଧର୍ମୈଃ କିମ୍ ? କିଂ ପ୍ରୟୋଜନମିତ୍ୟର୍ଥଃ ।। ୨୪ ।।

– କ୍ଷୁଦ୍ର ଘୃଣାସ୍ପଦ ଅର୍ଥକୁ ପ୍ରଦାନ କରୁଥିବା ଅନ୍ୟ ମଳିନ ଧର୍ମରୁ କ'ଣ ଲାଭ ? ଶମ୍ଭୁଙ୍କର ଲିଙ୍ଗାର୍ଚ୍ଚନାତ୍ମକ ଧର୍ମ ସାକ୍ଷାତ୍ ମୋକ୍ଷଦେବାବାଲା ଅଟେ ।। ୨୪।।

ଅଥ ଲିଙ୍ଗାର୍ପିତାନ୍ନପାନପ୍ରାଶନମହତ୍ତ୍ୱମାହ –

**ଅର୍ପିତେନାନ୍ନପାନେନ ଲିଙ୍ଗେ ନିୟମପୂଜିତେ ।**
**ଯେ ଦେହବୃତ୍ତିଂ କୁର୍ବନ୍ତି ମହାମାହେଶ୍ୱରା ହି ତେ ।। ୨୫।।**

ହି ପ୍ରସିଦ୍ଧମ୍ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୫।।

– ଲିଙ୍ଗକୁ ନିୟମିତ ଭାବରେ ପୂଜା କରି ଅର୍ପିତ ଅନ୍ନ-ପାନଦ୍ୱାରା ଯେ ଦେହକୁ ଜୀବିତ ରଖନ୍ତି, ସେ ହେଉଛନ୍ତି ମହା ମାହେଶ୍ୱର ।। ୨୫।।

ଅଥ – 'ଯଦ୍ଧି ମନସା ଧ୍ୟାୟତି ତଦ୍ୱାଚା ବଦତି ତତ୍କର୍ମଣା କରୋତି' ଇତି ଶ୍ରୁତ୍ୟନୁସାରେଣ ତ୍ରିକରଣପୂର୍ବକଂ ଶିବଲିଙ୍ଗନିଷ୍ଠାଃ ଶିବା ଏବେତ୍ୟାହ –

**ଚିନ୍ମୟେ ଶାଙ୍କରେ ଲିଙ୍ଗେ ସ୍ଥିରଂ ଯେଷାଂ ମନଃ ସଦା ।**
**ବିମୁକ୍ତେତରସର୍ବାର୍ଥଂ ତେ ଶିବା ନାତ୍ର ସଂଶୟଃ ।। ୨୬।।**

ଯେଷାଂ ମନୋ ବିମୁକ୍ତତରସର୍ବାର୍ଥଂ ତ୍ୟକ୍ତସ୍ୱର୍ଗାଦିତୁଚ୍ଛଫଳାଭିଲାଷଂ ସତ୍ ଚିଦ୍ରୂପେ ଶିବଲିଙ୍ଗେ ସଦା ସ୍ଥିରଂ ତେ ଶିବା ଭୂରୁଦ୍ରାଃ, ଅତ୍ର ଅସ୍ମିନ୍ନର୍ଥେ ନ ସଂଶୟ ଇତ୍ୟର୍ଥଃ ।। ୨୬।।

– ଯାହାଙ୍କର ମନ ଚିନ୍ମୟ ଶାଙ୍କର ଲିଙ୍ଗରେ ସଦା ସ୍ଥିର ରହେ, (ମୋକ୍ଷ) ବ୍ୟତୀତ ସମସ୍ତ ବିଷୟକୁ ତ୍ୟାଗ କରିଥାନ୍ତି, ସେ ଶିବ ଅଟନ୍ତି, ଏଥିରେ ସନ୍ଦେହ ନାହିଁ ।। ୨୬।।

ନନ୍ୱସ୍ମିନ୍ ଚିଦ୍ରୂପଲିଙ୍ଗେ ମନୋମାତ୍ରବିଶ୍ରାନ୍ତିରୁକ୍ତେତ୍ୟାଶଙ୍କ୍ୟ ସୂତ୍ରାନ୍ତରେଣ କରଣତ୍ରୟବିଶ୍ରାନ୍ତିଂ ଚ ଦର୍ଶୟତି –

**ଲିଙ୍ଗେ ଯସ୍ୟ ମନୋ ଲୀନଂ ଲିଙ୍ଗସ୍ତୁତିପରା ଚ ବାକ୍ ।**
**ଲିଙ୍ଗାର୍ଚ୍ଚନପରୌ ହସ୍ତୌ ସ ରୁଦ୍ରୋ ନାତ୍ର ସଂଶୟଃ ।। ୨୭।।**

ଇତି ସ୍ପଷ୍ଟମ୍ ।। ୨୭।।

– ଯାହାର ମନ ଲିଙ୍ଗରେ ଲୀନ, ଯାହାର ବାଣୀ ଲିଙ୍ଗର ସ୍ତୁତି କରିବାରେ ନିରତ, ଯାହାଙ୍କର ଦୁଇ ହାତ ଲିଙ୍ଗାର୍ଚ୍ଚନରେ ବ୍ୟସ୍ତ, ସେ ରୁଦ୍ର ଅଟନ୍ତି – ଏଥିରେ ସନ୍ଦେହ ନାହିଁ ।। ୨୭।।

ଏବଂ ଲିଙ୍ଗନିଷ୍ଠସ୍ୟାଗ୍ନିହୋତ୍ରାଦିକର୍ମଣା ପ୍ରୟୋଜନଂ ନାସ୍ତୀତ୍ୟାହ –

**ଲିଙ୍ଗନିଷ୍ଠସ୍ୟ କିଂ ତସ୍ୟ କର୍ମଣା ସ୍ୱର୍ଗହେତୁନା ।**
**ନିତ୍ୟାନନ୍ଦଶିବପ୍ରାପ୍ତିର୍ଯସ୍ୟ ଶାସ୍ତ୍ରେଷୁ ନିଶ୍ଚିତା ।। ୨୮।।**

ଯସ୍ୟ ଲିଙ୍ଗନିଷ୍ଠସ୍ୟ ନିତ୍ୟାନନ୍ଦଶିବପଦପ୍ରାପ୍ତିଃ ଶାସ୍ତ୍ରେଷୁ ବେଦାଗମପୁରାଣେଷୁ ନିଶ୍ଚିତେତି ତସ୍ୟ ସ୍ୱର୍ଗହେତୁନା ଅଗ୍ନିହୋତ୍ରାଦିକର୍ମଣା କିମ୍ ? କିଂ ପ୍ରୟୋଜନମ୍ ନ କିଞ୍ଚିତ୍ ପ୍ରୟୋଜନମିତ୍ୟର୍ଥଃ ।। ୨୮ ।।

– ଯେଉଁ ଭକ୍ତଙ୍କର ଶିବାନନ୍ଦ ପ୍ରାପ୍ତି ଶାସ୍ତ୍ର ଅନୁସାରେ ନିଶ୍ଚିତ ଅଟେ, ଲିଙ୍ଗାର୍ଚ୍ଚନରେ ରତ ତାଙ୍କର (ଭକ୍ତ) ସ୍ୱର୍ଗହେତୁକ କର୍ମ କରିବାରେ କ'ଣ ଲାଭ ?

ଅଥାସ୍ୟ ମହତ୍ତ୍ୱଂ ପ୍ରତିପାଦୟତି –

**ଲିଙ୍ଗନିଷ୍ଠାପରଂ ଶାନ୍ତଂ ଭୂତିରୁଦ୍ରାକ୍ଷସଂଯୁତମ୍ ।**
**ପ୍ରଶଂସନ୍ତି ସଦାକାଳଂ ବ୍ରହ୍ମାଦ୍ୟା ଦେବତା ମୁଦା ।। ୨୯ ।।**

ସ୍ପଷ୍ଟମ୍ ।। ୨୯ ।।

– ବ୍ରହ୍ମା ଆଦି ଦେବତା ଲିଙ୍ଗରେ ନିଷ୍ଠା ରଖୁଥିବା, ଶାନ୍ତ, ଭସ୍ମ ଏବଂ ରୁଦ୍ରାକ୍ଷ ଧାରଣ କରୁଥିବା (ଭକ୍ତ)ର ଆନନ୍ଦର ସହିତ ସଦା ପ୍ରଶଂସା କରିଥାନ୍ତି ।। ୨୯ ।।

ଇତି ଲିଙ୍ଗନିଷ୍ଠାସ୍ଥଳମ୍

## ଅଥ ପୂର୍ବାଶ୍ରୟନିରସନସ୍ଥଳମ୍

ଅଥ –

ଗୁରୁସଂସ୍କୃତଭାବଃ ସନ୍ ଗୁରୁନିର୍ମିତଦେହବାନ୍ ।
ବିସ୍ମୃତ୍ୟ ପୂର୍ବଦୁର୍ଭାବଂ ତଦଧୀନଃ ସମାଚରେତ୍ ।।

ଇତି ଯୋଗଜାଗମବଚନାନୁସାରେଣ ତସ୍ୟ ଲିଙ୍ଗନିଷ୍ଠସ୍ୟ ପ୍ରାତିକୂଲ୍ୟେନ ପ୍ରାପ୍ତ-ପୂର୍ବାଶ୍ରୟନିରସନସ୍ଥଳଂ ସପ୍ତଭିଃ ସୂତ୍ରୈଃ ପ୍ରତିପାଦୟତି –

**ଲିଙ୍ଗୈକନିଷ୍ଠହୃଦୟଃ ସଦା ମାହେଶ୍ୱରୋ ଜନଃ ।**
**ପୂର୍ବାଶ୍ରୟଗତାନ୍ ଧର୍ମାଂସ୍ତ୍ୟଜେଦ୍ ସ୍ୱାଚାରରୋଧକାନ୍ ।। ୩୦ ।।**

ନିରନ୍ତରଂ ଶିବଲିଙ୍ଗୈକନିଷ୍ଠଚିତ୍ତୋ ବୀରମାହେଶ୍ୱରଃ ସ୍ୱାଚାର ରୋଧକାନ୍ ସ୍ୱସମୟାଚାର ବିରୋଧିନଃ ପୂର୍ବାଶ୍ରୟନିଷ୍ଠାନ୍ ଧର୍ମାନ୍ ପ୍ରାକୃତାଚାରାନ୍ ତ୍ୟଜେଦିତ୍ୟର୍ଥଃ ।। ୩୦ ।।

– (ପୂର୍ବାଶ୍ରୟ ନିରସନ ସ୍ଥଳବର୍ଣ୍ଣନ) – ଏକମାତ୍ର ଲିଙ୍ଗାର୍ଚ୍ଚନରେ ନିଷ୍ଠା ରଖୁଥିବା ମାହେଶ୍ୱର ଜନ ନିଜର ଆଚାର (ଶୈବାଚାର)ର ବିରୋଧୀ ପୂର୍ବ ସ୍ୱୀକୃତ ଧର୍ମକୁ ତ୍ୟାଗ କରିବା ଉଚିତ୍ ।। ୩୦ ।।

ତର୍ହ୍ୟୟଂ କୀଦୃଶ ଇତ୍ୟତ୍ରାହ –

ସ୍ୱଜାତିକୁଳଜାନ୍ ଧର୍ମାନ୍ ଲିଙ୍ଗନିଷ୍ଠାବିରୋଧିନଃ ।
ତ୍ୟଜନ୍ ମାହେଶ୍ୱରୋ ଜ୍ଞେୟଃ ପୂର୍ବାଶ୍ରୟନିରାସକଃ ।। ୩୧ ।।

ଲିଙ୍ଗନିଷ୍ଠାବିରୋଧିନୋ ଲିଙ୍ଗନିଷ୍ଠାପ୍ରତିକୂଳାନ୍ ସ୍ୱଜାତିକୁଳଜାନ୍ ବ୍ରାହ୍ମଣତ୍ୱାଦିଜାତି-କୁଳାଦିକୁଳପ୍ରାପ୍ତାନ୍ ଧର୍ମାନ୍ ଜାତପ୍ରେତାଶୌଚାଦୀନ୍ ତ୍ୟଜନ୍ ବୀରମାହେଶ୍ୱରଃ ପୂର୍ବାଶ୍ରୟ ନିରାସକ ଇତି ଜ୍ଞାତୁଂ ଯୋଗ୍ୟ ଇତ୍ୟର୍ଥଃ ।। ୩୧ ।।

– ନିଜର ଜାତି ନିଜର କୁଳର ଧର୍ମ ଅର୍ଥାତ୍ ଜନନାଶୌଚ ମରଣାଶୌଚାଦି ଯଦି ତାହା ଲିଙ୍ଗନିଷ୍ଠାର ବିରୋଧୀ, ତେବେ ସେ ସବୁ ତ୍ୟାଗ କରିଥିବା ପୂର୍ବାଶ୍ରୟ ନିରାସକ ଭକ୍ତ ମାହେଶ୍ୱର ନାମରେ ଜଣାଯାଏ ।। ୩୧ ।।

ନନୁ ପୂର୍ବାଶ୍ରୟପ୍ରାପ୍ତନିତ୍ୟନୈମିତ୍ତିକ କର୍ମ ପରିତ୍ୟାଗୋ ପ୍ରତ୍ୟବାୟ ଶ୍ରବଣାତ୍ କଥଂ ତଦ୍ଧର୍ମାସ୍ତ୍ୟଜନୀୟା ଇତ୍ୟତ୍ରାହ –

ଶିବସଂସ୍କାରଯୋଗେନ ବିଶୁଦ୍ଧାନାଂ ମହାତ୍ମନାମ୍ ।
କିଂ ପୂର୍ବକାଳିକୈର୍ଧର୍ମୈଃ ପ୍ରାକୃତାନାଂ ହି ତେ ମତାଃ ।। ୩୨ ।।

ପୂର୍ବୋକ୍ତଦାନକ୍ଷପଣଲକ୍ଷଣଦୀକ୍ଷାରୂପଶିବସଂସ୍କାର ସମ୍ବନ୍ଧେନ ଲିଙ୍ଗନିଷ୍ଠୟା ଚ ବିଧୂତବୃତ୍ତବର୍ତ୍ତିଷ୍ୟମାଣସକଳକଲ୍ମଷତ୍ୱେନ ନିର୍ମଳାନାଂ ଶିବଶରଣାନାଂ ପୂର୍ବାଶ୍ରୟପ୍ରାପ୍ତ ନିତ୍ୟନୈମିତ୍ତିକାଦି କର୍ମଭିଃ କିଂ ପ୍ରୟୋଜନମ୍ ? ନ କିଞ୍ଚିତ୍ ପ୍ରୟୋଜନମିତ୍ୟର୍ଥଃ । ନନୁ ପ୍ରତ୍ୟବାୟ ନିବୃତ୍ତିରେବ ପ୍ରୟୋଜନମିତି ଚେନ୍ନ ।

ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ ।
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍[୧୪୪] ।।

ଇତି ଭଗବତୈବ ଭାଷିତ ତ୍ୱାତ୍ । ଅସ୍ୟାୟମର୍ଥଃ – 'ଅତ୍ୟାଶ୍ରମିଭ୍ୟଃ ପରମଂ ପବିତ୍ରମ୍' ଇତି ଶ୍ରୁତିସିଦ୍ଧାନ୍ତିତବର୍ଣ୍ଣାଶ୍ରମେ ଇହ ଅଭିକ୍ରମ ଆତ୍ମାଭିମୁଖୀକରଣପ୍ରବୀଣଗୁରୁକାରୁଣ୍ୟ ପ୍ରାପ୍ତଭୂତିଧାରଣାଦ୍ୟାଚାରକ୍ରମଃ, ତସ୍ୟ ନାଶୋ ନାସ୍ତି ବିସ୍ମୃତିଶୂନ୍ୟତ୍ୱେନ ତଦେକନିଷ୍ଠୟା ସଦା ବିଧୀୟମାନତ୍ୱେନ ବିଚ୍ଛେଦୋ ନାସ୍ତୀତ୍ୟର୍ଥଃ । ନନ୍ୱେବଂ ଚେତ୍, ନିତ୍ୟନୈମିତ୍ତିକ-କର୍ମଲୋପାତ୍ ପ୍ରତ୍ୟବାୟଃ ସ୍ୟାଦିତ୍ୟତ୍ରାହ–ପ୍ରତ୍ୟବାୟୋ ନ ବିଦ୍ୟତ ଇତି । କୁତ ଇତ୍ୟତ୍ରାହ – ଅସ୍ୟ ଧର୍ମସ୍ୟ ଶିବାନୁସନ୍ଧାନାଙ୍ଗଭୂତଭୂତିଧାରଣାଦି ଧର୍ମସ୍ୟ ସ୍ୱଳ୍ପମପି ଲେଶମାତ୍ରମପି ମହତୋ ଭୟାଦ୍ ମହାପାତକାଦିଭୟାଦ୍ ତ୍ରାୟତ ଇତି ଯଥା ପୂର୍ବାଶ୍ରମଧର୍ମପରିତ୍ୟାଗେ ସନ୍ନ୍ୟାସିନାଂ ପ୍ରତ୍ୟବାୟୋ ନାସ୍ତି, ତଥା ଶିବାଶ୍ରୟନିଷ୍ଠାନାଂ ପୂର୍ବାଶ୍ରୟଧର୍ମପରିତ୍ୟାଗେ

୧୪୪. ଭ. ଗୀ., ୨/୪୦

ପ୍ରତ୍ୟବାୟୋ ନାସ୍ତୀତି ଭାବଃ । ତେ ପୂର୍ବାଶ୍ରୟଧର୍ମାଃ ପ୍ରାକୃତାନାଂ ହି ମାୟାସମ୍ବନ୍ଧିନାମେବ ମତାଃ ପ୍ରୋକ୍ତା ଇତି ହି ପ୍ରସିଦ୍ଧମ୍ ।। ୩୨ ।।

– ଶିବସଂସ୍କାର ଯୋଗରେ ଶୁଦ୍ଧ ହୋଇଥିବା ମହାତ୍ମାଙ୍କର ପୂର୍ବେ ବର୍ତ୍ତମାନ ଏବଂ ଅନୁଷ୍ଠିତ ଧର୍ମରେ କ'ଣ ପ୍ରୟୋଜନ ? ସେହି ଧର୍ମ ପ୍ରାକୃତ ଅର୍ଥାତ୍ ସାଧାରଣ ଲୋକଙ୍କ ପାଇଁ କୁହାଯାଇଛି ।। ୩୨ ।।

ବିଶେଷ – ଯେପରି ସନ୍ନ୍ୟାସୀ ସନ୍ନ୍ୟାସ ପୂର୍ବାଶ୍ରମ ଧର୍ମ ତ୍ୟାଗରେ ଦୋଷ ଦୁଷ୍ଟ ହୁଏ ନାହିଁ, ସେହିପରି ଶୈବଧର୍ମ ସ୍ୱୀକାର କରିଥିବା ବ୍ୟକ୍ତି ଯଦି ଅନ୍ୟ ଧର୍ମାଚରଣକୁ ତ୍ୟାଗ କରେ, ତେବେ ସେ ପ୍ରାୟଶ୍ଚିତ କରିବା ଦରକାର ନାହିଁ, ଏହି କଥାକୁ ବୁଝାଇବାକୁ ଯାଇ ଟୀକାକାର 'ନେହାଭିକ୍ରମନାଶୋଽସ୍ତି...........' ଏହି ଗୀତାବାକ୍ୟକୁ ଉଦ୍ଧୃତ କରିଛନ୍ତି। ତସ୍ମାତ୍ –

**ଶିବସଂସ୍କାରଯୋଗେନ ଶିବଧର୍ମାନୁଷଙ୍ଗିଣାମ୍ ।**
**ପ୍ରାକୃତାନାଂ ନ ଧର୍ମେଷୁ ପ୍ରବୃତ୍ତିରୁପପଦ୍ୟତେ ।। ୩୩ ।।**

ନୋପପଦ୍ୟତେ, ନ ଜାୟତ ଇତ୍ୟର୍ଥଃ ।। ୩୩ ।।

– ଶିବସଂସ୍କାର ଯୋଗରେ ଶିବଧର୍ମର ପାଳନ କରୁଥିବା ପ୍ରାକୃତ ଜନର (ଅନ୍ୟ) ଧର୍ମରେ ପ୍ରବୃତ୍ତି ହୁଏ ନାହିଁ ।। ୩୩ ।।

ନନୁ ମର୍ତ୍ତ୍ୟେଷୁ ଦ୍ୱୈବିଧ୍ୟଂ କଥମିତ୍ୟତ୍ରାହ –

**ବିଶୁଦ୍ଧାଃ ପ୍ରାକୃତାଶ୍ଚେତି ଦ୍ୱିବିଧା ମାନୁଷାଃ ସ୍ମୃତାଃ ।**
**ଶିବସଂସ୍କାରିଣଃ ଶୁଦ୍ଧାଃ ପ୍ରାକୃତା ଇତରେ ମତାଃ ।। ୩୪ ।।**

ସ୍ପଷ୍ଟମ୍ ।। ୩୪ ।।

– ମନୁଷ୍ୟ ଦୁଇପ୍ରକାରର ଅଟନ୍ତି – ବିଶୁଦ୍ଧ ଏବଂ ପ୍ରାକୃତ । ଶିବସଂସ୍କାରରେ ଯୁକ୍ତ ମନୁଷ୍ୟ ଶୁଦ୍ଧ ଅଟନ୍ତି । ଅନ୍ୟମାନେ ପ୍ରାକୃତ ଜନ ଅଟନ୍ତି ।। ୩୪ ।।

ନନୁ ବର୍ଣ୍ଣାଶ୍ରମଧର୍ମେଷୁ ଦ୍ୱୈବିଧ୍ୟଂ ନ ଦୃଶ୍ୟତ ଇତ୍ୟତ୍ରାହ –

**ବର୍ଣ୍ଣାଶ୍ରମାଦିଧର୍ମାଣାଂ ବ୍ୟବସ୍ଥା ହି ଦ୍ୱିଧା ମତା ।**
**ଏକା ଶିବେନ ନିର୍ଦ୍ଦିଷ୍ଟା ବ୍ରହ୍ମଣା କଥିତାଽପରା ।। ୩୫ ।।**

ସ୍ପଷ୍ଟମ୍ ।। ୩୫ ।।

– ବର୍ଣ୍ଣାଶ୍ରମାଦି ଧର୍ମର ବ୍ୟବସ୍ଥା ଦୁଇପ୍ରକାରର ମନା ଯାଇଛି – ଗୋଟିଏ ଶିବଦ୍ୱାରା ନିର୍ଦ୍ଦିଷ୍ଟ ଅଟେ, ଅନ୍ୟଟି ବ୍ରହ୍ମାଦ୍ୱାରା ନିର୍ଦ୍ଦିଷ୍ଟ ।। ୩୫ ।।

ତର୍ହି କୋ ଧର୍ମଃ କସ୍ୟେତ୍ୟତ୍ରାହ –

ଶିବୋକ୍ତଧର୍ମନିଷ୍ଠା ତୁ ଶିବାଶ୍ରମନିଷେବିଣାମ୍ ।
ଶିବସଂସ୍କାରହୀନାନାଂ ଧର୍ମଃ ପୈତାମହଃ ସ୍ମୃତଃ ।। ୩୬ ।।

ସ୍ପଷ୍ଟମ୍ ।। ୩୬ ।।

– ଶୈବାଶ୍ରମରେ ରହୁଥିବା ବ୍ୟକ୍ତିଙ୍କର ଶିବୋକ୍ତ ଧର୍ମରେ ନିଷ୍ଠା ହୋଇଥାଏ । ଶିବସଂସ୍କାରରୁ ହୀନ ବ୍ୟକ୍ତିମାନଙ୍କର ଧର୍ମ ବ୍ରହ୍ମାଙ୍କଦ୍ୱାରା ନିର୍ଦ୍ଦିଷ୍ଟ ଅଟେ ।

ଇତି ପୂର୍ବାଶ୍ରମନିରସନସ୍ଥଳମ୍

## ଅଥ ସର୍ବାଦ୍ୱୈତନିରସନସ୍ଥଳମ୍

ଅଥ ମାହେଶ୍ୱରୋ ଯଥା ଲିଙ୍ଗନିଷ୍ଠାବିରୋଧୀତ୍ୱାତ୍ ପୂର୍ବାଶ୍ରୟନିରାସକ୍ତଃ ତଥା ଲିଙ୍ଗନିଷ୍ଠାବିରୋଧୀତ୍ୱାତ୍ ସର୍ବାଦ୍ୱୈତନିରାସକୋଽପି ଭବେଦିତି ତେନ ବିଧୀୟମାନ ସର୍ବାଦ୍ୱୈତ ନିରସନସ୍ଥଳଂ ପ୍ରତିପାଦୟତି –

ପୂଜ୍ୟପୂଜକୟୋର୍ଲିଙ୍ଗଜୀବୟୋର୍ଭେଦବର୍ଜନେ ।
ପୂଜାକର୍ମାଦ୍ୟସମ୍ପତ୍ତେର୍ଲିଙ୍ଗନିଷ୍ଠାବିରୋଧତଃ ।। ୩୭ ।।
ସର୍ବାଦ୍ୱୈତବିଚାରସ୍ୟ ଜ୍ଞାନାଭାବୋ ବ୍ୟବସ୍ଥିତେଃ ।
ଭବେନ୍ମାହେଶ୍ୱରଃ କର୍ମୀ ସର୍ବାଦ୍ୱୈତନିରାସକଃ ।। ୩୮ ।।

ପୂଜ୍ୟପୂଜକୟୋଃ ଶିବଲିଙ୍ଗଭକ୍ତୟୋଃ ଭେଦାଭାବେ ସତି ଲିଙ୍ଗନିଷ୍ଠା–ବିରୋଧାତ୍ ପୂଜାକର୍ମାଦିସମ୍ପତ୍ତ୍ୟଭାବାତ୍ ସର୍ବାଦ୍ୱୈତବିଚାରସ୍ୟ ବ୍ୟବସ୍ଥିତେଃ ବର୍ତ୍ତନସ୍ୟ ଜ୍ଞାନାଭାବେଽନୁପପନ୍ନତ୍ୱେ ସତି କର୍ମୀ ମାହେଶ୍ୱରଃ ଶିବଲିଙ୍ଗପୂଜାଦିକର୍ମନିଷ୍ଠବୀର–ମାହେଶ୍ୱରଃ ସର୍ବାଦ୍ୱୈତନିରାସକଃ ସ୍ୟାତ୍ 'ଯାବଦାୟୁସ୍ତ୍ରୟୋବନ୍ଦ୍ୟା ବେଦାନ୍ତୋ ଗୁରୁରୀଶ୍ୱରଃ' ଇତି ବେଦାନ୍ତବଚନାତ୍ 'କ୍ରିୟାଦ୍ୱୈତଂ ନ କର୍ତ୍ତବ୍ୟମ୍' ଇତି ସିଦ୍ଧାନ୍ତବଚନାଚ୍ଚ ଲିଙ୍ଗନିଷ୍ଠୋ ମାହେଶ୍ୱରଃ ସର୍ବାଦ୍ୱୈତଂ ନ କୁର୍ଯ୍ୟାଦିତି ଭାବଃ ।। ୩୭–୩୮ ।।

– ପୂଜ୍ୟ ପୂଜକ ଅର୍ଥାତ୍ ଲିଙ୍ଗ ଏବଂ ଜୀବର ଭେଦକୁ ଦୂର କରିବା, ପୂଜାକର୍ମାଦିର ଅପ୍ରାପ୍ତି, ଲିଙ୍ଗନିଷ୍ଠାର ବିରୋଧ, ସମସ୍ତ ଅଦ୍ୱୈତ ବିଚାରର ବ୍ୟବସ୍ଥା ଜ୍ଞାନର ଅଭାବ ହେଲେ କର୍ମୀ (ବ୍ୟକ୍ତି) ସର୍ବାଦ୍ୱୈତ ନିରାସକ ମାହେଶ୍ୱର ହୋଇଥାଏ ।। ୩୭–୩୮ ।।

ଅଥ ଭେଦେନ କ୍ରିୟମାଣପୂଜାପ୍ରକାରଃ କଥମିତ୍ୟତ୍ରାହ –

ପ୍ରେରକଂ ଶଙ୍କରଂ ବୁଦ୍ଧ୍ୱା ପ୍ରେର୍ଯ୍ୟମାତ୍ମାନମେବ ଚ ।
ଭେଦାତ୍ ତଂ ପୂଜୟେନ୍ନିତ୍ୟଂ ନ ଚାଦ୍ୱୈତପରୋ ଭବେତ୍ ।। ୩୯ ।।

ଜୀବାନାଂ ଧର୍ମାଧର୍ମଗୋଚରୀଭୂତ ବୁଦ୍ଧିବୃତ୍ତିପ୍ରେରକଃ ପରମେଶ୍ୱରଃ ତତ୍‌ପ୍ରେର୍ଯ୍ୟା ଜୀବା ଇତି ବୁଦ୍ଧ୍ୱା ଏବଂ ବିଧଭେଦାତ୍ ତଂ ପରମେଶ୍ୱରଂ ନିତ୍ୟଂ ପୂଜୟେତ୍ ଅଦ୍ୱୈତପରୋ ନ ଭବେତ୍, ପୂଜାବିରୋଧାଦିତି ।। ୩୯ ।।

– ଶଙ୍କରଙ୍କୁ ପ୍ରେରକ ତଥା ନିଜକୁ ପ୍ରେର୍ଯ୍ୟ ମାନି କରି ଭେଦଜ୍ଞାନ ପୂର୍ବକ ତାଙ୍କର ନିତ୍ୟ ପୂଜା କରିବା ଉଚିତ୍ । ଅଦ୍ୱୈତପରକ ହେବା ଉଚିତ୍ ନୁହେଁ ।। ୩୯ ।।

ଅଥ ପ୍ରକାରାନ୍ତରେଣ ଭେଦମୁପପାଦୟତି –

**ପତିଃ ସାକ୍ଷାନ୍ ମହାଦେବଃ ପଶୁରେଷ ତଦାଶ୍ରୟଃ ।**
**ଅନୟୋଃ ସ୍ୱାମି ଭୃତ୍ୟତ୍ୱମଭେଦେ କଥମିଷ୍ୟତେ ।। ୪୦ ।।**

ମହାଦେବଃ ପରମେଶ୍ୱରଃ 'ପତି ବିଶ୍ୱସ୍ୟ' ଇତି ସ୍ମୃତେଃ ପତିଃ ଜଗତ୍‌ପତିଃ, ତଦାଶ୍ରୟ ଏଷ ଜୀବଃ ପଶୁଃ, ଅନୟୋଃ ଶିବଜୀବରୂପପତିପଶ୍ୱୋଃ, ଅଭେଦେ ଭେଦାଭାବେ ସ୍ୱାମିଭୃତ୍ୟତ୍ୱଂ କଥମିଷ୍ୟତେ ଇଚ୍ଛାବିଷୟୀକ୍ରିୟତେ ? ନ କଥଞ୍ଚିଦପୀତି ସ୍ୱାମିଭୃତ୍ୟତ୍ୱ-ଲକ୍ଷଣଭେଦେନୈବ ପୂଜନୀୟ ଇତ୍ୟର୍ଥଃ ।। ୪୦ ।।

– ମହାଦେବ ସାକ୍ଷାତ୍ ପତି ଅଟନ୍ତି । ତାଙ୍କ ଅଧିନରେ ରହୁଥିବା ଏହି ଜୀବ ପଶୁ ଅଟେ । ଏହି ଦୁହିଁଙ୍କ ମଧ୍ୟରେ ସ୍ୱସ୍ୱାମୀଭାବ ସମ୍ବନ୍ଧ ଅଛି । ତେବେ ଅଭେଦ ମାନିଲେ ଏହା କିପରି ସମ୍ଭବ ହେବ ? ।। ୪୦ ।।

ନନ୍ୱୟଂ ଭେଦଭାବଃ କିୟତ୍‌ପର୍ଯ୍ୟନ୍ତମନୁବର୍ତ୍ତତ ଇତ୍ୟତ୍ରାହ –

**ସାକ୍ଷାତ୍‌କୃତଂ ପରଂ ତତ୍ତ୍ୱଂ ଯଦା ଭବତି ବୋଧତଃ ।**
**ତଦାଦ୍ୱୈତସମାପତ୍ତିର୍ଜ୍ଞାନହୀନସ୍ୟ ନ କ୍ୱଚିତ୍ ।। ୪୧ ।।**

ବୋଧତଃ ଶ୍ରୁତିଗୁରୁସ୍ୱାନୁଭବବୋଧତଃ ପରଂ ତତ୍ତ୍ୱଂ ପରଶିବପରବ୍ରହ୍ମାଖ୍ୟମହାଲିଙ୍ଗ ତତ୍ତ୍ୱଂ ଯଦା ସାକ୍ଷାତ୍‌କୃତଂ ଭବତି, ଦଶମଦୃଷ୍ଟାନ୍ତେନ ସ୍ୱାତ୍ମାଭେଦେନ ପ୍ରତ୍ୟକ୍ଷୀକୃତଂ ଭବତି, ତଦା ଅଦ୍ୱୈତ ସମାପ୍ତିରଦ୍ୱୈତସ୍ଫୂର୍ତ୍ତିଃ, ଜ୍ଞାନହୀନସ୍ୟ ଶ୍ରୁତିଗୁରୁସ୍ୱାନୁଭାବରହିତସ୍ୟ କେବଳକର୍ମଯୁତସ୍ୟ କ୍ୱଚିତ୍ କଦାଚିତ୍ କିଞ୍ଚିଦପି ନ ନାସ୍ତୀତ୍ୟର୍ଥଃ ।। ୪୧ ।।

– ଜ୍ଞାନ ହେତୁ ଯେତେବେଳେ ପରତତ୍ତ୍ୱର ସାକ୍ଷାତ୍‌କାର ହୋଇଯାଏ, ସେତେବେଳେ ଅଦ୍ୱୈତର ପ୍ରାପ୍ତି ହୋଇଥାଏ । ଜ୍ଞାନହୀନ ମନୁଷ୍ୟକୁ ଏହାର ପ୍ରାପ୍ତି କେବେ ହୋଇ ନଥାଏ ।। ୪୧ ।।

ନନୁ କର୍ମଣଃ କସ୍ମାନ୍ନାଦ୍ୱୈତସିଦ୍ଧିରିତ୍ୟତ୍ରାହ –

**ଭେଦସ୍ୟ କର୍ମହେତୁତ୍ୱାଦ୍ ବ୍ୟବହାରଃ ପ୍ରବର୍ତ୍ତତେ ।**
**ଲିଙ୍ଗପୂଜାଦିକର୍ମସ୍ଥୋ ନ ଚାଦ୍ୱୈତଂ ସମାଚରେତ୍ ।। ୪୨ ।।**

ଭେଦସ୍ୟ ବ୍ୟବହାରୋ ଜୀବେଶ୍ୱରଭେଦବ୍ୟବହାରଃ, କର୍ମହେତୁତ୍ୱାଦ୍ ଶିବପୂଜାଦିକ୍ରିୟା ହେତୁତ୍ୱେନ ପ୍ରବର୍ତ୍ତତେ, ଅତଃ ଶିବଲିଙ୍ଗପୂଜାଜପାଦିକର୍ମନିଷ୍ଠଃ ଅଦ୍ୱୈତଂ ନ ସମାଚରେତ୍। ତସ୍ମାଲ୍ଲିଙ୍ଗପୂଜାଦିକର୍ମନିଷ୍ଠସ୍ୟ ଅଦ୍ୱୈତବୋଧାଦିର୍ଭାବୋ ନାସ୍ତୀତ୍ୟର୍ଥଃ ।। ୪୨ ।।

– କର୍ମହେତୁ ଭେଦ ବ୍ୟବହାର ହୋଇଥାଏ । ତେଣୁ ଲିଙ୍ଗପୂଜାଦି କରୁଥିବା ବ୍ୟକ୍ତି ଅଦ୍ୱୈତ ଆଚରଣ କରିବା ଉଚିତ୍ ନୁହେଁ ।। ୪୨ ।।

ଅଥୋକ୍ତାର୍ଥମୁପସଂହରତି –

**ପୂଜାଦିବ୍ୟବହାରଃ ସ୍ୟାଦ୍ ଭେଦାଶ୍ରୟତୟା ସଦା ।**
**ଲିଙ୍ଗପୂଜାପରସ୍ତସ୍ମାନ୍ନାଦ୍ୱୈତେ ନିରତୋ ଭବେତ୍ ।। ୪୩।।**

ଲିଙ୍ଗପୂଜାନିଷ୍ଠଃ ବୀରମାହେଶ୍ୱରଃ ଅଦ୍ୱୈତେ ନିରତ ଆସକ୍ତୋ ନ ଭବେତ୍, ନ ସ୍ୟାଦିତ୍ୟର୍ଥଃ ।। ୪୩।।

– ଭେଦକୁ ଆଧାର କରି ପୂଜାଦି ବ୍ୟବହାର କରାଯାଇଥାଏ । ତେଣୁ ଲିଙ୍ଗପୂଜାରେ ରତ (ଭକ୍ତ) ଅଦ୍ୱୈତରେ ନିରତ ହେବା ଉଚିତ୍ ନୁହେଁ ।। ୪୩।।

**ଇତ୍ୟଦ୍ୱୈତନିରସନସ୍ଥଲମ୍ ।**

## ଅଥାହ୍ୱାନନିରସନସ୍ଥଲମ୍

ଅଥ ଶିବଲିଙ୍ଗପୂଜାର୍ଥମଦ୍ୱୈତଂ ନିରସ୍ୟ ଦ୍ୱୈତାଙ୍ଗୀକାରବାନ୍ ମାହେଶ୍ୱରଃ ଶୈବ ଇବ ପୂଜାର୍ଥଂ ଶିବଲିଙ୍ଗେ ଶିବଂ ନାବାହୟେଦିତ୍ୟାହ୍ୱାନନିରସନସ୍ଥଲଂ କଥୟତି –

**ଲିଙ୍ଗାର୍ଚ୍ଚନପରଃ ଶୁଦ୍ଧଃ ସର୍ବାଦ୍ୱୈତନିରାସକଃ ।**
**ସ୍ୱେଷ୍ଟଲିଙ୍ଗେ ଶିବାକାରେ ନ ତମାବାହୟେଚ୍ଛିବମ୍ ।। ୪୪।।**

ଲିଙ୍ଗାର୍ଚ୍ଚନପରଃ ଶିବଲିଙ୍ଗପୂଜାତତ୍ପରଃ ସନ୍ ସର୍ବାଦ୍ୱୈତନିରାସକଃ ଶୁଦ୍ଧଃ ନିତ୍ୟଶୁଦ୍ଧ–ବୀରମାହେଶ୍ୱରଃ ଶିବାକରେ ଶିବସ୍ୱରୂପବତି ସ୍ୱେଷ୍ଟଲିଙ୍ଗେ ତଂ ପ୍ରସିଦ୍ଧଂ ଶିବଂ ନାବାହୟେଦିତ୍ୟର୍ଥଃ ।। ୪୪।।

– ଲିଙ୍ଗାର୍ଚ୍ଚନରେ ରତ ସର୍ବାଦ୍ୱୈତର ନିଷେଧ କରୁଥିବା ପରିଶୁଦ୍ଧ (ବୀର ମାହେଶ୍ୱର) ଶିବରୂପୀ ନିଜର ଇଷ୍ଟ ଲିଙ୍ଗରେ ସେହି ଶିବଙ୍କର ଆବାହନ କରିବା ଉଚିତ୍ ନୁହେଁ ।। ୪୪।।

ଅଥ କସ୍ମାଦିତ୍ୟତ୍ର କାରଣମାହ –

**ଯଦା ଶିବକଳାଯୁକ୍ତଂ ଲିଙ୍ଗଂ ଦଦ୍ୟାନ୍ ମହାଗୁରୁଃ ।**
**ତଦାରଭ୍ୟ ଶିବସ୍ତତ୍ର ତିଷ୍ଠତ୍ୟାହ୍ୱାନମତ୍ର କିମ୍ ।। ୪୫।।**

ଅତ୍ର ଶିବଲିଙ୍ଗେ ଆହ୍ୱାନଂ କିଂ ପ୍ରୟୋଜନମ୍ ? ନ କିଞ୍ଚିଦ୍ ପ୍ରୟୋଜନମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୫ ।।

– (ଏହାର କାରଣ ହେଉଛି) ମହାଗୁରୁ ଯେଉଁଦିନ ଶିବକଳାଯୁକ୍ତ ଲିଙ୍ଗ (ଶିଷ୍ୟଙ୍କୁ) ଦିଅନ୍ତି, ସେହିଦିନଠାରୁ ଶିବ ସେଥିରେ ଅବସ୍ଥାନ କରନ୍ତି । ତେଣୁ ସେଥିରେ ତାଙ୍କର ଆବାହନର କ'ଣ ଆବଶ୍ୟକତା ?

ପୁନଶ୍ଚ କାରଣାନ୍ତରମାହ –

**ସସଂସ୍କାରେଷୁ ଲିଙ୍ଗେଷୁ ସଦା ସନ୍ନିହିତଃ ଶିବଃ ।**

**ତତ୍ରାହ୍ୱାନଂ ନ କର୍ତ୍ତବ୍ୟଂ ପ୍ରତିପତ୍ତିବିରୋଧକମ୍ ।। ୪୬ ।।**

ପୁନରାହ୍ୱାନଂ ପୂର୍ବାହ୍ୱାନବିରୋଧୀ, ତଦ୍ୱିସର୍ଜନାନନ୍ତରଭାବିତ୍ୱାଦିତି ଭାବଃ ।। ୪୬ ।।

– ସଂସ୍କାରଯୁକ୍ତ ଲିଙ୍ଗରେ ଶିବ ସର୍ବଦା ସନ୍ନିହିତ ରହନ୍ତି । ସେଥିରେ ଭକ୍ତି ଅଥବା ଜ୍ଞାନର ବିରୋଧୀ ଆବାହନ କରିବା ଉଚିତ୍ ନୁହେଁ ।। ୪୬ ।।

ଅଥାହ୍ୱାନାସମ୍ଭବାଦେବ ବିସର୍ଜନଂ ଚ ନାସ୍ତୀତ୍ୟାହ –

**ନାହ୍ୱାନଂ ନ ବିସର୍ଗଂ ଚ ସ୍ୱେଷ୍ଟଲିଙ୍ଗେ ତୁ କାରୟେତ୍ ।**

**ଲିଙ୍ଗନିଷ୍ଠାପରୋ ନିତ୍ୟମିତି ଶାସ୍ତ୍ରସ୍ୟ ନିଶ୍ଚୟଃ ।। ୪୭ ।।**

ସ୍ପଷ୍ଟମ୍ ।। ୪୭ ।।

– ଲିଙ୍ଗପୂଜାରେ ନିଷ୍ଠା ରଖୁଥିବା (ଭକ୍ତ)ଜନ ନିଜର ଇଷ୍ଟ ଲିଙ୍ଗରେ ଶିବଙ୍କର ଆହ୍ୱାନ ଅଥବା ବିସର୍ଜନ କରିବା ଉଚିତ୍ ନୁହେଁ । ଏହା ଶାସ୍ତ୍ରର ନିଶ୍ଚୟ ଅଟେ।। ୪୭ ।।

ଇତ୍ୟାହ୍ୱାନନିରସନସ୍ଥଲମ୍

## ଅଥ ଅଷ୍ଟମୂର୍ତ୍ତିନିରସନସ୍ଥଲମ୍

ଅଥ ଶିବଲିଙ୍ଗମେବ ଶିବ ଇତ୍ୟଭିପ୍ରାୟେଣାହ୍ୱାନଂ ନିରାକୃତ୍ୟ ପୃଥିବ୍ୟାଦ୍ୟଷ୍ଟ-ମୂର୍ତ୍ତିତ୍ୱଂ ଚ ନ ସମ୍ଭବତି, ଭେଦାଦିତି ତେନ ମାହେଶ୍ୱରେଣ ବିଧୀୟମାନାଷ୍ଟମୂର୍ତ୍ତିନିରସନ-ସ୍ଥଲଂ ପ୍ରଦର୍ଶୟତି –

**ଯଥାତ୍ମଶିବୟୋରୈକ୍ୟଂ ନ ମତଂ କର୍ମସଙ୍ଗିନଃ ।**

**ତଥା ଶିବାଦ୍ ପୃଥିବ୍ୟାଦେରଦ୍ୱୈତମପି ନେଷ୍ୟତେ ।। ୪୮ ।।**

କର୍ମସଙ୍ଗିନଃ ଶିବପୂଜାଦିକର୍ମନିଷ୍ଠସ୍ୟ ମାହେଶ୍ୱରସ୍ୟ ଆତ୍ମଶିବୟୋର୍ଜୀବଲିଙ୍ଗୟୋ ଐକ୍ୟମେକତ୍ୱଂ ଯଥା ନ ମତଂ ସମ୍ମତମ୍, ପୂଜ୍ୟପୂଜକବିବେକାସମ୍ଭବାଦ୍, ତଥା ଶିବାଦ୍ ଭୂମ୍ୟାଦେରଦ୍ୱୈତମଭେଦୋଽପି ନେଷ୍ୟତେ, ଭୂମ୍ୟାଦ୍ୟଷ୍ଟମୂର୍ତ୍ତିଷ୍ୱାତ୍ମନୋଽପି ପ୍ରବିଷ୍ଟତ୍ୱାଦିତି

ଭାବଃ ।। ୪୮ ।।

(ଅଷ୍ଟମୂର୍ତ୍ତିନିରସନସ୍ଥଳ ବର୍ଣ୍ଣନ) – ଯେପରି (ଶିବପୂଜା, ଲିଙ୍ଗଧାରଣ ଆଦି) କର୍ମରେ ଆସକ୍ତି ରଖିଥିବା ଆତ୍ମା ଏବଂ ଶିବ ମଧ୍ୟରେ ଐକ୍ୟ ମାନ୍ୟ ନୁହେଁ, ସେହିପରି ପୃଥିବୀ ଆଦିଙ୍କର ଶିବ ସହିତ ଐକ୍ୟ ଇଷ୍ଟ ନୁହେଁ ।। ୪୮ ।।

ଅଥ ଶିବସ୍ୟ ପୃଥିବ୍ୟାଦେରଭେଦୋଽପି ନ ସମ୍ଭବତୀତ୍ୟତ୍ରାହ –

**ପୃଥିବ୍ୟାଦ୍ୟଷ୍ଟମୂର୍ତ୍ତିତ୍ୱମୀଶ୍ୱରସ୍ୟ ପ୍ରକୀର୍ତ୍ତିତମ୍ ।**
**ତଦଧିଷ୍ଠାତୃଭାବେନ ନ ସାକ୍ଷାଦେକଭାବତଃ ।। ୪୯ ।।**

'ଯସ୍ୟ ପୃଥ୍ୱୀ ଶରୀରମ୍'[୧୪୫] ଇତ୍ୟାରଭ୍ୟ 'ଯସ୍ୟାତ୍ମା ଶରୀରମ୍'[୧୪୬] ଇତ୍ୟନ୍ତବୃହଦାରଣ୍ୟଶ୍ରୁତିପ୍ରୋକ୍ତାଷ୍ଟମୂର୍ତ୍ତିତ୍ୱଂ ତଦଧିଷ୍ଠାତୃଭାବେନ ପୃଥିବ୍ୟାଦ୍ୟଷ୍ଟମୂର୍ତ୍ତିତ୍ୱଂ ତଦଧିଷ୍ଠାତୃଭାବେନ ପୃଥିବ୍ୟାଦ୍ୟଷ୍ଟମୂର୍ତ୍ତ୍ୟଧିଷ୍ଠାତୃତ୍ୱେନ ପ୍ରକୀର୍ତ୍ତିତମ୍, 'ବିଶ୍ୱଂ ମହେଶ୍ୱର ଭବାନଧିତିଷ୍ଠତୀତି ବିଶ୍ୱାତ୍ମତାମୁପଚରନ୍ତି ଯଦାଗମାସ୍ତେ' ଇତ୍ୟଭିଯୁକ୍ତୋକ୍ତେଃ । ଯଥା ସ୍ତନସ୍ତନ୍ୟୟୋର୍ଭେଦେଽପି ସ୍ତନଂ ପିବନ୍ତୀତି ବ୍ୟବହାରଃ ତଥା ଅଭେଦବ୍ୟବହାର ଔପଚାରିକଃ, ସାକ୍ଷାଦେକଭାବତୋ ନ ।

ଦ୍ୱୟମୁଷ୍ଣଂ ଦ୍ୱୟଂ ଶୀତମନୁଷ୍ଣାଶୀତଳଂ ଦ୍ୱୟମ୍ ।
ଦ୍ୱୟମସ୍ପର୍ଶମିତ୍ୟଷ୍ଟୌ ପାନ୍ତୁ ବୋ ହରମୂର୍ତ୍ତୟଃ ।।

ଇତି ତାସାଂ ପରସ୍ପରଭିନ୍ନତ୍ୱାତ୍, ଶରୀରଶରୀରିଭାବସ୍ୟ ଭେଦଘଟିତତ୍ୱାଚ୍ଚେତି ।। ୪୯ ।।

– ଈଶ୍ୱର ପୃଥିବୀ ଆଦି ଅଷ୍ଟ ମୂର୍ତ୍ତିଙ୍କର ରୂପ ଅଟନ୍ତି । ଅର୍ଥାତ୍ ଈଶ୍ୱର ଏହି ଅଷ୍ଟ ମୂର୍ତ୍ତିଙ୍କର ଅଧିଷ୍ଠାତା ଅଟନ୍ତି, ସେ ସବୁରୁ ଅଭିନ୍ନ ନୁହନ୍ତି ।। ୪୯ ।।

ବିଶେଷ – ଯେପରି ସ୍ତନ ଓ ଦୁଗ୍ଧ ଭିନ୍ନ ହେଲେ ମଧ୍ୟ ବାଳକ ସ୍ତନପାନ କରିଛି ବୋଲି ଲୋକରେ ଲାକ୍ଷଣିକ ବ୍ୟବହାର ପ୍ରଚଳିତ ଅଛି, ସେହିପରି ପୃଥିବୀ ଆଦି ଶିବଙ୍କର ଶରୀର ଭାବରେ କଥନ ଲାକ୍ଷଣିକ । 'ଯସ୍ୟ ପୃଥିବୀ ଶରୀରମ୍' ଇତ୍ୟାଦି ଶ୍ରୁତିବାକ୍ୟ ଏହାର ପ୍ରମାଣ ।

ଅଥ କାର୍ଯ୍ୟକାରଣଭାବାଚ୍ଚ ତୟୋରୈକ୍ୟଂ ନ ସମ୍ଭବତୀତ୍ୟାହ –

**ପୃଥିବ୍ୟାଦିକମିଦଂ ସର୍ବଂ କାର୍ଯ୍ୟଂ କର୍ତ୍ତା ମହେଶ୍ୱରଃ ।**
**ନୈତତ୍ସାକ୍ଷାନ୍ମହେଶୋଽୟଂ କୁଲାଲୋ ମୃତ୍ତିକା ଯଥା ।। ୫୦ ।।**

'ବ୍ରହ୍ମବିଷ୍ଣୁରୁଦ୍ରେନ୍ଦ୍ରାସ୍ତେ ସମ୍ପ୍ରସୂୟନ୍ତେ ସର୍ବାଣି ଚେନ୍ଦ୍ରିୟାଣି ସହ ଭୂତୈର୍ନ କାରଣମ୍ ।

---

୧୪୫. ବୃ. ଉପ. – ୩/୭/୩
୧୪୬. ବୃ. ଉପ. – ୩/୭/୨୩

କାରଣଂ ତୁ ଧ୍ୟେୟଃ ଶମ୍ଭୁରାକାଶମଧ୍ୟେ' ଇତି ଶ୍ରୁତେଃ ପୃଥିବ୍ୟାଦେଃ କାର୍ଯ୍ୟକୋଟି-ପ୍ରବିଷ୍ଟତ୍ୱୋଚ୍ଛିବସ୍ୟ କାରଣରୂପତ୍ୱାତ୍ । ଏବଂ ଚ ମୃଚ୍ଛବ୍ଦୋପଲକ୍ଷିତଘଟାଦେଃ କୁଲାଳସ୍ୟ ଚ ଯଥୈକ୍ୟଂ ନ ସମ୍ଭବତି, ତଥା କାର୍ଯ୍ୟରୂପଭୂମ୍ୟାଦେଃ କାରଣାତ୍ମନଃ ଶିବସ୍ୟ ଚାଭେଦୋ ନ ସମ୍ଭବତୀତ୍ୟର୍ଥଃ ।। ୫୦।।

– ପୃଥିବୀ ଆଦି ଏ ସମସ୍ତ କାର୍ଯ୍ୟ ଅଟନ୍ତି । ମହେଶ୍ୱର ସବୁର କର୍ତ୍ତା । ଏ ସମସ୍ତ ସାକ୍ଷାତ୍ ମହେଶ୍ୱର ନୁହନ୍ତି, ଯେପରି ମାଟି ଓ କୁମ୍ଭାର (ଏକ ନୁହନ୍ତି) ।

ନନୁ ଘଟକୁଲାଲୟୋରିବେଶ୍ୱରସ୍ୟ ଭୂମ୍ୟାଦେରାତ୍ୟନ୍ତିକଭେଦଃ କିମିତ୍ୟତ୍ରାହ –

**ପୃଥିବ୍ୟାଦ୍ୟାତ୍ମପର୍ଯ୍ୟନ୍ତପ୍ରପଞ୍ଚୋ ହ୍ୟଷ୍ଟଧା ସ୍ଥିତଃ ।**
**ତନୁରୀଶସ୍ୟ ଚାତ୍ମାୟଂ ସର୍ବତତ୍ତ୍ୱନିୟାମକଃ ।। ୫୧ ।।**

ପୃଥିବ୍ୟପ୍ତେଜୋବାୟ୍ୱାକାଶଚନ୍ଦ୍ରସୂର୍ଯ୍ୟାଗ୍ନିହୋତ୍ରିରୂପେଣାତ୍ମପର୍ଯ୍ୟନ୍ତମଷ୍ଟଧା ସ୍ଥିତଃ ପ୍ରପଞ୍ଚଃ ସର୍ବୋଦ୍ଧପୀଶସ୍ୟ ଶରୀରମ୍ । ଅୟମୀଶଃ ସର୍ବତତ୍ତ୍ୱନିୟାମକଃ ସର୍ବତତ୍ତ୍ୱାତ୍ମକ ଶରୀର-ପ୍ରେରକୀଭୂତ ଆତ୍ମା ଶରୀରୀତ୍ୟର୍ଥଃ । ଏବଂ ଚ ଘଟକୁଲାଲୟୋର୍ଦେହଦେହିଭାବ ଶୂନ୍ୟତ୍ୱାତ୍ ତତୋ ବିଶେଷ ଇତ୍ୟର୍ଥଃ ।। ୫୧ ।।

– ପ୍ରପଞ୍ଚ (ସମସ୍ତ ଜଗତ୍) ପୃଥିବୀରୁ ଆତ୍ମାପର୍ଯ୍ୟନ୍ତ (ଅର୍ଥାତ୍ ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ଚନ୍ଦ୍ରମା, ସୂର୍ଯ୍ୟ ଏବଂ ଅଗ୍ନି ଅର୍ଥାତ୍ ଆତ୍ମା) ଆଠ ପ୍ରକାରରେ ଅବସ୍ଥିତ । ଏହି ସମସ୍ତ ପରମେଶ୍ୱରଙ୍କର ଶରୀର ଅଟେ ଏବଂ ଏହି ଆତ୍ମା ସମସ୍ତ ତତ୍ତ୍ୱଗୁଡ଼ିକର ନିୟାମକ ଅଟେ ।। ୫୧ ।।

ତର୍ହ୍ୟଭେଦଃ କିମିତ୍ୟତ୍ରାହ –

**ଶରୀରଭୂତାଦେତସ୍ମାତ୍ ପ୍ରପଞ୍ଚାତ୍ ପରମେଷ୍ଠିନଃ ।**
**ଆତ୍ମଭୂତସ୍ୟ ଦେବସ୍ୟ ନାଭେଦୋ ନ ପୃଥକ୍ ସ୍ଥିତିଃ ।। ୫୨ ।।**

ପରମେଷ୍ଠିନଃ ଶିବସ୍ୟ ଶରୀରଭୂତାଦ୍ ଏତସ୍ମାଦ୍ ଇଦମିତ୍ୟଙ୍ଗୁଳିନିର୍ଦ୍ଦେଶ୍ୟତ୍ୱେନ ପ୍ରତୀୟମାନାତ ପ୍ରପଞ୍ଚାଦ୍ ଅଭେଦୋ ନ, ଭେଦ ଏବେତ୍ୟର୍ଥଃ। ତଥାପ୍ୟାତ୍ମଭୂତସ୍ୟ ବିଶ୍ୱଶରୀରିଣୋ ଦେବସ୍ୟ ନ ପୃଥକ୍ ସ୍ଥିତିଃ, ଘଟପଟୟୋରିବ ପରସ୍ପରବାହ୍ୟତ୍ୱେ ସ୍ଥିତିର୍ନାସ୍ତି, ଶିବସ୍ୟ ବ୍ୟାପକତ୍ୱାଦିତି ଭାବଃ ।। ୫୨ ।।

– ପରମେଷ୍ଠୀଙ୍କର ଶରୀରଭୂତ ଏହି ପ୍ରପଞ୍ଚଠାରୁ ଆତ୍ମଭୂତ ପରମେଶ୍ୱରଙ୍କର ଅଭେଦ ନାହିଁ ଏବଂ ଘଟ–ପଟ ପରି ସର୍ବଥା ତାଙ୍କର ପୃଥକ୍ ସ୍ଥିତି ନାହିଁ ।। ୫୨ ।।

ତର୍ହି ଭେଦଃ କଥମିତ୍ୟତ୍ରାହ –

**ଅଚେତନତ୍ୱାତ୍ ପୃଥିବ୍ୟାଦେରଜ୍ଞତ୍ୱାଦାତ୍ମନସ୍ତଥା ।**

**ସର୍ବଜ୍ଞସ୍ୟ ମହେଶସ୍ୟ ନୈକରୂପତ୍ୱମିଷ୍ୟତେ ।। ୫୩।।**

ଭୂମ୍ୟାଦେର୍ଜଡ଼ତ୍ୱାଦ୍ ଆତ୍ମନଃ ଅଗ୍ନିହୋତ୍ରିଣୋ ଯଜମାନସ୍ୟାଜ୍ଞତ୍ୱାଦ୍, କିଞ୍ଚିଜ୍ଜ୍ଞତ୍ୱାଦିତ୍ୟର୍ଥଃ, ମହେଶସ୍ୟ ଚରାଚରଲକ୍ଷଣବିଶ୍ୱଶରୀରସ୍ୟ ଶିବସ୍ୟ ସର୍ବଜ୍ଞତ୍ୱାଦିତ୍ୟର୍ଥଃ, ଏକରୂପତ୍ୱଂ ରୂପଶରୀରଶରୀରିଣୋରୈକ୍ୟଂ ନେଷ୍ୟତେ ନେଚ୍ଛାବିଷୟୀକ୍ରିୟତେ । ତସ୍ମାଦ୍ ଭେଦ ଏବେତ୍ୟର୍ଥଃ ।। ୫୩।।

– ପୃଥିବୀ ଆଦି ଅଚେତନ ଅର୍ଥାତ୍ ଜଡ଼ ଅଟନ୍ତି । ଜୀବାତ୍ମା ଅଜ୍ଞ ଅର୍ଥାତ୍ ଅଳ୍ପଜ୍ଞ ଅଟେ । ପରମେଶ୍ୱର ସର୍ବଜ୍ଞ ଅଟନ୍ତି । ଏହି ତିନିଙ୍କର ଏକରୂପତା ହୋଇ ପାରିବ ନାହିଁ ।

ନନ୍ୱେବଂ ଭେଦଜ୍ଞାନବାନ୍ କୋଽସାବିତ୍ୟତ୍ରାହ –

**ଇତି ଯଶ୍ଚିନ୍ତୟେନ୍ନିତ୍ୟଂ ପୃଥିବ୍ୟାଦେରଷ୍ଟମୂର୍ତ୍ତିଃ ।**

**ବିଲକ୍ଷଣଂ ମହାଦେବଂ ସୋଽଷ୍ଟମୂର୍ତ୍ତିନିରାସକଃ ।। ୫୪।।**

ସ୍ପଷ୍ଟମ୍ ।। ୫୪।

– ଯେଉଁ ସାଧକ ଏହିପରି ମହାଦେବଙ୍କୁ ପୃଥିବୀ ଆଦି ଅଷ୍ଟ ମୂର୍ତ୍ତିଠାରୁ ବିଲକ୍ଷଣ ମାନେ ଏବଂ ଧ୍ୟାନ କରେ, ତାଙ୍କୁ ଅଷ୍ଟମୂର୍ତ୍ତିନିରାସକ ମନା ହୁଏ ।। ୫୪।।

**ଇତି ଅଷ୍ଟମୂର୍ତ୍ତିନିରସନସ୍ଥଲମ୍**

## ଅଥ ସର୍ବଗତନିରସନସ୍ଥଲମ୍

ଅଥ ମାହେଶ୍ୱରସ୍ୟ ଲିଙ୍ଗନିଷ୍ଠାବିରୋଧିସର୍ବଗତନିରସନସ୍ଥଲଂ ପ୍ରକାଶୟତି –

**ସର୍ବଗତ୍ୱେ ମହେଶସ୍ୟ ସର୍ବତ୍ରାରାଧନଂ ଭବେତ୍ ।**

**ନ ଲିଙ୍ଗମାତ୍ରେ ତନ୍ନିଷ୍ଠୋ ନ ଶିବଂ ସର୍ବଗଂ ସ୍ମରେତ୍ ।। ୫୫।।**

ମହେଶ୍ୱରସ୍ୟ ସର୍ବଗତ୍ୱେ ସର୍ବତ୍ରାରାଧନଂ ସ୍ୟାତ୍, ଲିଙ୍ଗମାତ୍ରେ ନ ସ୍ୟାତ୍, ତସ୍ମାଲ୍ଲିଙ୍ଗନିଷ୍ଠଃ ଶିବଂ ସର୍ବଗତଂ ନ ସ୍ମରେଦିତ୍ୟର୍ଥଃ ।। ୫୫।।

(ସର୍ବଗତନିରସନ ସ୍ଥଳ ବର୍ଣ୍ଣନ) –

ପ୍ରଶ୍ନ – ଯେହେତୁ ମହେଶ୍ୱର ସର୍ବବ୍ୟାପୀ, ତେଣୁ ତାଙ୍କର ସର୍ବତ୍ର ଆରାଧନା କରାଯାଇପାରିବ । କେବଳ ଲିଙ୍ଗରେ ନୁହେଁ । ଯଦି ଶିବଙ୍କୁ କେବଳ ଲିଙ୍ଗରେ ସ୍ଥିତ ମନା ହେବ ତେବେ ସେ ସର୍ବବ୍ୟାପୀ ନାମରେ ପରିଚିତ ହେବେ ନାହିଁ (ତେବେ ଲିଙ୍ଗପୂଜା କିପରି ଯୁକ୍ତିଯୁକ୍ତ ହେବ) ।। ୫୫।।

ନନୁ ଶିବସ୍ୟ ସର୍ବଗତ୍ୱାଭାବେ ପରିଚ୍ଛିନ୍ନତ୍ୱେନ ଲୋକେ ଭକ୍ତବାହୁଲ୍ୟାତ୍

ତତ୍ତଚ୍ଛରୀରସଙ୍ଗତେଷ୍ଟଲିଙ୍ଗାନାଂ ଚ ବାହୁଲ୍ୟାଦେକତ୍ର ବିଶ୍ରମିତାଶେଷଶରୀରଭାରସ୍ୟାନ୍ୟତ୍ରାବସ୍ଥାନାସମ୍ଭବାଦ୍ କଥଂ ତତ୍ର ତତ୍ର ସ୍ଥିତିଃ ସମ୍ଭବତୀତ୍ୟତ୍ରାହ –

**ସର୍ବଗୋଽପି ସ୍ଥିତଃ ଶମ୍ଭୁଃ ସ୍ୱାଧାରେ ହି ବିଶେଷତଃ ।**
**ତସ୍ମାଦନ୍ୟତ୍ର ବିମୁଖ୍ୟଃ ସ୍ୱେଷ୍ଟଲିଙ୍ଗେ ଯଜେଚ୍ଛିବମ୍ ।। ୫୬ ।।**

ଶମ୍ଭୁଃ ସର୍ବଗୋଽପି ବ୍ୟାପକୋଽପି ସ୍ୱାଧାରେ ସ୍ୱାଶ୍ରୟୀଭୂତଲିଙ୍ଗେ ବିଶେଷତଃ ଅତିଶୟେନ ସ୍ଥିତୋ ଭବତି । ତସ୍ମାଦନ୍ୟତ୍ର ବିମୁଖଃ ସନ୍ ସ୍ୱେଷ୍ଟ ଲିଙ୍ଗେ ଶିବଂ ପୂଜୟେଦିତ୍ୟର୍ଥଃ ।। ୫୬ ।।

ଉତ୍ତର – ଯଦିଓ ଶିବ ସର୍ବବ୍ୟାପୀ ଅଟନ୍ତି, ତଥାପି ନିଜର ଆଧାର ଅର୍ଥାତ୍ ଲିଙ୍ଗରେ ବିଶେଷ ଭାବରେ ସ୍ଥିତ ଅଟନ୍ତି । ତେଣୁ ଅନ୍ୟତ୍ର ବିମୁଖ ହୋଇ ନିଜର ଇଷ୍ଟ ଲିଙ୍ଗରେ ହିଁ ଶିବଙ୍କର ପୂଜା କରିବା ଉଚିତ୍ ।। ୫୬ ।।

ନନୁ ସର୍ବଗତଃ ଶିବସ୍ତତ୍ର ତତ୍ର ଲିଙ୍ଗେ କଥଂ ବିଶେଷେଣ ତିଷ୍ଠତୀତ୍ୟତ୍ରାହ –

**ଶିବଃ ସର୍ବଗତଶ୍ଚାପି ସ୍ୱାଧାରେ ବ୍ୟଜ୍ୟତେ ଭୃଶମ୍ ।**
**ଶମୀଗର୍ଭେ ଯଥା ବହ୍ନିର୍ବିଶେଷେଣ ବିଭାବ୍ୟତେ ।। ୫୭ ।।**

ବୃକ୍ଷସ୍ଥିତେ । ବହ୍ନିଃ ଶମୀବୃକ୍ଷେ ଯଥା ବିଶେଷେଣ ଭାସତେ, ତଥା ଶିବଃ ସର୍ବଗତୋଽପି ସ୍ୱାଧାରେ ଲିଙ୍ଗେ ଭୃଶମ୍ ଅତିଶୟେନ ବ୍ୟଜ୍ୟତେ ପ୍ରକାଶତ ଇତ୍ୟର୍ଥଃ ।। ୫୭ ।।

– ଯଦ୍ୟପି ଶିବ ସର୍ବଗତ ତଥାପି ନିଜର ଆଧାର ଅର୍ଥାତ୍ ଇଷ୍ଟ ଲିଙ୍ଗରେ ବିଶେଷ ଭାବରେ ଅଭିବ୍ୟକ୍ତ ଅଟନ୍ତି । ଯେପରି ଅଗ୍ନି ସମସ୍ତ ବୃକ୍ଷରେ ଥିଲେ ମଧ୍ୟ ଶମୀ ବୃକ୍ଷରେ ବିଶେଷ ଭାବରେ ବ୍ୟକ୍ତ ହୋଇଥାଏ ।। ୫୭ ।।

ନନୁ ଲିଙ୍ଗେ କିମର୍ଥଂ ବିଶେଷେଣ ତିଷ୍ଠତୀତ୍ୟତ୍ରାହ –

**ସର୍ବଗତ୍ୱଂ ମହେଶସ୍ୟ ସର୍ବଶାସ୍ତ୍ରବିନିଶ୍ଚିତମ୍ ।**
**ତଥାପ୍ୟାଶ୍ରୟଲିଙ୍ଗେନ ପୂଜାର୍ଥମଧିକା ସ୍ଥିତିଃ ।। ୫୮ ।।**

ଅତ୍ରାଦି (ପି) ଶବ୍ଦେନ ଗୁରୁଚରମୂର୍ତ୍ତୀ ଲକ୍ଷ୍ୟେତେ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୮ ।।

– ମହେଶ୍ୱରଙ୍କର ସର୍ବବ୍ୟାପକତା ସମସ୍ତ ଶାସ୍ତ୍ରରେ ନିଶ୍ଚିତ ଅଟେ । ତଥାପି ଆଶ୍ରୟଭୂତ ଲିଙ୍ଗ ଆଦିରେ ପୂଜା ପାଇଁ ବିଶେଷ ସ୍ଥିତି ହୋଇଥାଏ ।। ୫୮ ।।

ଅସ୍ମିନ୍ନର୍ଥେ – 'ଯା ତେ ରୁଦ୍ର'[୧୪୭] ଇତି ଶ୍ରୁତ୍ୟର୍ଥମେବ ଶ୍ଳୋକମୁଖେନୋପନ୍ୟସ୍ୟତି –

---

୧୪୭. ଯା ତେ ରୁଦ୍ର ଶିବା ତନୂରଘୋରାଽପାପକାଶିନୀ (ଶୁ. ଯ. ବା. ସଂ., ୧୬/୨)

**ନିତ୍ୟଂ ଭାସି ତଦୀୟସ୍ତ୍ୱଂୟା ତେ ରୁଦ୍ର ଶିବା ତନୂଃ ।**
**ଅଘୋରାଦ୍ଧପାପକାଶୀତି ଶ୍ରୁତିରାହ ସନାତନୀ ।। ୫୯ ।।**

ଭୋ ରୁଦ୍ର ତେ ତବ ଯା ତନୂଃ ଶିବଲିଙ୍ଗମୂର୍ତ୍ତିଃ, ଶିବା ମଙ୍ଗଳା, ଅଘୋରା ଅଭୟଙ୍କରା, ଅପାପକାଶୀ ଦୋଷରହିତା । ତ୍ୱଂ ତଦୀୟୋ ଲିଙ୍ଗସମ୍ବନ୍ଧୀ ସନ୍ ନିତ୍ୟଂ ଭାସୀତି ସନାତନୀ ନିତ୍ୟା ଶ୍ରୁତିରାହ କଥୟତୀତ୍ୟର୍ଥଃ ।। ୫୯ ।।

– ହେ ରୁଦ୍ର, ଆପଣଙ୍କର ଯେଉଁ ଅଘୋର ଅର୍ଥାତ୍ ଅଭୟଙ୍କର ମଙ୍ଗଳକାରୀ ଦୋଷରହିତ (ଲିଙ୍ଗରୂପୀ) ଶରୀର ଅଛି ସନାତନୀ ଶ୍ରୁତି କହୁଛି, ସେହି ଶରୀରଯୁକ୍ତ ତୁମେ ନିତ୍ୟ ପ୍ରକାଶିତ ହେଉଅଛ ।। ୫୯ ।।

ତସ୍ମାଦିଷ୍ଟଲିଙ୍ଗମେବ ପୂଜୟେଦିତ୍ୟାହ –

**ତସ୍ମାଦ୍ ସର୍ବପ୍ରଯତ୍ନେନ ସର୍ବସ୍ଥାନପରାଙ୍ମୁଖଃ ।**
**ସ୍ୱେଷ୍ଟଲିଙ୍ଗେ ମହାଦେବଂ ପୂଜୟେତ୍ ପୂଜକୋତ୍ତମଃ ।। ୬୦ ।।**

ତସ୍ମାତ୍ ଶ୍ରୁତିପ୍ରସିଦ୍ଧତ୍ୱାତ୍ ପୂଜକୋତ୍ତମୋ ମହେଶ୍ୱରଃ ସର୍ବପ୍ରଯତ୍ନେନ ସର୍ବସ୍ଥାନବିମୁଖଃ ସନ୍ ସ୍ୱେଷ୍ଟଲିଙ୍ଗେ ସ୍ୱସମ୍ବନ୍ଧୀବତୀଷ୍ଟଲିଙ୍ଗେ ମହାଦେବଂ ପୂଜୟେଦିତ୍ୟର୍ଥଃ ।। ୬୦ ।।

– ତେଣୁ ଉତ୍ତମ ପୂଜକ ସମସ୍ତ ସ୍ଥାନରୁ ପରାଙ୍ମୁଖ ହୋଇ ନିଜର ଇଷ୍ଟ ଲିଙ୍ଗରେ ମହାଦେବଙ୍କର ପୂଜା କରିବା ଉଚିତ୍ ।। ୬୦ ।।

ଏବଂ ବୁଦ୍ଧ୍ୱା ସ୍ୱେଷ୍ଟଲିଙ୍ଗେ ଯଜନ୍ନେବ ସର୍ବଗତ୍ୱନିରାସକ ଇତ୍ୟାହ –

**ଶିବସ୍ୟ ସର୍ବଗତ୍ୱେଽପି ସର୍ବତ୍ର ରତିବର୍ଜିତଃ ।**
**ସ୍ୱେଷ୍ଟଲିଙ୍ଗେ ଯଜନ୍ ଦେବଂ ସର୍ବଗତ୍ୱନିରାସକଃ ।। ୬୧ ।।**

ସ୍ପଷ୍ଟମ୍ ।। ୬୧ ।।

– ଯଦିଓ ଶିବ ସର୍ବଗାମୀ ଅଟନ୍ତି, ତଥାପି ସର୍ବତ୍ର ଅନୁରାଗ ରହିତ ହୋଇ କେବଳ ନିଜର ଇଷ୍ଟ ଲିଙ୍ଗରେ ଯିଏ ଦେବଙ୍କର ପୂଜା କରନ୍ତି, ତାଙ୍କୁ ସର୍ବଗତ୍ୱ ନିରାସକ କୁହାଯାଏ ।। ୬୧ ।।

### ଇତି ସର୍ବଗତ୍ୱନିରସନସ୍ଥଲମ୍

### ଅଥ ଶିବଜଗନ୍ମୟସ୍ଥଲମ୍

ଅଥ ମହେଶ୍ୱରସ୍ୟ ପୂଜାର୍ଥଂ ସର୍ବଗତ୍ୱେ ନିରାକୃତେଽପି ପ୍ରମାଣବଳାତ୍ ସର୍ବଗତ୍ୱଂ ଯଥାଙ୍ଗୀକ୍ରିୟତେ, ତଥା ପ୍ରମାଣବଳାତ୍ ସର୍ବମୟତ୍ୱଂ ଚାଙ୍ଗୀକରଣୀୟମିତି ଶିବଜଗନ୍ମୟସ୍ଥଲଂ ନିରୂପୟତି –

ପୂଜାବିଧୌ ନିୟମ୍ୟତ୍ୱାଲ୍ଲିଙ୍ଗମାତ୍ରେ ସ୍ଥିତଂ ଶିବମ୍ ।
ପୂଜୟନ୍ନପି ଦେବସ୍ୟ ସର୍ବଗତ୍ୱଂ ବିଭାବୟେତ୍ ।। ୬୨।।

ଶିବସ୍ୟ ସର୍ବନିୟାମକତ୍ୱେଽପି ପୂଜାକାଳେ ଭକ୍ତନିୟାମ୍ୟତ୍ୱାଦ୍ ଭକ୍ତାଧୀନତ୍ୱାଲ୍ଲିଙ୍ଗମାତ୍ରେ ସ୍ଥିତଂ ଶିବଂ ଭକ୍ତଃ ପୂଜୟନ୍ନପି ଦେବସ୍ୟ ଲିଙ୍ଗସ୍ଥିତସ୍ୟ ପ୍ରକାଶାତ୍ମନଃ ଶିବସ୍ୟ ସର୍ବଗତ୍ୱଂ ବିଭାବୟେତ୍, ଅନ୍ୟଥା କୁମ୍ଭକାରବତ୍ ପରିଚ୍ଛିନ୍ନତ୍ୱପ୍ରସଙ୍ଗାଦିତି ।। ୬୨।।

(ଶିବଜଗନ୍ମୟସ୍ଥଳ ବର୍ଣ୍ଣନ) – ପୂଜାବିଧି ନିୟମିତ ହେବା ଫଳରେ ଲିଙ୍ଗମାତ୍ରରେ ସ୍ଥିତ ଶିବଙ୍କର ପୂଜା କରି ମଧ୍ୟ ଭକ୍ତ ଦେବାଧିଦେବଙ୍କର ସର୍ବବ୍ୟାପକତାର ଭାବନା କରିବା ଉଚିତ୍ ।। ୬୨।।

ଏବଂ ସର୍ବଗତ୍ୱେ ସିଦ୍ଧେ ଶିବସ୍ୟ 'ଆତ୍ମନ ଆକାଶଃ ସମ୍ଭୂତଃ, ଆକାଶାଦ୍ୱାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ, ଅଦ୍‌ଭ୍ୟଃ ପୃଥିବୀ'[୧୪୮] ଇତି ଶ୍ରୁତେରଭିନ୍ନନିମିତ୍ତୋପାଦାନ-କାରଣତ୍ୱଶ୍ରବଣାଦ୍ ବହୁଦୃଷ୍ଟାନ୍ତପୂର୍ବକଂ ଶିବଜଗନ୍ମୟତ୍ୱଂ ପ୍ରତିପାଦୟତି –

ଯସ୍ମାଦେତତ୍ ସମୁତ୍‌ପନ୍ନଂ ମହାଦେବାଚ୍ଚରାଚରମ୍ ।
ତସ୍ମାଦେତନ୍ନ ଭିଦ୍ୟେତ ଯଥା କୁମ୍ଭାଦିକଂ ମୃଦଃ ।। ୬୩।।

ଯସ୍ମାନ୍ ମହାଦେବାଦିତି ସମ୍ବନ୍ଧଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୩।।

– ଯେହେତୁ ଏହି ଚରାଚର ମହାଦେବଠାରୁ ଉତ୍ପନ୍ନ, ତେଣୁ ଯେପରି ମାଟିରୁ ଉତ୍ପନ୍ନ କୁମ୍ଭ ଆଦି ମାଟିରୁ ଭିନ୍ନ ନୁହନ୍ତି, ସେହିପରି ଏହା ମହାଦେବଙ୍କଠାରୁ ଭିନ୍ନ ନୁହେଁ ।। ୬୩।।

ଶିବତତ୍ତ୍ୱାତ୍ ସମୁତ୍‌ପନ୍ନଂ ଜଗତସ୍ମାନ୍ନ ଭିଦ୍ୟତେ ।
ଫେନୋର୍ମିବୁଦ୍‌ବୁଦାକାରଂ ଯଥା ସିନ୍ଧୋର୍ନ ଭିଦ୍ୟତେ ।। ୬୪।।

ସ୍ପଷ୍ଟମ୍ ।। ୬୪।।

– ଯେପରି ସମୁଦ୍ରରୁ ଉତ୍ପନ୍ନ ଫେଣ, ଲହଡ଼ି, ବୁଦ୍‌ବୁଦ୍ ଆଦି ସମୁଦ୍ରଠାରୁ ଭିନ୍ନ ନୁହଁନ୍ତି, ସେହିପରି ଶିବତତ୍ତ୍ୱରୁ ଉତ୍ପନ୍ନ ଏହି ଜଗତ୍ ତାଙ୍କଠାରୁ ଭିନ୍ନ ନୁହେଁ ।। ୬୪।।

ଯଥା ତନ୍ତୁଭିରୁତ୍ପନ୍ନଃ ପଟସ୍ତନ୍ତୁମୟଃ ସ୍ମୃତଃ ।
ତଥା ଶିବାତ୍ ସମୁତ୍‌ପନ୍ନଂ ଶିବ ଏବ ଚରାଚରମ୍ ।। ୬୫।।

ସ୍ପଷ୍ଟମ୍ ।। ୬୫।।

– ଯେପରି ତନ୍ତୁରୁ ଉତ୍ପନ୍ନ ପଟ ତନ୍ତୁମୟ କୁହାଯାଏ, ସେହିପରି ଶିବଙ୍କଠାରୁ ଉତ୍ପନ୍ନ ଶିବ ହିଁ ଅଟେ ।। ୬୫।।

---

୧୪୮. ତୈ. ଉ., – ୨/୧

ନନୁ ମୃଦାଦୀନାଂ ବିକାରିତ୍ୱାତ୍ ଶିବସ୍ୟ ନିର୍ବିକାରିତ୍ୱାଦ୍ ଭକ୍ତଦୃଷ୍ଟାନ୍ତୋ ବିଷମ ଇତ୍ୟାହ –

**ଆତ୍ମଶକ୍ତିବିକାସେନ ଶିବୋ ବିଶ୍ୱାତ୍ମନା ସ୍ଥିତଃ ।**
**କୁଟୀଭାବାଦ୍ ଯଥା ଭାତି ପଟଃ ସ୍ୱସ୍ୟ ପ୍ରସାରଣାତ୍ ।। ୬୬ ।।**

ପଟଃ ସ୍ୱତାଦାତ୍ମ୍ୟାପନ୍ନପ୍ରସରଣଶକ୍ତ୍ୟା କୁଟୀଭାବାତ୍ ପ୍ରସ୍ଥାନକୁଟୀଭାବାଦ୍ ଯଥା ଭାତି, ତଥା ଶିବୋଽପି ସ୍ୱାତ୍ମଶକ୍ତିବିକାସେନ ବିଶ୍ୱାତ୍ମନା ସ୍ଥିତଃ ସନ୍ ଭାତୀତ୍ୟର୍ଥଃ ।। ୬୬ ।।

– ଶିବ ନିଜର ଶକ୍ତିର ବିକାସରେ ବିଶ୍ୱରୂପରେ ସେହିପରି ସ୍ଥିତ, ଯେପରି ପଟ ନିଜର ପ୍ରସାରରେ ତମ୍ବୁ ଭାବରେ ଶୋଭା ପାଇଥାଏ ।। ୬୬ ।।

ନନୁ ପ୍ରସାରଣଶକ୍ତିଦ୍ୱାରା ଯଥା ପଟସ୍ୟାପି ବିକାରଭାକ୍ତ୍ୱମ୍, ତଥା ଶିବସ୍ୟାପି ସ୍ୱସମବେତଶକ୍ତିଦ୍ୱାରା ବିକାରିତା ସ୍ୟାଦିତ୍ୟତ୍ର ଦୃଷ୍ଟାନ୍ତାନ୍ତରମୁପନ୍ୟସନ୍ନୁକ୍ତାର୍ଥମୁପସଂହରତି –

**ତସ୍ମାଚ୍ଛିବମୟଂ ସର୍ବଂ ଜଗଦେତଚ୍ଚରାଚରମ୍ ।**
**ତଦଭିନ୍ନତୟା ଭାତି ସର୍ପତ୍ୱମିବ ରଜ୍ଜୁତଃ ।। ୬୭ ।।**

ରଜ୍ଜୁଃ ସ୍ୱନିଷ୍ଠଦୀର୍ଘବୃତ୍ତଗୋଧୂମବର୍ଣ୍ଣତାଶକ୍ତିବଶାଦ୍ ବିକାରରାହିତ୍ୟେନ ଯଥା ସର୍ପତ୍ୱେନ ଭାତି, ତଥା ଶିବୋଽପି ବିକାରରାହିତ୍ୱେନ ସ୍ୱସମବେତମାୟାଶକ୍ତ୍ୟା ବିଶ୍ୱାଭିନ୍ନତୟା ଭାତି, ତସ୍ମାଦ୍ ସର୍ବମେତଚ୍ଚରାଚରଂ ବିଶ୍ୱଂ ଶିବମୟଂ ନ ତଦ୍ୱ୍ୟତି–ରିକ୍ତମିତ୍ୟର୍ଥଃ ।। ୬୭ ।।

– ତେଣୁ ଶିବମୟ ଏହି ସମସ୍ତ ଜଗତ୍ ରଜ୍ଜୁରେ ସର୍ପତ୍ୱ[୧୪୯] ପରି ସେହି ଶିବଠାରୁ ଅଭିନ୍ନ ପରି ଭାସିତ ହୋଇଥାଏ ।। ୬୭ ।।

ଅଥ ଦାର୍ଢ୍ୟାର୍ଥମୁଦାହୃତଦ୍ୱୃଷ୍ଟାନ୍ତପୂର୍ବକଂ ବହୁଦୃଷ୍ଟାନ୍ତମାହ –

**ରଜ୍ଜୌ ସର୍ପତ୍ୱବଦ୍ ଭାତି ଶୁକ୍ତୌ ଚ ରଜତତ୍ୱବତ୍ ।**
**ଚୋରତ୍ୱବଦପି ସ୍ଥାଣୌ ମରୀଚ୍ୟାଂ ଚ ଜଳତ୍ୱବତ୍ ।। ୬୮ ।।**
**ଗନ୍ଧର୍ବପୁରବଦ୍ୱ୍ୟୋମ୍ନି ସଚ୍ଚିଦାନନ୍ଦଲକ୍ଷଣେ ।**
**ନିରସ୍ତଭେଦସଦ୍ଭାବେ ଶିବେ ବିଶ୍ୱଂ ବିରାଜତେ ।। ୬୯ ।।**

ରଜ୍ଜ୍ୱାଂ ଗୋଧୂମବର୍ଣ୍ଣତାଶକ୍ତ୍ୟା ସର୍ପତ୍ୱବତ୍, ଶୁକ୍ତୌ ଧାବଲ୍ୟଶକ୍ତ୍ୟା ରଜତତ୍ୱବତ୍, ସ୍ଥାଣୌ ଦୀର୍ଘଶକ୍ତ୍ୟା ପୁରୁଷତ୍ୱବତ୍, ମରୀଚ୍ୟାଂ ସ୍ୱଚ୍ଛତୋଦ୍ରେକଶକ୍ତ୍ୟା ଜଳତ୍ୱବତ୍ କାଳଶକ୍ତ୍ୟା ବ୍ୟୋମ୍ନି ଗନ୍ଧର୍ବନଗରବତ୍, ନିରସ୍ତସମସ୍ତପ୍ରାପଞ୍ଚିକ ଭେଦବତି ନିର୍ବିକାରେ ସଚ୍ଚିଦାନନ୍ଦସ୍ୱରୂପେ

---

୧୪୯. ମନ୍ଦାନ୍ଧକାର ହେତୁ ରଜ୍ଜୁରେ ସର୍ପ ଭ୍ରମ ହୋଇଥାଏ । ରଜ୍ଜୁର ବକ୍ରତ୍ୱ ଆଦି ଦୋଷ ହେତୁ ସର୍ପର ଧର୍ମ ସର୍ପତ୍ୱର ଆରୋପ ହୋଇଥାଏ, ସର୍ପର ନୁହେଁ । ସର୍ପ ରଜ୍ଜୁଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏବଂ ଅନାରୋପ୍ୟ ଅଟେ ।

ପରଶିବବ୍ରହ୍ମଣି, ତତ୍‌ସମବେତବିମର୍ଶଶକ୍ତିପ୍ରତିସ୍ଫୁରଣାୟମାନମାୟାଶକ୍ତ୍ୟା ବିଶ୍ୱଂ ତଦଭିନ୍ନତୟା ଭାତୀତ୍ୟର୍ଥଃ ।। ୬୮-୬୯ ।।

– ରଜ୍ଜୁରେ ସର୍ପତ୍ୱ, ଶୁକ୍ତିରେ ରଜତତ୍ୱ, ସ୍ଥାଣୁରେ ଚୋରତ୍ୱ, ମୃଗମରୀଚିକାରେ ଜଳତ୍ୱ, ଆକାଶରେ ଗନ୍ଧର୍ବନଗରତ୍ୱର ଆରୋପ ପରି ସଚ୍ଚିଦାନନ୍ଦସ୍ୱରୂପ ଭେଦ ରହିତ ଶିବଙ୍କଠାରେ ବିଶ୍ୱ ଆଭାସିତ ହୋଇଥାଏ ।। ୬୮-୬୯ ।।

ନନ୍ୱେଭିର୍ଦୃଷ୍ଟାନ୍ତୈର୍ବିଶ୍ୱଂ ପ୍ରାତୀତିକଂ ସ୍ୟାଦିତ୍ୟତ୍ର ଦୃଷ୍ଟାନ୍ତାନ୍ତରମାହ –

**ପତ୍ରଶାଖାଦିରୂପେଣ ଯଥା ତିଷ୍ଠତି ପାଦପଃ ।**
**ତଥା ଭୂମ୍ୟାଦିରୂପେଣ ଶିବ ଏକୋ ବିରାଜତେ ।। ୭୦ ।।**

ବୃକ୍ଷୋ ଯଥା କାଳଶକ୍ତ୍ୟା ବିକାରରାହିତ୍ୟେନ ସ୍ୱାନ୍ତର୍ଲୀନସ୍ୱବିଜାତୀୟପତ୍ରପୁଷ୍ପାଦି-ଭେଦବିଶିଷ୍ଟତ୍ୱେନ ଭାତି, ତଥା ଶିବ ଏବ ସ୍ୱସମବେତ ଶକ୍ତିତାଦାତ୍ମ୍ୟକ୍ରୋଡ଼ୀକୃତ-ଭୂମ୍ୟାଦିରୂପେଣ ପ୍ରତିସ୍ଫୁରଣଗତ୍ୟା ଭାତୀତ୍ୟର୍ଥଃ । ତତ୍ର ଧୃତ୍ୟା ଧରଣିଃ, କରୁଣୟା ଜଲମ୍, ଉଜ୍ଜ୍ୱଲତୟା ତେଜଃ, ପରମାନନ୍ଦସ୍ପନ୍ଦନେନ ବାୟୁଃ, ଚିଦ୍‌ବ୍ୟାପ୍ତ୍ୟା ବ୍ୟୋମ, ଚିତିସଙ୍କୋଚ ଚିତ୍ତବିଶିଷ୍ଟୋ ଜୀବ ଇତି ବିବେକଃ । ନନୁ ବୃକ୍ଷସ୍ୟ ସାବୟବତ୍ୱାତ୍, ସଦାଭାସସଂଯୁକ୍ତଶିବସ୍ୟ ନିରବୟବତ୍ୱାତ୍, ତତ୍‌ସମବେତଶକ୍ତେରପି ତଦଭିନ୍ନତ୍ୱେନ ତଥାତ୍ୱାତ୍ କଥଂ ସାବୟବପ୍ରପଞ୍ଚ-ରୂପେଣ ଭାସନଂ ସମ୍ଭବତୀତି ନାଶଙ୍କନୀୟମ୍, ଶକ୍ତେଃ ଶିବାଭିନ୍ନତ୍ୱେ ସତି ଦୁର୍ଘଟକାରିତ୍ୱେନ ଅହିକୁଣ୍ଡଳନ୍ୟାୟେନ ସ୍ୱାସ୍ୱାତନ୍ତ୍ର୍ୟପରିକଳ୍ପିତ ଭେଦୋପସ୍ଥିତିପରମାଣୁକାର୍ଯ୍ୟଭୂତଦ୍ୱ୍ୟଣୁକାଦାବିବ ତତ୍‌କାର୍ଯ୍ୟରୂପମାୟାଶକ୍ତେଃ ସାଂଶତ୍ୱେ ସମ୍ଭବତୀତ୍ୟୁକ୍ତତ୍ୱାତ୍ 'ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍'[୧୫୦] ଇତି ଭଗବଦୁକ୍ତେଶ୍ଚ । ପ୍ରାତୀତିକ ପ୍ରପଞ୍ଚରୂପେଣାପି ସ୍ୱଶକ୍ତିନ୍ୟୂନୀଭାବେନ ଶିବ ଏବ ଭାସତେ, ଶୁକ୍ତିରଜତୟୋଃ ପରସ୍ପରସତ୍ତ୍ୱାଦ୍ ମେଳକାଂଶୋ ନାସ୍ତୀତି ବଦତା ନିଷେଧପ୍ରତିଯୋଗିତ୍ୱେନ ସମାନଯୋଗେନ ଚ ସୋଽପ୍ୟଙ୍ଗୀକରଣୀୟ ଏବ, ଉତ୍ତର-କ୍ଷଣବାଧମାନତ୍ୱାତ୍ ଶକ୍ତିନ୍ୟୂନୀଭାବନିବନ୍ଧନେତି ସର୍ବଂ ବିଶ୍ୱଂ ଶିବମୟମେବେତି ସଂକ୍ଷେପଃ । ବସ୍ତୁତସ୍ତୁ ବାଧ ଏବ ନାସ୍ତି, ଘଟପଟୟୋରିବ ଶୁକ୍ତିରଜତୟୋରପି ବସ୍ତୁତ୍ୱାତ୍ । ନାପି ଶୁକ୍ତିଜ୍ଞାନେନ ରଜତଜ୍ଞାନସ୍ୟ ବାଧଃ, ଘଟପଟଜ୍ଞାନୟୋରିବ ଭିନ୍ନକାଳଭିନ୍ନବିଷୟତ୍ୱାତ୍ । ନନ୍ୱେକସ୍ମିନ୍ନେବ ଧର୍ମିଣି ଇଦଂ ରଜତଂ ନେଦଂ ରଜତମିତି ବିରୁଦ୍ଧାବଭାସଦ୍ୱୟସ୍ୟ ପ୍ରାମାଣ୍ୟାସମ୍ଭବାତ୍, ଅଥୋତ୍ତର କାଳିକରଜତାଭାବଜ୍ଞାନେନ ପୂର୍ବୋତ୍ପନ୍ନରଜତଜ୍ଞାନସ୍ୟ ବାଧୋଽଙ୍ଗୀକ୍ରିୟତ ଇତି ଚେନ୍ନ ଜ୍ଞାନାନାଂ ତ୍ରିକ୍ଷଣାବସ୍ଥାୟିତ୍ୱ ନିୟମେନ ରଜତାଭାବଜ୍ଞାନସ୍ଥିତିକାଲେ ରଜତଜ୍ଞାନସ୍ୟାଭାବାତ୍ । କିଞ୍ଚ, ବାଧ୍ୟବାଧକଭାବସ୍ୟ

---

୧୫୦. ଭ. ଗୀ., ୧୦/୪୨

ଦଣ୍ଡଭାଣ୍ଡନ୍ୟାୟେନ ପରସ୍ପରାନ୍ୱୟସାପେକ୍ଷତ୍ୱେନ ଜ୍ଞାନାନାଂ ଗୁଣତ୍ୱେନ ପରସ୍ପର ସମ୍ବନ୍ଧାଭାବାତ୍ । ତସ୍ମାଦ୍ ଘଟପଟଜ୍ଞାନୟୋରିବୋନ୍ମେଷନିମେଷୟୋରଙ୍ଗୀ କରଣୀୟତ୍ୱେନ ବାଧସ୍ୟ ବାଭାବାଦିତି ଦିକ୍ ।। ୭୦।।

– ଯେପରି ଗୋଟିଏ ବୃକ୍ଷ (ଅନେକ) ପତ୍ର, ଶାଖା ଆଦି ରୂପରେ ସ୍ଥିତ ହୁଏ, ସେହିପରି ଏକ ଶିବ (ଅନେକ) ଭୂମି ଆଦି ରୂପରେ ବିରାଜମାନ ହୋଇଛନ୍ତି।। ୭୦।।

ବିଶେଷ – ପ୍ରକାଶସ୍ୱରୂପ ଶିବ ନିଜ ଭିତରେ ସମବେତ ବିମର୍ଶଶକ୍ତି ଦ୍ୱାରା ଅନେକ ରୂପରେ ଭାସିତ ହୋଇଥାନ୍ତି । ଧୃତିରୁ ଧରଣୀ, କରୁଣାରୁ ଜଳ, ଉଜ୍ଜ୍ୱଳତାରୁ ତେଜ, ଆନନ୍ଦସ୍ପନ୍ଦନରୁ ଜୀବ ରୂପରେ ଶିବ ପ୍ରକାଶିତ ହୋଇଛନ୍ତି । ଶିବ ଯଦ୍ୟପି ନିରଂଶ ଅଟନ୍ତି, ତଥାପି ନିଜର ଦୁର୍ଘଟକାରିଣୀ ଶକ୍ତିଦ୍ୱାରା ନାନା ଏବଂ ସାବୟମରୂପରେ ବର୍ତ୍ତମାନ ହୋଇଛନ୍ତି । ପ୍ରତିଭାସିକ ପ୍ରତୀତି ରୂପରେ ନିଜର ଶକ୍ତିର ନ୍ୟୁନତାଦ୍ୱାରା ଶିବ ହିଁ ଭାସିତ ହୁଅନ୍ତି । ଟୀକାକାର ବାଧବାଧକ ଭାବ ସ୍ୱୀକାର କରିନାହାନ୍ତି, କାରଣ ଶୁକ୍ତିରେ ରଜତର ପ୍ରତୀତି ଏବଂ ବାଧର କାଳ ଭିନ୍ନ ଭିନ୍ନ ଅଟେ । 'ଇଦଂ ରଜତମ୍' 'ନେଦଂ ରଜତମ୍' ଏପରି ଉଭୟ ପ୍ରକାର ଜ୍ଞାନର ବୋଧ ଭିନ୍ନ ଅଟେ। ଜ୍ଞାନଗୁଣ ଏବଂ ନିରଂଶ ଅଟେ । ତେଣୁ ସେଠାରେ ତାହା ସମ୍ଭବ ନୁହେଁ । ତେଣୁ ରଜତଜ୍ଞାନ ଏବଂ ଶୁକ୍ତିଜ୍ଞାନ ଶିବଙ୍କର ଉନ୍ମେଷ ନିମେଷ ଅଟେ ।

ଇତି ଶିବଜଗନ୍ମୟସ୍ଥଲମ୍

## ଅଥ ଭକ୍ତଦେହିକଲିଙ୍ଗସ୍ଥଲମ୍

ଅଥୈବଂ ଶିବସ୍ୟ ଜଗନ୍ମୟତ୍ୱେଽପି –

ବେଦବେଦାନ୍ତବାକ୍ୟାର୍ଥସନ୍ଧାନାତୀତବର୍ତ୍ତନଃ ।
ଭକ୍ତଭାବପରାନନ୍ଦୋ ଭକ୍ତଭାବୈକଗୋଚରଃ ।।

ଇତି ଯୋଗଜାଗମବଚନାନୁସାରେଣ ଭକ୍ତହୃଦୟେ ପ୍ରକାଶତ ଇତି ଭକ୍ତଦେହିକ–ଲିଙ୍ଗସ୍ଥଲଂ ସପ୍ତଭିଃ ସୂତ୍ରୈଃ ପ୍ରତିପାଦୟତି –

**ସମସ୍ତଜଗଦାତ୍ମାଽପି ଶଙ୍କରଃ ପରମେଶ୍ୱରଃ ।**
**ଭକ୍ତାନାଂ ହୃଦୟାମ୍ଭୋଜେ ବିଶେଷେଣ ବିରାଜତେ ।। ୭୧ ।।**

ଶଙ୍କରଃ ସୁଖଙ୍କରଃ ପରମେଶ୍ୱରଃ ସମସ୍ତଜଗଦାତ୍ମାଽପି ଭାବାଭାବରୂପପ୍ରପଞ୍ଚ–ମୟୋଽପି ଭକ୍ତାନାଂ ସ୍ୱଭକ୍ତାନାଂ ହୃଦୟାମ୍ଭୋଜେ ହୃଦୟକମଳେ ବିଶେଷେଣ ବିରାଜତେ ଆଧିକ୍ୟେନ ପ୍ରକାଶତ ଇତ୍ୟର୍ଥଃ ।। ୭୧ ।।

– (ଭକ୍ତଦେହିକ ଲିଙ୍ଗସ୍ଥଳ ବର୍ଣ୍ଣନ) – ଯଦ୍ୟପି ଶଙ୍କର ପରମେଶ୍ୱର ସମ୍ପୂର୍ଣ୍ଣ ସଂସାରରେ ବ୍ୟାପ୍ତ ଅଛନ୍ତି, ତଥାପି ଭକ୍ତଙ୍କର ହୃଦୟ କମଳରେ ସେ ବିଶେଷ ଭାବରେ ବିରାଜମାନ ।। ୭୧ ।।

ତତ୍‌କଥମିତ୍ୟତ୍ରାହ –

**କୈଳାସେ ମନ୍ଦରେ ଚୈବ ହିମାଦ୍ରୌ କନକାଚଳେ ।**
**ହୃଦୟେଷୁ ଚ ଭକ୍ତାନାଂ ବିଶେଷେଣ ବ୍ୟବସ୍ଥିତଃ ।। ୭୨ ।।**

ଏଷୁ ସ୍ଥାନେଷୁ ଯଥା ଶିବୋ ବିଶେଷେଣ ଭାସତେ, ତଥା ସ୍ୱଭକ୍ତାନାଂ ହୃଦୟେ ଭାସତ ଇତ୍ୟର୍ଥଃ ।। ୭୨ ।।

– କୈଳାସ, ମନ୍ଦର, ହିମାଳୟ ତଥା କନକାଚଳ ଅର୍ଥାତ୍ ସୁମେରୁ ପର୍ବତରେ ତଥା ଭକ୍ତଙ୍କର ହୃଦୟରେ (ଶିବ) ବିଶେଷ ଭାବରେ ରହନ୍ତି ।। ୭୨ ।।

ନନ୍ୱପରିଚ୍ଛିନ୍ନଃ ପରମେଶ୍ୱରଃ କଥଂ ପରିଚ୍ଛିନ୍ନଃ ସନ୍ ଭକ୍ତହୃଦୟେଷୁ ରାଜତ ଇତ୍ୟତ୍ରାହ –

**ସର୍ବାତ୍ମାପି ପରିଚ୍ଛିନ୍ନୋ ଯଥା ଦେହେଷୁ ବର୍ତ୍ତତେ ।**
**ତଥା ସ୍ୱକୀୟଭକ୍ତେଷୁ ଶଙ୍କରୋ ଭାସତେ ସଦା ।। ୭୩ ।।**

ସର୍ବାତ୍ମାତ୍ୱପି ପରମେଶ୍ୱରୋ ଦେବତିର୍ଯ୍ୟଙ୍ ମନୁଷ୍ୟଲକ୍ଷଣସକଳଦେହେଷୁ ଭିନ୍ନାନ୍ତଃକରଣବିଶିଷ୍ଟେଷୁ ପ୍ରତିବିମ୍ବଗତ୍ୟା ଯଥା ଭାସତେ, ତଥା ସ୍ୱକୀୟଭକ୍ତେଷୁ ସଦା ପ୍ରକାଶତ ଇତ୍ୟର୍ଥଃ ।। ୭୩ ।।

– ସର୍ବତ୍ର ବ୍ୟାପକ ପରମାତ୍ମା ଦେବାଦି ଦେହରେ ପରିଚ୍ଛିନ୍ନ ହୋଇ ଯେପରି ପ୍ରତିବିମ୍ବ ଭାବରେ ରହନ୍ତି, ସେହିପରି ଶଙ୍କର ନିଜର ଭକ୍ତଜନରେ ସଦା ପ୍ରକାଶିତ ହୁଅନ୍ତି ।। ୭୩ ।।

ଅସ୍ମିନ୍ନର୍ଥେ ପ୍ରମାଣଗର୍ଭିତ ବଚନମାହ –

**ନିତ୍ୟଂ ଭାତି ତ୍ୱଦୀୟେଷୁ ଯା ତେ ରୁଦ୍ର ଶିବତନୁଃ ।**
**ଅଘୋରାଽପାପକାଶୀତି ଶ୍ରୁତିରାହ ସନାତନୀ ।। ୭୪ ।।**

ଭୋ ରୁଦ୍ର ତେ ତବ ଯା ତନୂଃ ଶିବଲିଙ୍ଗମୂର୍ତ୍ତି, ଅଘୋରା ସୌମ୍ୟା, ଅପାପକାଶୀ ଦୋଷରହିତା, ସା ଲିଙ୍ଗମୂର୍ତ୍ତି, ତ୍ୱଦୀୟେଷୁ ତ୍ୱତ୍‌ସମ୍ବନ୍ଧିଷୁ ଭକ୍ତେଷୁ ନିତ୍ୟଂ ଭାତୀତି ସନାତନୀ ନିତ୍ୟା ଶ୍ରୁତିରାହେତ୍ୟର୍ଥଃ ।। ୭୪ ।।

– ହେ ରୁଦ୍ର, ତୁମ୍ଭର ଶିବା, ଅଘୋରା, ଅପାପକାଶିନୀ ଯେଉଁ ଶରୀର ଅଛି,

ତାହା ତୁମ୍ଭର ଭକ୍ତ ମଧ୍ୟରେ ନିତ୍ୟ ପ୍ରକାଶିତ ହୋଇଥାଏ – ଏପରି ସନାତନୀ ଶ୍ରୁତି କହିଅଛି ।। ୭୪।।

ନନୁ ଶିବଭକ୍ତବ୍ୟତିରିକ୍ତେଷୁ ନ ଭାସତେ କିମିତ୍ୟତ୍ରାହ –

**ବିଶୁଦ୍ଧେଷୁ ବିରକ୍ତେଷୁ ବିବେକିଷୁ ମହାତ୍ମସୁ ।**

**ଶିବସ୍ତିଷ୍ଠତି ସର୍ବାତ୍ମା ଶିବଲାଞ୍ଛନଧାରିଷୁ ।। ୭୫।।**

ବିଶୁଦ୍ଧେଷୁ ବିରକ୍ତେଷୁ ଷଡ୍‌ସ୍ଥଲଜ୍ଞାନିଷୁ ଚରମୂର୍ତ୍ତିଷ୍ୱିତ୍ୟର୍ଥଃ, ବିବେକିଷୁ ମହାତ୍ମସୁ ଶୁକାଦିଯୋଗିଷ୍ୱିତ୍ୟର୍ଥଃ, ଶିବଲାଞ୍ଛନଧାରିଷୁ ଭୂତିରୁଦ୍ରାକ୍ଷମାତ୍ରଧାରିଷୁ ଚେତ୍ୟର୍ଥଃ, ସର୍ବାତ୍ମା ଶିବଃ, ନିତ୍ୟଂ ତିଷ୍ଠତି ପ୍ରକାଶତ ଇତ୍ୟର୍ଥଃ ।। ୭୫।।

– ବିଶୁଦ୍ଧ, ବୈରାଗ୍ୟଯୁକ୍ତ, ବିବେକୀ ତଥା ଶିବଚିହ୍ନକୁ ଧାରଣ କରିଥିବା ମହାତ୍ମାଙ୍କ ମଧ୍ୟରେ ସର୍ବାତ୍ମା ଶିବ ବିରାଜମାନ ରହନ୍ତି ।। ୭୫।।

ନନ୍ୱେବଂ ଚେଦ୍ ସାଧାରଣତ୍ୱାଦ୍ ଶିବଭକ୍ତିଷୁ କୋ ବିଶେଷ ଇତ୍ୟତ୍ରାହ –

**ନିତ୍ୟଂ ସନ୍ତୋଷଯୁକ୍ତାନାଂ ଜ୍ଞାନନିର୍ଧୂତକର୍ମଣାମ୍ ।**

**ମାହେଶ୍ୱରାଣାମନ୍ତଃସ୍ଥୋ ବିଭାତି ପରମେଶ୍ୱରଃ ।। ୭୬।।**

ଶିବଜ୍ଞାନେନ ନିର୍ଧୂତକଲ୍ମଷବତ୍ତ୍ୱାଦ୍ ଶିବସୁଖାନୁଭାବିନାଂ ପରମେଶ୍ୱରାଣାଂ ନିର୍ମଳଦର୍ପଣେ ମୁଖାଦେଃ ସ୍ଫୁଟତୟା ଭାସନମିବାତିସ୍ଫୁଟତୟା ତେଷାମନ୍ତସ୍ଥଃ ସନ୍ ଭାତୀତ୍ୟର୍ଥଃ ।। ୭୬।।

– ନିତ୍ୟ ସନ୍ତୋଷଯୁକ୍ତ ଜ୍ଞାନଦ୍ୱାରା ସମସ୍ତ କର୍ମକୁ ଧ୍ୱଂସ କରିଥିବା ମାହେଶ୍ୱର ଭକ୍ତଙ୍କର ହୃଦୟରେ ସ୍ଥିତ ପରମେଶ୍ୱର ପ୍ରକାଶିତ ହୁଅନ୍ତି ।। ୭୬।।

ଅଥ ବକ୍ଷ୍ୟମାଣପ୍ରସାଦିସ୍ଥଲଂ ସୂଚୟତି –

**ଅନ୍ୟତ୍ର ଶମ୍ଭୋ ରତିମାତ୍ରଶୂନ୍ୟୋ ନିଜେଷ୍ଟଲିଙ୍ଗେ ନିୟତାନ୍ତରାତ୍ମା ।**

**ଶିବାତ୍ମକଂ ବିଶ୍ୱମିଦଂ ବିବୁଧ୍ୟ ମାହେଶ୍ୱରୋଽସୌ ଭବତି ପ୍ରସାଦୀ।। ୭୭।।**

ଶମ୍ଭୋଃ ଶିବାଦ୍ ଅନ୍ୟତ୍ର ଦେବତାନ୍ତରେ ରତିମାତ୍ରଶୂନ୍ୟଃ ପ୍ରୀତିଲେଶେନାପି ରହିତଃ ସନ୍ ନିଜେଷ୍ଟଲିଙ୍ଗେ ନିୟତାନ୍ତରାତ୍ମା ନିୟମିତାନ୍ତଃକରଣବାନସୌ ମାହେଶ୍ୱରଃ ଇଦଂ ବିଶ୍ୱମ୍ ଇଦମିତ୍ୟଙ୍ଗୁଳିନିର୍ଦ୍ଦେଶ୍ୟତ୍ୱେନ ଭାସମାନଂ ବିଶ୍ୱଂ ଶିବାତ୍ମକମୁକ୍ତଦୃଷ୍ଟାନ୍ତୈଃ ଶିବମୟମିତି ବିବୁଧ୍ୟନ୍ ସନ୍ ପ୍ରସାଦୀ ଭବତୀତ୍ୟର୍ଥଃ । 'ଶିବ ଏକୋ ଧ୍ୟେୟଃ ଶିବଶଙ୍କରଃ ସର୍ବମନ୍ୟଦ୍ ପରିତ୍ୟଜ' ଇତ୍ୟତ୍ର ଶ୍ରୁତିଃ ।। ୭୭।।

– ଶମ୍ଭୁ ଅତିରିକ୍ତ ବିଷୟରେ ଅନାସକ୍ତ, ନିଜର ଇଷ୍ଟ ଲିଙ୍ଗରେ ସଂଯତ ଅନ୍ତଃକରଣ ବାଲା ତଥା ଏହି ସଂସାରକୁ ଶିବସ୍ୱରୂପ ଜାଣୁଥିବା ମାହେଶ୍ୱର ହିଁ (ସର୍ବଦା) ପ୍ରସାଦୀ

ଅର୍ଥାତ୍ ସ୍ୱୟଂ ପ୍ରସନ୍ନ ରହି ଅନ୍ୟକୁ ପ୍ରସନ୍ନ କରିବାବାଲା ପ୍ରସାଦୀ ସ୍ଥଳର ସାଧକ ହୋଇଥାଏ ।। ୭୭।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ମାହେଶ୍ୱରସ୍ୟ ନବବିଧସ୍ଥଳପ୍ରସଙ୍ଗୋ ନାମ ଦଶମ ପରିଚ୍ଛେଦଃ ।। ୧୦।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ନବବିଧସ୍ଥଳପ୍ରସଙ୍ଗ ନାମକ ଦଶମ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୧୦।।



# ଏକାଦଶଃ ପରିଚ୍ଛେଦଃ

## ଅଥ ମାହେଶ୍ୱରସ୍ଥଲମ୍

ଅଥ ଭକ୍ତସ୍ଥଲନିରୂପଣାନନ୍ତରମଗସ୍ତ୍ୟଃ ଶ୍ରୀରେଣୁକଂ ପରିପୃଚ୍ଛତି –

ଅଗସ୍ତ୍ୟ ଉବାଚ

ଭକ୍ତସ୍ଥଲଂ ସମାଖ୍ୟାତଂ ଭବତା ଗଣନାୟକ ।
କେନ ବା ଧର୍ମଭେଦେନ ଭକ୍ତୋ ମାହେଶ୍ୱରୋ ଭବେତ୍ ।। ୧ ।।

ସ୍ପଷ୍ଟମ୍ ।। ୧ ।।

– (ପ୍ରସାଦୀସ୍ଥଳ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – ହେ ଗଣନାୟକ, ସାକ୍ଷାତ୍ ଲିଙ୍ଗରେ ନିଷ୍ଠା ଆଦି ଧର୍ମରେ ଯୁକ୍ତ ମାହେଶ୍ୱର ର ଆପଣ ବର୍ଣ୍ଣନ କଲେ । ଏହି ମାହେଶ୍ୱର ପୁଣି 'ପ୍ରସାଦୀ' କାହିଁକି କୁହାଯାଏ ? ।। ୧ ।।

ରେଣୁକ ଉବାଚ

ଲିଙ୍ଗନିଷ୍ଠାଦିଭାବେନ ଧ୍ୱସ୍ତପାପନିବନ୍ଧନଃ ।
ମନଃପ୍ରସାଦଯୋଗେନ ପ୍ରସାଦୀତ୍ୟେଷ କଥ୍ୟତେ ।। ୨ ।।

ଉକ୍ତ ଲିଙ୍ଗନିଷ୍ଠାଦିସ୍ଥଲପରିଜ୍ଞାନତଦାଚରଣତୋ ଧ୍ୱସ୍ତପାପସମୂହ ଏଷ ମାହେଶ୍ୱରୋ ମନୋନୈର୍ମଲ୍ୟସମ୍ବନ୍ଧେନ ପ୍ରସାଦୀତ୍ୟୁଚ୍ୟତ ଇତ୍ୟର୍ଥଃ ।। ୨ ।।

– ରେଣୁକାଚାର୍ଯ୍ୟ କହିଲେ – ଲିଙ୍ଗ ପ୍ରତି ନିଷ୍ଠା ଆଦି ଭାବଦ୍ୱାରା ସମସ୍ତ ପାପରୂପୀ ବନ୍ଧନକୁ ନଷ୍ଟ କରିଥିବା ମାହେଶ୍ୱର (ଭକ୍ତ) ମନର ପ୍ରସନ୍ନତା ହେତୁ 'ପ୍ରସାଦୀ' କୁହାଯାଇଥାଏ ।। ୨ ।।

ଅଥୈତତ୍ ସ୍ଥଲଂ କୀଦୃଶଂ କୀଦୃଗ୍‌ବିଧମିତ୍ୟତ୍ରାହ –

ପ୍ରସାଦିସ୍ଥଲମିତ୍ୟେତଦସ୍ୟ ମାହାତ୍ମ୍ୟବୋଧକମ୍ ।
ଅନ୍ତରସ୍ଥଲଭେଦେନ ସପ୍ତଧା ପରିକୀର୍ତ୍ତିତମ୍ ।। ୩ ।।

ଏତତ୍ ପ୍ରସାଦୀସ୍ଥଲମସ୍ୟ ଭକ୍ତମାହେଶ୍ୱରସ୍ଥଲୋକ୍ତସଦାଚାରସମୂହସ୍ୟ ମହତ୍ତ୍ୱ-ବୋଧକମବାନ୍ତରସ୍ଥଲଭେଦେନ ସପ୍ତବିଧମିତି ପରିକୀର୍ତ୍ତିତମିତ୍ୟର୍ଥଃ ।। ୩ ।।

– ଏହି ପ୍ରସାଦୀସ୍ଥଳ ଏହାଙ୍କର ମହିମାର ଜ୍ଞାପକ ଅଟେ । ଅନ୍ତର୍ଗତ ସ୍ଥଳ ଭେଦରେ ଏହା ସାତ ପ୍ରକାରର କୁହାଯାଇଛି ।। ୩ ।।

ଅଥ ତତ୍‌କଥମିତ୍ୟତ୍ରୋଦ୍ଦିଶତି –

**ପ୍ରସାଦିସ୍ଥଳମାଦୌ ତୁ ଗୁରୁମାହାତ୍ମ୍ୟକଂ ତତଃ ।**
**ତତୋ ଲିଙ୍ଗପ୍ରଶଂସା ଚ ତତୋ ଜଙ୍ଗମଗୌରବମ୍ ।। ୪ ।।**
**ତତୋ ଭକ୍ତସ୍ୟ ମାହାତ୍ମ୍ୟଂ ତତଃ ଶରଣକୀର୍ତ୍ତନମ୍ ।**
**ଶିବପ୍ରସାଦମାହାତ୍ମ୍ୟମିତି ସପ୍ତପ୍ରକାରକମ୍ ।। ୫ ।।**

ଶରଣକୀର୍ତ୍ତନଂ ତନ୍ମହତ୍ତ୍ୱକୀର୍ତ୍ତନମିତ୍ୟର୍ଥଃ । ଏବଂ ସପ୍ତପ୍ରକାରକମିତ୍ୟୁତ୍ତରମ୍ ।। ୪–୫ ।।

– ପ୍ରଥମ ପ୍ରସାଦୀସ୍ଥଳ, ଦ୍ୱିତୀୟ ଗୁରୁମାହାତ୍ମ୍ୟସ୍ଥଳ, ତୃତୀୟ ଲିଙ୍ଗପ୍ରଶଂସା ତା'ପରେ ଜଙ୍ଗମଗୌରବ, ତା'ପରେ ଭକ୍ତମାହାତ୍ମ୍ୟ, ତା'ପରେ ଶରଣକୀର୍ତ୍ତନସ୍ଥଳ ଏବଂ ଶେଷରେ ଶିବପ୍ରସାଦମାହାତ୍ମ୍ୟସ୍ଥଳ – ଏହିପରି ସାତ ପ୍ରକାରର ।। ୪–୫ ।।

ଅଥୋଦ୍ଦିଷ୍ଟାନାଂ ସ୍ଥଳାନାଂ କ୍ରମାଲ୍ଲକ୍ଷଣମୁଚ୍ୟତ ଇତ୍ୟତ୍ରାହ –

କ୍ରମାଲ୍ଲକ୍ଷଣମେତେଷାଂ କଥୟାମି ମହାମୁନେ ।

ସ୍ପଷ୍ଟମ୍ ।।

ଅଥ – ଚିତ୍ତସ୍ୟ ହି ପ୍ରସାଦେନ ହନ୍ତି କର୍ମ ଶୁଭାଶୁଭମ୍ ।
ପ୍ରସନ୍ନାତ୍ମାତ୍ମନି ସ୍ଥିତ୍ୱା ସୁଖମକ୍ଷୟମଶ୍ନୁତେ ।।

ଇତି ମୈତ୍ରେୟଶ୍ରୁତ୍ୟନୁସାରେଣ ଶିବପ୍ରସାଦଜାୟମାନମନଃ ପ୍ରସନ୍ନତାଂ ଦ୍ୱାଦଶସୂତ୍ରୈଃ ପ୍ରତିପାଦୟତି –

**ନୈର୍ମଲ୍ୟଂ ମନସୋ ଲିଙ୍ଗଂ ପ୍ରସାଦ ଇତି କଥ୍ୟତେ ।**
**ଶିବସ୍ୟ ଲିଙ୍ଗରୂପସ୍ୟ ପ୍ରସାଦାଦେବ ସିଦ୍ଧ୍ୟତି ।। ୬ ।।**

ମନସଶ୍ଚିତ୍ତସ୍ୟ ନୈର୍ମଲ୍ୟଂ ଲିଙ୍ଗଂ ନିର୍ମଲତ୍ୱଚିହ୍ନଂ ପ୍ରସାଦଇତି କଥ୍ୟତ ଇତ୍ୟର୍ଥଃ । ଏଷ ମନୋନିର୍ମଲତ୍ୱରୂପ୍ରସାଦୋ ଲିଙ୍ଗରୂପସ୍ୟ ଶିବସ୍ୟ ପ୍ରସାଦାତ୍ ସିଦ୍ଧ୍ୟତୀତ୍ୟର୍ଥଃ ।। ୬ ।।

– ହେ ମହାମୁନି, କ୍ରମରେ ଏମାନଙ୍କର ଲକ୍ଷଣ କହୁଛି । ମନର ନିର୍ମଳତାରୂପୀ ଚିହ୍ନକୁ ପ୍ରସାଦ କହନ୍ତି । ଏହି ପ୍ରସାଦ ଲିଙ୍ଗରୂପୀ ଶିବଙ୍କର କୃପାରୁ ପ୍ରାପ୍ତ ହୋଇଥାଏ ।। ୬ ।।

ନନୁ କୋଽୟଂ ଚିତ୍ତନୈର୍ମଲ୍ୟଲକ୍ଷଣପ୍ରସାଦ କାରଣୀଭୂତ ଶିବପ୍ରସାଦ ଇତ୍ୟତ୍ରାହ –

**ଶିବପ୍ରସାଦଂ ଯଦ୍‌ଦ୍ରବ୍ୟଂ ଶିବାୟ ବିନିବେଦିତମ୍ ।**
**ନିର୍ମାଲ୍ୟଂ ତତ୍ତୁ ଶୈବାନାଂ ମନୋନୈର୍ମଲ୍ୟକାରଣମ୍ ।। ୭ ।।**

ଶିବାୟ ବିନିବେଦିତଂ ସମର୍ପିତଂ ଯଦ୍ ଦ୍ରବ୍ୟଂ ତଦ୍ ଶିବପ୍ରସାଦଃ, ତନ୍ନିର୍ମାଲ୍ୟଂ ତୁ ବିଶେଷଶୈବାନାଂ ବୀରଶୈବାନାଂ ମନୋନୈର୍ମଲ୍ୟକାରଣଂ ଭବତୀତ୍ୟର୍ଥଃ ।। ୭ ।।

– ଶିବଙ୍କୁ ସମର୍ପିତ ଶିବପ୍ରସାଦରେ ନିର୍ମଳତା ବୀରଶୈବଙ୍କର ମନର ନିର୍ମଳତାର କାରଣ ହୋଇଥାଏ ।। ୭ ।।

ଅଥୈବଂ ରୂପଶିବପ୍ରସାଦସ୍ୱୀକାରବାନ୍ ପ୍ରସାଦୀତ୍ୟାହ –

**ମନଃ ପ୍ରସାଦସିଦ୍ଧ୍ୟର୍ଥଂ ନିର୍ମଲଜ୍ଞାନକାରଣମ୍ ।**
**ଶିବପ୍ରସାଦଂ ସ୍ୱୀକୁର୍ବନ୍ ପ୍ରସାଦୀତ୍ୟେଷ କଥ୍ୟତେ ।। ୮ ।।**

ଜ୍ଞାନକାରଣଂ ଶିବଜ୍ଞାନକାରଣଂ ଶିବପ୍ରସାଦଂ ନିର୍ମାଲ୍ୟଂ ଶିବଲିଙ୍ଗପ୍ରସାଦରୂପ-ଶିବନିର୍ମାଲ୍ୟଂ ମନଃପ୍ରସାଦସିଦ୍ଧ୍ୟର୍ଥଂ ଚିତ୍ତନୈର୍ମଲ୍ୟସିଦ୍ଧ୍ୟର୍ଥଂ ସ୍ୱୀକୁର୍ବନ୍ ଏଷ ବୀରମାହେଶ୍ୱରଃ ପ୍ରସାଦୀତି କଥ୍ୟତ ଇତ୍ୟର୍ଥଃ ।। ୮ ।।

– ମନର ପ୍ରସନ୍ନତାର ସିଦ୍ଧି ପାଇଁ ନିର୍ମଳଜ୍ଞାନର କାରଣଭୂତ ଶିବପ୍ରସାଦକୁ ସ୍ୱୀକାର କରିବାବାଲା ପ୍ରସାଦୀ କୁହାଯାଏ ।। ୮ ।।

ତସ୍ମାତ୍ – 'ଆହାରଶୁଦ୍ଧ୍ୟା (ଶୁଦ୍ଧୌ) ତତ୍ତ୍ୱଶୁଦ୍ଧିଃ' ଇତି ଛାନ୍ଦୋଗ୍ୟଶ୍ରୁତେଃ ଶୁଦ୍ଧଶିବନିର୍ମାଲ୍ୟ ଭକ୍ଷଣେନ ସକଲତତ୍ତ୍ୱଶୁଦ୍ଧିଦ୍ୱାରା ମନୋନୈର୍ମଲ୍ୟଂ ଲଭତେ ଭକ୍ତ ଇତ୍ୟାହ –

**ଅନ୍ନଶୁଦ୍ଧ୍ୟା ହି ସର୍ବେଷାଂ ତତ୍ତ୍ୱଶୁଦ୍ଧିରୁଦାହୃତା ।**
**ବିଶୁଦ୍ଧମନ୍ନଜାତଂ ହି ଯଚ୍ଛିବାୟ ସମର୍ପିତମ୍ ।। ୯ ।।**
**ତଦେବଂ ସର୍ବକାଲଂ ତୁ ଭୁଞ୍ଜାନୋ ଲିଙ୍ଗତତ୍ପରଃ ।**
**ମନଃପ୍ରସାଦମତୁଲଂ ଲଭତେ ଜ୍ଞାନକାରଣମ୍ ।। ୧୦ ।।**

ଅନ୍ନଶୁଦ୍ଧ୍ୟା ସର୍ବେଷାଂ ପ୍ରାଣିନାଂ ତତ୍ତ୍ୱଶୁଦ୍ଧିର୍ଦେହାକ୍ଷଭୁବନପ୍ରପଞ୍ଚ ଶୁଦ୍ଧିରିତି ଶାସ୍ତ୍ରଜ୍ଞୈରୁଦାହୃତା । ଯଚ୍ଛିବାୟ ସମର୍ପିତମନ୍ନଜାତଂ ଶୁଦ୍ଧଂ ତଦନ୍ନଜାତମେବ ଲିଙ୍ଗତତ୍ପରଃ ସନ୍ ସଦାକାଲଂ ଭୁଞ୍ଜାନଃ ପ୍ରସାଦୀ ଅତୁଲଂ ଶିବଜ୍ଞାନକାରଣଂ ମନଃପ୍ରସାଦଂ ମନୋନୈର୍ମଲ୍ୟଂ ଲଭତ ଇତ୍ୟର୍ଥଃ ।। ୯-୧୦ ।।

– ଅନ୍ନ ଶୁଦ୍ଧିରେ ସମସ୍ତ ତତ୍ତ୍ୱଶୁଦ୍ଧି ବୋଲି କୁହାଯାଇଛି । ତାହା ହେଉଛି ବିଶୁଦ୍ଧ ଅନ୍ନ ଯାହା ଶିବଙ୍କୁ ସମର୍ପିତ ହୋଇଥାଏ । ଲିଙ୍ଗର ଆରାଧନାରେ ତତ୍ପର ସଦା ସେହି ଅନ୍ନକୁ ଖାଉଥିବା ଭକ୍ତ ଜ୍ଞାନରୁ ଉତ୍ପନ୍ନ ଅସୀମ ମନଃପ୍ରସାଦକୁ ପ୍ରାପ୍ତ ହୋଇଥାଏ ।। ୯-୧୦ ।।

ତସ୍ମାଦାତ୍ମଭୋଗାର୍ଥଂ ନିୟମିତଂ ସଦ୍ ଯଦ୍ୟଦ୍ ଦ୍ରବ୍ୟଂ ପ୍ରାପ୍ତଂ ଭବତି, ତତ୍ସର୍ବଂ 'ଯଦ୍ୟଦାତ୍ମହିତଂ ବସ୍ତୁ .........ଶିବାର୍ପିତମ୍' ଇତି ଶିବରହସ୍ୟବଚନାନୁସାରେଣ ଶିବାୟ ସମର୍ପ୍ୟ ଭୁଞ୍ଜୀୟାଦିତ୍ୟାହ –

**ଆତ୍ମଭୋଗାୟ ନିୟତଂ ଯଦ୍ୟଦ୍ ଦ୍ରବ୍ୟଂ ସମାହିତମ୍ ।**
**ତତ୍ତଦ୍ ସମର୍ପ୍ୟ ଦେବାୟ ଭୁଞ୍ଜୀତାତ୍ମ ବିଶୁଦ୍ଧୟେ ।। ୧୧ ।।**

ଆତ୍ମଭୋଗାୟ ନିୟମିତଂ ସତ୍ ସମାହିତଂ ସମ୍ପାଦିତଂ ତତ୍ତତ୍ ଶିବଲିଙ୍ଗଦେବାୟ ସମର୍ପ୍ୟାତ୍ମବିଶୁଦ୍ଧୟେ ଚିତ୍ତଶୁଦ୍ଧ୍ୟର୍ଥଂ ଭୁଞ୍ଜୀୟାଦିତ୍ୟର୍ଥଃ ।। ୧୧ ।।

– ଆତ୍ମଭୋଗ ନିମନ୍ତେ ନିଶ୍ଚିତ ରୂପରେ ଯେଉଁ ଯେଉଁ ଦ୍ରବ୍ୟ ଏକତ୍ରିତ କରାଯାଏ, ଆତ୍ମଶୁଦ୍ଧ ପାଇଁ ସେହି–ସେହି (ଦ୍ରବ୍ୟ କୁ) ମହାଦେବଙ୍କୁ ସମର୍ପିତ କରି ଖାଇବା ଉଚିତ୍ ।। ୧୧ ।।

ଅଥାସ୍ୟ ମହତ୍ତ୍ୱଂ ପ୍ରତିପାଦୟତି –

**ନିତ୍ୟସିଦ୍ଧେନ ଦେବେନ ଭିଷଜା ଜନ୍ମରୋଗିଣାମ୍ ।**
**ଯଦ୍ୟଦ୍ ପ୍ରସାଦିତଂ ଭୁକ୍ତ୍ୱା ତତ୍ତଜ୍ଜନ୍ମରସାୟନମ୍ ।। ୧୨ ।।**

ଜନ୍ମରୋଗିଣାଂ ଭବରୋଗିଣାଂ ଭିଷଜା ବୈଦ୍ୟେନ ନିତ୍ୟସିଦ୍ଧେନ ଶିବଲିଙ୍ଗେ ନିରନ୍ତର ସିଦ୍ଧେନ ଦେବେନ ପରମେଶ୍ୱରେଣ ଯଦ୍ ଦ୍ରବ୍ୟଂ ଭୁକ୍ତ୍ୱା ପ୍ରସାଦିତଂ ପ୍ରସାଦୀକୃତମ୍, ତତ୍ତଦ୍ ଜନ୍ମରସାୟନଂ ସଂସାରବ୍ୟାଧିରସାୟନମିତ୍ୟର୍ଥଃ ।। ୧୨ ।।

– ଜନ୍ମରୂପୀ ରୋଗଗ୍ରସ୍ତମାନଙ୍କ ପାଇଁ ନିତ୍ୟସିଦ୍ଧ ବୈଦ୍ୟରୂପୀ ଶିବଦେବଙ୍କ ଦ୍ୱାରା ଭୋଗ ଲଗାଇ ଯେଉଁ ବସ୍ତୁ ସବୁ ପ୍ରସାଦ କରାଯାଇଛି, ତାହା ସବୁ ଜନ୍ମ ରସାୟନ ଅର୍ଥାତ୍ ପୁନର୍ଜନ୍ମରୁ ମୁକ୍ତି ପାଇବା ପାଇଁ ଔଷଧି ଅଟନ୍ତି ।। ୧୨ ।।

ଅଥ ଐହିକାରୋଗ୍ୟାଦିକାରଣଂ ଚେତ୍ୟାହ –

**ଆରୋଗ୍ୟକାରଣଂ ପୁଂସାମନ୍ତଃ କରଣଶୁଦ୍ଧିମ୍ ।**
**ତାପତ୍ରୟମହାରୋଗସମୁଦ୍ଧରଣଭେଷଜମ୍ ।। ୧୩ ।।**
**ବିଦ୍ୟାବୈଶଦ୍ୟକରଣଂ ବିନିପାତବିଘାତନମ୍ ।**
**ଦ୍ୱାରଂ ଜ୍ଞାନାବତାରସ୍ୟ ମୋହୋଚ୍ଛେଦସ୍ୟ କାରଣମ୍ ।। ୧୪ ।।**
**ବୈରାଗ୍ୟସମ୍ପଦୋ ମୂଲଂ ମହାନନ୍ଦପ୍ରବର୍ଧନମ୍ ।**
**ଦୁର୍ଲଭଂ ପାପଚିତ୍ତାନାଂ ସୁଲଭଂ ଶୁଦ୍ଧକର୍ମଣାମ୍ ।। ୧୫ ।।**
**ଆଦୃତଂ ବ୍ରହ୍ମବିଷ୍ଣ୍ୱାଦୈର୍ବସିଷ୍ଠାଦୈଶ୍ଚ ତାପସୈଃ ।**
**ଶିବସ୍ୱୀକୃତମନ୍ନାଦ୍ୟଂ ସ୍ୱୀକାର୍ଯ୍ୟଂ ସିଦ୍ଧିକାଂକ୍ଷିଭିଃ ।। ୧୬ ।।**

ଅତ୍ର ପୁନସ୍ତଦିତ୍ୟନୁବର୍ତ୍ତତେ । ତତ୍ ପ୍ରସାଦଦ୍ରବ୍ୟଂ ପୁଂସାମାରୋଗ୍ୟକାରଣଂ ସଦ୍ ଅନ୍ତଃକରଣଶୁଦ୍ଧିଦମ୍ ଆଧ୍ୟାତ୍ମିକାଦିତାପତ୍ରୟ ଲକ୍ଷଣମହାରୋଗୋନ୍ମୂଲନୌଷଧମ୍ ବିଦ୍ୟାବିଶେଷ ସିଦ୍ଧିକାରଣଂ ବିନିପାତଃ କୃତ୍ରିମଦୋଷସ୍ତସ୍ୟ ଘାତକମ୍, ଶିବଜ୍ଞାନାବତାରସ୍ୟ ଦ୍ୱାରମ୍, ଅଜ୍ଞାନୋଚ୍ଛେଦକାରଣମ୍, ବୈରାଗ୍ୟସମ୍ପଦୋ ମୂଳକାରଣମ୍, ନିତ୍ୟାନନ୍ଦ ପ୍ରକାଶକମ୍, ପାପିଷ୍ଠାନାଂ ଦୁର୍ଲଭଂ, ପୁଣ୍ୟାତ୍ମନାଂ ସୁଲଭଂ, ବ୍ରହ୍ମାଦିଦେବୈର୍ବସିଷ୍ଠାଦି ମୁନିଭିଃ ପ୍ରୀତିବିଷୟୀକୃତମ୍ । ଏବଂ ରୂପଂ ଶିବସ୍ୱୀକୃତମନ୍ନାଦ୍ୟଂ ଶିବଲିଙ୍ଗସ୍ୱୀକୃତାନ୍ନାଦିପ୍ରସାଦ–

ଦ୍ରବ୍ୟଂ ସିଦ୍ଧିକାଂକ୍ଷିଭିରିହ ପରତ୍ର ଭୋଗମୋକ୍ଷଲକ୍ଷଣ ସିଦ୍ଧିକାଂକ୍ଷିଭିଃ ପ୍ରସାଦିଭିଃ ସ୍ୱୀକାର୍ଯ୍ୟମିତ୍ୟର୍ଥଃ ।। ୧୩-୧୬।।

– ସିଦ୍ଧି ଚାହୁଁଥିବା ବ୍ୟକ୍ତିମାନେ ଶିବଦ୍ୱାରା ସ୍ୱୀକୃତ ଅର୍ଥାତ୍ ଶିବଙ୍କୁ ସମର୍ପିତ ଅନ୍ନାଦି ଗ୍ରହଣ କରିବା ଉଚିତ୍ । ସେହି ଅନ୍ନାଦିର ବିଶେଷତା ହେଉଛି – ଏହା ବ୍ୟକ୍ତିର ଆରୋଗ୍ୟର କାରଣ, ତାଙ୍କର ଅନ୍ତଃକରଣକୁ ଶୁଦ୍ଧ କରିବାବାଲା, ତିନି ତାପରୂପୀ ମହାରୋଗରୁ ଉଦ୍ଧାର କରିବାପାଇଁ ଔଷଧ, ବିଦ୍ୟାକୁ ବିଶଦ କରିଥାଏ, ପତନ ଅର୍ଥାତ୍ କୃତ୍ରିମଦୋଷ ର ରୋଧକ, ଜ୍ଞାନାବତାରର ଦ୍ୱାର ତଥା ମୋହୋଚ୍ଛେଦର କାରଣ । ବୈରାଗ୍ୟରୂପୀ ସମ୍ପତ୍ତିର ମୂଳ ତଥା ମହାନନ୍ଦକୁ ବଢ଼େଇବାବାଲା, ପାପୀମାନଙ୍କ ପାଇଁ ଦୁର୍ଲଭ ତଥା ଶୁଦ୍ଧ ଆଚାରବାଲାଙ୍କ ପାଇଁ ସୁଲଭ, ବ୍ରହ୍ମା, ବିଷ୍ଣୁ ଆଦି ଦେବତା ତଥା ବଶିଷ୍ଠ ଆଦି ତପସ୍ୱୀଙ୍କ ଦ୍ୱାରା ପ୍ରସାଦର ଆଦର କରାଯାଇଛି ।। ୧୩-୧୬।।

ଅଥୈତତ୍ ପ୍ରସାଦସ୍ୱୀକାରେଣ ସର୍ବପାପକ୍ଷୟଶ୍ଚ ଭବତୀତ୍ୟାହ –

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ[୧୫୧] ଯଚ୍ଛିବାୟ ନିବେଦିତମ୍ ।**
**ତତ୍ତତ୍ସ୍ୱୀକାରଯୋଗେନ ସର୍ବପାପକ୍ଷୟୋ ଭବେତ୍ ।। ୧୭।।**

ଯଦ୍ ଯଦ୍ ଦ୍ରବ୍ୟମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୭।।

– ପତ୍ର, ପୁଷ୍ପ, ଫଳ, ଜଳ – ଯାହା କିଛି ଶିବଙ୍କୁ ସମର୍ପିତ ଅଟେ, ତାହାକୁ ସ୍ୱୀକାର କଲେ ସମସ୍ତପାପ କ୍ଷୟ ହୋଇଥାଏ ।। ୧୭।।

ଅଥ ଶିବଲିଙ୍ଗପ୍ରସାଦବଦେବ ଶ୍ରୀଗୁରୁଶିବଯୋଗିନୋରପି ପ୍ରସାଦଃ ସ୍ୱୀକାର୍ଯ୍ୟ ଇତ୍ୟୁକ୍ତ୍ୱା ପ୍ରସାଦିସ୍ଥଲଂ ସମାପୟତି –

**ଯଥା ଶିବପ୍ରସାଦାନ୍ନଂ ସ୍ୱୀକାର୍ଯ୍ୟଂ ଲିଙ୍ଗତତ୍ପରୈଃ ।**
**ତଥା ଗୁରୋଃ ପ୍ରସାଦାନ୍ନଂ ତଥୈବ ଶିବଯୋଗିନାମ୍ ।। ୧୮।।**

ଲିଙ୍ଗନିଷ୍ଠୈଃ ପ୍ରସାଦିଭିର୍ଯ୍ୟା ପ୍ରସାଦାନ୍ନଂ ସ୍ୱୀକାର୍ଯ୍ୟମ୍, ତଥା ଶ୍ରୀଗୁରୁଶିବଯୋଗିନାଂ ଚାନ୍ନପ୍ରସାଦୋଽପି ସ୍ୱୀକାର୍ଯ୍ୟ ଇତ୍ୟର୍ଥଃ ।। ୧୮।।

– ଲିଙ୍ଗ ଆରାଧନାରେ ତତ୍ପର ଲୋକମାନଙ୍କ ପାଇଁ ଶିବପ୍ରସାଦରୂପୀ ଅନ୍ନ ସ୍ୱୀକାର୍ଯ୍ୟ ହୋଇଥାଏ, ସେହିପରି ଗୁରୁ ଏବଂ ଶିବଯୋଗୀମାନଙ୍କର ପ୍ରସାଦାନ୍ନ ମଧ୍ୟ ସ୍ୱୀକାର୍ଯ୍ୟ ହେବା ଉଚିତ୍ ।। ୧୮।।

ଇତି ପ୍ରସାଦିସ୍ଥଲମ୍

---

୧୫୧. ତୁଳନୀୟ –

ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି ।
ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ ।। (ଭ.ଗୀ, ୯/୨୬)

## ଅଥ ଗୁରୁମାହାତ୍ମ୍ୟସ୍ଥଲମ୍

ଅଥ ପ୍ରସାଦନିଷ୍ଠେନ ଜ୍ଞାତବ୍ୟଂ ଗୁରୁମାହାତ୍ମ୍ୟସ୍ଥଲଂ ନିରୂପୟତି –

**ଗୁରୁରେବାତ୍ର ସର୍ବେଷାଂ କାରଣଂ ସିଦ୍ଧିକର୍ମଣାମ୍ ।**
**ଗୁରୁରୂପୋ ମହାଦେବୋ ଯତଃ ସାକ୍ଷାଦୁପସ୍ଥିତଃ ।। ୧୯ ।।**

ଅତ୍ର ଲୋକେ ଭୋଗମୋକ୍ଷଲକ୍ଷଣସକଳସିଦ୍ଧିକର୍ମଣାଂ ଗୁରୁରେବ କାରଣମ୍, 'ନ ଗୁରୋରଧିକଂ ନ ଗୁରୋରଧିକମ୍' ଇତି ଶିବରହସ୍ୟବଚନାତ୍ । ଯତଃ ପରମେଶ୍ୱର ଏବ ସାକ୍ଷାଦ୍ ଗୁରୁରୂପଃ ସନ୍ ଉପସ୍ଥିତସ୍ତିଷ୍ଠତୀତ୍ୟର୍ଥଃ ।। ୧୯ ।।

– ଏହି ଜଗତରେ ସମସ୍ତ ସିଦ୍ଧିକର୍ମର କାରଣ ଗୁରୁ ହିଁ ଅଟନ୍ତି । କାରଣ ଗୁରୁ ରୂପରେ ସାକ୍ଷାତ୍ ମହାଦେବ ଉପସ୍ଥିତ ହୁଅନ୍ତି ।। ୧୯ ।।

ନନୁ ନିଷ୍କଳଃ ଶିବଃ କିମର୍ଥଂ ସକଳଗୁରୁରୂପେଣ ପ୍ରକାଶତ ଇତ୍ୟତ୍ରାହ –

**ନିଷ୍କଳୋ ହି ମହାଦେବୋ ନିତ୍ୟଜ୍ଞାନମହୋଦଧିଃ ।**
**ସକଳୋ ଗୁରୁରୂପେଣ ସର୍ବାନୁଗ୍ରାହକୋ ଭବେତ୍ ।। ୨୦ ।।**

ନିତ୍ୟଜ୍ଞାନାର୍ଣ୍ଣବ ପରମେଶ୍ୱରୋ ନିଷ୍କଳୋଽପି ନିରବୟବୋଽପି ଗୁରୁରୂପେଣ ସକଳଃ ସନ୍ କରଚରଣାଦିବିଶିଷ୍ଟଃ ସନ୍ ସର୍ବାନୁଗ୍ରାହକୋ ଭବେତ୍, ଲୋକାନୁଗ୍ରହାର୍ଥଂ ଭାତୀତ୍ୟର୍ଥଃ ।। ୨୦ ।।

– ନିତ୍ୟଜ୍ଞାନର ସମୁଦ୍ର ମହାଦେବ ନିଷ୍କଳ ଅଟନ୍ତି । ସେ ହିଁ ଗୁରୁରୂପରେ ସକଳ ହୋଇ ସର୍ବାନୁଗ୍ରହର କାରକ ହୋଇଥାନ୍ତି ।। ୨୦ ।।

ତସ୍ମାଦ୍ ଗୁରୁଶିବୟୋର୍ଭେଦୋ ନାସ୍ତୀତ୍ୟାହ –

**ଯଃ ଶିବଃ ସ ଗୁରୁର୍ଜ୍ଞେୟୋ ଯୋ ଗୁରୁଃ ସ ଶିବଃ ସ୍ମୃତଃ ।**
**ନ ତୟୋରନ୍ତରଂ କୁର୍ଯ୍ୟାଦ୍ ଜ୍ଞାନାବାପ୍ତୌ ମହାମତିଃ ।। ୨୧ ।।**

ଗୁରୋର୍ମୋକ୍ଷକାରଣୀଭୂତଜ୍ଞାନପ୍ରଦତ୍ୱେନ ଶିବଭିନ୍ନତ୍ୱାତ୍, ଅନ୍ୟଥା ଜ୍ଞାନାନୁଦୟ-ପ୍ରସଙ୍ଗାତ୍ । ତଦର୍ଥଂ ସୂକ୍ଷ୍ମଦୃକ୍ ତୟୋରନ୍ତରଂ ଭେଦଂ ନ କୁର୍ଯ୍ୟାଦିତ୍ୟର୍ଥଃ ।। ୨୧ ।।

– ଯିଏ ଶିବ, ସେ ହିଁ ଗୁରୁ ଜାଣ । ଯିଏ ଗୁରୁ, ସେ ହିଁ ଶିବ କୁହାଯାଇଛନ୍ତି । ଅର୍ଥାତ୍ ଗୁରୁ ଶିବସାଯୁଜ୍ୟରୂପ ମୋକ୍ଷର କାରଣଭୂତ ଜ୍ଞାନର ଦାତା ହୋଇଥିବାରୁ ଶିବଠାରୁ ଅଭିନ୍ନ ଅଟନ୍ତି । ଜ୍ଞାନଲାଭ ସନ୍ଦର୍ଭରେ ବିଦ୍ୱାନ୍ ସେ ଦୁହିଁଙ୍କ ଭିତରେ ଭେଦ କରିବା ଉଚିତ୍ ନୁହେଁ ।। ୨୧ ।।

'ଯଥାହଂ ସର୍ବଲୋକାନାଂ ଗୁରୁରମ୍ବିକୟା ସହ' ଇତ୍ୟାଗମୋକ୍ତେଃ ଶିବସଦୃଶଂ ଶ୍ରୀଗୁରୁଂ ପ୍ରାକୃତୈଃ ସଦୃଶମନୁକ୍ତ୍ୱା ପୂଜୟେଦିତ୍ୟାହ –

ତସ୍ମାତ୍ ସଚ୍ଚିଦାନନ୍ଦସ୍ୱରୂପଂ ପରବ୍ରହ୍ମୈବ ନିଜରୂପଂ ଲିଙ୍ଗମିତି ଧ୍ୟାନାତ୍ ଚିନ୍ତନାତ୍ ତଦବସ୍ଥା ଲିଙ୍ଗମେବ ନିଜମିତ୍ୟବସ୍ଥା ପ୍ରଜାୟତେ ପ୍ରକାଶତ ଇତ୍ୟର୍ଥଃ ।। ୪୧ ।।

– ଏହି କାରଣରୁ ସତ୍–ଚିତ୍–ଆନନ୍ଦ ସ୍ୱରୂପ ବ୍ରହ୍ମ ହିଁ ପରଲିଙ୍ଗ ଅଟେ । 'ସେ ହିଁ ନିଜର ରୂପ ଅଟେ' ଏହିପରି ଧ୍ୟାନ କରିବାରୁ ନିଜଲିଙ୍ଗାବସ୍ଥା ଉତ୍ପନ୍ନ ହୋଇଥାଏ ।। ୪୧।।

## ଇତି ଲିଙ୍ଗନିଜସ୍ଥଲମ୍

## ଅଥାଙ୍ଗଲିଙ୍ଗସ୍ଥଲମ୍

ଅଥ ଲିଙ୍ଗନିଜାଙ୍ଗିନମଙ୍ଗଲିଙ୍ଗିନଂ ସୂତ୍ରଦ୍ୱୟେନ ନିରୂପୟତି –

**ଜ୍ଞାନମଙ୍ଗମିତି ପ୍ରାହୁର୍ଜ୍ଞେୟଂ ଲିଙ୍ଗଂ ସନାତନମ୍ ।**
**ବିଦ୍ୟତେ ତଦ୍ଦ୍ୱୟଂ ଯସ୍ୟ ସୋଽଙ୍ଗଲିଙ୍ଗୀତି କୀର୍ତ୍ତିତଃ ।। ୪୨।।**

ଜ୍ଞାନଂ ଶିବଜ୍ଞାନବାନ୍ ଜୀବଃ, ଅଙ୍ଗମ୍ ଅଙ୍ଗମିତି ପ୍ରାହୁରିତ୍ୟର୍ଥଃ । ଜ୍ଞେୟଂ ତେନ ଶିବଜ୍ଞାନବତାନେନ ସାକ୍ଷାତ୍ କରଣୀୟଂ ବସ୍ତୁ ସନାତନଂ ନିତ୍ୟଂ ଲିଙ୍ଗମିତି ପ୍ରାହୁଃ, 'ଦ୍ୱା ସୁପର୍ଣ୍ଣା ସମୁଚ୍ଚା ସଖାୟା'[୧୭୯] ଇତି ଶ୍ରୁତେଃ । ଏତଦ୍ ଦ୍ୱୟମ୍ ଅଙ୍ଗଲିଙ୍ଗଦ୍ୱୟଂ ଯସ୍ୟ ପ୍ରାଣଲିଙ୍ଗିନୋ ବର୍ତ୍ତତେ, ସୋଽଙ୍ଗଲିଙ୍ଗୀ କୀର୍ତ୍ତିତ ଇତ୍ୟର୍ଥଃ ।। ୪୨ ।।

– (ଅଙ୍ଗଲିଙ୍ଗସ୍ଥଳ ବର୍ଣ୍ଣନ) – (ବିଦ୍ୱାନ୍‌ମାନେ) ଜ୍ଞାନକୁ ଅଙ୍ଗ ଏବଂ ଜ୍ଞେୟକୁ ସନାତନ ଲିଙ୍ଗ କହିଥା'ନ୍ତି । ଏହି ଦୁଇଟିର ଜ୍ଞାନ ଯାହାର ଥାଏ, ସେ ଅଙ୍ଗଲିଙ୍ଗୀ କୁହାଯାଏ ।। ୪୨।।

ଅଥୈବଂ ଚେଦ୍ ଭେଦବାଦିମତପ୍ରବେଶୋ ଜାତ ଇତ୍ୟତ୍ରାହ –

**ଅଙ୍ଗେ ଲିଙ୍ଗଂ ସମାରୂଢ଼ଂ ଲିଙ୍ଗେ ଚାଙ୍ଗମୁପସ୍ଥିତମ୍ ।**
**ଏତଦସ୍ତିଦ୍ୱୟଂ ଯସ୍ୟ ସ ଭବେଦଙ୍ଗଲିଙ୍ଗବାନ୍ ।। ୪୩।।**

ଅଙ୍ଗେ ଜୀବାତ୍ମନି ଲିଙ୍ଗଂ ଶିବଲିଙ୍ଗଂ ସମାରୂଢ଼ଂ ସାମରସ୍ୟେ ନାସ୍ତି, ଲିଙ୍ଗେ ଶିବଲିଙ୍ଗେ ଅଙ୍ଗଂ ଜୀବ ଉପସ୍ଥିତଂ ସାମରସ୍ୟେନାସ୍ତି । ଏତଦ୍ ଦ୍ୱୟଂ ଯସ୍ୟାସ୍ତି ବୀଜାଙ୍କୁରନ୍ୟାୟେ ନୈବଂ ବିଧଜ୍ଞାନଦ୍ୱୟଂ ଯସ୍ୟ ପ୍ରାଣଲିଙ୍ଗିନୋଽସ୍ତି, ସୋଽଙ୍ଗଲିଙ୍ଗବାନିତ୍ୟର୍ଥଃ ।। ୪୩।।

– ଅଙ୍ଗରେ ଲିଙ୍ଗ ଆରୂଢ଼ ଅଟେ ଏବଂ ଲିଙ୍ଗରେ ଅଙ୍ଗ ଓତପ୍ରୋତ ଅଟେ ବୀଜାଙ୍କୁର ନ୍ୟାୟରେ ଏହି ଦୁଇ ପ୍ରକାରର ଜ୍ଞାନ ଯାହା ପାଖରେ ଥାଏ, ସେ ଅଙ୍ଗଲିଙ୍ଗବାନ୍ ହୋଇଥାଏ ।। ୪୩।।

ନନ୍ୱତ୍ର ଜ୍ଞାନମାତ୍ରମେବ ବିବକ୍ଷିତଂ କିମିତ୍ୟତ୍ରାହ –

---

୧୭୯. ମୁ. ଉ., ୩/୧/୧

**ଜ୍ଞାତ୍ୱା ଯଃ ସତତଂ ଲିଙ୍ଗଂ ସ୍ୱାନ୍ତଃସ୍ଥଂ ଜ୍ୟୋତିରାତ୍ମକମ୍ ।**

**ପୂଜୟେଦ୍ ଭାବୟେନ୍ନିତ୍ୟଂ ତଂ ବିନ୍ଦ୍ୟାଦଙ୍ଗଲିଙ୍ଗିନମ୍ ।। ୪୪ ।।**

ଯଃ ପ୍ରାଣଲିଙ୍ଗୀ ସ୍ୱାନ୍ତଃସ୍ଥ ସ୍ୱହୃଦୟକମଲସ୍ଥଂ ଜ୍ୟୋତିରାତ୍ମକଂ ଜ୍ୟୋତିର୍ମୟଂ ସତତଂ ନିତ୍ୟଂ ଲିଙ୍ଗଂ ନିଜଲିଙ୍ଗଂ ଜ୍ଞାତ୍ୱା ସାମରସ୍ୟରୂପଂ ଶ୍ରୁତିଗୁରୁସ୍ୱାନୁଭବୈର୍ବିଦିତ୍ୱା ପୂଜୟେଦ୍ ଧ୍ୟାୟେଦ୍ ତଂ ପ୍ରାଣଲିଙ୍ଗିନଂ ବିନ୍ଦ୍ୟାଦ୍ ଜାନୀୟାଦିତ୍ୟର୍ଥଃ ।। ୪୪ ।।

– ଯେଉଁ ମନୁଷ୍ୟ ନିଜ ଭିତରେ ଥିବା ଜ୍ୟୋତିର୍ମୟ ଲିଙ୍ଗକୁ ଶାସ୍ତ୍ର, ଗୁରୁ ଅଥବା ନିଜର ଅନୁଭବଦ୍ୱାରା ଜାଣି ନିତ୍ୟ ତାହାର ପୂଜା ତଥା ଭାବନା କରେ, ତାକୁ ଅଙ୍ଗଲିଙ୍ଗୀ ଜାଣିବା ଉଚିତ୍ ।। ୪୪ ।।

ଅଥ ନିଜଲିଙ୍ଗପର୍ଯ୍ୟାୟନାମାନ୍ୟୁକ୍ତ୍ୱା ତତ୍ର ଦୃଢ଼ଚିତ୍ତବାନ୍ ଜୀବନ୍ମୁକ୍ତ ଇତି ସୂତ୍ରତ୍ରୟେଣ କଥୟତି –

**ଜ୍ଞାୟତେ ଲିଙ୍ଗମେବୈକଂ ସର୍ବୈଃ ଶାସ୍ତ୍ରୈଃ ସନାତନୈଃ ।**

**ବ୍ରହ୍ମେତି ବିଶ୍ୱଧାମେତି ବିମୁକ୍ତେଃ ପରମିତ୍ୟପି ।। ୪୫ ।।**

**ମୁକ୍ତିରୂପମିଦଂ ଲିଙ୍ଗମିତି ଯସ୍ୟ ମନଃସ୍ଥିତିଃ ।**

**ସ ମୁକ୍ତୋ ଦେହଯୋଗେଦ୍ଧପି ସ ଜ୍ଞାନୀ ସ ମହାଗୁରୁଃ ।। ୪୬ ।।**

ଏବଂ ନିଜଲିଙ୍ଗମେବ ପରବ୍ରହ୍ମେତି, ଜଗଦାଧାରମିତି, ପରମୁକ୍ତିସ୍ଥାନମିତି, 'ବାଚା ବିରୂପନିତ୍ୟୟା' ଇତି ଶ୍ରୁତେରାରମ୍ଭବିବକ୍ଷାଧ୍ୟବସାୟୋକ୍ତିରୂପେଣ ଶିବଶକ୍ତିମୟତ୍ୱାଦ୍ ସନାତନୈଃ ନିତ୍ୟୈଃ ସର୍ବୈଃ ଶାସ୍ତ୍ରୈଃ ନିଗମାଗମାଦିପ୍ରମାଣୈର୍ଜ୍ଞାୟତେ, ଇଦଂ ନିଜଲିଙ୍ଗଂ ମୁକ୍ତିରୂପଂ ପରମୁକ୍ତିସ୍ୱରୂପମିତି ଯସ୍ୟ ପ୍ରାଣିଲିଙ୍ଗିନୋ ମନଃ ସ୍ଥିତିଃ, ସ ଦେହଯୋଗେଦ୍ଧପି ମୁକ୍ତଃ ପୁନର୍ଜନ୍ମାନ୍ତରାଭାବାଜ୍ଜୀବନ୍ମୁକ୍ତଃ, ସ ଜ୍ଞାନୀ ସ ଏବ ଶିବଜ୍ଞାନବାନ୍, ସ ମହାଗୁରୁଃ ଶ୍ରୀଗୁରୁରିତ୍ୟର୍ଥଃ ।। ୪୫-୪୬ ।।

– ଏକମାତ୍ର ଲିଙ୍ଗକୁ ସମସ୍ତ ସନାତନ ଶାସ୍ତ୍ରଦ୍ୱାରାବ୍ରହ୍ମ, ବିଶ୍ୱଧାମ, ମୁକ୍ତିପଦ ରୂପରେ ବତାଯାଇଛି । 'ଏହି ଲିଙ୍ଗ ମୁକ୍ତିସ୍ୱରୂପ ଅଟେ' – ଏହିପରି ଯିଏ ମନରେ ଜାଣେ, ସେ ଦେହରେ ଯୁକ୍ତ ରହି ମଧ୍ୟ ମୁକ୍ତ (ଜୀବନ୍ମୁକ୍ତ) ଅଟେ । ସେ ଜ୍ଞାନୀ ଏବଂ ସେ ମହାଗୁରୁ ଅଟେ ।। ୪୫-୪୬ ।।

ଅଥୈବଂ ଲିଙ୍ଗନିଜଜ୍ଞାନଶୂନ୍ୟାନାଂ ମୁକ୍ତିର୍ନାସ୍ତୀତ୍ୟାହ –

**ଅନାଦିନିଧନଂ ଲିଙ୍ଗଂ କାରଣଂ ଜଗତାମିତି ।**

**ଯେ ନ ଜାନନ୍ତି ତେ ମୂଢ଼ା ମୋକ୍ଷମାର୍ଗବହିଷ୍କୃତାଃ ।। ୪୭ ।।**

ଅନାଦିନିଧନମ୍ ଉତ୍ପତ୍ତିବିନାଶ ରହିତମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୭ ।।

– ଆଦି ଏବଂ ଅନ୍ତ ଅର୍ଥାତ୍ ଉତ୍ପତ୍ତି–ବିନାଶ ରହିତ ଲିଙ୍ଗ ସଂସାରର କାରଣ ଅଟେ – ଏପରି ଯେଉଁ ଲୋକ ଜାଣି ନାହାନ୍ତି, ସେମାନେ ମୂର୍ଖ ଅଟନ୍ତି ତଥା ମୋକ୍ଷମାର୍ଗରୁ ବହିଷ୍କୃତ ଅଟନ୍ତି ।। ୪୭।।

ଅଥ ପ୍ରାଣଲିଙ୍ଗାର୍ଚ୍ଚନାଦିଧର୍ମବାନ୍ ପ୍ରାଣଲିଙ୍ଗ୍ୟେବ ଜ୍ଞାନପରିପାକବଶାଦ୍ ଶରଣ ଇତ୍ୟଭିଧାନବାନିତ୍ୟୁକ୍ତ୍ୱା ପ୍ରାଣଲିଙ୍ଗିସ୍ଥଲଂ ସମାପୟତି –

**ଯଃ ପ୍ରାଣଲିଙ୍ଗାର୍ଚ୍ଚନଭାବପୂର୍ବୈ –**
**ର୍ଧର୍ମୈରୁପେତଃ ଶିବଭାବିତାତ୍ମା ।**
**ସ ଏବ ତୁର୍ଯଃ ପରିକୀର୍ତ୍ତିତୋଽସୌ**
**ସଂବିଦ୍ୱିପାକାଚ୍ଛରଣାଭିଧାନଃ ।। ୪୮ ।।**

ଯଃ ପ୍ରାଣଲିଙ୍ଗୀ ପ୍ରାଣଲିଙ୍ଗପୂଜାଚାରପ୍ରମୁଖୈଃ ଧର୍ମୈଃ ଶିବାଚାରୈଃ ସମେତଃ ସନ୍ ଲିଙ୍ଗରୂପେଣ ଭାବିତାଙ୍ଗସ୍ୱରୂପବାନ୍, ତୁର୍ଯଃ ଭକ୍ତାପେକ୍ଷୟା ଚତୁର୍ଥଃ, ସ ଏବାସୌ ପ୍ରାଣଲିଙ୍ଗୀ ଜ୍ଞାନପରିପାକବଶାଦ୍ ଶରଣ ଇତ୍ୟଭିଧାନବାନିତ୍ୟର୍ଥଃ ।। ୪୮ ।।

– ଯିଏ ପ୍ରାଣଲିଙ୍ଗାର୍ଚ୍ଚନ ଭାବରେ ପୂର୍ଣ୍ଣ ଧର୍ମରେ ଯୁକ୍ତ ତଥା ଆତ୍ମାରେ ସର୍ବଦା ଶିବଙ୍କର ଭାବନା କରେ, ସେ ଚତୁର୍ଥ ଅବସ୍ଥାକୁ ପ୍ରାପ୍ତ ବୋଲି କୁହାଯାଏ । ସଂବିଦ୍‌ର ପରିପାକ କାରଣରୁ ସେ ଶରଣସ୍ଥଳ କୁହାଯାଏ ।। ୪୮ ।।

ଇତି ଶ୍ରୀମଦ୍‌ଷଟ୍‌ସ୍ଥଲବ୍ରହ୍ମିଣ ଶିବଯୋଗିନାମ୍ନା ରେଣୁକାଚାର୍ଯେ୍ୟଣ ବିରଚିତେ ସିଦ୍ଧାନ୍ତଶିଖାମଣୌ ପ୍ରାଣଲିଙ୍ଗିନଃ ପଞ୍ଚସ୍ଥଳ ପ୍ରସଙ୍ଗୋ ନାମ ଦ୍ୱାଦଶଃ ପରିଚ୍ଛେଦଃ ।।୧୨।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯେ୍ୟଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ପ୍ରାଣଲିଙ୍ଗିପଞ୍ଚସ୍ଥଲ-ପ୍ରସଙ୍ଗନାମା ଦ୍ୱାଦଶଃ ପରିଚ୍ଛେଦଃ ।। ୧୨ ।।

ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ପ୍ରାଣଲିଙ୍ଗିପଞ୍ଚସ୍ଥଲପ୍ରସଙ୍ଗ ନାମକ ଦ୍ୱାଦଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦି ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୧୨ ।।



# ତ୍ରୟୋଦଶଃ ପରିଚ୍ଛେଦଃ

## ଅଥ ଶରଣସ୍ଥଲମ୍

ଅଥାଗସ୍ତ୍ୟପ୍ରଶ୍ନଃ । ଅଗସ୍ତ୍ୟ ଉବାଚେତି –

**ମାହେଶ୍ୱରଃ ପ୍ରସାଦୀତି ପ୍ରାଣଲିଙ୍ଗୀତି ବୋଧିତଃ ।**
**କଥମେଷ ସମାଦିଷ୍ଟଃ ପୁନଃ ଶରଣସଂଜ୍ଞକଃ ।। ୧ ।।**

ମାହେଶ୍ୱରଃ ପ୍ରସାଦୀତି ବୋଧିତଃ । ପ୍ରାଣଲିଙ୍ଗ୍ୟେବ ପୁନଃ କଥଂ କେନ ପ୍ରକାରେଣ ଶରଣାଭିଧାନବାନିତ୍ୟର୍ଥଃ ।। ୧ ।।

– (ଶରଣସ୍ଥଳ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – ମାହେଶ୍ୱର ପ୍ରସାଦୀ ଏବଂ ପ୍ରାଣଲିଙ୍ଗୀର ଜ୍ଞାନ କରାଇଲେ । ଏହି (ମାହେଶ୍ୱର) ଶରଣସ୍ଥଳୀ କିପରି କୁହାଯାଏ । (କୃପୟା ଏହା କୁହନ୍ତୁ) ।। ୧ ।।

ଅସ୍ୟ ପ୍ରଶ୍ନସ୍ୟୋତ୍ତରଂ ନିରୂପୟତି ରେଣୁକ ଉବାଚେତି –

**ଅଙ୍ଗଲିଙ୍ଗୀ ଜ୍ଞାନରୂପଃ ସତୀ ଜ୍ଞେୟଃ ଶିବଃ ପତିଃ ।**
**ଯତ୍ ସୌଖ୍ୟଂ ତତ୍‌ସମାବେଶେ ତଦ୍ୱାନ୍ ଶରଣନାମବାନ୍ ।। ୨ ।।**

ଜ୍ଞାନରୂପଃ ଶିବଜ୍ଞାନମେବ ସ୍ୱରୂପଂ ଯସ୍ୟ ସ ତାଦୃଶଃ, ଶିବଜ୍ଞାନବାନିତ୍ୟର୍ଥଃ । ଅଙ୍ଗଲିଙ୍ଗୀ ଅଙ୍ଗଲିଙ୍ଗସାମରସ୍ୟବାନ୍ ପ୍ରାଣଲିଙ୍ଗୀ ସତୀତି ଜ୍ଞେୟଃ । ଶିବଃ ଶିବଲିଙ୍ଗମେବ ପତିଃ ପତିରିତି ଜ୍ଞେୟଃ । ତତ୍ ସମାବେଶେ ତୟୋରଙ୍ଗଲିଙ୍ଗରୂପୟୋଃ ସ୍ତ୍ରୀପୁରୁଷୟୋଃ ସମାନସମରସରୂପଯୋଗେ ଯତ୍ ସୌଖ୍ୟଂ 'ଯଥା ସ୍ତ୍ରିୟା ସମ୍ପରିଷ୍ୱକ୍ତୋ ନ ବାହ୍ୟଂ କିଞ୍ଚନ ବେଦ ନାନ୍ତରମ୍'[୧୮୦] ଇତି ବୃହଦାରଣ୍ୟକଶ୍ରୁତିପ୍ରସିଦ୍ଧଂ ଯତ୍‌ସୌଖ୍ୟମସ୍ତି, ତଦ୍ୱାନ୍ ତାଦୃଶ ସୌଖ୍ୟବାନ୍ ଶରଣନାମବାନିତ୍ୟର୍ଥଃ ।। ୨ ।।

– ରେଣୁକାଚାର୍ଯ୍ୟ କହିଲେ – ଜ୍ଞାନରୂପ ଅଙ୍ଗଲିଙ୍ଗୀ ସତୀ ଅଟନ୍ତି । ଜ୍ଞେୟ ଶିବ ତାଙ୍କର ପତି ଅଟନ୍ତି । ଏହି ସତୀ ଏବଂ ପତିଙ୍କର (ସାମରସ୍ୟ ଅଥବା ଯାମଳରୂପର) ଯେଉଁ ସୁଖ, ତାହାକୁ ଅନୁଭବ କରିବାବାଲା ଶରଣସ୍ଥଳ କୁହାଯାଏ ।। ୨ ।।

ଅଥ ଅସ୍ୟାପି ସ୍ଥଲଭେଦୋଽସ୍ତି କିମିତ୍ୟତ୍ରାହ –

**ସ୍ଥଲମେତତ୍ ସମାଖ୍ୟାତଂ ଚତୁର୍ଧା ଧର୍ମଭେଦତଃ ।**
**ଆଦୌ ଶରଣମାଖ୍ୟାତଂ ତତସ୍ତାମସବର୍ଜନମ୍ ।। ୩।।**

---

୧୮୦. ବୃ. ଉ., ୪/୩/୨୧

**ତତୋ ନିର୍ଦେଶମୁଦ୍ଦିଷ୍ଟଂ ଶୀଲସମ୍ପାଦନଂ ତତଃ ।**

**କ୍ରମାଲ୍ଲକ୍ଷଣମେତେଷାଂ କଥୟାମି ନିଶାମ୍ୟତାମ୍ ।। ୪ ।।**

ଏତତ୍ ସ୍ଥଲଂ ଶରଣସ୍ଥଲଂ ଧର୍ମଭେଦତ ଆଚାରଭେଦାତ୍ ଚତୁର୍ଧା ଚତୁର୍ବିଧମିତି ସମାଖ୍ୟାତମ୍ । ଆଦୌ ଶରଣସ୍ଥଲମ୍, ତଦନନ୍ତରଂ ତାମସନିରସନସ୍ଥଲମ୍, ତତୋ ନିର୍ଦେଶସ୍ଥଲମ୍, ଅଥ ଶୀଲସମ୍ପାଦନସ୍ଥଲମ୍ ଉଦ୍ଦିଷ୍ଟମୁପଦିଷ୍ଟମ୍ । ଏଷାଂ ଚତୁର୍ଣ୍ଣାଂ ଲକ୍ଷଣଂ କ୍ରମାଦ୍ ବଦିଷ୍ୟାମି, ଶ୍ରୂୟତାମିତ୍ୟର୍ଥଃ ।। ୩–୪ ।।

– ଧର୍ମଭେଦରେ ଏହି ସ୍ଥଳ ଚାରି ପ୍ରକାରର କୁହାଯାଇଛି । ପ୍ରଥମେ ଶରଣସ୍ଥଳ, ତା'ପରେ ତାମସନିରସନସ୍ଥଳ, ତା'ପରେ ନିର୍ଦେଶସ୍ଥଳ, ତା'ପରେ ଶୀଲସମ୍ପାଦନସ୍ଥଳ ଅଟେ । କ୍ରମରେ ଏମାନଙ୍କର ଲକ୍ଷଣ ବତାଉଛି, ଶୁଣ ।। ୩–୪ ।।

ସତୀ ଚାହଂ ପତିର୍ଲିଙ୍ଗଂ ହୃଦିଯୁକ୍ତଃ ସ୍ୱୟଂ ପ୍ରଭୁଃ ।

ପ୍ରାପଞ୍ଚିକସୁଖଂ ନାସ୍ତି ଶରଣସ୍ଥଲମୁତ୍ତମମ୍ ।।

ଇତି ଶଙ୍କରସଂହିତାବଚନାନୁସାରେଣ ଶରଣସ୍ଥଲଂ ନିରୂପୟତି –

**ସତୀବ ରମଣେ ଯସ୍ତୁ ଶିବେ ଶକ୍ତିଂ ବିଭାବୟନ୍ ।**

**ତଦନ୍ୟବିମୁଖଃ ସୋଽୟଂ ଜ୍ଞାତଃ ଶରଣନାମବାନ୍ ।। ୫ ।।**

ରମଣେ ପ୍ରାଣକାନ୍ତବିଷୟେ ସତୀବ ପତିବ୍ରତା ସ୍ତ୍ରୀବ ଯସ୍ତୁ ଶିବେ ଶିବଲିଙ୍ଗବିଷୟେ ସ୍ୱାତ୍ମାନଂ ଶକ୍ତିଂ ସ୍ତ୍ରିୟଂ ଭାବୟନ୍ ତଦନ୍ୟବିମୁଖଃ ଶିବଲିଙ୍ଗାଦନ୍ୟତ୍ର ଦେବତାନ୍ତରେ ତିର୍ଯ୍ୟଙ୍ମୁଖଃ ସନ୍ ଅସ୍ତି, ସୋଽୟଂ ଶରଣବାନ୍ ଶରଣସ୍ଥଲବାନିତି ଜ୍ଞାତୋ ଜ୍ଞାତୁଂ ଯୋଗ୍ୟ ଇତ୍ୟର୍ଥଃ ।। ୫ ।।

– ଯେପରି ସତୀ ସ୍ତ୍ରୀ ରମଣରେ ଅର୍ଥାତ୍ ପ୍ରିୟତମ ପତି ପ୍ରତି ଭାବନା ରଖେ, ସେହିପରି ଯେଉଁ ବ୍ୟକ୍ତି ଶିବଙ୍କ ବିଷୟରେ ନିଜକୁ ଶକ୍ତି ଭାବରେ ଭାବନା ରଖେ ତଥା ଶିବ ବ୍ୟତୀତ ଅନ୍ୟ (ଦେବତା)ଙ୍କ ପ୍ରତି ବିମୁଖ ରହେ, ସେ ଶରଣବାନ୍ ନାମରେ ଜଣାଯାଏ ।। ୫ ।।

ଅଥ ବହୁଦୃଷ୍ଟାନ୍ତପୂର୍ବକଂ ଶିବଲିଙ୍ଗାସକ୍ତ ଏବ ଶରଣ ଇତ୍ୟୁପପାଦୟତି –

**ପରିଜ୍ଞାତେ ଶିବେ ସାକ୍ଷାତ୍ କୋ ବାନ୍ୟମଭିକାଂକ୍ଷତି ।**

**ନିଧାନେ ମହତି ପ୍ରାପ୍ତେ କଃ କାଚଂ ଯାଚତେଽନ୍ୟତଃ ।। ୬ ।।**

ଶିବେ ପରମଶିବେ ସାକ୍ଷାତ୍ ପ୍ରସିଦ୍ଧଶ୍ରୁତ୍ୟାଦିପ୍ରମାଣୈଃ ପରିଜ୍ଞାତେ ବ୍ରହ୍ମାଦିଭ୍ୟୋ ମହାନିତି ଜ୍ଞାତେ ସତି କୋ ବାନ୍ୟଂ କାଂକ୍ଷତି, ନ କାଂକ୍ଷତୀତ୍ୟର୍ଥଃ । ଯଥା ମହତି ନିଧାନେ ପ୍ରାପ୍ତେ ସତି ଅନ୍ୟତଃ ଅନ୍ୟସ୍ମାଦ୍ କାଚଂ କାଚମଣିଂ କୋ ଯାଚତେ ? ନ କୋଽପି ଇତ୍ୟର୍ଥଃ । ତଥା ଶିବାଦନ୍ୟତ୍ର ଦେବତାନ୍ତରେ ବିମୁଖଃ ଶରଣ ଇତ୍ୟର୍ଥଃ ।। ୬ ।।

– ଶିବଙ୍କର ସାକ୍ଷାତ୍ ଜ୍ଞାନ ହେବାପରେ କିଏ ଏପରି ବ୍ୟକ୍ତି ଅଛି ଯିଏ ଅନ୍ୟ କୌଣସି କୁ ଇଚ୍ଛା କରିବ ? ବିପୁଳ ଧନରାଶି ପ୍ରାପ୍ତ ହେବା ପରେ କିଏ ଅନ୍ୟଠାରୁ କାଚର ଯାଚନା କରିଥାଏ ।। ୬ ।।

**ଶିବାନନ୍ଦଂ ସମାସାଦ୍ୟ କୋ ବାନ୍ୟମୁପତିଷ୍ଠତେ ।**
**ଗଙ୍ଗାମୃତଂ ପରିତ୍ୟଜ୍ୟ କଃ କାଂକ୍ଷେତ୍ ମୃଗତୃଷ୍ଣିକାମ୍ ।। ୭ ।।**

ଶିବାନନ୍ଦଂ ଶିବଲିଙ୍ଗସୁଖଂ ସମାସାଦ୍ୟ ପ୍ରାପ୍ୟ କୋ ଦେବତାନ୍ତରମ୍ ଉପତିଷ୍ଠତେ ଆଶ୍ରୟତି, ନାଶ୍ରୟତୀତ୍ୟର୍ଥଃ । ଗଙ୍ଗୋଦକଂ ପରିତ୍ୟଜ୍ୟ କୋ ମୃଗତୃଷ୍ଣିକାଂ ମରୀଚିକାଜଳଂ କାଂକ୍ଷେଦ୍ ଇଚ୍ଛେତ୍, ତଥା ଶିବାଦନ୍ୟତ୍ର ବିମୁଖଃ ଶରଣ ଇତ୍ୟର୍ଥଃ ।। ୭ ।।

– ଶିବଙ୍କର ଆନନ୍ଦ ପ୍ରାପ୍ତ କରି କିଏ ଅନ୍ୟର ଉପାସନା କରିବ ? ଗଙ୍ଗାଜଳ ରୂପୀ ଅମୃତକୁ ଛାଡ଼ି କିଏ ମରୀଚିକାର ଇଚ୍ଛା କରିବ ? ।। ୭ ।।

**ସଂସାରତିମିରଚ୍ଛେଦେ ବିନା ଶଙ୍କରଭାସ୍କରମ୍ ।**
**ପ୍ରଭବନ୍ତି କଥଂ ଦେବାଃ ଖଦ୍ୟୋତା ଇବ ଦେହିନାମ୍ ।। ୮ ।।**

ଖଦ୍ୟୋତା ଅଳ୍ପପ୍ରକାଶିନଃ ପ୍ରାଣିବିଶେଷାଃ ଯଥାନ୍ଧକାରନିବାରଣେ ସମର୍ଥା ନ ଭବନ୍ତି, ଭାସ୍କରଃ ସମର୍ଥୋ ଭବତି, ତଥା ସଂସାରତିମିରଚ୍ଛେଦେ ଶଙ୍କରଭାସ୍କରଂ ବିନା ବ୍ରହ୍ମାଦୟୋ ଦେବାଃ ସମର୍ଥା ନ ଭବନ୍ତୀତି ଶିବାଦନ୍ୟତ୍ର ବିମୁଖଃ ଶରଣ ଇତ୍ୟର୍ଥଃ ।। ୮ ।।

– ଯେଉଁ ଦେବତାମାନେ ସଂସାରୀ ଜୀବଙ୍କ ପାଇଁ ଜୁଳୁଜୁଳିଆ ପୋକ ପରି ସେମାନେ ଶଙ୍କରରୂପୀ ସୂର୍ଯ୍ୟଙ୍କ ବିନା ସଂସାରରୂପୀ ଅନ୍ଧକାରକୁ ନାଶ କରିବାରେ କିପରି ସମର୍ଥ ହୋଇପାରିବେ ? ।। ୮ ।।

**ସଂସାରାର୍ତ୍ତଃ ଶିବଂ ଯାୟାଦ୍ ବ୍ରହ୍ମାଦୈଃ କିଂ ଫଳଂ ସୁରୈଃ ।**
**ଚକୋରସ୍ତୃଷିତଃ ପଶ୍ୟେଚ୍ଚନ୍ଦ୍ରଂ କିଂ ତାରକା ଅପି ।। ୯ ।।**

ତୃଷିତଃ ପିପାସାର୍ଦିତଚକୋରଃ, ଚନ୍ଦ୍ରଂ ଯଥା ପଶ୍ୟେତ୍, ତାରକା ନ ପଶ୍ୟେତ୍, ତଥା ସଂସାରେଣ ଶ୍ରମିତୋ ବ୍ରହ୍ମାଦୈଃ କିଂ ଫଳମିତି ଶିବମେବାଶ୍ରୟେତ୍ । ତାଦୃଶଚକୋର-ବଦନ୍ୟତ୍ର ବିମୁଖଃ ଶିବଶରଣ ଇତ୍ୟର୍ଥଃ ।। ୯ ।।

– ସଂସାରରେ ପୀଡ଼ିତ ବ୍ୟକ୍ତି ଶିବଙ୍କ ପାଖକୁ ଯିବା ଉଚିତ୍ । ବ୍ରହ୍ମା ଆଦି ଦେବତାଙ୍କଠାରୁ କିଛି ଫଳ ମିଳିବାରେ ନାହିଁ । ତୃଷାର୍ତ୍ତ ଚକୋର ଚନ୍ଦ୍ରମାକୁ ଦେଖେ । କ'ଣ ସେ ତାରାମାନଙ୍କୁ ମଧ୍ୟ (ଦେଖେ) ଅର୍ଥାତ୍ ଦେଖେ ନାହିଁ ।। ୯ ।।

**ଶିବ ଏବ ସମସ୍ତାନାଂ ଶରଣ୍ୟଃ ଶରଣାର୍ଥିନାମ୍ ।**
**ସଂସାରୋରଗଦଷ୍ଟାନାଂ ସର୍ବଜ୍ଞଃ ସର୍ବଦୋଷହା ।। ୧୦ ।।**

**ଶିବଜ୍ଞାନେ ସମୁତ୍ପନ୍ନେ ପରାନନ୍ଦଃ ପ୍ରକାଶତେ ।**

**ତଦାସକ୍ତମନା ଯୋଗୀ ନାନ୍ୟତ୍ର ରମତେ ସୁଧୀଃ ।। ୧୧ ।।**

ସଂସାରସର୍ପଦଷ୍ଟାନାଂ ସମସ୍ତାନାଂ ଶରଣାର୍ଥିନାଂ ସର୍ବଜ୍ଞଃ ସର୍ବଦୋଷଘ୍ନଃ ଶିବ ଏବ ରକ୍ଷକ ଇତି ଶିବମାହାତ୍ମ୍ୟଜ୍ଞାନେ ସମୁତ୍ପନ୍ନେ ସତି ପରମାନନ୍ଦାବିର୍ଭାବୋ ଜାୟତେ। ତଦାସକ୍ତଚିତ୍ତଃ ଶିବଯୋଗୀ ଅନ୍ୟତ୍ର ଦେବତାନ୍ତରେ ନ ରମତ ଇତ୍ୟର୍ଥଃ ।। ୧୦-୧୧ ।।

– ସଂସାରରୂପୀ ସର୍ପଦ୍ୱାରା ଦଂଶିତା (ବିଷମୂର୍ଚ୍ଛିତ) ସମସ୍ତ ଶରଣାର୍ଥିଙ୍କ ପାଇଁ ଶିବ ହିଁ ଏକମାତ୍ର ଶରଣ ଯେ କି ସର୍ବଜ୍ଞ ତଥା ସର୍ବଦୋଷହାରୀ ଅଟନ୍ତି । ଶିବଜ୍ଞାନ ଉତ୍ପନ୍ନ ହେବା ପରେ ପରାନନ୍ଦର ଅନୁଭବ ହୋଇଥାଏ । ତାଙ୍କଠାରେ ଆସକ୍ତମନା ବୁଦ୍ଧିମାନ୍ ଯୋଗୀ ଅନ୍ୟତ୍ର ଆନନ୍ଦର ଆସ୍ୱାଦନ କରେ ନାହିଁ ।। ୧୦-୧୧ ।।

ଅଥୋକ୍ତାର୍ଥମୁପସଂହରନ୍ ଶରଣସ୍ଥଳଂ ସମାପୟତି –

**ତସ୍ମାଦ୍ ସର୍ବପ୍ରୟତ୍ନେନ ଶଙ୍କରଂ ଶରଣଂ ଗତଃ ।**

**ତଦନନ୍ତସୁଖଂ ପ୍ରାପ୍ୟ ମୋଦତେ ନାନ୍ୟଚିନ୍ତୟା ।। ୧୨ ।।**

ତସ୍ମାଦ୍ କାରଣାଦ୍ ସର୍ବପ୍ରଯତ୍ନେନ ମନୋବାକ୍ କାୟକର୍ମଣା ଶିବଂ ଶରଣଂ ଗତୋ ରକ୍ଷଣବିଚକ୍ଷଣା ଇତି ଜ୍ଞାତ୍ୱା ପ୍ରପନ୍ନଃ, ତଦନନ୍ତସୁଖଂ ପ୍ରାପ୍ୟ ତସ୍ମାଚ୍ଛିବାଦ୍ ଅନନ୍ତସୁଖଂ ଲବ୍ଧ୍ୱା ମୋଦତେ, ଅନ୍ୟଚିନ୍ତୟା ଦେବତାନ୍ତରଚିନ୍ତୟା ନ ମୋଦତ ଇତ୍ୟର୍ଥଃ ।। ୧୨ ।।

– ଏଥିପାଇଁ ସମସ୍ତ ପ୍ରୟାସ କରି ଶଙ୍କରଙ୍କର ଶରଣରେ ଯାଇଥିବା ଯୋଗୀ ସେହି ଅନନ୍ତ ସୁଖକୁ ପ୍ରାପ୍ତ କରି ଆନନ୍ଦମୟ ରହେ, ଅନ୍ୟର (ଦେବତା) ଧ୍ୟାନ କରିବାରେ ନୁହେଁ ।। ୧୨ ।।

**ଇତି ଶରଣସ୍ଥଳମ୍**

## ଅଥ ତାମସନିରସନସ୍ଥଳମ୍

ଅଥ ଶରଣେନ ବିଧୀୟମାନ ତାମସ ନିରାକରଣସ୍ଥଳଂ ନିରୂପୟତି –

**ଶିବାସକ୍ତପରାନନ୍ଦମୋଦିନା ଗୁରୁଣା ଯତଃ ।**

**ନିରସ୍ୟନ୍ତେ ତମୋଭାବାଃ ସ ତାମସନିରାସକଃ ।। ୧୩ ।।**

ଶିବାସକ୍ତଃ ସନ୍ ପରାନନ୍ଦାନୁମୋଦିନା ଗୁରୁଣା ଶ୍ରେଷ୍ଠେନ ଶରଣେନ ତମୋଭାବାସ୍ତମୋବିକାରା ଯତଃ କାରଣାଦ୍ ନିରସ୍ୟନ୍ତେ ନିବାର୍ଯ୍ୟନ୍ତେ, ତତଃ ତସ୍ମାଦ୍ ସ ତାମସନିରାସକୋ ଭବେଦିତ୍ୟର୍ଥଃ ।। ୧୩ ।।

– ଶିବଠାରେ ଆସକ୍ତ, ତେଣୁ ପରାନନ୍ଦରେ ଆନନ୍ଦିତ ହେଉଥିବା ଯେଉଁ

ଗୁରୁଙ୍କଦ୍ୱାରା ସମସ୍ତ ତମୋଭାବ ନିରସ୍ତ କରିଦିଆଯାଏ, ସେ ତାମସନିରାସକ କୁହାଯାଆନ୍ତି ।। ୧୩।।

ନନୁ ତମୋଭାବାଃ କିମର୍ଥଂ ନିରାକରଣୀୟା ଇତ୍ୟତ୍ରାହ –

**ଯସ୍ୟ ଜ୍ଞାନଂ ତମୋମିଶ୍ରଂ ନ ତସ୍ୟ ଗତିରିଷ୍ୟତେ ।**
**ସତ୍ତ୍ୱଂ ହି ଜ୍ଞାନଯୋଗସ୍ୟ ନୈର୍ମଲ୍ୟଂ ବିଦୁରୁତ୍ତମାଃ ।। ୧୪।।**

ନୈର୍ମଲ୍ୟଂ ନିର୍ମଳସାଧନଂ ସଦିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ । ତସ୍ମାଦ୍ ତମୋବିକାରା ନିରାକରଣୀୟା ଇତି ଭାବଃ ।। ୧୪।।

– ଯାହାଙ୍କର ଜ୍ଞାନ ତମୋଗୁଣ ମିଶ୍ରିତ ଅଟେ, ତାଙ୍କର ସଦ୍‌ଗତି ହୁଏ ନାହିଁ। ଉତ୍ତମ ପୁରୁଷ ସତ୍ତ୍ୱକୁ ଜ୍ଞାନଯୋଗର ନୈର୍ମଲ୍ୟର କାରଣ କୁହନ୍ତି ।। ୧୪।।

ଅଥ –

ସତ୍ତ୍ୱାଦ୍ ସୁଖଂ ଚ ଜ୍ଞାନଂ ଚ ବୈରାଗ୍ୟଂ ସୌଖ୍ୟମେବ ଚ ।
ଦୁଃଖପ୍ରବୃତ୍ତିରାଗୌ ଚ ଲୌହିତ୍ୟଂ ରଜସୋ ଭବେଦ୍ ।।
ମୋହୋ ଭ୍ରାନ୍ତିସ୍ତଥାଲସ୍ୟଂ କାର୍ଷ୍ଣ୍ୟଂ ଚ ତମସୋ ଭବେଦ୍ ।।

ଇତି ସୂତସଂହିତାବଚନାନୁସାରେଣ ଗୁଣତ୍ରୟଯୁକ୍ତାନ୍ ପ୍ରକାଶୟତି –

**ଶମୋ ଦମୋ ବିବେକଶ୍ଚ ବୈରାଗ୍ୟଂ ପୂର୍ଣ୍ଣଭାବନା ।**
**କ୍ଷାନ୍ତିଃ କାରୁଣ୍ୟସମ୍ପତ୍ତିଃ ଶ୍ରଦ୍ଧା ସତ୍ୟସମୁଦ୍‌ଭବା ।। ୧୫।।**
**ଶିବଭକ୍ତିଃ ପରୋ ଧର୍ମଃ ଶିବଜ୍ଞାନସ୍ୟ ବାନ୍ଧବାଃ ।**
**ଏତୈର୍ଯୁକ୍ତୋ ମହାଯୋଗୀ ସାତ୍ତ୍ୱିକଃ ପରିକୀର୍ତ୍ତିତଃ ।। ୧୬।।**

ଶମଃ କ୍ଷାନ୍ତିଃ (ମନସୋ ନିଗ୍ରହୋ ବା), ଦମୋ ବାହ୍ୟେନ୍ଦ୍ରିୟ ନିଗ୍ରହଃ, ବିବେକୋ ନିତ୍ୟାନିତ୍ୟବସ୍ତୁବିଚାରଃ, ବୈରାଗ୍ୟଂ ବିଷୟବିରକ୍ତିଃ, ପୂର୍ଣ୍ଣଭାବନା ଅଖଣ୍ଡଧ୍ୟାନମ୍, କ୍ଷାନ୍ତିଃ (ତିତିକ୍ଷା) କ୍ଷମା, କାରୁଣ୍ୟସମ୍ପତ୍ତିଃ ଭୂତଦୟା, ସତ୍ୟସମୁଦ୍‌ଭବା ଯଥାର୍ଥବସ୍ତୁସମ୍ଭବା ଶ୍ରଦ୍ଧା ବିଶ୍ୱାସଃ, ଶିବଭକ୍ତିଃ, ପରୋଧର୍ମ ଉତ୍କୃଷ୍ଟଶିବାଚାରଃ, ଶିବଜ୍ଞାନସ୍ୟ ବାନ୍ଧବାଃ ଏତେ ଶିବଜ୍ଞାନସ୍ୟ ସମ୍ବନ୍ଧିନଃ । ଏତୈର୍ଦଶଗୁଣୈର୍ଯୁକ୍ତୋ ମହାଯୋଗୀ ସାତ୍ତ୍ୱିକ ଇତି ସତ୍ତ୍ୱଗୁଣଯୁକ୍ତ ଇତି ପ୍ରକୀର୍ତ୍ତିତଃ ।। ୧୫–୧୬।।

– ଶମ, ଦମ, ବିବେକ, ବୈରାଗ୍ୟ, ପୂର୍ଣ୍ଣଭାବନା ଅର୍ଥାତ୍ ଅଖଣ୍ଡ ଜ୍ଞାନ, କ୍ଷମା, କରୁଣା, ସତ୍ୟରୁ ଉତ୍ପନ୍ନ ଶ୍ରଦ୍ଧା, ଶିବଭକ୍ତି, ପରମଧର୍ମ ଅର୍ଥାତ୍ ଉତ୍କୃଷ୍ଟ ଶୈବାଚାର, ଏ ସମସ୍ତ ଶିବଜ୍ଞାନର ବନ୍ଧୁ ଅଟନ୍ତି । ଏ ସବୁରେ ଯୁକ୍ତ ମହାଯୋଗୀ ସାତ୍ତ୍ୱିକ କୁହାଯାଇଥାଏ।

ନନ୍ୱେତୈର୍ଗୁଣୈର୍ଯୁକ୍ତସ୍ୟ ମହାଯୋଗିନଃ କଦାଚିଦ୍ ବା କାମକ୍ରୋଧାଦୟଃ ସମ୍ଭବନ୍ତି କିମିତ୍ୟତ୍ରାହ –

**କାମକ୍ରୋଧମହାମୋହମଦମାତ୍ସର୍ଯ୍ୟବାରଣାଃ ।**
**ଶିବଜ୍ଞାନମୃଗେନ୍ଦ୍ରସ୍ୟ କଥଂ ତିଷ୍ଠନ୍ତି ସନ୍ନିଧୌ ।। ୧୭ ।।**

ଶିବଜ୍ଞାନସ୍ୟ ମତ୍ତମନୋଗଜନିଗ୍ରହକରତ୍ୱେନ ସିଂହରୂପତ୍ୱାତ୍ ତସ୍ୟ ସନ୍ନିଧୌ କାମକ୍ରୋଧାଦିଗଜସ୍ଥିତେରବକାଶୋ ନାସ୍ତୀତ୍ୟର୍ଥଃ ।। ୧୭ ।।

– କାମ, କ୍ରୋଧ, ମହାମୋହ, ମହାମଦ, ମାତ୍ସର୍ଯ୍ୟ ରୂପୀ ହାତୀମାନେ ଶିବଜ୍ଞାନ ରୂପୀ ସିଂହ ପାଖରେ କିପରି ରହି ପାରିବେ ?

ଅଥ ରଜୋଗୁଣଯୁକ୍ତଂ ପ୍ରଦର୍ଶୟତି –

**ଯତ୍ର କୁତ୍ରାପି ବା ଦ୍ୱେଷ୍ଟି ପ୍ରପଞ୍ଚେ ଶିବରୂପିଣି ।**
**ଶିବଦ୍ୱେଷୀ ସ ବିଜ୍ଞେୟୋ ରଜସାବିଷ୍ଟମାନସଃ ।। ୧୮ ।।**

ଯୋ ରଜସାବିଷ୍ଟମାନସୋ ରଜୋଗୁଣକାର୍ଯଭୂତ କାମକ୍ରୋଧାଦ୍ୟାବୃତଚିତ୍ତଃ ସନ୍ ଶିବରୂପିଣି ପ୍ରପଞ୍ଚେ ଯତ୍ର କ୍ୱାପି ଦ୍ୱେଷ୍ଟି, ସ ଶିବଦ୍ୱେଷୀ ରାଜସ ଇତି ଶେଷଃ, ବିଜ୍ଞେୟୋ ଜ୍ଞାତୁଂ ଯୋଗ୍ୟ ଇତ୍ୟର୍ଥଃ ।। ୧୮ ।।

– ଶିବରୂପ ପ୍ରପଞ୍ଚରେ ଯେଉଁଠି ହେଲେ ବି ଯିଏ ଦ୍ୱେଷ କରେ, ରଜୋଗୁଣ ଯୁକ୍ତ ଚିତ୍ତବାଲା ସେ ଶିବଦ୍ୱେଷୀ ବୋଲି ଜାଣିବା ଉଚିତ୍ ।। ୧୮ ।।

ଅଥ ତମୋଗୁଣଯୁକ୍ତଂ ଲକ୍ଷୟତି –

**ଯୋ ଦ୍ୱେଷ୍ଟି ସକଲାନ୍ ଲୋକାନ୍ ଯୋ ବାଦ୍ଧହଙ୍କୁରୁତେ ସଦା ।**
**ଯୋଦ୍ଧସତ୍ୟଭାବନାଯୁକ୍ତଃ ସ ତାମସ ଇତି ସ୍ମୃତଃ ।। ୧୯ ।।**

ସ୍ପଷ୍ଟମ୍ ।। ୧୯ ।।

– ଯିଏ ସମସ୍ତଙ୍କଠାରେ ଦ୍ୱେଷ କରେ ଅଥବା ଯିଏ ସର୍ବଦା ଅହଙ୍କାରଯୁକ୍ତ ରହେ ତଥା ଯିଏ ଅସତ୍ୟ ଭାବନାରେ ଯୁକ୍ତ ଅଟେ, ସେ ତାମସ ଭାବରେ ଜଣାଯାଏ ।। ୧୯ ।।

ଅଥାୟଂ ତମୋଗୁଣଃ ଶିବଶରଣାନାଂ ନାସ୍ତୀତି ଶ୍ଳୋକଦ୍ୱୟେନୋକ୍ତ୍ୱା ତାମସ-ନିରସନସ୍ଥଳଂ ସମାପୟତି –

**ତମୋମୂଳା ହି ସଞ୍ଜାତା ରାଗଦ୍ୱେଷାଦିପାଦପାଃ ।**
**ଶିବଜ୍ଞାନକୁଠାରେଣ ଛେଦ୍ୟନ୍ତେ ହି ନିରନ୍ତରମ୍ ।। ୨୦ ।।**

ତମୋଗୁଣରୂପମୂଳବନ୍ତଃ ସନ୍ତଃ ସଞ୍ଜାତା ରାଗଦ୍ୱେଷାଦିପାଦପାଃ କାମକ୍ରୋଧାଦି ରାଜସବୃକ୍ଷାଃ ଶିବଜ୍ଞାନକୁଠାରେଣ ସାତ୍ତ୍ୱିକଶିବଜ୍ଞାନରୂପପରଶୁନା ସଦା ଛେଦ୍ୟନ୍ତେ ହି ପ୍ରସିଦ୍ଧମ୍ ।। ୨୦ ।।

– ରାଗ, ଦ୍ୱେଷ ଆଦି ତମୋମୂଳକ ବୃକ୍ଷ ଅଟନ୍ତି (ଅର୍ଥାତ୍ ଏ ସବୁ ତମୋଗୁଣ କାରଣରୁ ଉତ୍ପନ୍ନ ହୁଅନ୍ତି) । ଏ ସମସ୍ତ ଶିବଜ୍ଞାନ ରୂପକ କୁରାଢ଼ୀରେ ସର୍ବଦା କଟାଯାଆନ୍ତି ।। ୨୦।।

ନନୁ ତମୋମୂଳକତ୍ୱେନ ସଞ୍ଜାତରାଗଦ୍ୱେଷାଦିପାଦପାନାଂ ଶିବଜ୍ଞାନକୁଠାରେଣ ଛେଦନମସ୍ତୁ, ଏତଦ୍ କାରଣୀଭୂତତମୋଗୁଣନିବୃତ୍ତିଃ କେନ ଭବେଦ୍, ତଦ୍ୱିନା ତଦଙ୍କୁର-ନିବୃତ୍ତିର୍ନ ସମ୍ଭବତୀତ୍ୟତ୍ରାହ –

**ଶିବଜ୍ଞାନସମୁତ୍ପନ୍ନେ ସହସ୍ରାଦିତ୍ୟସନ୍ନିଭେ ।**
**କୁତସ୍ତମୋବିକାରାଃ ସ୍ୟୁର୍ମହତାଂ ଶିବଯୋଗିନାମ୍ ।। ୨୧ ।।**

ସହସ୍ରାଦିତ୍ୟସଙ୍କାଶେ ଶିବଜ୍ଞାନେ ସମୁତ୍ପନ୍ନେ ସତି ମହତାଂ ମହାପୁରୁଷାଣାଂ ଶିବଯୋଗିନାଂ ଶିବଶରଣାନାଂ ତମୋବିକାରାଃ ତମୋଙ୍କୁରାଃ କୁତଃ ସ୍ୟୁଃ କସ୍ମାତ୍ କାରଣାଦ୍ ଭବେୟୁଃ ? କାରଣୀଭୂତସ୍ୟ ତମସୋ ମୂଳନାଶାଦିତି ଭାବଃ ।। ୨୧ ।।

– ସହସ୍ର ସୂର୍ଯ୍ୟ ସମାନ ଶିବଜ୍ଞାନର ଉତ୍ପନ୍ନ ହେବାପରେ ମହାଶିବ-ଯୋଗୀମାନଙ୍କର ତମୋ ବିକାର କେଉଁଠାରେ ?

**ଇତି ତାମସନିରସନସ୍ଥଲମ୍**

## ଅଥ ନିର୍ଦେଶସ୍ଥଲମ୍

ଅଥ ତାମସନିରାକରଣେନ ଭାସମାନନିର୍ଦେଶସ୍ଥଲଂ ନିରୂପୟତି –

**ନିରାକୃତ୍ୟ ତମୋଭାଗଂ ସଂସାରସ୍ୟ ପ୍ରବର୍ତ୍ତକମ୍ ।**
**ନିର୍ଦିଶ୍ୟତେ ତୁ ଯଜ୍ ଜ୍ଞାନଂ ସ ନିର୍ଦେଶ ଇତି ସ୍ମୃତଃ ।। ୨୨।।**

ସଂସାରପ୍ରବୃତ୍ତେର୍ମୂଳକାରଣଂ ତମୋଭାଗଂ ନିରାକୃତ୍ୟ ଯଦ୍ ଜ୍ଞାନଂ ନିର୍ଦିଶ୍ୟତେ ଉପଦିଶ୍ୟତେ, ସ ତଦ୍ ଜ୍ଞାନଂ ନିର୍ଦେଶ ଇତି ନିର୍ଦେଶସ୍ଥଲମିତି ସ୍ମୃତଃ ସ୍ମୃତମିତ୍ୟର୍ଥଃ ।। ୨୨।।

– (ନିର୍ଦେଶସ୍ଥଳ ବର୍ଣ୍ଣନ) – ସଂସାରର ପ୍ରବର୍ତ୍ତକ ଅର୍ଥାତ୍ ମୂଳକାରଣ ଭୂତ ତମୋଭାଗକୁ ଦୂର କରି ଯେଉଁ ଜ୍ଞାନ ନିର୍ଦ୍ଦିଷ୍ଟ ହୁଏ, ତାହା ନିର୍ଦେଶ କୁହାଯାଏ ।। ୨୨।।

ଅଥ ତଜ୍ଜ୍ଞାନଂ କେନୋପଦିଶ୍ୟତେ ଇତ୍ୟତ୍ର ଗୁରୁରେବେତି ତନ୍ ମହତ୍ତ୍ୱଂ ବହୁଧା ପ୍ରକାଶୟତି –

**ଗୁରୁରେବ ପରଂ ତତ୍ତ୍ୱଂ ପ୍ରକାଶୟତି ଦେହିନାମ୍ ।**
**କୋ ବା ସୂର୍ଯ୍ୟଂ ବିନା ଲୋକେ ତମସୋ ବିନିବର୍ତ୍ତକଃ ।। ୨୩।।**

(ଯଥା) ଲୋକେ ସୂର୍ଯ୍ୟଂ ବିନା ତମୋନିରାକରଣଦ୍ୱାରା ପଦାର୍ଥପ୍ରକାଶକୋ

(କୋଽପ୍ୟନ୍ୟୋ) ନାସ୍ତି, ତଥା ଗୁରୁଂ ବିନା ତମୋନିରାକରଣଦ୍ୱାରା ପରତତ୍ତ୍ୱପ୍ରକାଶକୋ (କୋଽପି) ନାସ୍ତୀତ୍ୟର୍ଥଃ ।। ୨୩।।

– ଗୁରୁ ହିଁ ମନୁଷ୍ୟମାନଙ୍କୁ ପରମତତ୍ତ୍ୱର ଜ୍ଞାନ କରାଇଥାନ୍ତି । ସୂର୍ଯ୍ୟ ବ୍ୟତୀତ ସଂସାରରେ ଅନ୍ଧକାରର ବିନିବର୍ତ୍ତକ କିଏ ହୋଇପାରିବ ? ।। ୨୩।।

ପୁନର୍ଦୃଷ୍ଟାନ୍ତମାହ –

**ଅନ୍ତରେଣ ଗୁରୁଂ ସିଦ୍ଧଂ କଥଂ ସଂସାରନିଷ୍କୃତିଃ ।**
**ନିଦାନଜ୍ଞଂ ବିନା ବୈଦ୍ୟଂ କିଂ ବା ରୋଗୋ ନିବର୍ତ୍ତତେ ।। ୨୪।।**

ସିଦ୍ଧଂ ଗୁରୁମନ୍ତରେଣ ଜ୍ଞାନସିଦ୍ଧଗୁରୁଂ ବିନେତ୍ୟର୍ଥଃ, ସଂସାରନିଷ୍କୃତିଃ ଭବରୋଗନିବୃତ୍ତିଃ କଥଂ ସ୍ୟାଦ୍ କଥଂ ଭବେଦ୍ ? ତତ୍ର ଦୃଷ୍ଟାନ୍ତଃ – ନିଦାନମ୍ ଏତଦ୍ ହେତୁକସ୍ୟାସ୍ୟ ରୋଗସ୍ୟେଦମୌଷଧମିତି ରୋଗଜ୍ଞାନପୂର୍ବକଚିକିତ୍ସାଭିଜ୍ଞଂ ବୈଦ୍ୟଂ ବିନା ରୋଗୋ ନିବର୍ତ୍ତତେ କିଂ ବା ? ନ ନିବର୍ତ୍ତତ ଇତ୍ୟର୍ଥଃ । ଯଥା ନିଦାନଜ୍ଞାନସହିତେନ ବୈଦ୍ୟେନ ବିନା ରୋଗୋ ନ ନିବର୍ତ୍ତତେ, ତଥା ଜ୍ଞାନସିଦ୍ଧଗୁରୁବ୍ୟତିରେକେଣ ସଂସାରନିବୃତ୍ତିର୍ନ ସମ୍ଭବତୀତି ତାତ୍ପର୍ଯ୍ୟମ୍ ।। ୨୪।।

– ସିଦ୍ଧଗୁରୁଙ୍କ ବିନା ସଂସାରର ନିଷ୍କୃତି ଅର୍ଥାତ୍ ନିବୃତ୍ତି କିପରି ସମ୍ଭବ ? କ'ଣ ନିଦାନଜ୍ଞ ବୈଦ୍ୟ ବିନା ରୋଗର ନିବୃତ୍ତି ହୋଇଥାଏ ।। ୨୪।।

ନନ୍ୱୟଂ ଗୁରୁଃ କଥଂ ଜ୍ଞାୟତ ଇତ୍ୟତ୍ରାହ –

**ଅଜ୍ଞାନମଳିନଂ ଚିତ୍ତଦର୍ପଣଂ ଯୋ ବିଶୋଧୟେତ୍ ।**
**ପ୍ରଜ୍ଞାବିଭୂତିଯୋଗେନ ତମାହୁର୍ଗୁରୁସତ୍ତମମ୍ ।। ୨୫।।**

ଅଜ୍ଞାନମଳିନଂ ଚିତ୍ତଦର୍ପଣଂ ଯଃ ପ୍ରଜ୍ଞାବିଭୂତିଯୋଗେନ 'ପ୍ରଜ୍ଞାନଂ ବ୍ରହ୍ମ'[୧୮୧] ଇତି ଶ୍ରୁତି ପ୍ରସିଦ୍ଧଶିବଜ୍ଞାନବିଭୂତି ସମ୍ବନ୍ଧେନ ଶୋଧୟେଦ୍ ନିର୍ମଳଂ କୁର୍ଯ୍ୟାଦ୍ । ତଂ ଗୁରୁସତ୍ତମଂ ଗୁରୁଶ୍ରେଷ୍ଠଂ ସନ୍ତମ୍ ଆହୁରିତ୍ୟର୍ଥଃ ।। ୨୫।।

– ଯିଏ ପ୍ରଜ୍ଞାରୂପୀ ଭସ୍ମରେ ଅଜ୍ଞାନମଳିନ ଚିତ୍ତଦର୍ପଣକୁ ଶୁଦ୍ଧ କରେ, ତାକୁ (ବିଦ୍ୱାନ୍) ଉତ୍ତମ ଗୁରୁ କହିଥା'ନ୍ତି ।। ୨୫।।

ଅଥ ତାଦୃଶଗୁରୁକଟାକ୍ଷାଦ୍ ସକଳ ସିଦ୍ଧିର୍ଭବତୀତ୍ୟାହ –

**ଅପରୋକ୍ଷିତତତ୍ତ୍ୱସ୍ୟ ଜୀବନ୍ମୁକ୍ତସ୍ୱଭାବିନଃ ।**
**ଗୁରୋଃ କଟାକ୍ଷେ ସଂସିଦ୍ଧେ କୋ ବା ଲୋକେଷୁ ଦୁର୍ଲଭଃ ।। ୨୬।।**

ଅପରୋକ୍ଷିତ ତତ୍ତ୍ୱସ୍ୟ ସ୍ୱସ୍ୱରୂପେଣ ସାକ୍ଷାଦ୍ କୃତ ଶିବତତ୍ତ୍ୱବତୋ ଜୀବନ୍ମୁକ୍ତସ୍ୱଭାବିନଃ –

---

୧୮୧. ଐ. ଉ., ୩/୫/୩

ବିକଳ୍ପରହିତଂ ଜ୍ଞାନଂ ନିଷେଧରହିତା କ୍ରିୟା ।
ଅଲୋକରଞ୍ଜକଂ ରୂପଂ ଜୀବନ୍ମୁକ୍ତସ୍ୟ ଲକ୍ଷଣମ୍ ।।

ଇତି ବାସିଷ୍ଠବଚନାଦ୍ ଜୀବନ୍ମୁକ୍ତସ୍ୱରୂପବତୋ ଗୁରୋଃ ସଦ୍‌ଗୁରୋଃ କଟାକ୍ଷେ କୃପାରସପୂରିତାପାଙ୍ଗେ ସଂସିଦ୍ଧେ ସତି ଲୋକେଷୁ କୋ ବା ଦୁର୍ଲଭଃ, ନ କୋଽପ୍ୟଲଭ୍ୟ ଇତ୍ୟର୍ଥଃ । ଭୋଗମୋକ୍ଷଲକ୍ଷଣସକଳସିଦ୍ଧିର୍ଭବତୀତି ଭାବଃ ।। ୨୬ ।।

– ତତ୍ତ୍ୱର ସାକ୍ଷାତ୍‌କାର କରିଥିବା ଅତଏବ ସ୍ୱଭାବତଃ ଜୀବନ୍ମୁକ୍ତ ଗୁରୁଙ୍କର କୃପା ଦୃଷ୍ଟି ପ୍ରାପ୍ତ ହେବାପରେ ଲୋକରେ କ'ଣ ବା ଦୁର୍ଲଭ ଅଟେ ।। ୨୬ ।।

ନନ୍ୱେତାଦୃଶଗୁରବଃ ସନ୍ତି କିମିତ୍ୟତ୍ର –

ଗୁରବୋ ବହବଃ ସନ୍ତି ଶିଷ୍ୟବିତ୍ତାପହାରକାଃ ।
ଶିଷ୍ୟହୃତ୍ତାପହାରସ୍ତୁ ଗୁରୁରେକୋଽପି ଦୁର୍ଲଭଃ ।।

ଇତି ଶିବରହସ୍ୟବଚନାନୁସାରେଣାହ –

**କୈବଲ୍ୟକଳ୍ପତରବୋ ଗୁରବଃ କରୁଣାଳୟାଃ ।**
**ଦୁର୍ଲଭା ହି ଜଗତ୍ୟସ୍ମିନ୍ ଶିବାଦ୍ୱୈତ ପରାୟଣାଃ ।। ୨୭ ।।**

ସ୍ପଷ୍ଟମ୍ ।। ୨୭ ।।

– କୈବଲ୍ୟରୂପୀ ଫଳ ଦେବା ପାଇଁ କଳ୍ପବୃକ୍ଷ ତୁଲ୍ୟ, କରୁଣାର ସାଗର ତଥା ଶିବାଦ୍ୱୈତ ପରାୟଣ ଗୁରୁ ଏହି ସଂସାରରେ ଦୁର୍ଲଭ ଅଟେ ।। ୨୭ ।।

ତସ୍ମାଚ୍ଛିବଲିଙ୍ଗତତ୍‌ପରଃ ଶ୍ରୀଗୁରୁଃ ପ୍ରାକୃତଗୁରୁଭ୍ୟଃ ଶ୍ରେଷ୍ଠ ଇତି ବଦନ୍ ନିର୍ଦ୍ଦେଶସ୍ଥଳଂ ସମାପୟତି –

**କ୍ଷୀରାବ୍ଧିରିବ ସିନ୍ଧୂନାଂ ସୁମେରୁରିବ ଭୂଭୃତାମ୍ ।**
**ଗ୍ରହାଣାମିବ ତିଗ୍ମାଂଶୁର୍ମଣୀନାମିବ କୌସ୍ତୁଭଃ ।। ୨୮ ।।**
**ଦ୍ରୁମାଣାମିବ ଭଦ୍ରଶ୍ରୀର୍ଦେବାନାମିବ ଶଙ୍କରଃ ।**
**ଗୁରୁଃ ଶିବଃ ପରଃ ଶ୍ଳାଘ୍ୟୋ ଗୁରୂଣାଂ ପ୍ରାକୃତାତ୍ମନାମ୍ ।। ୨୯ ।।**

ଭଦ୍ରଶ୍ରୀର୍ମଲୟଜ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୮–୨୯ ।।

– ଯେପରି ସମୁଦ୍ରମାନଙ୍କ ମଧ୍ୟରେ କ୍ଷୀରସାଗର, ପର୍ବତମାନଙ୍କ ମଧ୍ୟରେ ସୁମେରୁ, ଗ୍ରହମାନଙ୍କ ମଧ୍ୟରେ ସୂର୍ଯ୍ୟ, ମଣିମାନଙ୍କ ମଧ୍ୟରେ କୌସ୍ତୁଭ, ବୃକ୍ଷମାନଙ୍କ ମଧ୍ୟରେ ଚନ୍ଦନ ତଥା ଦେବତାମାନଙ୍କ ମଧ୍ୟରେ ଶଙ୍କର ଶ୍ରେଷ୍ଠ ଏବଂ ଶ୍ଳାଘ୍ୟ ଅଟନ୍ତି, ସେହିପରି ପ୍ରାକୃତ ଗୁରୁମାନଙ୍କ ମଧ୍ୟରେ ଶିବଜ୍ଞାନୀ ଗୁରୁ ଶ୍ରେଷ୍ଠ ଓ ପ୍ରଶଂସ୍ୟ ଅଟନ୍ତି ।। ୨୮–୨୯ ।।

ଇତି ନିର୍ଦ୍ଦେଶସ୍ଥଳମ୍

## ଅଥ ଶୀଲସମ୍ପାଦନସ୍ଥଲମ୍

ଅଥ ଶ୍ରୀଗୁରୁନିର୍ଦ୍ଦେଶ୍ୟଜ୍ଞାନଯୋଗାତ୍ ଶିବତତ୍ତ୍ୱସ୍ୟ ଜିଜ୍ଞାସା ଶୀଲମିତ୍ୟୁକ୍ତ୍ୱା ଶୀଲବତଃ ସ୍ୱରୂପଂ ସପ୍ତଭିଃ ସୂତ୍ରୈଃ ପ୍ରତିପାଦୟତି –

**ଜିଜ୍ଞାସା ଶିବତତ୍ତ୍ୱସ୍ୟ ଶୀଲମିତ୍ୟୁଚ୍ୟତେ ବୁଧୈଃ ।**
**ନିର୍ଦ୍ଦେଶ୍ୟଯୋଗାଦାର୍ଯାଣାଂ ତଦ୍ୱାନ୍ ଶୀଲୀତି କଥ୍ୟତେ ।। ୩୦ ।।**

ଆଚାର୍ଯ୍ୟାଣାଂ ପୂର୍ବୋକ୍ତଲକ୍ଷଣବଦାଚାର୍ଯୈର୍ନିର୍ଦ୍ଦେଶ୍ୟ ଯୋଗାଦ୍ ଉପଦେଶ୍ୟ-ଜ୍ଞାନଯୋଗାଦ୍ ଶିବତତ୍ତ୍ୱସ୍ୟ ଜିଜ୍ଞାସା ଜ୍ଞାତୁମିଚ୍ଛା ଶୀଲମିତି ବୁଧୈଃ ଜ୍ଞାନିଭିରୁଚ୍ୟତେ, ତଦ୍ୱାନ୍ ତାଦୃଶଜିଜ୍ଞାସାଲକ୍ଷଣଶୀଲବାନ୍ ଶୀଲୀତି କଥ୍ୟତ ଇତ୍ୟର୍ଥଃ ।। ୩୦ ।।

– (ଶୀଲ ସମ୍ପାଦନସ୍ଥଳ ବର୍ଣ୍ଣନ) – ଗୁରୁଙ୍କ ଦ୍ୱାରା ନିର୍ଦ୍ଦେଶ୍ୟ ଅର୍ଥାତ୍ ଉପଦେଶ୍ୟ ହୋଇଥିବାରୁ ବିଦ୍ୱାନ୍‌ମାନେ ଶିବତତ୍ତ୍ୱର ଜିଜ୍ଞାସାକୁ ଶୀଳ କୁହନ୍ତି । ତାହା ଯାହା ପାଖରେ ଅଛି, ସେ ଶୀଳୀ କୁହାଯାଏ ।। ୩୦ ।।

ଅଥ ନିଷ୍କର୍ଷମାହ –

**ପ୍ରପନ୍ନାର୍ତ୍ତିହରେ ଦେବେ ପରମାତ୍ମନି ଶଙ୍କରେ ।**
**ଭାବସ୍ୟ ସ୍ଥିରତାଯୋଗଃ ଶୀଲମିତ୍ୟୁଚ୍ୟତେ ବୁଧୈଃ ।। ୩୧ ।।**

ପାଳୟସ୍ୱେତି ଶରଣାଗତାନାଂ କ୍ଲେଶହରେ ପରବ୍ରହ୍ମସ୍ୱରୂପଶିବେ ଚିତ୍ତସ୍ଥିରୀକରଣଂ ଶୀଲମିତି ବୁଧୈଃ ଶିବଶାସ୍ତ୍ରଜ୍ଞୈଃ କଥ୍ୟତ ଇତ୍ୟର୍ଥଃ ।। ୩୧ ।।

– ଶରଣାଗତର କଷ୍ଟକୁ ଦୂର କରୁଥିବା ଦେବାଧିଦେବ ପରମାତ୍ମା ଶଙ୍କରଙ୍କ ପ୍ରତି ଭାବର ସ୍ଥିରତାକୁ ବିଦ୍ୱାନ୍‌ମାନେ ଶୀଳ କୁହନ୍ତି ।। ୩୧ ।।

ଅଥ ପ୍ରକାରାନ୍ତରେଣ ତଲ୍ଲକ୍ଷଣମାହ –

**ଶୀଲଂ ଶିବୈକବିଜ୍ଞାନଂ ଶିବଧ୍ୟାନୈକତାନତା ।**
**ଶିବପ୍ରାପ୍ତିସମୁତ୍କଣ୍ଠା ତଦ୍ୟୋଗୀ ଶୀଲବାନ୍ ସ୍ମୃତଃ ।। ୩୨ ।।**

ଶିବେ ବିଜ୍ଞାନଂ ଶିବ ଏବ ବିଶେଷଜ୍ଞାନଂ ଶିବଧ୍ୟାନୈକତାନତା ଶିବଧ୍ୟାନ ଏବ ଅନନ୍ୟବୃତ୍ତିତ୍ୱଂ ଶୀଲମିତ୍ୟୁଚ୍ୟତେ । ତଦ୍ୟୋଗୀ ଶୀଲବିଶିଷ୍ଟଃ ଶିବଜ୍ଞାନ ସମୁତ୍କଣ୍ଠାତଃ ଶିବାଭିଗମନଲାଳସ୍ୟାତ୍ ଶୀଲବାନିତି ସ୍ମୃତ ଇତ୍ୟର୍ଥଃ ।। ୩୨ ।।

– କେବଳ ଶିବଙ୍କର ଜ୍ଞାନ, ଶିବଙ୍କର ନିରନ୍ତର ଧ୍ୟାନ ଏବଂ ଶିବପ୍ରାପ୍ତି ପାଇଁ ଉତ୍କଣ୍ଠାଶୀଳତା ଯାହା ପାଖରେ ଅଛି, ତାକୁ ଶୀଳବାନ୍ କୁହାଯାଏ ।। ୩୨ ।।

ଇମମର୍ଥମେବ ସ୍ଫୁଟୀକୃତ୍ୟାହ –

**ଶିବାଦନ୍ୟତ୍ର ବିଜ୍ଞାନେ ବୈମୁଖ୍ୟଂ ଯସ୍ୟ ସୁସ୍ଥିରମ୍ ।**
**ତଦାସକ୍ତମନୋବୃତ୍ତିସ୍ତମାହୁଃ ଶୀଲଭାଜନମ୍ ।। ୩୩।।**

ଶିବାତ୍ ଶିବଲିଙ୍ଗାଦ୍ ଅନ୍ୟତ୍ର ବିଜ୍ଞାନେ ଦେବତାନ୍ତର ବିଶେଷଜ୍ଞାନେ ବୈମୁଖ୍ୟଂ ବିମୁଖତ୍ୱଂ ଯସ୍ୟ ଶରଣସ୍ୟ ସୁସ୍ଥିର ଦୃଢ଼ମ୍, ଯସ୍ୟ ମନୋବୃତ୍ତିଃ ମନୋବ୍ୟାପାରଃ, ତଦାସକ୍ତା ଶିବଲିଙ୍ଗ ଏବ ଲମ୍ପଟା, ତଂ ଶୀଲଭାଜନଂ ଶୀଲଭଜକଂ ସନ୍ତମ୍ ଆହୁଃ ।। ୩୩।।

– ଶିବ ବ୍ୟତିରିକ୍ତ ବିଜ୍ଞାନ ବିଷୟରେ ଯାହାଙ୍କର ପରାଙ୍ମୁଖତା ସ୍ଥିର ଅଟେ ତଥା ଯାହାଙ୍କର ମନୋବୃତ୍ତି ତାଙ୍କଠାରେ (ଶିବ) ଆସକ୍ତ ଅଟେ, ସେ ଶୀଳର ପାତ୍ର ଅର୍ଥାତ୍ ଶୀଳବାନ୍ ଅଟନ୍ତି ।। ୩୩।।

ଅତ୍ର ଦୃଷ୍ଟାନ୍ତମାହ –

**ପତିବ୍ରତାୟା ଯଚ୍ଛୀଲଂ ପତିରାଗାଦ୍ ପ୍ରଶସ୍ୟତେ ।**
**ତଥା ଶିବାନୁରାଗେଣ ସୁଶୀଲୋଦ୍ଧଭକ୍ତ ଉଚ୍ୟତେ ।। ୩୪ ।।**

ପତିବ୍ରତାୟା ଯଚ୍ଛୀଲଂ ପାତିବ୍ରତ୍ୟଂ ପତିରାଗାଦ୍ ପୁରୁଷପ୍ରୀତିବଶାଦ୍ ପ୍ରଶସ୍ୟତେ, ତଥା ଶିବାନୁରାଗେଣ ଶିବୋପରି ପ୍ରୀତ୍ୟା ଅଭକ୍ତଃ ଅବିମୁକ୍ତଃ ଶରଣଃ ସୁଶୀଲଃ ଶୋଭନଶୀଲବାନିତ୍ୟର୍ଥଃ । ଶରଣଲିଙ୍ଗୟୋଃ ସତୀପତିଭାବସ୍ୟୋକ୍ତତ୍ୱାଦ୍ ପତିବ୍ରତା ଦୃଷ୍ଟାନ୍ତ କଥିତଃ ।। ୩୪ ।।

– ଯେପରି ପତିବ୍ରତାର ଯାହା ଶୀଳ, ତା'ର ପ୍ରଶଂସା ପତିଙ୍କ ପ୍ରତି ତା'ର ରାଗାତ୍ମିକା ଭାବନା କାରଣରୁ ହୋଇଥାଏ, ସେହିପରି ଶିବଙ୍କ ପ୍ରତି ଅନୁରାଗ କାରଣରୁ ଅଭକ୍ତ ଅର୍ଥାତ୍ ଶିବଙ୍କ ପ୍ରତି ପ୍ରୀତିରୁ ଅବିମୁକ୍ତ ମନୁଷ୍ୟ ମଧ୍ୟ ସୁଶୀଳ କୁହାଯାଏ ।। ୩୪ ।।

ଅଥୈମମର୍ଥମେବ ବିଶଦୟତି –

**ପତିଂ ବିନା ଯଥା ସ୍ତ୍ରୀଣାଂ ସେବାନ୍ୟସ୍ୟ ତୁ ଗର୍ହଣା ।**
**ଶିବଂ ବିନା ତଥାନ୍ୟେଷାଂ ସେବା ନିନ୍ଦ୍ୟା କୃତାତ୍ମନାମ୍ ।। ୩୫।।**

ସ୍ତ୍ରୀଣାଂ ପତିଂ ବିନା ପ୍ରାଣକାନ୍ତଂ ବିନା, ଅନ୍ୟସ୍ୟ ପରପୁରୁଷସ୍ୟ ସେବା ଯଥା ଗର୍ହଣା ନିନ୍ଦିତା, ତଥା କୃତାତ୍ମନାଂ କୃତକୃତ୍ୟାନାଂ ଶିବଶରଣାନାଂ ଶିବଂ ବିନା ଶିବଲିଙ୍ଗଂ ବିନା ଅନ୍ୟେଷାଂ ବିଷ୍ଣ୍ୱାଦିଦେବାନାଂ ସେବା ନିନ୍ଦ୍ୟା ଭବତୀତ୍ୟର୍ଥଃ ।। ୩୫।।

– ଯେପରି ସ୍ତ୍ରୀମାନଙ୍କ ପାଇଁ ପତି ଛଡ଼ା ଅନ୍ୟ ପୁରୁଷର ସେବା ନିନ୍ଦନୀୟ ଅଟେ, ସେହିପରି ଶିବଙ୍କ ବ୍ୟତୀତ ଅନ୍ୟ ଦେବତାଙ୍କର ସେବା କୃତକୃତ୍ୟ ଲୋକଙ୍କ ପାଇଁ ନିନ୍ଦନୀୟ ଅଟେ ।। ୩୫।।

ଅଥୋକ୍ତାର୍ଥଂ ସଂଗୃହ୍ୟାହ –

**ବହୁନାତ୍ର କିମୁକ୍ତେନ ଶିବଜ୍ଞାନୈକନିଷ୍ଠତା ।**
**ଶୀଲମିତ୍ୟୁଚ୍ୟତେ ସଦ୍‌ଭିଃ ଶୀଲବାଂସ୍ତତ୍ପରୋ ମତଃ ।। ୩୬।।**

ଅତ୍ର ଶୀଲବିଷୟେ ବହୁଭାଷଣେନ କିଂ ଶିବଜ୍ଞାନୈକନିଷ୍ଠତା ଶ୍ରୀଗୁରୁନିର୍ଦ୍ଦିଷ୍ଟ ଶିବଜ୍ଞାନ ଏକସ୍ମିନ୍ନେବ ନିଷ୍ଠା ଶୀଲମିତି ସତ୍ପୁରୁଷୈରୁଚ୍ୟତେ ତତ୍ପରସ୍ତଚ୍ଛୀଲାସକ୍ତଃ ଶୀଲବାନିତି ମତଃ ସମ୍ମତି ଇତ୍ୟର୍ଥଃ ।। ୩୬।।

– ଏ ବିଷୟରେ ଅଧିକ କହିବାରେ କ'ଣ ଲାଭ ? ସଜ୍ଜନ ଲୋକ ଶିବଜ୍ଞାନ ପ୍ରତି ଏକନିଷ୍ଠତାକୁ ଶୀଳ କହନ୍ତି ଏବଂ ସେଥିରେ ଯିଏ ରତ ରହେ, ସେ ଶୀଳବାନ୍ ମାନା ଯାଇଥାଏ ।। ୩୬।।

ଅଥୈବଂ ବିଧଶୀଲବାନ୍ ଶରଣ ଏବ ଶିବଲିଙ୍ଗୈକ୍ୟ ଇତି ଶରଣସ୍ଥଲଂ ସମାପୟତି-

**ଶିବାତ୍ମବୋଧୈକରତଃ ସ୍ଥିରାଶୟଃ**
**ଶିବଂ ପ୍ରପନ୍ନୋ ଜଗତାମଧୀଶମ୍ ।**
**ଶିବୈକନିଷ୍ଠାହିତଶୀଲଭୂଷଣଃ**
**ଶିବୈକ୍ୟବାନେଷ ହି କଥ୍ୟତେ ବୁଧୈଃ ।। ୩୭।।**

ଶିବାତ୍ମବୋଧୈକରତୋ ଲିଙ୍ଗାଙ୍ଗଜ୍ଞାନୈକନିଷ୍ଠଃ ସନ୍ ଜଗତାମଧୀଶଂ ଶିବଂ ପ୍ରପନ୍ନୋ ରକ୍ଷେତି ଶରଣଂ ଗତଃ ସ୍ଥିରାଶୟଃ ଶିବଶରଣୟୋର୍ଦୃଢ଼ୀଭୂତସତୀପତିଭାବଯୁକ୍ତଚିତ୍ତଃ ଶିବୈକନିଷ୍ଠାହିତଶୀଲଭୂଷଣଃ ଶିବଲିଙ୍ଗୈକନିଷ୍ଠାକୃତିଶୀଲାଲଙ୍କାରବାନେଷ ଶରଣଃ ଶିବୈକ୍ୟବାନିତି ବୁଧୈଃ ଶିବଶାସ୍ତ୍ରପ୍ରବୀଣୈଃ କଥ୍ୟତେ ହି ପ୍ରସିଦ୍ଧମିତ୍ୟର୍ଥଃ ।। ୩୭।।

– କେବଳ ଶିବ ବୋଧରେ ରତ, ସ୍ଥିର ଭାବନାରେ ଯୁକ୍ତ, ସଂସାରର ସ୍ୱାମୀ ଶିବଙ୍କର ଶରଣରେ ଯାଇଥିବା, ଶିବଙ୍କଠାରେ ନିଷ୍ଠାରୂପୀ ଆଭୂଷଣକୁ ଧାରଣ କରିଥିବା ଏହି ମନୁଷ୍ୟ ବିଦ୍ୱାନ୍‌ମାନଙ୍କଦ୍ୱାରା ଶିବୈକ୍ୟବାନ୍ କୁହାଯାଇଥାଏ ।। ୩୭।।

ଇତି ଶ୍ରୀମତ୍‌ଷଟ୍‌ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ସିଦ୍ଧାନ୍ତଶିଖାମଣୌ ଶରଣସ୍ୟ ଚତୁଃସ୍ଥଳପ୍ରସଙ୍ଗୋ ନାମ ତ୍ରୟୋଦଶଃ ପରିଚ୍ଛେଦଃ ।। ୧୩।।

ଇତି ଶ୍ରୀମତ୍ପଦବାକ୍ୟପ୍ରମାଣପାରାବାରଧୁରୀଣମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ଶରଣସ୍ୟ ଚତୁଃସ୍ଥଳପ୍ରସଙ୍ଗନାମା ତ୍ରୟୋଦଶଃ ପରିଚ୍ଛେଦଃ ।। ୧୩।।

– ଏହପରି ଶ୍ରୀସିଦ୍ଧାନ୍ତଶିଖାମଣିର ଶରଣର ଚତୁଃସ୍ଥଳପ୍ରସଙ୍ଗ ନାମକ ତ୍ରୟୋଦଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମ ଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୧୩।।



# ଚତୁର୍ଦ୍ଦଶଃ ପରିଚ୍ଛେଦଃ

## ଅଥ ଐକ୍ୟସ୍ଥଲମ୍

ଅଥାଗସ୍ତ୍ୟପ୍ରଶ୍ନଃ । ଅଗସ୍ତ୍ୟ ଉବାଚେତି –

**ତାମସତ୍ୟାଗସମ୍ବନ୍ଧାନ୍ନିର୍ଦ୍ଦେଶାଚ୍ଛୀଲତସ୍ତଥା ।**

**ଶରଣାଖ୍ୟସ୍ୟ ଭୂୟୋଦ୍ଧସ୍ୟ କଥମୈକ୍ୟନିରୂପଣମ୍ ।। ୧ ।।**

ତମୋଭାଗନିରାକରଣାଦ୍ ଜ୍ଞାନନିର୍ଦ୍ଦେଶାତ୍ ତଥା ଶୀଳସମ୍ପାଦନାତ୍ ଶରଣାଖ୍ୟସ୍ୟାସ୍ୟ ଏତାବନ୍ମାତ୍ରେଣ କଥମୈକ୍ୟନିରୂପଣମ୍ ଲିଙ୍ଗାଙ୍ଗୟୋର୍ଭେଦଘଟିତତ୍ୱାଦିତି ।। ୧ ।।

– (ଐକ୍ୟସ୍ଥଳ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – ତାମସ ଗୁଣର ତ୍ୟାଗ, ଜ୍ଞାନ ନିର୍ଦ୍ଦେଶ ତଥା ଶୀଳସମ୍ପାଦନ ଦ୍ୱାରା ଶରଣ ନାମକ ସାଧକର ପୁନଃ ଐକ୍ୟ କିପରି ହୋଇଥାଏ ? ।। ୧ ।।

ଅସ୍ୟୋତ୍ତରଂ ଦଦାତି – ଶ୍ରୀରେଣୁକ ଉବାଚେତି –

**ପ୍ରାଣଲିଙ୍ଗାଦିଯୋଗେନ ସୁଖାତିଶୟମେୟିବାନ୍ ।**

**ଶରଣାଖ୍ୟଃ ଶିବେନୈକ୍ୟଭାବନାଦୈକ୍ୟବାନ୍ ଭବେତ୍ ।। ୨ ।।**

ପ୍ରାଣଲିଙ୍ଗାଦିଯୋଗେନ ବାହ୍ୟଲିଙ୍ଗପୂଜାବୈମୁଖ୍ୟେନାନ୍ତର୍ଲିଙ୍ଗପୂଜାଧ୍ୟାନଯୋଗେନ ସୁଖାତିଶୟଂ ଶିବସୁଖାତିଶୟମ୍ ଏୟିବାନ୍ ଲବ୍ଧବାନ୍ ଶରଣାଖ୍ୟଃ ଶିବେନ ଶିବଲିଙ୍ଗେନ ଐକ୍ୟଭାବନାଦ୍ ଏକତ୍ୱଚିନ୍ତନାଦ୍ ଐକ୍ୟବାନ୍ ଶିବଲିଙ୍ଗୈକ୍ୟବାନ୍ ଭବେତ୍ ସ୍ୟାଦିତ୍ୟର୍ଥଃ। ଅୟଂ ଭାବଃ – ଲିଙ୍ଗାତ୍ମନୋର୍ଭେଦୋ ନ ସମ୍ଭବତି, ଚିଦେକରୂପତ୍ୱାତ୍ । ନନୁ ଚିଦ୍ରୂପତ୍ୱେଽପି ବ୍ୟକ୍ତିଭେଦୋଽସ୍ତୀତି ଚେତ୍ ଉଚ୍ୟତେ – ସ ଜୀବଃ ପରିଚ୍ଛିନ୍ନଚିତ୍ପ୍ରକାଶରୂପୋ ବା ଅପରିଚ୍ଛିନ୍ନଚିତ୍ ପ୍ରକାଶରୂପୋ ବା ? ନାଦ୍ୟଃ, ପରିମିତଘଟାଦି ପ୍ରକାଶବତ୍ ସ୍ୱବିଷୟସ୍ୱ ମାତ୍ର ନିଷ୍ଠତ୍ୱେନ ପରବିଷୟପର ସ୍ୱରୂପେଷ୍ୱନ୍ଧବଧିରପ୍ରାୟତ୍ୱେନ ଚୈତ୍ରୋ ମୈତ୍ରାଦ୍ ଭିନ୍ନଃ, ମୈତ୍ରଶ୍ଚୈତ୍ରାଦ୍ ଭିନ୍ନଃ, ଚୈତ୍ରମହଂ ଜାନାମି, ମୈତ୍ରମହଂ ଜାନାମି ଇତି ବାହ୍ୟାଭ୍ୟନ୍ତରାନୁସନ୍ଧାନଂ ନ ସମ୍ଭବତୀତି, ଚୈତ୍ରୋଽହମିତି ପ୍ରକାଶସ୍ୟ ତନ୍ମାତ୍ରନିଷ୍ଠତ୍ୱାତ୍, ମୈତ୍ରସ୍ୱରୂପତଦ୍ୱିଷୟଯୋ-ରନ୍ଧବଧିରପ୍ରାୟତ୍ୱାତ୍, ଏବଂ ମୈତ୍ରୋଽହମିତି ପ୍ରକାଶଃ ସ୍ୟାଦିତି। ଅଥାପରିଚ୍ଛିନ୍ନ ପ୍ରକାଶତ୍ୱେ ତାଦୃଶପ୍ରକାଶଦ୍ୱୟାଙ୍ଗୀକାରୋ ନ ସମ୍ଭବତି, ସେବ୍ୟସେବକ ଭାବାଦ୍ୟସମ୍ଭବାତ୍, ପ୍ରକାଶୈକ୍ୟେ କଳ୍ପିତ ଭେଦମାଦାୟ ତତ୍ସମ୍ଭବାତ୍ ପ୍ରକାଶୈକ୍ୟମଙ୍ଗୀକରଣୀୟମ୍, ସର୍ବାସର୍ବଶବ୍ଦୟୋର୍ମାୟା-କାର୍ଯ୍ୟକୋଟି ପ୍ରବିଷ୍ଟତ୍ୱେନାନ୍ତରାଳିକତ୍ୱାତ୍, ଜ୍ଞତ୍ୱକର୍ତ୍ତୃତ୍ୱୟୋରେବ ସ୍ୱାଭାବିକତ୍ୱାଦିତି ତଦେକତ୍ୱଚିନ୍ତନାଦୈକ୍ୟବାନ୍ ସ୍ୟାଦିତି ।। ୨ ।।

– ଶ୍ରୀ ରେଣୁକାଚାର୍ଯ୍ୟ କହିଲେ –

ପ୍ରାଣଲିଙ୍ଗ ଧ୍ୟାନଯୋଗଦ୍ୱାରା ଅତିଶୟ ସୁଖପ୍ରାପ୍ତ କରିଥିବା ଶରଣ ନାମକ ସାଧକ ଶିବଙ୍କ ସହିତ ଐକ୍ୟଭାବ କାରଣରୁ ଐକ୍ୟବାନ୍ ହୋଇଯାଏ ।। ୨ ।।

ବିଶେଷ – ଲିଙ୍ଗ ଏବଂ ଆତ୍ମାର ଭେଦ ସମ୍ଭବ ନୁହେଁ । କାରଣ ଏ ଦୁଇଟି ଚିତ୍‌ସ୍ୱରୂପ ଅଟନ୍ତି । ଉଭୟ ଚିତ୍‌ସ୍ୱରୂପ ହୋଇଥିବାରୁ ସେ ଦୁଇଟି ମଧ୍ୟରେ ନିତାନ୍ତ ପାର୍ଥକ୍ୟ ନାହିଁ, କାରଣ ସେତେବେଳେ ନିଜର ଜ୍ଞାନ ହେବା ସମୟରେ ଘଟ ପଟ ଆଦିର ଜ୍ଞାନ ହୋଇ ନଥାଏ । ସେ ଦୁଇଟି ସମ୍ପୂର୍ଣ୍ଣ ଏକ ମଧ୍ୟ ହୋଇପାରିବେ ନାହିଁ, କାରଣ ସେପରି ହେଲେ ଶୈବ ସିଦ୍ଧାନ୍ତ ବ୍ୟାଘାତ ହୋଇଯିବ । ଶୈବ ସିଦ୍ଧାନ୍ତ ଅନୁସାରେ ଶିବ ଏବଂ ଜୀବ ମଧ୍ୟରେ ସେବ୍ୟ–ସେବକ ଭାବ ହେବା ଉଚିତ୍ । ତେଣୁ ଉଭୟ ମଧ୍ୟରେ ଭେଦ କଳ୍ପନା କରିବାକୁ ପଡ଼ିଥାଏ । ଏହାଦ୍ୱାରା ଭେଦ ଥିଲେ ମଧ୍ୟ ଐକ୍ୟ ଭାବନା ସମ୍ଭବ ହୋଇଥାଏ ।

ଅଥାସ୍ୟାପି ସ୍ଥଲଭେଦାଃ ସନ୍ତି କିମିତ୍ୟତ୍ରାହ –

**ଐକ୍ୟସ୍ଥଲମିଦଂ ପ୍ରୋକ୍ତଂ ଚତୁର୍ଧା ମୁନିପୁଙ୍ଗବ ।**
**ଐକ୍ୟମାଚାରସମ୍ପତ୍ତିରେକଭାଜନମେବ ଚ ।**
**ସହଭୋଜନମିତ୍ୟେଷାଂ କ୍ରମାଲ୍ଲକ୍ଷଣମୁଚ୍ୟତେ ।। ୩।।**

ସ୍ପଷ୍ଟମ୍ ।। ୩।।

– ହେ ମୁନିଶ୍ରେଷ୍ଠ, ଏହି ଐକ୍ୟସ୍ଥଳ ଚାରି ପ୍ରକାରର କୁହାଯାଇଛି । ଐକ୍ୟସ୍ଥଳ, ଆଚାର ସମ୍ପତ୍ତି ସ୍ଥଳ, ଏକଭାଜନସ୍ଥଳ ଏବଂ ସହଭୋଜନ ସ୍ଥଳ । ଏମାନଙ୍କର ଲକ୍ଷଣ କ୍ରମରେ କୁହାଯାଉଛି ।। ୩ ।।

'ଏକମେବ ତଦ୍‌ଭବତ୍ୟବିକଳ୍ପୋ ନାବିକଳ୍ପୋଽପି ନାତ୍ର କାଚନ ଭିଦାସ୍ତି ନୈବାତ୍ର କାଚନ ଭିଦାସ୍ତ୍ୟତ୍ର ଭିଦାମିବ ମନ୍ୟମାନଃ ଶତଧା ସହସ୍ରଧା ଭିନ୍ନୋ ମୃତ୍ୟୋର୍ମୃତ୍ୟୁ–ମାପ୍ନୋତି। ତଦେତଦ୍ ଦ୍ୱୟଂ ସ୍ୱପ୍ରକାଶମ୍'[୧୮୨] ଇତ୍ୟୁତ୍ତରତାପନୀୟଶ୍ରୁତ୍ୟନୁସାରେଣ ଲିଙ୍ଗୈକ୍ୟସ୍ୟ ଲକ୍ଷଣଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ବିଷୟାନନ୍ଦକଣିକାନିସ୍ପୃହୋ ନିର୍ମଳାଶୟଃ ।**
**ଶିବାନନ୍ଦମହାସିନ୍ଧୁମଜ୍ଜନାଦୈକ୍ୟମୁଚ୍ୟତେ ।। ୪ ।।**

ବିଷୟାନନ୍ଦକଣିକାନିସ୍ପୃହଃ ଶବ୍ଦାଦିବିଷୟାନନ୍ଦଶୀକରେଷୁ ବିରକ୍ତଃ ସନ୍ ନିର୍ମଳାଶୟୋ ନିର୍ମଳଚିତ୍ତବାନେବ ଶିବାନନ୍ଦମହାସିନ୍ଧୁ ମଜ୍ଜନାତ୍ ଶିବାନନ୍ଦମହାସମୁଦ୍ରେ ତାଦାତ୍ମ୍ୟାନୁ–ପ୍ରବେଶନାଦ୍ ଐକ୍ୟ ଲିଙ୍ଗୈକ୍ୟସ୍ଥଳମିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୪ ।।

---

୧୮୨. ନୃ. ଉ. ଉ. ୮/୭

– ବିଷୟାନନ୍ଦ ପ୍ରତି ନିସ୍ପୃହ ନିର୍ମଳଚିତ୍ତ ଯୁକ୍ତ ସାଧକ ଶିବାନନ୍ଦ ମହାସମୁଦ୍ରରେ ମଜ୍ଜନ ଅର୍ଥାତ୍ ସାମରସ୍ୟ ସ୍ଥାପିତ କରିଲେ ଐକ୍ୟସ୍ଥଳ କୁହାଯାଇଥାଏ ।। ୪।।

ନନ୍ୱିଦମୈକ୍ୟଂ କୀଦୃଶସ୍ୟ ସମ୍ଭବତୀତ୍ୟତ୍ରାହ –

**ନିର୍ଧୂତମଲସମ୍ବନ୍ଧୋ ନିଷ୍କଲଙ୍କମନୋଗତଃ ।**
**ଶିବୋଽହମିତି ଭାବେନ ନିରୂଢ଼ୋ ହି ଶିବୈକ୍ୟତାମ୍ ।। ୫।।**

ନିବାରିତାଣବାଦିମଲସମ୍ପର୍କବାନ୍ କଳଙ୍କରହିତମନୋବ୍ୟାପାରବାନ୍ ଶିବୋଽହମିତି ପରାମର୍ଶନେନ ଶିବଲିଙ୍ଗୈକ୍ୟତାଂ ନିରୂଢ଼ୋ ହି ଭଜ (ବ)ତୀତି ପ୍ରସିଦ୍ଧମ୍ ।। ୫।।

– ମଳକୁ ଦୂର କରି ତା'ଠାରୁ ଅସମ୍ବନ୍ଧ, ନିଷ୍କଳଙ୍କ ମନବାଲା ସାଧକ 'ଶିବୋଽହମ୍' – ଏହି ଭାବନାରେ ଶିବୈକ୍ୟକୁ ପ୍ରାପ୍ତ କରିଥାଏ ।। ୫।।

ଅଥ କିଂ ପଶ୍ୟନ୍ନାସ୍ତୀ (ସ୍ତ ଇ)ତ୍ୟତ୍ରାହ –

**ଶିବେନୈକ୍ୟଂ ସମାପନ୍ନଶ୍ଚିଦାନନ୍ଦସ୍ୱରୂପିଣା ।**
**ନ ପଶ୍ୟତି ଜଗଜ୍ଜାଲଂ ମାୟାକଳ୍ପିତବୈଭବମ୍ ।। ୬।।**

ମାୟାଶକ୍ତିପରିକଳ୍ପିତଂ ବିଶ୍ୱମପଶ୍ୟନ୍ନାସ୍ତ ଇତ୍ୟର୍ଥଃ ।। ୬।।

– ଚିତ୍ ଆନନ୍ଦରୂପକ ଶିବଙ୍କ ସହିତ ଐକ୍ୟ ପ୍ରାପ୍ତ ହୋଇଥିବା ମନୁଷ୍ୟ ମାୟାଦ୍ୱାରା ରଚିତ ବୈଭବଯୁକ୍ତ ସଂସାର ଜାଲକୁ ଦେଖେ ନାହିଁ ।। ୬।।

ତତ୍କୁତୋ ନ ପଶ୍ୟତୀତ୍ୟତ୍ରାହ –

**ବ୍ରହ୍ମାଣ୍ଡବୁଦ୍ବୁଦୋଦ୍‌ଭେଦବିଜୃମ୍ଭୀ ତତ୍ତ୍ୱବୀଚିମାନ୍ ।**
**ମାୟାସିନ୍ଧୁର୍ଲୟଂ ଯାତି ଶିବୈକ୍ୟବଡ଼ବାନଲେ ।। ୭।।**

ବ୍ରହ୍ମାଣ୍ଡବୁଦ୍‌ବୁଦୋଦ୍‌ଭେଦବିଜୃମ୍ଭୀ ବ୍ରହ୍ମାଣ୍ଡରୂପବୁଦ୍‌ବୁଦାବିର୍ଭାବେନ ବର୍ଦ୍ଧିଷ୍ଣୁଃ, ତତ୍ତ୍ୱବୀଚିମାନ୍ ଷଡ୍‌ତ୍ରିଂଶତ୍ତତ୍ତ୍ୱଲକ୍ଷଣବୀଚିମାନ୍ ମାୟାସିନ୍ଧୁଃ ଶିବୈକ୍ୟବଡ଼ବାନଲେ ଶିବଲିଙ୍ଗୈକ୍ୟରୂପ ବଡ଼ବାଗ୍ନୌ ଲୟଂ ଯାତି । ଅତଃ କାରଣାଦ୍ ପ୍ରପଞ୍ଚଦର୍ଶନଂ ନାସ୍ତି, ଉପାଦାନକାରଣନାଶାତ୍ କାର୍ଯ୍ୟନାଶସ୍ୟାବଶ୍ୟମଙ୍ଗୀକରଣୀୟତ୍ୱାତ୍ ।। ୭।।

– ବ୍ରହ୍ମାଣ୍ଡରୂପୀ ବୁଦ୍‌ବୁଦ୍‌ର ଉଦ୍‌ଭବର ବନ୍ୟାଯୁକ୍ତ, ଛତିଶ ତତ୍ତ୍ୱରୂପୀ ତରଙ୍ଗଯୁକ୍ତ ମାୟାରୂପୀ ସମୁଦ୍ର ଶିବୈକ୍ୟରୂପୀ ବାଡ଼ବାଗ୍ନିରେ ଲୀନ ହୋଇଯାଏ ।। ୭।।

ଅଥ ତଦେବ ବିଶଦୟତି –

**ମାୟାଶକ୍ତିତିରୋଧାନାଚ୍ଛିବେ ଭେଦବିକଳ୍ପନା ।**
**ଆତ୍ମନସ୍ତଦ୍ୱିନାଶେ ତୁ ନାଦ୍ୱୈତାତ୍କିଞ୍ଚିଦିଷ୍ୟତେ ।। ୮।।**

ଶିବେ ମାୟାଶକ୍ତେସ୍ତିରୋଧାନାତ୍ ପ୍ରସରଣାଦ୍ ଆତ୍ମନୋ ଜୀବସ୍ୟ ଭେଦବିକଳ୍ପନା

ସ୍ୟାତ୍ । ତଦ୍ଵିନାଶେ ମାୟାପ୍ରସରଣସ୍ୟ ନାଶେ ଅଦ୍ଵୈତାତ୍ କିଞ୍ଚିଦ୍ ଈଷଦ୍‌ଭେଦୋଽପି ନେଷ୍ୟତେ ନେଚ୍ଛାବିଷୟୀକ୍ରିୟତେ ।। ୮ ।।

– ମାୟାଶକ୍ତି ଶିବଙ୍କଠାରେ ତିରୋଧାନ ହେବା ପରେ ଜୀବର ଶିବଠାରୁ ଭେଦ ଥାଏ । ତାହା ନଷ୍ଟ ହେବା ପରେ ଅଦ୍ଵୈତ ଅତିରିକ୍ତ କିଛି ରହେ ନାହିଁ ।। ୮ ।।

ନନୁ ଶିବଜୀବୟୋଃ ପତି–ପଶୁ ଲକ୍ଷଣଭେଦଶ୍ରବଣାତ୍ କଥଂ କିଞ୍ଚିଦ୍ ଭେଦୋଽପି ନେଷ୍ୟତ ଇତ୍ୟୁକ୍ତମିତ୍ୟତ୍ର –

ଅହମେକୋ ନ ମେ କଶ୍ଚିନ୍ନାହମନ୍ୟସ୍ୟ କସ୍ୟଚିତ୍ ।
ନ ତଂ ପଶ୍ୟାମି ଯସ୍ୟାହଂ ନ ତଂ ପଶ୍ୟାମି ଯୋ ମମ ।।

ଇତି ଦେବୀକାଲୋତ୍ତରବଚନାନୁସାରେଣ ଶିବଲିଙ୍ଗୈକ୍ୟସ୍ୟ ପ୍ରସିଦ୍ଧଶିବାଦ୍ଵୈତଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ପଶୁତ୍ଵଂ ଚ ପତିତ୍ଵଂ ଚ ମାୟାମୋହବିକଳ୍ପିତମ୍ ।**
**ତସ୍ମିନ୍ ପ୍ରଳୟମାପନ୍ନେ କଃ ପଶୁଃ କୋ ନୁ ବା ପତିଃ ।। ୯ ।।**

ସ୍ପଷ୍ଟମ୍ ।। ୯ ।।

– ପଶୁଭାବ ଏବଂ ପତିଭାବ ହେଉଛନ୍ତି ମାୟାମୋହର ବିକଳ୍ପନା । ସେହି ମାୟାମୋହର ପ୍ରଳୟ ହେବାପରେ କିଏ ପଶୁ ଏବଂ କିଏ ପତି ।। ୯ ।।

ଅଥାସ୍ୟ ସଂସାରସ୍ୟ ଭେଦବଲ୍ମୀକନିଷ୍ଠ ସର୍ପରୂପତ୍ଵାତ୍ କିମସ୍ୟୌଷଧମିତ୍ୟତ୍ରାହ –

**ଘୋରସଂସାରସର୍ପସ୍ୟ ଭେଦବଲ୍ମୀକଶାୟିନଃ ।**
**ବାଧକଂ ପରମାଦ୍ଵୈତଭାବନା ପରମୌଷଧମ୍ ।। ୧୦ ।।**

ଭେଦବଲ୍ମୀକଶାୟିନୋ ଜଡ଼ାଜଡ଼ଭେଦଃ, ଜୀବାଜୀବଭେଦଃ, ଜୀବଜଡ଼ଭେଦଃ, ଜୀବେଶ୍ଵରଭେଦଃ, ଜଡ଼େଶ୍ଵରଭେଦ ଇତ୍ୟେବଂ ରୂପପଞ୍ଚବିଧଭେଦବିଶିଷ୍ଟବଲ୍ମୀକଘିତସ୍ୟ ଘୋରସଂସାରସର୍ପସ୍ୟ ଜନନମରଣାଦିଭୟଙ୍କରସ୍ୟ ସଂସାରସର୍ପସ୍ୟ ବାଧକମୌଷଧଂ ପରମାଦ୍ଵୈତଭାବନା ଜଡ଼ଚେତନୈକ୍ୟଭାବନେତ୍ୟର୍ଥଃ ।। ୧୦ ।।

– ଏହି ପରମାଦ୍ଵୈତ ଭାବନା ଭେଦରୂପୀ[୧୮୩] ହୁଙ୍କାରେ ଶୋଇଥିବା ଭୟଙ୍କର ସଂସାରରୂପୀ ସର୍ପର ବାଧକ ପରମ ଔଷଧି ଅଟେ ।। ୧୦ ।।

ନନ୍ଵସ୍ୟ ସଂସାରସ୍ୟ ଭେଦବୁଦ୍ଧିସମୁତ୍ପନ୍ନମହାସାଗରତ୍ଵାଦିମଂ କେନୋପାୟେନ କୋ ବା ତରତୀତ୍ୟତ୍ରାହ –

---

୧୮୩. ଏହି ଭେଦ ପାଞ୍ଚ ପ୍ରକାରର – ଜଡ଼ ଅଜଡ଼ ଭେଦ, ଜୀବ–ଅଜୀବ ଭେଦ, ଜୀବ–ଜଡ଼ ଭେଦ, ଜୀବ–ଈଶ୍ଵର ଭେଦ ଏବଂ ଜଡ଼–ଈଶ୍ଵର ଭେଦ ।

ଭେଦବୁଦ୍ଧିସମୁତ୍ପନ୍ନ ମହାସଂସାରସାଗରମ୍ ।
ଅଦ୍ୱୈତବୁଦ୍ଧିପୋତେନ ସମୁତ୍ତରତି ଦେଶିକଃ ।। ୧୧ ।।

ଦେଶିକଃ ଶିବଲିଙ୍ଗୈକ୍ୟ ଇତ୍ୟର୍ଥଃ । ଶିଷ୍ଟଂ ସ୍ୱଷ୍ଟମ୍ ।। ୧୧ ।।

– ଆଚାର୍ଯ୍ୟ ଅଥବା ଶିବଲିଙ୍ଗୈକ୍ୟ ଭାବନାଯୁକ୍ତ ବ୍ୟକ୍ତି ଭେଦବୁଦ୍ଧିରୁ ଉତ୍ପନ୍ନ ମହାସଂସାର ସାଗରକୁ ଅଦ୍ୱୈତ ବୁଦ୍ଧିରୂପୀ ଜାହଜରେ ପାରି ହୋଇଥାଏ ।। ୧୧ ।।

ନନ୍ୱିୟଂ ସଂସୃତିଃ କାମରକ୍ଷଃ କ୍ରିୟାକାରୀ କାଳରାତ୍ରିର୍ଭବତି (ନ୍ତୀ) କେନ ନଶ୍ୟତୀତ୍ୟତ୍ରାହ –

ଅଜ୍ଞାନତିମିରୋଦ୍ରିକ୍ତା କାମରକ୍ଷଃ କ୍ରିୟାକରୀ ।
ସଂସାରକାଳରାତ୍ରିସ୍ତୁ ନଶ୍ୟେତଦ୍ୱୈତ ଭାନୁନା ।। ୧୨ ।।
ତସ୍ମାଦଦ୍ୱୈତଭାବସ୍ୟ ସଦୃଶୋ ନାସ୍ତି ଯୋଗିନାମ୍ ।
ଉପାୟୋ ଘୋରସଂସାରମହାତାପନିବୃତ୍ତୟେ ।। ୧୩ ।।

ଅଜ୍ଞାନତିମିରୋଦ୍ରିକ୍ତା ଅଜ୍ଞାନଲକ୍ଷଣଗାଢ଼ାନ୍ଧକାରେଣୋତ୍ପନ୍ନା ସତୀ କାମରକ୍ଷଃ କ୍ରିୟାକରୀ କାମଲକ୍ଷଣରାକ୍ଷସକୃତ୍ୟଂ କୁର୍ବତୀ ସଂସାରକାଳରାତ୍ରିଃ ଅଦ୍ୱୈତଭାନୁନା ଶିବାଦ୍ୱୈତସୂର୍ଯ୍ୟେଣ ନାଶ୍ୟତୀତ୍ୟର୍ଥଃ ।। ୧୨–୧୩ ।।

– ଅଜ୍ଞାନରୂପୀ ଅନ୍ଧକାରରେ ପୂର୍ଣ୍ଣ, କାମରୂପୀ ରାକ୍ଷସୀ କୃତ୍ୟ କରୁଥିବା ସଂସାରରୂପୀ କାଳରାତ୍ରି ଶିବାଦ୍ୱୈତରୂପୀ ସୂର୍ଯ୍ୟଦ୍ୱାରା ନଷ୍ଟ ହୋଇଥାଏ । ଏଥିପାଇଁ ଯୋଗୀମାନଙ୍କ ପାଇଁ ଘୋର ସଂସାରରୂପୀ ମହାତାପକୁ ଦୂର କରିବା ପାଇଁ ଅଦ୍ୱୈତଭାବ ପରି ଅନ୍ୟ କୌଣସି ଉପାୟ ନାହିଁ ।। ୧୨–୧୩ ।।

ଅଥ ଶିବାଦ୍ୱୈତାତିଶୟମୁକ୍ତ୍ୱା ସୂତ୍ରଦ୍ୱୟେନୈକ୍ୟସ୍ଥଳଂ ସମାପୟତି –

ଅଦ୍ୱୈତଭାବନାଜାତଂ କ୍ଷଣମାତ୍ରେଽପି ଯଦ୍ ସୁଖମ୍ ।
ତଦ୍ସୁଖଂ କୋଟିବର୍ଷେଣ ପ୍ରାପ୍ୟତେ ନୈବ ଭୋଗିଭିଃ ।। ୧୪ ।।
ଚିତ୍ତବୃତ୍ତିସମାଲୀନଜଗତଃ ଶିବଯୋଗିନଃ ।
ଶିବାନନ୍ଦପରିସ୍ଫୂର୍ତ୍ତିର୍ମୁକ୍ତିରିତ୍ୟଭିଧୀୟତେ ।। ୧୫ ।।

ଭୋଗିଭୀ ରାଜଭୋଗିଭିରିତ୍ୟର୍ଥଃ । ଶିଷ୍ଟଂ ସ୍ୱଷ୍ଟମ୍ ।। ୧୪–୧୫ ।।

– ଅଦ୍ୱୈତ ଭାବନାରୁ ଉତ୍ପନ୍ନ ତଥା କ୍ଷଣକ ପାଇଁ ଯେଉଁ ସୁଖ ହୋଇଥାଏ, ତାହାକୁ ରାଜଭୋଗୀ ଲୋକ କୋଟିଏ ବର୍ଷରେ ମଧ୍ୟ ପ୍ରାପ୍ତ କରି ନଥାନ୍ତି । ଯିଏ ସଂସାରକୁ ନିଜର ଚିତ୍ତବୃତ୍ତିରେ ଲୀନ କରି ନେଇଛି, ସେପରି ଶିବଯୋଗୀର ଶିବାନନ୍ଦ ପରିସ୍ଫୂର୍ତ୍ତିକୁ ମୁକ୍ତି କୁହାଯାଏ ।। ୧୪–୧୫ ।।

ଇତ୍ୟୈକ୍ୟସ୍ଥଳମ୍

## ଅଥ ଆଚାରସମ୍ପତ୍ତିସ୍ଥଲମ୍

ଅଥ – 'ଯଥା ରବିଃ ସର୍ବରସାନ୍ ପ୍ରଭୁଙ୍‌କ୍ତେ ହୁତାଶନଶ୍ଚାପି ହି ସର୍ବଭକ୍ଷକଃ ତଥୈବ ଯୋଗୀ ବିଷୟାନ୍ ପ୍ରଭୁଙ୍‌କ୍ତେ ନ ଲିପ୍ୟତେ କର୍ମଶୁଭାଶୁଭୈଶ୍ଚ ।'

ଇତି ଶିବରହସ୍ୟବଚନାନୁସାରେଣ ଲିଙ୍ଗୈକ୍ୟସ୍ୟ ସଦାଚାରସମ୍ପତ୍ତିଂ ଦ୍ୱାଦଶସୂତ୍ରୈଃ ପ୍ରତିପାଦୟତି –

**ଶିବୈକଭାବନାପନ୍ନଶିବତ୍ୱୋ ଦେହବାନପି ।**
**ଦେଶିକୋ ହି ନ ଲିପ୍ୟେତ ସ୍ୱାଚାରୈଃ ସୂତକାଦିଭିଃ ।। ୧୬ ।।**

ଶିବୈକଭାବନୟା ଲବ୍ଧଶିବତ୍ୱବାନ୍ ଦେଶିକଃ ଶିବଲିଙ୍ଗୈକ୍ୟୋ ଦେହବାନପି ଜୀବନ୍ମୁକ୍ତଃ ସନ୍ ସୂତକାଦିଭିଃ ସୂତକପ୍ରଭୃତିଭିଃ ସ୍ୱାଚାରୈଃ ସ୍ୱେଚ୍ଛାଚାରୈଃ, ନ ଲିପ୍ୟେତେତ୍ୟର୍ଥଃ ।। ୧୬ ।।

– (ଆଚାରସମ୍ପତ୍ତିସ୍ଥଳ ବର୍ଣ୍ଣନ) – 'ଶିବ ହିଁ ଏକ ମାତ୍ର ସତ୍ୟ ଅଟନ୍ତି' – ଏପରି ଭାବନାରେ ଯୁକ୍ତ ତେଣୁ ଶିବତ୍ୱପ୍ରାପ୍ତ ଆଚାର୍ଯ୍ୟ ଶରୀର ଧାରଣ କରିଥିଲେ ମଧ୍ୟ ସୂତକ ଆଦି ନିଜ ସମ୍ପ୍ରଦାୟ ଅଥବା ସମାଜର ଆଚାରରେ ଲିପ୍ତ ହୁଏ ନାହିଁ ଅର୍ଥାତ୍ ଦୂଷିତ ହୁଏ ନାହିଁ ।। ୧୬ ।।

କସ୍ମାଦିତ୍ୟତ୍ରାହ –

**ଶିବାଦ୍ୱୈତପରିଜ୍ଞାନେ ସ୍ଥିତେ ସତି ମନସ୍ୱିନାମ୍ ।**
**କର୍ମଣାଂ କିଂ ନୁ ଭାବ୍ୟଂ ସ୍ୟାଦକୃତେନ କୃତେନ ବା ।। ୧୭ ।।**

ମନସ୍ୱିନାଂ ଲିଙ୍ଗୈକ୍ୟନିଷ୍ଠଚିତ୍ତବୃତ୍ତୀନାଂ ଶିବାଦ୍ୱୈତଜ୍ଞାନେ ସ୍ଥିରେ ସତି ଅକୃତେନ କର୍ମଣା ଦୁଷ୍କର୍ମଣା କୃତେନ ବା ସତ୍‌କର୍ମଣା ବା କିଂ ନୁ ଭାବ୍ୟଂ ସ୍ୟାତ୍, ନ କିଞ୍ଚିଦପି ସ୍ୟାଦିତ୍ୟର୍ଥଃ ।। ୧୭ ।।

– ଶିବାଦ୍ୱୈତର ଜ୍ଞାନ ହେବା ପରେ ମନସ୍ୱୀମାନଙ୍କର ସତ୍‌କର୍ମ ଅଥବା ଅସତ୍‌କର୍ମର କୌଣସି ଫଳ ହୁଏ ନାହିଁ ।। ୧୭ ।।

ତତ୍‌କୃତ ଇତ୍ୟତ୍ରାହ –

**ଶମ୍ଭୋରେକତ୍ୱଭାବେନ ସର୍ବତ୍ର ସମଦର୍ଶନଃ ।**
**କୁର୍ବନ୍ନପି ମହାକର୍ମ ନ ତତ୍‌ଫଳମବାପ୍ନୁୟାତ୍ ।। ୧୮ ।।**

ସର୍ବତ୍ର ସମଦର୍ଶନୋ ଲୋଷ୍ଟାଶ୍ମକାଞ୍ଚନାଦିଷୁ ସର୍ବତ୍ର ସମଦର୍ଶନଃ ଶିବଲିଙ୍ଗୈକ୍ୟଃ ଶମ୍ଭୋରେକତ୍ୱଭାବେନ ଐକ୍ୟଭାବେନ ମହାକର୍ମ ପୁଣ୍ୟପାପରୂପ ମହାକର୍ମ କୁର୍ବନ୍ନପି ତତ୍‌ଫଳଂ ନାପ୍ନୁୟାତ୍ । ସର୍ବସ୍ୟାପି ଶିବମୟତ୍ୱେନ ଦର୍ଶନାତ୍ ତଲ୍ଲେପୋ ନାସ୍ତୀତି ଭାବଃ ।। ୧୮ ।।

– (ଜୀବାତ୍ମା ଏବଂ) ଶିବଙ୍କର ଏକତ୍ୱ ଭାବନା ହେତୁ ସର୍ବତ୍ର ଏକ ଏବଂ ତୁଲ୍ୟ ଦୃଷ୍ଟିବାଲା ମହାନ୍ ଅର୍ଥାତ୍ ବଡ଼ ବଡ଼ ସତ୍ ଅଥବା ଅସତ୍ କର୍ମକୁ କରୁଥିଲେ ମଧ ତାହାର ଫଳରେ ଲିପ୍ତ ହୁଏ ନାହିଁ ।। ୧୮।।

**ସୁକୃତୀ ଦୁଷ୍କୃତୀ ବାପି ବ୍ରାହ୍ମଣୋ ବାନ୍ତ୍ୟଜୋଽପି ବା ।**
**ଶିବୈକଭାବଯୁକ୍ତାନାଂ ସଦୃଶୋ ଭବତି ଧ୍ରୁବମ୍ ।। ୧୯।।**

ଶିବୈକଭାବଯୁକ୍ତାନାଂ ସର୍ବତ୍ର ଶିବାଭେଦଜ୍ଞାନଯୁକ୍ତାନାଂ ଶିବଲିଙ୍ଗୈକ୍ୟାନାଂ ସୁକୃତୀ ପୁଣ୍ୟାତ୍ମା ବା ଦୁଷ୍କୃତୀ ପାପାତ୍ମା ବା ବ୍ରାହ୍ମଣୋ ଅନ୍ତ୍ୟଜୋ ବା ଶ୍ୱପଚୋ ବା ସଦୃଶଃ ସମାନୋ ଭବତି ଧ୍ରୁବଂ ନିଶ୍ଚୟଃ ।। ୧୯।।

– ପୁଣ୍ୟକର୍ମା ହେଉ ଅଥବା ପାପୀ, ବ୍ରାହ୍ମଣ ହେଉ ଅଥବା ଚଣ୍ଡାଳ, ଶିବୈକଭାବରେ ଯୁକ୍ତ ଯୋଗୀମାନଙ୍କ ପାଇଁ ତାହା ସବୁ ନିଶ୍ଚିତ ଭାବରେ ସମାନ ହୋଇଥାଏ[୧୮୪] ।। ୧୯।।

ନନୁ ଶିବଜ୍ଞାନିନାମପି ବର୍ଣ୍ଣାଶ୍ରମପ୍ରାପ୍ତଧର୍ମାଃ କଥଂ ତ୍ୟଜନୀୟା ଇତ୍ୟତ୍ରାହ –

**ବର୍ଣ୍ଣାଶ୍ରମସଦାଚାରୈର୍ଜ୍ଞାନିନା କିଂ ପ୍ରୟୋଜନମ୍ ।**
**ଲୌକିକସ୍ତୁ ସଦାଚାରଃ ଫଳାଭାବେଽପି ଭାବ୍ୟତେ ।। ୨୦।।**

ବର୍ଣ୍ଣାଶ୍ରମପ୍ରାପ୍ତୈର୍ବ୍ରାହ୍ମଣାଦିବର୍ଣ୍ଣବ୍ରହ୍ମଚର୍ଯ୍ୟାଦ୍ୟାଶ୍ରମପ୍ରାପ୍ତୈଃ ସଦାଚାରୈଃ, ଜ୍ଞାନିନାଂ ଶିବଜ୍ଞାନିନାଂ କିଂ ପ୍ରୟୋଜନଂ ନ କିଞ୍ଚିତ୍ ପ୍ରୟୋଜନମିତ୍ୟର୍ଥଃ । କୁତ ଇତ୍ୟତ୍ରାହ ଲୌକିକସ୍ତୁ ସଦାଚାରୋ ବର୍ଣ୍ଣାଶ୍ରମଗତନିତ୍ୟନୈମିତ୍ତିକ ସଦାଚାରଃ ଫଳାଭାବେଽପି ଭାବ୍ୟତେ ବିଧୀୟତ ଇତ୍ୟର୍ଥଃ ।। ୨୦।।

– ଶିବଜ୍ଞାନୀଙ୍କର ଲୌକିକ ବର୍ଣ୍ଣ–ଆଶ୍ରମର ସଦାଚାରର କ'ଣ ଆବଶ୍ୟକତା । (ନିତ୍ୟ, ନୈମିତ୍ତିକ ଆଦି) ଲୌକିକ ସଦାଚାର ଫଳ ନଦେଉ ଥିଲେ ମଧ ସେମାନଙ୍କଦ୍ୱାରା କରାଯାଇଥାଏ ।। ୨୦।।

ନନୁ ଜ୍ଞାନିନାମପି ଶରୀରସମ୍ବନ୍ଧସ୍ୟ ବିଦ୍ୟମାନତ୍ୱାତ୍ କଥଂ ତେ ପରିତ୍ୟଜନୀୟାଃ, ଅକରଣେ ପ୍ରତ୍ୟବାୟଶ୍ରବଣାଦିତ୍ୟତ୍ରାହ –

**ନିର୍ଦଗ୍ଧକର୍ମବୀଜସ୍ୟ ନିର୍ମଳଜ୍ଞାନବହ୍ନିନା ।**
**ଦେହିବଦ୍ ଭାସମାନସ୍ୟ ଦେହଯାତ୍ରା ତୁ ଲୌକିକୀ ।। ୨୧।।**

---

୧୮୪. ତୁଳନା – ଅତ୍ର ପିତାଽପିତା ଭବତି --- ଅନନ୍ୱାଗତଂ ପୁଣ୍ୟେନାନନ୍ୱାଗତଂ ପାପେନ ---- । (ବୃ ଉ., ୪/୩/୨୨)

ନିର୍ମଳଶିବସଂବିଦ୍ବହ୍ନିନା ପୁନରୁତ୍ପତ୍ତିଶଙ୍କାଶୂନ୍ୟତ୍ୱେନ ନିତରାମତିଶୟେନ ଦଗ୍ଧପୁଣ୍ୟପାପଲକ୍ଷଣକର୍ମବୀଜବତଃ ଶିବଜ୍ଞାନିନଃ ପ୍ରତ୍ୟବାୟ ସମ୍ବନ୍ଧୋ ନାସ୍ତ୍ୟେବ । ଦଗ୍ଧପଟନ୍ୟାୟେନ ଶରୀରୀବ ଭାସମାନସ୍ୟ ତସ୍ୟ ଦେହଯାତ୍ରା ତୁ କର-ଚରଣସଞ୍ଚାଳନାଦିବ୍ୟବହୃତିଷ୍ଟୁ ଲୌକିକୀ ବିଦେହକୈଷଲ୍ୟପର୍ଯ୍ୟନ୍ତ ମନୁବର୍ତ୍ତତ ଇତ୍ୟଷ୍ଟିରେତ୍ୟର୍ଥଃ ।। ୨୧।।

– ନିର୍ମଳ ଜ୍ଞାନରୂପୀ ଅଗ୍ନିରେ ଯାହାର କର୍ମବୀଜ ଦଗ୍ଧ ହୋଇଯାଇଛି, ଦେହୀ ପରି ପ୍ରତୀତ ହୋଇଥିବା ସେହି ଶରୀରଧାରୀଙ୍କର ଦେହଯାତ୍ରା (ଆହାର, ନିଦ୍ରା ଆଦି) ଲୌକିକ ଅର୍ଥାତ୍ ଅନ୍ୟ ଲୋକମାନଙ୍କ ପରି ହୋଇଥାଏ । (କିନ୍ତୁ ସେହି ଯାତ୍ରାରେ ଫଳ ଏବଂ ସଂସ୍କାର ହୁଏ ନାହିଁ ।) ।। ୨୧।।

ଅଥ – 'ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷ୍ୟେଽଥ ସଂପତ୍ସ୍ୟେ'[୧୮୫] 'ତସ୍ୟ ପୁତ୍ରା ଦାୟମୁପୟନ୍ତି ସୁହୃଦଃ ସାଧୁକୃତ୍ୟାଂ ଦ୍ୱିଷନ୍ତଃ ପାପକୃତ୍ୟାମ' 'ଯଥା ପୁଷ୍କରପଲାଶ ଆପୋ ନ ଶ୍ଳିଷ୍ୟନ୍ତ ଏବମେବବିଦି ପାପଂ କର୍ମ ନ ଶ୍ଳିଷ୍ୟତେ'[୧୮୬] 'ସା ଉତ୍ତମଃ ପୁରୁଷଃ ସ ତନ୍ନ ପର୍ଯ୍ୟେତି'[୧୮୭] ଇତି ଛାନ୍ଦୋଗ୍ୟଶ୍ରୁତ୍ୟନୁସାରେଣାହ –

**ଶିବଜ୍ଞାନସମାପନ୍ନସ୍ଥିରବୈରାଗ୍ୟଲକ୍ଷଣଃ ।**
**ସ୍ୱକର୍ମଣା ନ ଲିପ୍ୟେତ ପଦ୍ମପତ୍ରମିବାମ୍ଭସା ।। ୨୨।।**

ଶିବଜ୍ଞାନଲବ୍ଧଦୃଢ଼ବୈରାଗ୍ୟଚିହ୍ନଃ ଶିବଲିଙ୍ଗୈକ୍ୟଃ ସ୍ୱକର୍ମଣା ସ୍ୱେଚ୍ଛାକର୍ମଣା ଅମ୍ଭସା ଜଲେନ ପଦ୍ମପତ୍ରମିବ ନ ଲିପ୍ୟେତ ଇତ୍ୟର୍ଥଃ ।। ୨୨।।

– ଶିବଜ୍ଞାନରେ ଯୁକ୍ତ ସ୍ଥିର ବୈରାଗ୍ୟବାଲା ସାଧକ ନିଜର କର୍ମରେ ସେହିପରି ଲିପ୍ତ ହୁଏ ନାହିଁ, ଯେପରି ଜଳରେ ପଦ୍ମ ପତ୍ର ।। ୨୨।।

'ଯଥା ବାୟୁଃ ସୁଶୀଘ୍ରୋଽପି ମୁକ୍ତ୍ୱାକାଶଂ ନ ଗଚ୍ଛତି' ଇତି ନିଃଶ୍ୱାସ–କାରିକାନୁସାରେଣ ଶିବଲିଙ୍ଗନିଷ୍ଠସ୍ୟ ସର୍ବାପି କ୍ରିୟା ଶିବଲିଙ୍ଗପୂଜାରୂପେତି ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ଗଚ୍ଛଂସ୍ତିଷ୍ଠନ୍ ସ୍ୱପନ୍ ବାପି ଜାଗ୍ରନ୍ ବାପି ମହାମତିଃ ।**
**ଶିବଜ୍ଞାନସମାଯୋଗାଚ୍ଛିବପୂଜାପରଃ ସଦା ।। ୨୩।।**

ମହାମତିଃ ଶିବଲିଙ୍ଗୈକ୍ୟଃ, ଗଚ୍ଛନ୍ ଗମନସମୟେ ତିଷ୍ଠନ୍, ସ୍ଥିତିସମୟେ ସ୍ୱପନ୍ ନିଦ୍ରାସମୟେ ଜାଗ୍ରନ୍, ବିଷୟଦର୍ଶନସମୟେ ସଦା ନିରନ୍ତରଂ ଶିବଜ୍ଞାନସମାଯୋଗାତ୍

---

୧୮୫. ଛା. ଉ., ୬/୧୪/୨

୧୮୬. ଛା. ଉ., ୪/୧୪/୩

୧୮୭. ଛା. ଉ., ୮/୧୨/୩

ଶିବାନୁସନ୍ଧାନସମ୍ବନ୍ଧାତ୍ ଶିବପୂଜାପରଃ ଲିଙ୍ଗନିଷ୍ଠ ଇତ୍ୟର୍ଥଃ ।। ୨୩।।

– ଚାଲୁଥିବା, ଠିଆ ହୋଇଥିବା, ଶୋଇଥିବା ଅଥବା ଜାଗ୍ରତ ଥିବା ମହାମତିମାନ୍ ଶିବଜ୍ଞାନରେ ସମ୍ବନ୍ଧ ହୋଇଥିବାରୁ ସର୍ବଦା ଶିବପୂଜା କରୁଥାଏ[୧୮୮] ।। ୨୩।।

ନନୁ ବିଷୟଦର୍ଶନସମୟେ କଥଂ ଶିବାନୁସନ୍ଧାନମିତ୍ୟତ୍ରାହ –

**ଯଦ୍ୟତ୍ପଶ୍ୟତି ସାମୋଦଂ ବସ୍ତୁ ଲୋକେଷୁ ଦେଶିକଃ ।**
**ଶିବଦର୍ଶନସମ୍ପତ୍ତିସ୍ତତ୍ର ତତ୍ର ମହାତ୍ମନଃ ।। ୨୪।।**

ଦେଶିକଃ ଶିବଲିଙ୍ଗୈକ୍ୟଃ, ଲୋକେଷୁ ଯଦ୍ୟଦ୍ବସ୍ତୁ ଘଟପଟାଦିକଂ ସାମୋଦଂ ପ୍ରୀତିଯୁକ୍ତଂ ସନ୍ ପଶ୍ୟତି, ତତ୍ର ତତ୍ର ତସ୍ମିଂସ୍ତସ୍ମିନ୍ ବସ୍ତୁନି ମହାତ୍ମନଃ ଶିବଲିଙ୍ଗୈକ୍ୟସ୍ୟ ଶିବଦର୍ଶନସମ୍ପତ୍ତିଃ ଶିବାଲୋକନସମ୍ପତ୍ତିର୍ଭବେତ୍ ଶିବାତିରେକେଣ ପଦାର୍ଥାନ୍ତରାଭାବାତ୍ ଚିନ୍ମୟତ୍ୱବୁଦ୍ଧିର୍ଭବେଦିତ୍ୟର୍ଥଃ ।। ୨୪।।

– ଶିବଲିଙ୍ଗୈକ ଆଚାର୍ଯ୍ୟ ଏହି ସଂସାରରେ ଆନନ୍ଦର ସହିତ ଯେଉଁ ଯେଉଁ ବସ୍ତୁକୁ ଦେଖେ, ସେ ସବୁରେ ସେହି ମହାତ୍ମାଙ୍କୁ ଶିବ ପ୍ରତୀତ ହୋଇଥାନ୍ତି ।। ୨୪।।

ଅଥ –

ଆତ୍ମା ତ୍ୱଂ ଗିରିଜା ମତିଃ ପରିଚରାଃ ପ୍ରାଣାଃ ଶରୀରଂ ଗୃହଂ
ପୂଜା ତେ ବିଷୟୋପଭୋଗରଚନା ନିଦ୍ରା ସମାଧିସ୍ଥିତିଃ ।
ସଞ୍ଚାରଃ ପଦୟୋଃ ପ୍ରଦକ୍ଷିଣବିଧିଃ ସ୍ତୋତ୍ରାଣି ସର୍ବା ଗିରୋ
ଯଦ୍ୟତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍ ।।

ଇତ୍ୟଭିଯୁକ୍ତବଚନାନୁସାରେଣ ତ୍ରିକରଣଶୁଦ୍ଧଶିବଲିଙ୍ଗପୂଜୋପଚାରଂ ତ୍ରିଭିଃ ସୂତ୍ରୈଃ ପ୍ରତିପାଦୟନ୍ ଆଚାରସମ୍ପତ୍ତିସ୍ଥଳଂ ସମାପୟତି –

**ଯଦ୍ୟଚ୍ଚିନ୍ତୟତେ ଯୋଗୀ ମନସା ଶୁଦ୍ଧଭାବନଃ ।**
**ତତ୍ତଚ୍ଛିବମୟତ୍ୱେନ ଶିବଧ୍ୟାନମୁଦାହୃତମ୍ ।। ୨୫।।**

ଶୁଦ୍ଧଭାବନୋ ନିର୍ମଳଭାବନାବାନିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୫।।

– ଶୁଦ୍ଧଭାବନାବାଲା ଯୋଗୀ ମନରେ ଯାହାର ଯାହାର ଧ୍ୟାନ କରେ, ସେ ସବୁ ଶିବମୟ ହୋଇଥିବାରୁ ଶିବଧ୍ୟାନ କୁହାଯାଏ ।। ୨୫।।

---

୧୮୮. ତୁଳନୀୟ – ଆତ୍ମା ତ୍ୱଂ ଗିରିଜା ମତିଃ ସହଚରାଃ ପ୍ରାଣାଃ ଶରୀରଂ ଗୃହଂ ପୂଜା ତେ ବିଷୟୋପଭୋଗରଚନା ନିଦ୍ରା ସମାଧିସ୍ଥିତିଃ । ସଞ୍ଚାରଃ ପଦୟୋଃ ପ୍ରଦକ୍ଷିଣବିଧିଃ ସ୍ତୋତ୍ରାଣି ସର୍ବା ଗିରଃ ଯଦ୍ୟତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍ ।। (ଶି. ମ. ପୁ.)

**ଯଦ୍ କିଞ୍ଚିଦ୍ ଭାଷିତଂ ଲୋକେ ସ୍ୱେଚ୍ଛୟା ଶିବଯୋଗିନା ।**
**ଶିବସ୍ତୋତ୍ରମିଦଂ ସର୍ବଂ ଯସ୍ମାଦ୍ ସର୍ବାତ୍ମକଃ ଶିବଃ ।। ୨୬ ।।**

ସ୍ପଷ୍ଟମ୍ ।। ୨୬ ।।

– ଶିବଯୋଗୀ ସ୍ୱେଚ୍ଛାରେ ଏହି ସଂସାରରେ ଯାହା କିଛି କହେ, ତାହା ସବୁ ଶିବସ୍ତୋତ୍ର ହୋଇଯାଏ କାରଣ ଶିବ ସବୁରେ ବିଦ୍ୟମାନ ଅଛନ୍ତି ।। ୨୬ ।

**ଯା ଯା ଚେଷ୍ଟା ସମୁତ୍ପନ୍ନା ଜାୟତେ ଶିବଯୋଗିନାମ୍ ।**
**ସା ସା ପୂଜା ମହେଶସ୍ୟ ସର୍ବଦା ତଦ୍‌ଗତାତ୍ମନାମ୍ ।। ୨୭ ।।**

ଶିବଯୋଗିନାଂ ଶିବଲିଙ୍ଗୈକ୍ୟାନାଂ ଯା ଯା ଚେଷ୍ଟା କାୟକ୍ରିୟା ଜାୟତେ, ତଦ୍‌ଗତାତ୍ମନାଂ ଶିବଲିଙ୍ଗେ ତାଦାତ୍ମ୍ୟେନ ପ୍ରବିଷ୍ଟସ୍ୱରୂପବତାଂ ତେଷାଂ ସା ସା କ୍ରିୟା ସର୍ବଦା ମହେଶସ୍ୟ ଶିବଲିଙ୍ଗସ୍ୟ ପୂଜେତ୍ୟର୍ଥଃ ।। ୨୭ ।।

– ଶିବଯୋଗିମାନଙ୍କର ଯେଉଁ ଯେଉଁ ଚେଷ୍ଟା (ତାଙ୍କ ଶରୀରରେ) ଉତ୍ପନ୍ନହୁଏ, ସେ ସମସ୍ତ ଶିବମୟ ଆତ୍ମାଯୁକ୍ତମାନଙ୍କ ପାଇଁ ସଦାଶିବଙ୍କର ପୂଜା ହୋଇଥାଏ ।। ୨୭ ।।

**ଇତ୍ୟାଚାର ସମ୍ପତ୍ତିସ୍ଥଲମ୍**

**ଅଥୈକଭାଜନସ୍ଥଲମ୍**

ଅଥ – 'ପରେବ୍ୟୟେ ସର୍ବ ଏକୀଭବନ୍ତି'[୧୮୯] ଇତି ମୁଣ୍ଡକୋପନିଷଦ୍‌ବଚନାନୁସାରେଣ ସର୍ବାଚାରସମ୍ପତ୍ତିମତଃ ଶିବଲିଙ୍ଗୈକ୍ୟସ୍ୟ ଏକଭାଜନସ୍ଥଲଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ବିଶ୍ୱଂ ଶିବମୟଂ ଚେତି ସଦା ଭାବୟତୋ ଧିୟା ।**
**ଶିବୈକଭାଜନାତ୍ମତ୍ୱାଦେକଭାଜନମୁଚ୍ୟତେ ।। ୨୮ ।।**

ଲିଙ୍ଗୈକ୍ୟସ୍ୟ ଶିବୈକ୍ୟଭାଜନାତ୍ମତ୍ୱାଦ୍ ଶିବୈକାଶୟତ୍ୱାଦ୍ ଏକଭାଜନସ୍ଥଲମିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୨୮ ।।

– (ଏକଭାଜନସ୍ଥଲ ବର୍ଣ୍ଣନ) – 'ଏ ବିଶ୍ୱ ହେଉଛି ଶିବମୟ' – ମନରେ ଏପରି ଭାବନା କରି ଶିବୈକଭାଜନାତ୍ମକ ହେବାକୁ ଏକଭାଜନ କୁହାଯାଏ ।। ୨୮ ।।

ନନୁ କିମନେନ ଭବତୀତ୍ୟତ୍ରାହ –

**ସ୍ୱସ୍ୟ ସର୍ବସ୍ୟ ଲୋକସ୍ୟ ଶିବସ୍ୟାଦ୍ୱୈତଦର୍ଶନାତ୍ ।**
**ଏକଭାଜନଯୋଗେନ ପ୍ରସାଦୈକ୍ୟମତିର୍ଭବେତ୍ ।। ୨୯ ।।**

---

୧୮୯. ମୁ. ଉ., ୩/୨/୭

ସ୍ୱସ୍ୟ ସ୍ୱାତ୍ମନଃ ସର୍ବସ୍ୟ ଲୋକସ୍ୟ ସମସ୍ତଜନସ୍ୟ ଅଦ୍ୱୈତଦର୍ଶନାଦ୍ ଅହମିତି ଚିଦୈକ୍ୟଦର୍ଶନାଦ୍ ଏକଭାଜନଯୋଗେନ ଏକକୂଟତ୍ୱେନ ପ୍ରସାଦୈକ୍ୟମତିଃ ଶିବପ୍ରସାଦ ଏବ ସ୍ୱପ୍ରସାଦଃ, ସ୍ୱପ୍ରସାଦ ଏବ ଶିବପ୍ରସାଦଃ, ସ ଏଷ ସ୍ୱାତିରିକ୍ତ ଇବ ଭାସମାନସ୍ୟ ଶିବଭକ୍ତସ୍ୟ ପ୍ରସାଦ ଇତି ପ୍ରସାଦୈକ୍ୟମତିର୍ଭବେଦିତି ଚରମୂର୍ତ୍ତିପାଦୋଦକପ୍ରସାଦାବପି ଶିବସ୍ୟ ସ୍ୱସ୍ୟ ଚ ଯୋଗ୍ୟାବିତି ଭାବଃ ।। ୨୯ ।।

– ନିଜର ସମ୍ପୂର୍ଣ୍ଣ ସଂସାର ତଥା ଶିବଙ୍କୁ ଏକ ଭାବୁଥିବା ଏକ ପାତ୍ର ହେବାରୁ ପ୍ରସାଦବିଷୟିଣୀ ଅଦ୍ୱୈତ ବୁଦ୍ଧି ହୁଏ । ଏହିପରି ଚରମୂର୍ତ୍ତି ଅର୍ଥାତ୍ ଲିଙ୍ଗୈକ୍ୟର ପାଦୋଦକ ଏବଂ ଶିବଲିଙ୍ଗ ସ୍ନାନ କରାଯାଇଥିବା ଜଳ ଉଭୟ ସମାନ ରୂପରେ ଗ୍ରାହ୍ୟ ଅଟନ୍ତି ।। ୨୯ ।।

ନନୁ ଶିବସ୍ୟ ବିଶ୍ୱସ୍ୟୈକରୂପତ୍ୱେ ତୟୋଃ ସ୍ଥିତିଃ କଥମିତ୍ୟତ୍ରାହ –

**ଶିବେ ବିଶ୍ୱମିଦଂ ସର୍ବଂ ଶିବଃ ସର୍ବତ୍ର ଭାସତେ ।**
**ଆଧାରାଧେୟଭାବେନ ଶିବସ୍ୟ ଜଗତଃ ସ୍ଥିତିଃ ।। ୩୦ ।।**

ଶିବେ ବିଶ୍ୱଂ ବିଶ୍ୱସ୍ମିନ୍ ଶିବ ଇତି ବୀଜାଙ୍କୁରନ୍ୟାୟେନାଧାରାଧେୟଭାବେନ ସମ୍ବନ୍ଧେନ ସାମରସ୍ୟେନ ଶିବସ୍ୟ ଜଗତଃ ସ୍ଥିତିରିତ୍ୟର୍ଥଃ ।। ୩୦ ।।

– ଏହି ସମସ୍ତ ବିଶ୍ୱ ଶିବ ମଧ୍ୟରେ ଅଛି ଏବଂ ଶିବ ସର୍ବତ୍ର ପ୍ରକାଶମାନ ହୋଇଛନ୍ତି। ଏହିପରି ଶିବ ଏବଂ ସଂସାର ମଧ୍ୟରେ ଆଧାର–ଆଧେୟ ସ୍ଥିତିର ସମ୍ବନ୍ଧ ଅଛି (ଅର୍ଥାତ୍ ଶିବ ଏବଂ ଜଗତ୍ ଉଭୟ ଉଭୟଙ୍କର ଆଧାର ଏବଂ ଆଧେୟ ଅଟନ୍ତି ।) ।। ୩୦ ।।

ଏବଂ ଚିଦେକଭାଜନତାଂ ପ୍ରାପ୍ତସ୍ୟ ମାୟିକଭେଦେନ ପ୍ରୟୋଜନଂ ନାସ୍ତୀତ୍ୟାହ –

**ଚିଦେକଭାଜନଂ ଯସ୍ୟ ଚିତ୍ତବୃତ୍ତେଃ ଶିବାତ୍ମକମ୍ ।**
**ନାନ୍ୟଦ୍ ତସ୍ୟ କିମେତେନ ମାୟାମୂଳେନ ବସ୍ତୁନା ।। ୩୧ ।।**

ଯସ୍ୟ ଲିଙ୍ଗୈକ୍ୟସ୍ୟ ଚିତ୍ତବୃତ୍ତେର୍ମନୋବ୍ୟାପାରସ୍ୟ ଚିଦ୍ ମନୋବ୍ୟାପାରରୂପା ଜ୍ଞପ୍ତିରେବ ଶିବାତ୍ମକମେକଭାଜନଂ ଶିବସ୍ୱରୂପୈକଭାଜନମ୍, ତସ୍ୟ ମାୟାମୂଳେନ ମାୟାମୂଳକେନ ଏତେନ ଭେଦେନ କିଂ କିଂ ପ୍ରୟୋଜନଂ ନ କିଞ୍ଚିତ୍ ପ୍ରୟୋଜନମିତ୍ୟର୍ଥଃ ।। ୩୧ ।।

– ଯାହାଙ୍କର ଚିତ୍ତବୃତ୍ତି ଶିବାତ୍ମକ ଏବଂ ମାତ୍ର ଚୈତନ୍ୟ ବିଷୟବାଲା, ଅନ୍ୟ ବିଷୟବାଲା ନୁହେଁ, ତାଙ୍କୁ ଏହି ମାୟାମୂଳକ ବସ୍ତୁରେ କ'ଣ ଆବଶ୍ୟକତା ? ।। ୩୧ ।।

ନନ୍ୱିଦଂ ବିଶ୍ୱଂ କଥଂ ଶିବାତ୍ମକମିତ୍ୟତ୍ରାହ –

**ଚିଦ୍ ପ୍ରକାଶୟତେ ବିଶ୍ୱଂ ତଦ୍ୱିନା ନାସ୍ତି ବସ୍ତୁ ହି ।**
**ଚିଦେକନିଷ୍ଠଚିତ୍ତାନାଂ କିଂ ମାୟାପରିକଳ୍ପିତୈଃ ।। ୩୨ ।।**

ବିଶ୍ୱଂ ଘଟାଦ୍ୟୁପଲକ୍ଷିତନିଖିଳପ୍ରପଞ୍ଚଂ ଚିଦ୍ ପ୍ରକାଶୟତେ । ତଦ୍ୱିନା ଚିଦ୍ ପ୍ରକାଶଂ ବିନା ବସ୍ତୁ ଘଟାଦିବସ୍ତୁ ନାସ୍ତି । ବିଷୟସଦ୍ଭାବୋପଗମେ ସଂବିଦେବ ଭଗବତୀ ଶରଣମିତି ପ୍ରାଭାକରା ଅପି ମନ୍ୟନ୍ତେ । ଅତୋ ଯଦ୍ୟଦଧୀନତୟା ଭାସତେ, ତତ୍ତଦାତ୍ମକଂ ଜଲତରଙ୍ଗାଦିବଦିତି ଚିଦେକନିଷ୍ଠଚିତ୍ତାନାଂ ମାୟାପରିକଳ୍ପିତୈଃ ପ୍ରାଗଞ୍ଜକବେଦ୍ୟପଦାର୍ଥୈଃ କିଂ ପ୍ରୟୋଜନମିତ୍ୟର୍ଥଃ ।। ୩୨ ।।

– ଚିଦ୍ ହିଁ ଘଟ ଆଦିରେ ଉପଲକ୍ଷିତ ସମସ୍ତ ପ୍ରପଞ୍ଚମୟ ବିଶ୍ୱକୁ ପ୍ରକାଶିତ କରେ । ତାହା ବ୍ୟତୀତ ଅନ୍ୟ କୌଣସି ବସ୍ତୁ ନାହିଁ । ଯାହାଙ୍କର ଚିତ୍ତ କେବଳ ଏକମାତ୍ର ଚିଦ୍‌ରେ ଲାଗିଥାଏ, ତା'ର ମାୟା ପରିକଳ୍ପିତ (ବସ୍ତୁ)ରେ କ'ଣ ପ୍ରୟୋଜନ ? ।। ୩୨।।

ଅଥୈକଭାଜନସ୍ଥଲଂ ସମାପୟତି –

**ବୃତ୍ତିଶୂନ୍ୟେ ସ୍ୱହୃଦୟେ ଶିବଲୀନେ ନିରାକୁଲେ ।**

**ଯଃ ସଦା ବର୍ତ୍ତତେ ଯୋଗୀ ସ ମୁକ୍ତୋ ନାତ୍ର ସଂଶୟଃ ।। ୩୩।।**

ଯଃ ଶିବଯୋଗୀ ବୃତ୍ତିଶୂନ୍ୟେ ବ୍ୟାପାରଶୂନ୍ୟେ ନିରାକୁଲେ କ୍ଷୋଭରହିତେ ଶିବଲୀନେ ଶିବଲିଙ୍ଗୈକ୍ୟଭୂତେ ସ୍ୱହୃଦୟେ ସଦା ବର୍ତ୍ତତେ, ସ ମୁକ୍ତଃ ଜୀବନ୍ମୁକ୍ତ ଇତ୍ୟର୍ଥଃ । ଅତ୍ର ସନ୍ଦେହୋ ନାସ୍ତୀତ୍ୟର୍ଥଃ ।। ୩୩।।

– ଯେଉଁ ଯୋଗୀ ସର୍ବଦା ବୃତ୍ତିଶୂନ୍ୟ ଶିବରେ ଲୀନ, ଅତଏବ ନିରାକୁଳ ଅର୍ଥାତ୍ ଶାନ୍ତ, ନିଜର ହୃଦୟରେ ଧ୍ୟାନସ୍ଥ ରହେ, ସେ ମୁକ୍ତ ଅଟେ, ଏଥିରେ କୌଣସି ସନ୍ଦେହ ନାହିଁ ।। ୩୩।।

**ଇତ୍ୟେକଭାଜନସ୍ଥଲମ୍**

## ଅଥ ସହଭୋଜନସ୍ଥଲମ୍

ଅଥ – 'ଅଗ୍ରାହ୍ୟମଗ୍ରାହ୍ୟେଣ ବାୟୁଂ ବାୟବ୍ୟେନ ସୋମଂ ସୌମ୍ୟେନ ଗ୍ରସତି ସ୍ୱେନ ତେଜସା ତସ୍ମାଦୁପସଂହର୍ତ୍ରେ ମହାଗ୍ରାସାୟ ବୈ ନମୋ ନମଃ' ଇତ୍ୟଥର୍ବଶ୍ରୁତ୍ୟନୁସାରେଣୈକଭାଜନସ୍ଥଲନିଷ୍ଠସ୍ୟ ସହଭୋଜନସ୍ଥଲଂ ଦଶଭିଃ ସୂତ୍ରୈଃ ପ୍ରତିପାଦୟତି –

**ଗୁରୋଃ ଶିବସ୍ୟ ଶିଷ୍ୟସ୍ୟ ସ୍ୱସ୍ୱରୂପତୟା ସ୍ମୃତିଃ ।**

**ସହଭୋଜନମାଖ୍ୟାତଂ ସର୍ବଗ୍ରାସାତ୍ମଭାବତଃ ।। ୩୪।।**

ଶ୍ରୀଗୁରୋଃ ଶିବଲିଙ୍ଗସ୍ୟ ଶିଷ୍ୟସ୍ୟ ଚ ସ୍ୱରୂପତୟା ସ୍ୱାତ୍ମାଭେଦେନ ଅସ୍ମତ୍ପ୍ରତ୍ୟୟାନତିରିକ୍ତତ୍ୱେନ ସ୍ମୃତିଃ ସର୍ବଗ୍ରାସାତ୍ମଭାବତୋ ଘଟୋ ମୟା ଜ୍ଞାତ ଇତି ବିଶ୍ୱଭେଦଗ୍ରସନମେବ ସ୍ୱରୂପତ୍ୱାତ୍ ସହଭୋଜନମ୍ ଅନୁଭୂତପଦାର୍ଥସ୍ୟ ପୁନଃ ସ୍ୱାତ୍ମବିଶ୍ରାନ୍ତତ୍ୱେନ ପରାମର୍ଶଲକ୍ଷଣଂ ସହଭୋଜନମିତ୍ୟର୍ଥଃ ।। ୩୪।।

– (ସହଭୋଜନସ୍ଥଳ ବର୍ଣ୍ଣନ) – ଗୁରୁ, ଶିବ ଓ ଶିଷ୍ୟଙ୍କର ନିଜ ନିଜ ରୂପରେ ସ୍ମରଣ ସର୍ବଗ୍ରାସାତ୍ମଭାବ ହୋଇଥିବାରୁ ସହଭୋଜନ କୁହାଯାଏ ।। ୩୪।।

ଅଥ ନିଷ୍କର୍ଷମାହ –

**ଶିବଂ ବିଶ୍ୱଂ ଗୁରୁଂ ସାକ୍ଷାଦ୍ ଯୋଜୟେନ୍ନିତ୍ୟମାତ୍ମନି ।**
**ଏକତ୍ୱେନ ଚିଦାକାରେ ତଦିଦଂ ସହଭୋଜନମ୍ ।। ୩୫।।**

ସାକ୍ଷାଚ୍ଚିଦାକାର ଆତ୍ମନି ଶିବଂ ଗୁରୁଂ ବିଶ୍ୱଂ ଚ ଏକତ୍ୱେନ ଏକରୂପତ୍ୱେନ ନିତ୍ୟଂ ସଂଯୋଜୟେତ୍ । ସଂଯୋଜନଂ ନାମ ଅସ୍ମଦ୍ରୂପାନତିରିକ୍ତତ୍ୱେନ ପରାମର୍ଶନଂ ଯଦସ୍ତି ତଦିଦଂ ସହଭୋଜନମ୍ । ଅତ୍ର ଗୁରୁଶିବୟୋରସ୍ମଦ୍ରୂପାନତିରିକ୍ତତ୍ୱାଦ୍ ସ୍ୱାତ୍ମୈକ୍ୟେନ ସଂଯୋଜନଂ ସମ୍ଭବତି, ଇଦଂ ରୂପତୟା ଭାସମାନସ୍ୟ ଜଡ଼ସ୍ୟ କଥମାତ୍ମୈକ୍ୟ ସଂଯୋଜନଂ ସମ୍ଭବତୀତି ନାଶଙ୍କନୀୟମ୍, ତସ୍ୟାପ୍ୟୁକ୍ତରୀତ୍ୟାତ୍ମବିଶ୍ରାନ୍ତତ୍ୱାଦ୍ । ଅନ୍ୟଥା ସ୍ମୃତିର୍ନ ସ୍ୟାତ୍, ସଂସାରସ୍ୟାପି ସବିଷୟତ୍ୱେନୈବାତ୍ମସମବେତତ୍ୱାଦ୍ ।। ୩୫।।

– ଶିବ, ବିଶ୍ୱ ଏବଂ ଗୁରୁଙ୍କୁ ପ୍ରତିଦିନ ସାକ୍ଷାତ୍ ଚିଦାକାର ଆତ୍ମାରେ ଏକ ରୂପରେ ଜୋଡ଼ିବା ସହଭୋଜନ କୁହାଯାଏ ।। ୩୫।।

ବିଶେଷ – ସହଭୋଜନର ତାତ୍ପର୍ଯ୍ୟ ହେଉଛି ଶିବ, ଗୁରୁ ଏବଂ ବିଶ୍ୱକୁ ନିଜର ସ୍ୱରୂପଠାରୁ ଅଭିନ୍ନ ରୂପରେ ପରାମର୍ଶ କରିବା ।

ଅଥ ପୁନରପି ନିଷ୍କର୍ଷମାହ –

**ଅୟଂ ଶିବୋ ଗୁରୁଶ୍ଚୈବ ଜଗଦେତଚ୍ଚରାଚରମ୍ ।**
**ଅହଂ ଚେତି ମତିର୍ଯସ୍ୟ ନାସ୍ତ୍ୟସୌ ବିଶ୍ୱଭୋଜକଃ ।। ୩୬।।**

ଅୟଂ ଶିବଃ, ଏଷ ଗୁରୁଃ ସ୍ୱାମୀ, ଏତଦ୍ ସ୍ଥାବର ଜଙ୍ଗମାତ୍ମକଂ ବିଶ୍ୱମ୍, ଅହଂ ଚ ଇତି ଯସ୍ୟ ବୁଦ୍ଧିର୍ଭେଦ ବୁଦ୍ଧିର୍ନାସ୍ତି, ସୋଽସୌ ଶିବଲିଙ୍ଗୈକ୍ୟୋ ବିଶ୍ୱଭୋଜକୋ ଜଗଦ୍ଭେଦ ଭକ୍ଷକ ଇତ୍ୟର୍ଥଃ ।। ୩୬।।

– ଏ ହେଉଛନ୍ତି ଶିବ, ଏ ହେଉଛନ୍ତି ଗୁରୁ, ଏହା ହେଉଛି ଚରାଚରା ଜଗତ୍ ଏବଂ ଏ ହେଉଛି ମୁଁ – ଏପରି ଯାହାର ଭେଦବୁଦ୍ଧି ଥାଏ, ସେ ବିଶ୍ୱଭୋଜକ ହୋଇ ନ ଥାଏ ।। ୩୬।।

ଅଥେତୋଽପି ନିଷ୍କର୍ଷମାହ –

**ଅହଂ ଭୃତ୍ୟଃ ଶିବଃ ସ୍ୱାମୀ ଶିଷ୍ୟୋଽହଂ ଗୁରୁରେବ ବୈ ।**
**ଇତି ଯସ୍ୟ ମତିର୍ନାସ୍ତି ସ ଚାଦ୍ୱୈତପଦେ ସ୍ଥିତଃ ।। ୩୭।।**

ଶିବଃ ସ୍ୱାମୀ ଅହଂ ଭୃତ୍ୟ ଏବ ଗୁରୁରହଂ ଶିଷ୍ୟ ଇତି ଯସ୍ୟ ମତିର୍ଭେଦବୁଦ୍ଧିର୍ନାସ୍ତି, ସ ଚ ଶିବଲିଙ୍ଗୈକ୍ୟଃ, ଅଦ୍ୱୈତପଦେ ବିଶ୍ୱଭେଦଗ୍ରାସାତ୍ମକଶିବାଦ୍ୱୈତସ୍ଥାନେ ସ୍ଥିତଃ ତିଷ୍ଠତୀତ୍ୟର୍ଥଃ ।। ୩୭।।

– ମୁଁ ସେବକ ଅଟେ ଏବଂ ଶିବ ସ୍ୱାମୀ ଅଟନ୍ତି, ମୁଁ ଶିଷ୍ୟ ଅଟେ ଏବଂ ସେ ଗୁରୁ ଅଟନ୍ତି – ଏପରି ଭେଦବୁଦ୍ଧି ଯାହାର ନାହିଁ, ସେ ଅଦ୍ୱୈତପଦରେ ସ୍ଥିତ ଅଟେ ।। ୩୭।।

ଅଥୈବଂ ବିଧସହଭୋଜନ ସମ୍ପନ୍ନ ଏବ ବିଶ୍ୱହୋମୀତି କଥ୍ୟତ ଇତ୍ୟାହ –

**ପରାହନ୍ତାମୟେ ସ୍ୱାତ୍ମପାବକେ ବିଶ୍ୱଭାସ୍ୱତି ।**
**ଇଦନ୍ତାହବ୍ୟହୋମେନ ବିଶ୍ୱହୋମୀତି କଥ୍ୟତେ ।। ୩୮ ।।**

ବିଶ୍ୱପ୍ରକାଶେ ଉତ୍କୃଷ୍ଟ ମୂଳାହଙ୍କାରମୟେ ସ୍ୱାତ୍ମାଗ୍ନୌ ଇଦନ୍ତାରୂପହବନ-ଦ୍ରବ୍ୟହୋମେନ ବିଶ୍ୱହୋମିତି କଥ୍ୟତ ଇତ୍ୟର୍ଥଃ ।। ୩୮ ।।

– ବିଶ୍ୱକୁ ଆଭାସିତ କରୁଥିବା ଅହନ୍ତାରୂପୀ ଆତ୍ମାରୂପୀ ଅଗ୍ନିରେ ଇଦନ୍ତାରୂପୀ ହବ୍ୟର ହୋମ କରୁଥିବା ବ୍ୟକ୍ତି ବିଶ୍ୱହୋମୀ କୁହାଯାଏ ।। ୩୮ ।।

ନନୁ କାସୌ ପରାହନ୍ତେତ୍ୟତ୍ରାହ –

**ଅହଂ ଶିବୋ ଗୁରୁଶ୍ଚାହମହଂ ବିଶ୍ୱଂ ଚରାଚରମ୍ ।**
**ଯୟା ବିଜ୍ଞାୟତେ ସମ୍ୟକ୍ ପୂର୍ଣ୍ଣାହନ୍ତେତି ସା ସ୍ମୃତା ।। ୩୯ ।।**

ଶିବୋଽହଂ ଗୁରୁରହଂ ଚ ଚରାଚରଂ ବିଶ୍ୱମହମିତି ଯୟା ଚିତ୍ୟା ସମ୍ୟଗ୍ ବିଜ୍ଞାୟତେ, ଅତ୍ର – 'ପ୍ରତ୍ୟବମର୍ଶାତ୍ମାସୌ ଚିତିଃ ସ୍ୱରସବାହିନୀ ପରାବାଗ୍ରୂପା, ଆଦ୍ୟନ୍ତପ୍ରତ୍ୟାହତ-ବର୍ଣ୍ଣଗଣା ସତ୍ୟହନ୍ତା ସା।'[୧୯୦] ଇତି ପଞ୍ଚାଶିକାଶାସ୍ତ୍ରସ୍ଥିତ୍ୟା ଦେଶକାଳାଦ୍ୟାକାରକୃତ-ସଙ୍କୋଚରାହିତ୍ୟେନ ତଦ୍ୱାଚକସକଳମାତୃକାର୍ଣ୍ଣକ୍ରୋଡ଼ୀକାରଲକ୍ଷଣପ୍ରତ୍ୟାହୃତାକାର ହକାରସମ୍ମେଳନାତ୍ମକତଦନ୍ତର୍ଗତବେଦ୍ୟସଂସ୍କାର ଲକ୍ଷଣବିନ୍ଦୁସ୍ପନ୍ଦସ୍ଫୁରିତପରଶକ୍ତିଶିବାତ୍ମକ-ତ୍ୱେନ ସ୍ଥୂଳପ୍ରପଞ୍ଚୋତ୍ପତ୍ତେଃ ପ୍ରାକ୍ ତତ୍କାରଣତ୍ୱେନାନ୍ତରସନ୍ୟାୟେନ ସାମାନ୍ୟତୋଽହମିତି ପଶ୍ଚାଦ୍ ଅନ୍ୟବ୍ୟାମିଶ୍ରମସ୍ୱତନ୍ତ୍ରଂ ଭେଦାଶକ୍ୟାବଭାସନଂ ପ୍ରତିବିମ୍ବମିତି ତଲ୍ଲକ୍ଷଣଯୋଗ-ସାମ୍ୟେନ ପ୍ରତିବିମ୍ବଗତ୍ୟା ବିଶ୍ୱମୟତ୍ୱେନ ସ୍ୱାତନ୍ତ୍ରେଣ ଭାସମାନା ପୂର୍ଣ୍ଣାହନ୍ତେତି ସ୍ମୃତେତ୍ୟର୍ଥଃ ।। ୩୯ ।।

---

୧୯୦. ତୁଳନୀୟ –

ଚିତିଃ ପ୍ରତ୍ୟବମର୍ଶାତ୍ମା ପରାବାକ୍ ସ୍ୱରସୋଦିତା ।
ସ୍ୱାତନ୍ତ୍ର୍ୟମେତନ୍ମୁଖ୍ୟଂ ତଦୈଶ୍ୱର୍ଯ୍ୟଂ ପରମାତ୍ମନଃ ।। (ଈ. ପ୍ର. ୧/୫/୧୩)

– ମୁଁ ହେଉଛି ଶିବ, ମୁଁ ହେଉଛି ଗୁରୁ ଏବଂ ଚରାଚର ବିଶ୍ୱ ମୁଁ ଅଟେ – ଏହିପରି ଯାହାଦ୍ୱାରା ଜଣାଯାଏ, ସେ ପୂର୍ଣ୍ଣାହନ୍ତା (କୁହାଯାଏ) ।। ୩୯ ।।

ବିଶେଷ – ଏହି ସଂସାର ହେଉଛି ଅକାରଠାରୁ କ୍ଷକାର ପର୍ଯ୍ୟନ୍ତ ୫୦ଟି ବର୍ଣ୍ଣର ବିକାସର ଫଳ । ସାଧନା ଦ୍ୱାରା ଅ ହ ଦୁଇଟି ବର୍ଣ୍ଣ ପ୍ରତ୍ୟାହୃତ କରି ନେବା ପରେ, ତାହାର ମଧ୍ୟ ବିନ୍ଦୁ ରୂପରେ ପ୍ରତ୍ୟାହରଣ ହୋଇଥାଏ । ଏହି ବିନ୍ଦୁ ଅ ହ ର ସୂକ୍ଷ୍ମତମ ରୂପ ଅଟେ । ଏଥିରେ ମୟୂରାଣ୍ଡରସନ୍ୟାୟରେ ସମ୍ପୂର୍ଣ୍ଣ ବିଶ୍ୱ ପ୍ରଚ୍ଛନ୍ନ ରହେ । ଏହା ହେଉଛି ପୂର୍ଣ୍ଣ ଅହଂଭାବ, ଯେଉଁଥିରେ ସମସ୍ତ ଜଗତ୍ ସୂକ୍ଷ୍ମରୂପରେ ପ୍ରତିବିମ୍ବିତ ହୋଇଥାଏ ।

ଅଥୋକ୍ତଲକ୍ଷଣବିଶ୍ୱହୋମ୍ୟେବ ଜ୍ଞାନଯଜ୍ଞଦୀକ୍ଷିତ ଇତ୍ୟାହ –

**ଆଧାରବହ୍ନୌ ଚିଦ୍ରୂପେ ଭେଦଜାତଂ ଜଗଦ୍ଧବିଃ ।**
**ଜୁହୋତି ଜ୍ଞାନଯଜ୍ୱା ଯଃ ସ ଜ୍ଞେୟୋ ବିଶ୍ୱହବ୍ୟଭୁକ୍ ।। ୪୦ ।।**

ଚିଦ୍ରୂପେ ଜ୍ଞାନସ୍ୱରୂପେ ଆଧାରବହ୍ନୌ ଆଜ୍ଞାଚକ୍ରଗତବହ୍ନୌ ଭେଦଜାତଂ ମାୟାକଳ୍ପିତଂ ଜଗଦ୍ଧବିଃ ବିଶ୍ୱହବିଃ ଯୋ ଜୁହୋତି, ସ ବିଶ୍ୱହବ୍ୟଭୁଗ୍ ବିଶ୍ୱହବିର୍ଭୋକ୍ତା ଜ୍ଞାନଯଜ୍ୱା ଜ୍ଞାନଯଜ୍ଞଦୀକ୍ଷିତ ଇତି ଜ୍ଞେୟୋ ଜ୍ଞାତୁଂ ଯୋଗ୍ୟ ଇତ୍ୟର୍ଥଃ ।। ୪୦ ।।

– ଯିଏ ଜ୍ଞାନଯଜ୍ଞର କର୍ତ୍ତା, ଚିଦ୍‌ରୂପୀ ଆଧାରବହ୍ନି ଅର୍ଥାତ୍ ଆଜ୍ଞାଚକ୍ରରେ ସ୍ଥିତ ତେଜରେ ଭେଦସମୂହବାଲା ଜଗଦ୍‌ରୂପୀ ହବିର ହବନ କରନ୍ତି, ତାଙ୍କୁ ବିଶ୍ୱହବ୍ୟଭୁକ୍ ଜାଣିବା ଉଚିତ୍ ।। ୪୦ ।।

ନନୁ ପ୍ରତ୍ୟକ୍ଷବହ୍ନୌ ତଦ୍ୱ୍ୟତିରିକ୍ତ କାଷ୍ଠାଦୌ ନିକ୍ଷିପ୍ତେ ସତି ତନ୍ନାଶୋ (ନ) ଦୃଶ୍ୟତେ, ଜ୍ଞାନାଗ୍ନୌ ନିକ୍ଷିପ୍ତଜଗତୋ ନାଶଃ କଥମିତ୍ୟତ୍ରାହ –

**ଚିଦାକାରେ ପରାକାଶେ ପରମାନନ୍ଦଭାସ୍ୱତି ।**
**ବିଲୀନଚିତ୍ତବୃତ୍ତୀନାଂ କା ବା ବିଶ୍ୱକ୍ରମସ୍ଥିତିଃ ।। ୪୧ ।।**

ଚିଦାକାରେ ପରାକାଶେ ଊର୍ଦ୍ଧ୍ୱହୃତ୍‌କମଳକର୍ଣ୍ଣିକାବିବରେ ପରମାନନ୍ଦଭାସ୍ୱତି ନିତ୍ୟାନନ୍ଦମୟମହାଲିଙ୍ଗାଖ୍ୟଭାନୌ ବିଲୀନଚିତ୍ତବୃତ୍ତୀନାଂ ଲୟୀଭୂତମନୋବ୍ୟାପାରବତାଂ ଲିଙ୍ଗୈକ୍ୟାନାଂ ବିଶ୍ୱକ୍ରମସ୍ଥିତିଃ ବିଶ୍ୱବ୍ୟାପାରବର୍ତ୍ତନମ୍, (କା) କାପି ନାସ୍ତୀତ୍ୟର୍ଥଃ ।। ୪୧ ।।

– ପରମ ଆନନ୍ଦରୂପୀ ସୂର୍ଯ୍ୟ ନାମକ ଚିତ୍‌ସ୍ୱରୂପ ପରାକାଶରେ ଯାହାର ଚିତ୍ତବୃତ୍ତି ବିଲୀନ ହୋଇଯାଇଛି, ତାଙ୍କ ପାଇଁ ବିଶ୍ୱକ୍ରମ ଅର୍ଥାତ୍ ବିଶ୍ୱବ୍ୟବହାରର କ’ଣ ସ୍ଥିତି ହୋଇପାରିବ ? ।। ୪୧ ।।

ଅଥ ତସ୍ୟ ସହଭୋଜନସମ୍ପନ୍ନସ୍ୟ ଲିଙ୍ଗୈକ୍ୟସ୍ୟ ମୁକ୍ତିସ୍ୱରୂପଂ ସୂତ୍ରଦ୍ୱୟେନା କଥୟତି –

ନିରସ୍ତବିଶ୍ୱସମ୍ବାଧେ ନିଷ୍କଳଙ୍କେ ଚିଦମ୍ବରେ ।
ଭାବୟେଲ୍ଲୀନମାତ୍ମାନଂ ସାମରସ୍ୟସ୍ୱଭାବତଃ ।। ୪୨ ।।
ସୈଷା ବିଦ୍ୟା ପରା ଜ୍ଞେୟା ସତ୍ତାନନ୍ଦପ୍ରକାଶିନୀ ।
ମୁକ୍ତିରିତ୍ୟୁଚ୍ୟତେ ସଦ୍‌ଭିର୍ଜଗନ୍ମୋହନିବର୍ତ୍ତିନୀ ।। ୪୩।।

ନିବାରିତଜନନମରଣାଦିକ୍ଳେଶେ ଦୋଷରହିତେ ଚିଦାକାଶସ୍ୱରୂପେ ମହାଲିଙ୍ଗେ, ଅଙ୍ଗଶବ୍ଦବାଚ୍ୟମାତ୍ମାନଂ ସ୍ୱରୂପହାନିବୃଦ୍ଧିବ୍ୟତିରେକେଣ ସଜାତୀୟ ସମାନସମରସଭାବେନ ଲୀନଂ ସ୍ଥିରସିଦ୍ଧିମନ୍ତଂ ଭାବୟେତ୍ । ସୈଷା ସଚ୍ଚିଦାନନ୍ଦସ୍ୱରୂପପ୍ରକାଶିନୀ ପରା ବିଦ୍ୟେତି ଜ୍ଞାତୁଂ ଯୋଗ୍ୟା ଜଗନ୍ମୋହନିବର୍ତ୍ତିନୀ ବିଶ୍ୱଭେଦଭ୍ରାନ୍ତିନିବର୍ତ୍ତିନୀ ପରା ମୁକ୍ତିରିତି ସତ୍‌ପୁରୁଷୈରୁଚ୍ୟତ ଇତ୍ୟର୍ଥଃ ।। ୪୨-୪୩।।

- ବିଶ୍ୱର ବାଧା ଅର୍ଥାତ୍ ଜନ୍ମ-ମୃତ୍ୟୁ ଆଦିର ବନ୍ଧନ ଯେଉଁଠାରେ ଦୂର ହୋଇଯାଇଛି, ଏହିପରି ନିଷ୍କଳଙ୍କ ଚିଦାକାଶରେ ନିଜକୁ ସାମରସ୍ୟସ୍ୱଭାବରେ ଲୀନ ବୁଝିବା ଉଚିତ୍ । ସଜ୍ଜନମାନଙ୍କଦ୍ୱାରା ଏହା ଜଗତ୍‌ର ମୋହ ଦୂର କରୁଥିବା ମୁକ୍ତି କୁହାଯାଇଛି ।। ୪୨-୪୩।।

ଅଥାୟଂ ଶିବଲିଙ୍ଗୈକ୍ୟ ଏବ ମୋକ୍ଷଲକ୍ଷ୍ମୀ ନିବାସସ୍ଥାନଭୂତ ଇତ୍ୟୁକ୍ତ୍ୱା ସହଭୋଜନସ୍ଥଳଂ ସମାପୟତି -

ଭକ୍ତାଦିଧାମାର୍ପିତ ଧର୍ମଯୋଗାଦ୍ ପ୍ରାପ୍ତୈକଭାବଃ ପରମାଦ୍‌ଭୁତେନ।
ଶିବେନ ଚିଦ୍‌ବ୍ୟୋମମୟେନ ସାକ୍ଷାନ୍ମୋକ୍ଷଶ୍ରିୟୋ ଭାଜନତାମୁପୈତି ।। ୪୪।।

ଚିଦ୍‌ବ୍ୟୋମମୟେନ ଊର୍ଧ୍ୱହୃତ୍‌କମଳମଧ୍ୟସ୍ଥଚିଦାକାଶସ୍ୱରୂପେଣ ପରମାଦ୍‌ଭୁତେନ ପରମାଶ୍ଚର୍ଯ୍ୟରୂପେଣ ଶିବେନ ଶିବଲିଙ୍ଗେନ ସ୍ୱରୂପହାନିବୃଦ୍ଧିବ୍ୟତିରେକେଣ ସମାନ-ସମରସତ୍ୱେନ ଲବ୍ଧୈକତ୍ୱବାନ୍ ଶିବଲିଙ୍ଗୈକ୍ୟୋ ଭକ୍ତାଦି ଧାମାର୍ପିତଧର୍ମଯୋଗାଦ୍ ଭକ୍ତାଦିସ୍ଥଳଗତସଦାଚାରସମ୍ବନ୍ଧାଦ୍ ପ୍ରତ୍ୟକ୍ଷମୋକ୍ଷଲକ୍ଷ୍ମ୍ୟା ଭାଜନତାମ୍ ଆଶ୍ରୟତ୍ୱମ୍ ଉପୈତି ପ୍ରାପ୍ନୋତୀତ୍ୟର୍ଥଃ ।। ୪୪।।

- ଭକ୍ତ ଆଦି ସ୍ଥଳ ନିମନ୍ତେ ସମର୍ପିତ ଧର୍ମଯୋଗ କାରଣରୁ ଚିଦାକାଶମୟ ପରମ ଅଦ୍‌ଭୁତ ଶିବଲିଙ୍ଗ ସହିତ ଐକ୍ୟକୁ ପ୍ରାପ୍ତ ଐକ୍ୟସ୍ଥଳୀ ବ୍ୟକ୍ତି ସାକ୍ଷାତ୍ ମୋକ୍ଷର ପାତ୍ର ହୋଇଥାଏ ।। ୪୪।।

ଇତି ଶ୍ରୀମଦ୍‌ଷଟ୍‌ସ୍ଥଳବ୍ରହ୍ମଣି ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ସିଦ୍ଧାନ୍ତଶିଖାମଣୌ ଶିବଲିଙ୍ଗୈକ୍ୟସ୍ୟ ଚତୁର୍ବିଧସ୍ଥଳପ୍ରସଙ୍ଗୋ ନାମ ଚତୁର୍ଦ୍ଦଶ ପରିଚ୍ଛେଦଃ ।। ୧୪।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାର ଧୁରୀଣ ଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ଶିବଲିଙ୍ଗୈକ୍ୟସ୍ୟ ଚତୁର୍ବିଧସ୍ଥଲପ୍ରସଙ୍ଗନାମା ଚତୁର୍ଦଶଃ ପରିଚ୍ଛେଦଃ ।। ୧୪ ।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ଶିବଲିଙ୍ଗୈକ୍ୟ ସମ୍ବନ୍ଧୀ ଚତୁର୍ବିଧସ୍ଥଲପ୍ରସଙ୍ଗ-ନାମକ ଚତୁର୍ଦଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମ ଚତୁର୍ବେଦୀ କୃତ ଜ୍ଞାନବତୀ ହିନ୍ଦି ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ପୂର୍ଣ୍ଣ ହେଲା ।। ୧୪ ।।



# ପଞ୍ଚଦଶଃ ପରିଚ୍ଛେଦଃ

## ଅଥ ଲିଙ୍ଗସ୍ଥଲାନି, ଦୀକ୍ଷାଗୁରୁସ୍ଥଲମ୍

ଅଥ ଭକ୍ତାଦିଶିବଲିଙ୍ଗୈକ୍ୟାନ୍ତଷଟ୍ସ୍ଥଲୋକ୍ତପିଣ୍ଡାଦିସହଭୋଜନାନ୍ତଚତୁଶ୍ଚତ୍ୱାରିଂଶ-ଦବାନ୍ତର ସ୍ଥଳନିରୂପତିସଦାଚାର ସମ୍ପନ୍ନସ୍ୟ ଲିଙ୍ଗୈକ୍ୟସ୍ୟ ବର୍ଣ୍ଣାଶ୍ରମାଦିସଙ୍କଳ୍ପବିକଳ୍ପଶୂନ୍ୟତ୍ୱେନ ପ୍ରାକୃତାଚାରନିବୃତ୍ୟା ସହଭୋଜନସମ୍ପନ୍ନତ୍ୱାଲ୍ଲିଙ୍ଗରୂପତ୍ୱେନ ତଦାଚରଣୀୟ ଲିଙ୍ଗାଚାରସ୍ଥଳାନି ନିରୂପୟତି ଶ୍ରୀରେଣୁକଃ –

**ଷଟ୍ସ୍ଥଲୋକ୍ତସଦାଚାରସମ୍ପନ୍ନସ୍ୟ ଯଥାକ୍ରମମ୍ ।**
**ଲିଙ୍ଗସ୍ଥଲାନି କଥ୍ୟନ୍ତେ ଜୀବନ୍ମୁକ୍ତିପରାଣି ଚ ।। ୧ ।।**

ଅଙ୍ଗଷଟ୍ ସ୍ଥଳୋକ୍ତ ସଦାଚାରସମ୍ପନ୍ନସ୍ୟ ଶିବଲିଙ୍ଗୈକ୍ୟସ୍ୟ କ୍ରମେଣ ଜୀବନ୍ମୁକ୍ତିପରାଣି ଲିଙ୍ଗଷଟ୍ସ୍ଥଲାନି କଥ୍ୟନ୍ତ ଇତ୍ୟର୍ଥଃ ।। ୧ ।।

– (ଲିଙ୍ଗସ୍ଥଳ ବର୍ଣ୍ଣନ) – ଶ୍ରୀରେଣୁକାଚାର୍ଯ୍ୟ କହିଲେ – ଛଅ ସ୍ଥାନରେ ବର୍ଣ୍ଣିତ ସଦାଚାରରେ ସମ୍ପନ୍ନ ସାଧକର ଜୀବନ୍ମୁକ୍ତିପରକ ଲିଙ୍ଗସ୍ଥଳ କ୍ରମରେ କୁହାଯାଉଛି ।। ୧ ।।

ଅଥାଗସ୍ତ୍ୟପ୍ରଶ୍ନଃ । ଅଗସ୍ତ୍ୟ ଉବାଚେତି –

**ଭକ୍ତାଦ୍ୟୈକ୍ୟାବସାନାନି ଷଡୁକ୍ତାନି ସ୍ଥଲାନି ଚ ।**
**ଲିଙ୍ଗସ୍ଥଲାନି କାନୀହ କଥ୍ୟନ୍ତେ କତି ବା ପୁନଃ ।। ୨ ।।**

ସ୍ପଷ୍ଟମ୍ ।। ୨ ।।

– ଅଗସ୍ତ୍ୟ କହିଲେ – ଭକ୍ତସ୍ଥଳଠାରୁ ଆରମ୍ଭ କରି ଐକ୍ୟସ୍ଥଳ ପର୍ଯ୍ୟନ୍ତ ଛଅ ସ୍ଥଳ କୁହାଯାଇଛି । ଲିଙ୍ଗ ସ୍ଥଳ କେଉଁ କେଉଁଟି ଏବଂ କେତୋଟି ତାହା କୁହନ୍ତୁ (ବତାନ୍ତୁ) ।। ୨ ।।

### ଶ୍ରୀରେଣୁକ ଉବାଚ

**ଗୁର୍ବାଦିଜ୍ଞାନଶୂନ୍ୟାନ୍ତା ଭକ୍ତାଦିସ୍ଥଲସଂଶ୍ରିତାଃ ।**
**ସ୍ଥଲଭେଦାଃ ପ୍ରକୀର୍ତ୍ତ୍ୟନ୍ତେ ପଞ୍ଚାଶଦ୍ ସପ୍ତ ଚାଧୁନା ।। ୩ ।।**

ଭକ୍ତାଦ୍ୟୈକ୍ୟାନ୍ତାଙ୍ଗ ଷଟ୍ସ୍ଥଲ ସଂଶ୍ରିତା ଦୀକ୍ଷାଗୁର୍ବାଦି ବୃତ୍ତିଜ୍ଞାନଶୂନ୍ୟାନ୍ତାଃ ସପ୍ତୋତ୍ତର ପଞ୍ଚାଶଲ୍ଲିଙ୍ଗସ୍ଥଲଭେଦା ଅଧୁନା କଥ୍ୟନ୍ତ ଇତ୍ୟର୍ଥଃ ।। ୩ ।।

– ଭକ୍ତ ଆଦି ଛଅ ସ୍ଥାନରେ ଆଧୃତ ଦୀକ୍ଷାଗୁରୁ ସ୍ଥଳଠାରୁ ଜ୍ଞାନଶୂନ୍ୟ ସ୍ଥଳ ପର୍ଯ୍ୟନ୍ତ ସନ୍ତାବନ ସ୍ଥଳଭେଦ (ଏବେ) ବର୍ତ୍ତମାନ ବତାଯିବ ।। ୩ ।।

ଅଥ ଭକ୍ତସ୍ଥଳଗତ ଲିଙ୍ଗସ୍ଥଳଭେଦାନ୍ ସୂତ୍ରତ୍ରୟେଣ କଥୟତି –

**ଆଦୌ ନବ ସ୍ଥଳାନୀହ ଭକ୍ତସ୍ଥଳସମାଶ୍ରୟାତ୍ ।**

**କଥ୍ୟନ୍ତେ ଗୁଣସାରେଣ ନାମାନ୍ୟେଷାଂ ପୃଥକ୍ ଶୃଣୁ ।। ୪ ।।**

ଇହ ଲିଙ୍ଗଷଟ୍ସ୍ଥଳେ ଭକ୍ତସ୍ଥଳସମାଶ୍ରୟାଦ୍ ଆଦୌ ନବ ସ୍ଥଳାନି ଗୁଣସାରେଣ ଶ୍ରେଷ୍ଠତ୍ୱେନ । ଏଷାଂ ନବସ୍ଥଳାନାଂ ନାମାନି ପୃଥକ୍ ପୃଥକ୍ କଥ୍ୟନ୍ତେ । ଶୃଣ୍ୱିତ୍ୟର୍ଥଃ ।। ୪ ।।

– ଭକ୍ତସ୍ଥଳକୁ ଆଧାର କରି ଏଠାରେ ପ୍ରଥମେ ନବସ୍ଥଳ ସେମାନଙ୍କ ଗୁଣ ଅନୁସାରେ କୁହାଯାଉଛି । ସେମାନଙ୍କର ପୃଥକ୍ ପୃଥକ୍ ନାମକୁ ଶୁଣ ।। ୪ ।।

ଅଥ ତାନ୍ୟୁଦ୍ଦିଶତି –

**ଦୀକ୍ଷାଗୁରୁସ୍ଥଳଂ ପୂର୍ବଂ ତତଃ ଶିକ୍ଷାଗୁରୁସ୍ଥଳମ୍ ।**

**ପ୍ରଜ୍ଞାଗୁରୁସ୍ଥଳଂ ଚାଥ କ୍ରିୟାଲିଙ୍ଗସ୍ଥଳଂ ତତଃ ।। ୫ ।।**

**ଭବଲିଙ୍ଗସ୍ଥଳଂ ଚାଥ ଜ୍ଞାନଲିଙ୍ଗସ୍ଥଳଂ ତତଃ ।**

**ସ୍ୱୟଂ ପରଂ ଚରଂ ଚେତି ତେଷାଂ ଲକ୍ଷଣମୁଚ୍ୟତେ ।। ୬ ।।**

ସ୍ପଷ୍ଟମ୍ ।। ୫–୬ ।।

– ପ୍ରଥମେ ଦୀକ୍ଷାଗୁରୁସ୍ଥଳ, ତାପରେ ଶିକ୍ଷାଗୁରୁସ୍ଥଳ, ପୁନଃ ପ୍ରଜ୍ଞାଗୁରୁସ୍ଥଳ ତାପରେ କ୍ରିୟାଲିଙ୍ଗସ୍ଥଳ । ପୁନଃ ଭାବଲିଙ୍ଗସ୍ଥଳ, ତାପରେ ଜ୍ଞାନଲିଙ୍ଗସ୍ଥଳ, ସ୍ୱୟଂସ୍ଥଳ, ପରସ୍ଥଳ ଏବଂ ଚରସ୍ଥଳ । ଏମାନଙ୍କର ଲକ୍ଷଣ କୁହାଯାଉଛି ।। ୫–୬ ।।

ଅଥ –

ଦୀୟତେ ଚ ଯଥା ଜ୍ଞାନଂ କ୍ଷୀୟତେ ଚ ମଳତ୍ରୟମ୍ ।

ସା ଦୀକ୍ଷା ସଂଜ୍ଞିତା ତସ୍ୟାଂ ଗୁରୁର୍ଦୀକ୍ଷାଗୁରୁର୍ମତଃ ।।

ଇତି ବାତୁଳୋତ୍ତରବଚନାନୁସାରେଣ ଶିବଲିଙ୍ଗୈକ୍ୟ ଏବ ଦୀକ୍ଷାଗୁରୁରିତି କଥୟତି –

**ଦୀୟତେ ପରମଂ ଜ୍ଞାନଂ କ୍ଷୀୟତେ ପାଶବନ୍ଧନମ୍ ।**

**ଯୟା ଦୀକ୍ଷେତି ସା ତସ୍ୟାଂ ଗୁରୁର୍ଦୀକ୍ଷାଗୁରୁଃ ସ୍ମୃତଃ ।। ୭ ।।**

ଯଥା ପରମଜ୍ଞାନମ୍ ଉତ୍କୃଷ୍ଟଶିବଜ୍ଞାନଂ 'ଦା ଦାନେ' ଇତି ଧାତୁ ଗତ୍ୟା ଦୀୟତେ, ପାଶବନ୍ଧନଂ ମଳମାୟାଦିପାଶବନ୍ଧନଂ 'କ୍ଷି କ୍ଷୟେ' ଇତି ଧାତୁଗତ୍ୟା କ୍ଷୀୟତେ, ସା ଦୀକ୍ଷେତି ମତା ସମ୍ମତା । ତସ୍ୟାଂ ଚିଦ୍‌କ୍ରିୟାଲକ୍ଷଣଦୀକ୍ଷାୟାଂ ଗୁରୁଃ 'ଗୃ ନିଗରଣେ' ଇତି ଧାତୁଗତ୍ୟା ଉପଦେଶକୃଚ୍ଛିବଲିଙ୍ଗୈକ୍ୟୋ ଦୀକ୍ଷାଗୁରୁରିତି ସ୍ମୃତ ଇତ୍ୟର୍ଥଃ ।। ୭ ।।

– (ଦୀକ୍ଷାଗୁରୁସ୍ଥଳ ବର୍ଣ୍ଣନ) – ଯାହାଦ୍ୱାରା ପରମଜ୍ଞାନ ଦିଆଯାଏ ଏବଂ ପାଶବନ୍ଧନର କ୍ଷୟ କରାଯାଏ, ତାହା ଦୀକ୍ଷା ଅଟେ । ସେହି ବିଷୟରେ ଯେଉଁ ଗୁରୁ

ଅଟନ୍ତି, ତାଙ୍କୁ ଦୀକ୍ଷାଗୁରୁ କୁହାଯାଇଛି ।। ୭।।

ଅଥ ଗୁରୁସ୍ୱରୂପଂ ବିଶଦୟତି –

**ଗୁଣାତୀତଂ ଗୁକାରଂ ଚ ରୂପାତୀତଂ ରୁକାରକମ୍ ।**
**ଗୁଣାତୀତମରୂପଂ ଚ ଯୋ ଦଦ୍ୟାତ୍ ସ ଗୁରୁଃ ସ୍ମୃତଃ ।। ୮।।**

ଗୁକାରଂ ପ୍ରାକୃତଗୁଣାତୀତମ୍, ରୁକାରମ୍ ଅଶୁଦ୍ଧମାୟାରୂପାତୀତମ୍, ଗୁଣାତୀତମରୂପଂ ଚ ମଣ୍ଡଳତ୍ରୟାତ୍ମକଗୁଣତ୍ରୟଂ ଜ୍ୟୋତିର୍ମୟବୈନ୍ଦବକଳାଶୂନ୍ୟଚିନ୍ମୟବସ୍ତୁ ଯୋ ଦଦାତି ଉପଦିଶତି, ସ ଗୁରୁଃ ସ୍ମୃତଃ, ଗୁରୁରିତି ସ୍ମୃତ ଇତ୍ୟର୍ଥଃ ।। ୮।।

– 'ଗୁ' ର ଅର୍ଥ ହେଉଛି – ଗୁଣାତୀତ, 'ରୁ'ର ଅର୍ଥ ହେଉଛି – ରୂପାତୀତ। ଯାହା ଗୁଣଠାରୁ ଅଧିକ ଅର୍ଥାତ୍ ନିର୍ଗୁଣ ଏବଂ ରୂପ ରହିତ ତତ୍ତ୍ୱକୁ ଦିଏ ଅର୍ଥାତ୍ ତାହାର ଜ୍ଞାନ କରାଇଥାଏ, ସେ ଗୁରୁ କୁହାଯାଏ ।। ୮।।

ଅଥୈତତ୍ ପ୍ରସଙ୍ଗାଦାଚାର୍ଯ୍ୟସ୍ୱରୂପଂ ଚ ବିଶଦୟତି –

**ଆଚିନୋତି ଚ ଶାସ୍ତ୍ରାର୍ଥାନାଚାରେ ସ୍ଥାପୟତ୍ୟଲମ୍ ।**
**ସ୍ୱୟମାଚରତେ ଯସ୍ମାଦାଚାର୍ଯ୍ୟସ୍ତେନ ଚୋଚ୍ୟତେ ।। ୯।।**

ଶାସ୍ତ୍ରାର୍ଥାନ୍ ବୀରଶୈବଶାସ୍ତ୍ର ରହସ୍ୟାର୍ଥାନ୍ ପ୍ରକଟୀକୃତ୍ୟ କଥୟତି, ଆଚାରେ ବୀରଶୈବାଚାରେ ଶିଷ୍ୟାନ୍ ଅଲମ୍ ଆଧିକ୍ୟେନ ସ୍ଥାପୟତି ନିମୟୟତି, ସ୍ୱୟଂ ଚ ବୀରଶୈବାଚାରାନ୍ ଆଚରତେ, ତେନ ହି ତେନ କାରଣେନ 'ଆଚାର୍ଯ୍ୟୋ[୧୯୧] ବକ୍ତା କୁଶଲୋଽସ୍ୟ ଲବ୍ଧଃ'[୧୯୨] ଇତି କଠବଲ୍ଲୀଶ୍ରୁତ୍ୟନୁସାରେଣାଚାର୍ଯ୍ୟ ଇତ୍ୟୁଚ୍ୟତେ ଇତ୍ୟର୍ଥଃ ।। ୯।।

– ଯିଏ ଶାସ୍ତ୍ରର ତାତ୍ପର୍ଯ୍ୟର ସଞ୍ଚୟନ କରେ ଏବଂ ନିଜ ଶିଷ୍ୟଙ୍କୁ ତା'ର ବୋଧ କରାଏ ତଥା ସ୍ୱୟଂ ତାହାର ଆଚରଣ କରିଥାଏ, ଏପରି କରିଥିବାରୁ ଆଚାର୍ଯ୍ୟ କୁହାଯାଇଥାଏ ।। ୯।।

ଅଥ ଦେଶିକଶବ୍ଦନିର୍ବଚନଂ ଚ କୃତ୍ୱା ଶିବଲିଙ୍ଗୈକ୍ୟ ଏବ ଜଗଦ୍‌ଗୁରୁରିତି ସୂତ୍ରଦ୍ୱୟେନୋକ୍ତଦୀକ୍ଷାଗୁରୁସ୍ଥଲଂ ସମାପୟତି –

**ଷଡ଼ଧ୍ୱାତୀତଯୋଗେନ ଯତତେ ଯସ୍ତୁ ଦେଶିକଃ ।**
**ମାୟାଚ୍ଛିତାରଣୋପାୟହେତୁର୍ବିଶ୍ୱଗୁରୁଃ ଶିବଃ ।। ୧୦।।**

---

୧୯୧. 'ଆଚାର୍ଯ୍ୟୋ ଇତ୍ୟସ୍ୟ ସ୍ଥାନେ କଠୋପନିଷଦି ଆଶ୍ଚର୍ଯ୍ୟୋ ଇତି ପାଠେ ଲଭ୍ୟତେ।'

୧୯୨. କଠୋପ. – ୧/୨/୭

ଜ୍ଞାନାନ୍ମୁକ୍ତିଂ ଦିଶତି ଯଃ ସ ଦେଶିକ ଇତି ସ୍ମୃତଃ ଇତି କାମିକବାକ୍ୟପ୍ରସିଦ୍ଧୋ ଯୋ ଦେଶିକଃ ଷଡ଼ଧ୍ୱତୀତଯୋଗେନ 'ଅଧ୍ୱନାମଧ୍ୱପତେ ଶ୍ରେଷ୍ଠସ୍ୟାଧ୍ୱନଃ ପାରମୟ' ଇତି ଶ୍ରୁତିପ୍ରସିଦ୍ଧବର୍ଣ୍ଣପଦାଦିଷଡ଼ଧ୍ୱାତୀତ ଯୋଗେନ ଯତତେ ଉଦ୍ୟୋଗବାନାସ୍ତେ, ସ ଶିବଃ ଶିବଲିଙ୍ଗୈକ୍ୟୋ ମାୟାବ୍ଧିତାରଣୋପାୟହେତୁଭୂତୋ ଜଗଦ୍‌ଗୁରୁରିତ୍ୟର୍ଥଃ ।। ୧୦।।

– ଯେଉଁ ଆଚାର୍ଯ୍ୟ ଷଡ଼ଧ୍ୱାରୁ ଅଧିକ ଯୋଗକୁ ନେଇ ପ୍ରଯତ୍ନ କରନ୍ତି, ସେ ଦେଶିକ ଅଟନ୍ତି । ମାୟାରୂପୀ ସମୁଦ୍ରକୁ ପାର କରିବାର ଉପାୟ ବତାଉଥିବା ବିଶ୍ୱଗୁରୁ ଅଟନ୍ତି, ସେ ଶିବ ଅଟନ୍ତି ।। ୧୦।।

ଅଥ କଥମୟଂ ଜଗଦ୍‌ଗୁରୁରିତ୍ୟାହ –

**ଅଖଣ୍ଡଂ ଯେନ ଚୈତନ୍ୟଂ ବ୍ୟଜ୍ୟତେ ସର୍ବବସ୍ତୁଷୁ ।**
**ଆତ୍ମଯୋଗପ୍ରଭାବେଣ ସ ଗୁରୁର୍ବିଶ୍ୱଭାସକଃ ।। ୧୧ ।।**

ସର୍ବବସ୍ତୁଷୁ ନୀଳପୀତାଦି ସକଳବସ୍ତୁଷୁ, ଆତ୍ମଯୋଗପ୍ରଭାବେଣ ସାନୁଭବବଳାଦ୍ ଅଖଣ୍ଡଂ ସଚ୍ଚିଦାନନ୍ଦାତ୍ମକଂ ଚୈତନ୍ୟଂ ଯେନ ବ୍ୟଜ୍ୟତେ, ନୀଳପୀତାଦିପ୍ରତିନିୟତ ପଦାର୍ଥାବଭାସନକାଳେଽପ୍ୟହମିତ୍ୟଖଣ୍ଡଚୈତନ୍ୟମନୁବର୍ତ୍ତତ ଏବ, ଅନ୍ୟଥା ତଦ୍ୱେଦ୍ୟଦର୍ଶନଂ ନ ସ୍ୟାଦିତି ସ୍ଫୁଟୀକ୍ରିୟତେ, ସ ଗୁରୁର୍ବିଶ୍ୱଭାସକୋ ବିଶ୍ୱପ୍ରକାଶକ ଇତ୍ୟର୍ଥଃ ।। ୧୧ ।।

– ଯାହାଙ୍କ ଦ୍ୱାରା ନିଜର ଯୋଗର ପ୍ରଭାବରେ ସମସ୍ତ ବସ୍ତୁରେ ଅଖଣ୍ଡ ଚୈତନ୍ୟର ଅଭିବ୍ୟକ୍ତି କରାଯାଏ, ସେହି ଗୁରୁ ବିଶ୍ୱର ପ୍ରକାଶକ ଅଟନ୍ତି ।। ୧୧ ।।

**ଇତି ଦୀକ୍ଷାଗୁରୁସ୍ଥଲମ୍**

## ଅଥ ଶିକ୍ଷାଗୁରୁସ୍ଥଲମ୍

ଅଥ –

ବୋଧବୋଧକଭାବେନ ଜ୍ଞାନଦ୍ୱାରେଣ ଶାସ୍ୟତେ ।
ଶିଷ୍ୟୋ ହି ଯେନ ଗୁରୁଣା ସ ଶିକ୍ଷାଗୁରୁରୁଚ୍ୟତେ ।।

ଇତି ବାତୁଲୋତ୍ତରବଚନାନୁସାରେଣ ଶିକ୍ଷାଗୁରୁସ୍ଥଲଂ ନିରୂପୟତି –

**ଦୀକ୍ଷାଗୁରୁରସୌ ଶିକ୍ଷାହେତୁଃ ଶିଷ୍ୟସ୍ୟ ବୋଧକଃ ।**
**ପ୍ରଶ୍ନୋତ୍ତରପ୍ରବକ୍ତା ଚ ଶିକ୍ଷାଗୁରୁରିତୀର୍ଯ୍ୟତେ ।। ୧୨ ।।**

ଅସୌ ଦୀକ୍ଷାଗୁରୁଃ ଶିଷ୍ୟସ୍ୟ ବୋଧକଃ ସନ୍ ପ୍ରଶ୍ନୋତ୍ତରପ୍ରବକ୍ତା ଶିଷ୍ୟକୃତ–ପ୍ରଶ୍ନସ୍ୟୋତ୍ତରଂ ଦତ୍ତ୍ୱା ଶିକ୍ଷାହେତୁଶ୍ଚ ଶିକ୍ଷାକରଣଃ ସନ୍ ଶିକ୍ଷାଗୁରୁରିତି କଥ୍ୟତ ଇତ୍ୟର୍ଥଃ ।। ୧୨ ।।

– (ଶିକ୍ଷାଗୁରୁସ୍ଥଳ ବର୍ଣ୍ଣନ) – ଏହି ଦୀକ୍ଷାଗୁରୁ ଶିଷ୍ୟକୁ ଜ୍ଞାନ ଦ୍ୱାରା ଶିକ୍ଷା ଦେଉଥିବାରୁ ତାହାର ଶିକ୍ଷାଗୁରୁ ଅଟେ । ଯିଏ (ଶିଷ୍ୟଦ୍ୱାରା ପଚରା ଯାଇଥିବା) ପ୍ରଶ୍ନର ଉତ୍ତର ଦିଅନ୍ତି, ସେ ଶିକ୍ଷାଗୁରୁ କୁହାଯାଆନ୍ତି ।। ୧୨।।

ଅଥାମୁମେବାର୍ଥଂ ସ୍ଫୁଟୟତି –

**ବୋଧକୋଽୟଂ ସମାଖ୍ୟାତୋ ବୋଧମେତଦିତି ସ୍ଫୁଟମ୍ ।**
**ଶିଷ୍ୟେ ନିଯୁଜ୍ୟତେ ଯେନ ସ ଶିକ୍ଷାଗୁରୁରୁଚ୍ୟତେ ।। ୧୩।।**

ଅୟଂ ଶିବସିଦ୍ଧାନ୍ତବୋଧକଃ ପରତତ୍ତ୍ୱପ୍ରକାଶକ ଇତ୍ୟର୍ଥଃ, 'ନ ସୋଽସ୍ତି ପ୍ରତ୍ୟୟୋ ଲୋକେ ଯଃ ଶବ୍ଦାନୁଗମାଦୃତେ'[୧୯୩] ଇତି ବୈୟାକରଣୋକ୍ତେଃ ସ୍ଫୁଟଂ ଦେଶିକୋପଦେଶ-ସ୍ଫୁଟୀଭୂତମ୍ ଏତତ୍ ଶିବଯୋଗଜ୍ଞାନଂ ବୋଧମ୍ ଇତି ଯେନ ଗୁରୁଣା ଶିଷ୍ୟଃ ସମାଖ୍ୟାତୋ ବୋଧକଃ ସନ୍ ନିଯୁଜ୍ୟତେ ନିୟମ୍ୟତେ, ସ ଶିକ୍ଷାଗୁରୁରିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୧୩।।

– ଏହା (ଶିବସିଦ୍ଧାନ୍ତର) ବୋଧକ ଅର୍ଥାତ୍ ପରତତ୍ତ୍ୱର ପ୍ରକାଶକ ବୋଲି କୁହାଯାଇଛି । ଏହା (ଅନ୍ୟଟି) ଅର୍ଥାତ୍ ଶିବଯୋଗ ବୋଧ ଅଟେ। ଯିଏ ଶିଷ୍ୟରେ ଏହି ଜ୍ଞାନକୁ ନିଯୁକ୍ତ ଅର୍ଥାତ୍ ନିୟମିତ କରେ, ସେ ଶିକ୍ଷାଗୁରୁ କୁହାଯାଏ ।। ୧୩।।

ଅଥ – 'ଆଚାର୍ଯ୍ୟଃ ପୂର୍ବରୂପଂ ଅନ୍ତେବାସ୍ୟୁତ୍ତରରୂପଂ ବିଦ୍ୟା ସନ୍ଧିଃ[୧୯୪]' 'ଆଚାର୍ଯ୍ୟୋଽନ୍ତେବାସିନମନୁଶାସ୍ତି'[୧୯୫] ଇତି ଶ୍ରୁତ୍ୟନୁସାରେଣ ଦ୍ୱୈବିଧ୍ୟେନ ତତ୍ସ୍ୱରୂପଂ ବର୍ଣ୍ଣୟତି –

**ସଂସାରତିମିରୋନ୍ମାଥିଶରଚ୍ଚନ୍ଦ୍ରମରୀଚୟଃ ।**
**ବାଚୋ ଯସ୍ୟ ପ୍ରବର୍ତ୍ତନ୍ତେ ତମାଚାର୍ଯ୍ୟଂ ପ୍ରଚକ୍ଷତେ ।। ୧୪।।**

ଯସ୍ୟ ବାଚ ଉପଦେଶବାକ୍ୟାନି ସଂସାରତିମିରବିନାଶନେ ଶରଚ୍ଚନ୍ଦ୍ରମରୀଚୟ ଇବ ପ୍ରବର୍ତ୍ତନ୍ତେ, ତମ୍ ଆଚାର୍ଯ୍ୟଂ ସନ୍ତଂ ପ୍ରଚକ୍ଷତେ କଥୟନ୍ତି ।। ୧୪।।

– ସଂସାରରୂପୀ ଅନ୍ଧକାରକୁ ନଷ୍ଟ କରିବା ପାଇଁ ଯାହାଙ୍କର ବାଣୀ ଶରତ୍‌କାଳୀନ ଚନ୍ଦ୍ରମା ତୁଲ୍ୟ କାର୍ଯ୍ୟ କରିଥାଏ, (ବିଦ୍ୱାନ୍) ତାଙ୍କୁ ଆଚାର୍ଯ୍ୟ କହିଥାନ୍ତି ।। ୧୪।।

**ଦଦାତି ଯଃ ପତିଜ୍ଞାନଂ ଜଗନ୍ମାୟାନିବର୍ତ୍ତକମ୍ ।**
**ଅଦ୍ୱୈତବାସନୋପାୟଂ ତମାଚାର୍ଯ୍ୟବରଂ ବିଦୁଃ ।। ୧୫।।**

---

୧୯୩. 'ଅନୁବିଦ୍ଧମିବ ଜ୍ଞାନଂ ସର୍ବଂ ଶବ୍ଦେନ ଭାସତେ' – ଇତି ଶ୍ଳୋକୋତ୍ତରାର୍ଦ୍ଧମ୍ । (ବାକ୍ୟପ. ୧/୧୨୩)

୧୯୪. ତୈ. ଉ., ୧/୨-୩

୧୯୫. ତୈ. ଉ., ୧୧/୧

ଯୋ ଜଗନ୍ମାୟାନିବର୍ତ୍ତକଂ ପ୍ରାପଞ୍ଚିକଭେଦଭ୍ରାନ୍ତିନିବର୍ତ୍ତକଂ ପତିଜ୍ଞାନମ୍, 'ପତିଂ ବିଶ୍ୱସ୍ୟାତ୍ମେଶ୍ୱରଂ ଶାଶ୍ୱତଂ ଶିବମଚ୍ୟୁତମ୍'[୧୯୬] ଇତି ନାରାୟଣୋପନିଷଦ୍ ପ୍ରସିଦ୍ଧସ୍ୱାତ୍ମା-ଭିନ୍ନଶିବଜ୍ଞାନଂ ଦଦାତି ପ୍ରକାଶୟତି, ତମ୍ ଆଚାର୍ଯ୍ୟବରମ୍ ଆଚାର୍ଯ୍ୟଶ୍ରେଷ୍ଠଂ ସନ୍ତଂ ବିଦୁଃ, ଜାନନ୍ତୀତ୍ୟର୍ଥଃ ।। ୧୫ ।।

– ଯିଏ ସଂସାରର ମାୟାକୁ ଦୂର କରୁଥିବା ପତିଜ୍ଞାନ ଦିଅନ୍ତି, ଅଦ୍ୱୈତଜ୍ଞାନର ଉପାୟଭୂତ ସେହି ମନୁଷ୍ୟଙ୍କୁ ଆଚାର୍ଯ୍ୟ ବୋଲି ଜାଣନ୍ତି ।। ୧୫ ।।

ଅଥ ଶିବାଦ୍ୱୈତଜ୍ଞାନସମ୍ପନ୍ନଃ ସନ୍ ଶିଷ୍ୟସନ୍ଦେହବାରକ ଏବ ଗୁରୁଃ ଶ୍ରେଷ୍ଠ ଇତି ସୂତ୍ରଦ୍ୱୟେନାହ –

**ପୂର୍ବପକ୍ଷଂ ସମାଦାୟ ଜଗଦ୍‌ଭେଦବିକଳ୍ପନମ୍ ।**
**ଅଦ୍ୱୈତକୃତସିଦ୍ଧାନ୍ତୋ ଗୁରୁରେବ ଗୁଣାଧିକଃ ।। ୧୬ ।।**

ଜଗଦ୍‌ଭେଦବିକଳ୍ପନଂ ପ୍ରାପଞ୍ଚିକଭେଦଦ୍ୱୈବିଧବିଶିଷ୍ଟଂ ପୂର୍ବପକ୍ଷଂ ସମାଦାୟ ଅଙ୍ଗୀକୃତ୍ୟ ଅଦ୍ୱୈତକୃତସିଦ୍ଧାନ୍ତବାନେଷ ଗୁରୁଃ ଶିକ୍ଷାଗୁରୁରେବ ଗୁଣାଧିକଃ ଶ୍ରେଷ୍ଠ ଇତ୍ୟର୍ଥଃ ।। ୧୬ ।।

– ଜଗଦ୍ ବିଷୟକ ଭେଦର ବିକଳ୍ପନାକୁ ପୂର୍ବପକ୍ଷ ଭାବରେ ସ୍ୱୀକାର କରି ସିଦ୍ଧାନ୍ତ ପକ୍ଷ ଭାବରେ ଯିଏ ଅଦ୍ୱୈତବାଦକୁ ସ୍ଥାପିତ କରେ, ସେହି ଗୁରୁ ଗୁଣାଧିକ ଅର୍ଥାତ୍ ଶ୍ରେଷ୍ଠ ଅଟେ ।। ୧୬ ।।

**ସନ୍ଦେହବନସନ୍ଦୋହସମୁଚ୍ଛେଦକୁଠାରିକା ।**
**ଯତ୍ ସୂକ୍ତିଧାରା ବିମଳା ସ ଗୁରୂଣାଂ ଶିଖମଣିଃ ।। ୧୭ ।।**

ବିମଳା ନିର୍ମଳା ଯତ୍‌ସୂକ୍ତିଧାରା ଯସ୍ୟ ଗୁରୋରୁପଦେଶବାକ୍ୟଧାରା ସନ୍ଦେହବନ ସନ୍ଦୋହସମୁଚ୍ଛେଦକୁଠାରିକା ସଂଶୟାରଣ୍ୟସମୁଚ୍ଛେଦପରଶୁଃ, ସ ଗୁରୂଣାଂ ଶିଖାମଣିଃ ଶ୍ରେଷ୍ଠ ଇତ୍ୟର୍ଥଃ ।। ୧୭ ।।

– ଯେଉଁ ବ୍ୟକ୍ତିର ନିର୍ମଳ ସୂକ୍ତିଧାରା ସନ୍ଦେହରୂପୀ ଜଙ୍ଗଲ ସମୂହକୁ କାଟିବା ପାଇଁ କୁରାଢ଼ୀ ପରି, ସେ ଗୁରୁମାନଙ୍କର ଶିଖାମଣି ଅଟେ ।। ୧୭ ।।

ଅଥୈମମେବାର୍ଥଂ ବିଶେଷୟତି ସୂତ୍ରଦ୍ୱୟେନ –

**ଯତ୍‌ସୂକ୍ତିଦର୍ପଣାଭୋଗେ ନିର୍ମଳେ ଦୃଶ୍ୟତେ ସଦା ।**
**ମୋକ୍ଷଶ୍ରୀର୍ବିମ୍ବରୂପେଣ ସ ଗୁରୁର୍ଭବତାରକଃ ।। ୧୮ ।।**

---

୧୯୬. ନା. ଉ., ୧୩/୧

ନିର୍ମଲେ ଯସ୍ୟୋପଦେଶୋକ୍ତିଦର୍ପଣମଣ୍ଡଲେ ମୋକ୍ଷଲକ୍ଷ୍ମୀର୍ବିମ୍ବରୂପେଣ ପ୍ରତିବିମ୍ବ-ରୂପେଣତ୍ୟର୍ଥଃ, ଦୃଶ୍ୟତେ ପ୍ରକାଶତେ, ସ ଗୁରୁର୍ଭବତାଽଙ୍କଃ ସଂସାରାର୍ଣବତାରକ ଇତ୍ୟର୍ଥଃ ।। ୧୮ ।।

– ଯାହାର ନିର୍ମଳ ସୂକ୍ତିରୂପୀ ଦର୍ପଣର ବିସ୍ତାରରେ ମୋକ୍ଷଲକ୍ଷ୍ମୀ ସଦା ବିମ୍ବରୂପରେ ଦେଖା ଯାଆନ୍ତି, ସେହି ଗୁରୁ ସଂସାରରୁ ପାର କରିବାବାଲା ହୋଇଥାନ୍ତି ।। ୧୮ ।।

ଅଥ ପ୍ରକାରାନ୍ତରେଣାହ –

**ଶିଷ୍ୟାଣାଂ ହୃଦୟାଲେଖ୍ୟଂ ପ୍ରଦ୍ୟୋତୟତି ଯଃ ସ୍ୱୟମ୍ ।**
**ଜ୍ଞାନଦୀପିକୟାଽନେନ ଗୁରୁଣା କଃ ସମୋ ଭବେତ୍ ।। ୧୯ ।।**

ଯଃ ଶ୍ରୀଗୁରୁଃ ଶିଷ୍ୟାଣାଂ ହୃଦୟାଲେଖ୍ୟଂ ହୃତ୍କମଳସ୍ଥ ନିଜରୂପଚିତ୍ରଂ ଜ୍ଞାନଦୀପିକୟା ଜ୍ଞାନଦୀପେନ ପ୍ରଦ୍ୟୋତୟତି ପ୍ରକାଶୟତି ଅନେନ ଗୁରୁଣା ଶିକ୍ଷାଗୁରୁଣା କଃ ସମୋ ଭବେତ୍, ନ କୋଽପି ସମ ଇତ୍ୟର୍ଥଃ ।। ୧୯ ।।

– ଯିଏ ସ୍ୱୟଂ ନିଜର ଜ୍ଞାନଦୀପରେ ଶିଷ୍ୟଙ୍କର ହୃଦୟଚିତ୍ରକୁ ପ୍ରକାଶିତ କରିଥାନ୍ତି (ଅର୍ଥାତ୍ ଚିତ୍ତକୁ ନିର୍ମଳ କରି ସେଥିରେ ନିଜ ସ୍ୱରୂପ ଶିବଙ୍କର ପ୍ରକାଶ କରାଇଥାନ୍ତି), ତାଙ୍କ ପରି ଅନ୍ୟ କିଏ ? ଅର୍ଥାତ୍ କେହି ନାହିଁ ।। ୧୯ ।।

ଅଥୈତାଦୃଶଗୁରୁରସ୍ତି ବେତ୍ୟତ୍ରାସ୍ତି ଦୁର୍ଲଭ ଇତ୍ୟୁକ୍ତ୍ୱା ଶିକ୍ଷାଗୁରୁସ୍ଥଳଂ ସମାପୟତି –

**ପରମାଦ୍ୱୈତବିଜ୍ଞାନପରମୌଷଧିଦାନତଃ ।**
**ସଂସାରରୋଗନିର୍ମାଥୀ ଦେଶିକଃ କେନ ଲଭ୍ୟତେ ।। ୨୦ ।।**

ଶିବକାରୁଣ୍ୟରହିତେନ କେନାପି ନ ଲଭ୍ୟତ ଇତ୍ୟର୍ଥଃ ।। ୨୦ ।।

– ପରମ ଅଦ୍ୱୈତବିଜ୍ଞାନରୂପୀ ପରମ ଔଷଧି ଦାନରେ ସଂସାରରୂପୀ ରୋଗକୁ ନଷ୍ଟ କରୁଥିବା ଆଚାର୍ଯ୍ୟ କାହାକୁ ମିଳେ ? ଅର୍ଥାତ୍ ଶିବଙ୍କର କରୁଣାରେ ହିଁ ଏପରି ଗୁରୁଙ୍କର ଉପଲବ୍ଧି ହୋଇଥାଏ ।। ୨୦ ।।

**ଇତି ଶିକ୍ଷାଗୁରୁସ୍ଥଳମ୍**

## ଅଥ ଜ୍ଞାନଗୁରୁସ୍ଥଳମ୍

ଅଥ – ଶିବରୂପାନୁସନ୍ଧାୟି ଜ୍ଞାନଂ ଯେନୋପଦିଶ୍ୟତେ ।
ମୁମୁକ୍ଷୋର୍ମୋକ୍ଷ ସିଦ୍ଧ୍ୟର୍ଥଂ ସ ଜ୍ଞାନଗୁରୁରୁଚ୍ୟତେ ।।

ଇତି ବାତୁଳୋତ୍ତରବଚନାନୁସାରେଣ ଜ୍ଞାନଗୁରୁସ୍ଥଳଂ ନିରୂପୟତି –

**ଉପଦେଷ୍ଟୋପଦେଶାନାଂ ସଂଶୟଚ୍ଛେଦକାରକଃ ।**

**ସମ୍ୟଗ୍‌ଜ୍ଞାନପ୍ରଦଃ ସାକ୍ଷାଦେଷ ଜ୍ଞାନଗୁରୁଃ ସ୍ମୃତଃ ।। ୨୧ ।।**

ଉପଦେଶାନାଂ ରହସ୍ୟାର୍ଥାନାମ୍ ଉପଦେଷ୍ଟା ଉପଦେଶକୃତ୍ ସଂଶୟଚ୍ଛେଦକାରକଃ ଶିଷ୍ୟସନ୍ଦେହବାରକ ଏଷ ଶିକ୍ଷାଗୁରୁରେବ ସମ୍ୟକ୍ ସାକ୍ଷାଦ୍ ଜ୍ଞାନପ୍ରଦଃ ପ୍ରତ୍ୟକ୍ଷୀଭୂତ-ଶିବୋ ଜ୍ଞାନପ୍ରଦଃ ସନ୍ ଜ୍ଞାନଗୁରୁରିତି ସ୍ମୃତ ଇତ୍ୟର୍ଥଃ ।। ୨୧ ।।

– (ଜ୍ଞାନଗୁରୁସ୍ଥଳ ବର୍ଣ୍ଣନ) – (ଶିବଯୋଗର) ଉପଦେଶର ଉପଦେଷ୍ଟା, (ଶିଷ୍ୟର) ସଂଶୟକୁ ଦୂର କରୁଥିବା, ସମୀଚୀନ ଜ୍ଞାନକୁ ଦେଉଥିବା (ବ୍ୟକ୍ତି) ସାକ୍ଷାଦ୍ ଜ୍ଞାନଗୁରୁ କୁହାଯାଏ ।। ୨୧ ।।

ନନୁ ଶିବଜ୍ଞାନଂ କୀଦୃଶଂ ତତ୍‌କଥଂ ପ୍ରତ୍ୟକ୍ଷୀକରୋତୀତ୍ୟତ୍ରାହ –

**ନିରସ୍ତବିଶ୍ୱସମ୍ଭେଦଂ ନିର୍ବିକାରଂ ଚିଦମ୍ବରମ୍ ।**

**ସାକ୍ଷାତ୍‌କରୋତି ଯୋ ଯୁକ୍ତ୍ୟା ସ ଜ୍ଞାନଗୁରୁରୁଚ୍ୟତେ ।। ୨୨ ।।**

ନିରସ୍ତବିଶ୍ୱସମ୍ଭେଦଂ ନ କିଞ୍ଚିଦବେଦିଷମିତି ଶୂନ୍ୟପ୍ରତୀତିବଲାନ୍ନିରାକୃତବିଶ୍ୱଭେଦଂ ବିକାରରହିତଂ ଚିଦାକାଶଂ ଚିଦ୍‌ବ୍ୟୋମ ଯୁକ୍ତ୍ୟା ସ୍ଫୁଟତରଭାସମାନନୀଳଖାଦି-ପ୍ରମାତ୍ରନ୍ୱେଷଣଦ୍ୱାରା ପାରମାର୍ଥିକପ୍ରମାତୃଲାଭ ଇହୋପଦିଶ୍ୟତ ଇତି ଶିବାଦ୍ୱୈତ ଶାସ୍ତ୍ରୋକ୍ତସ୍ୱାନୁଭବଯୁକ୍ତ୍ୟା ଯଃ ପ୍ରତ୍ୟକ୍ଷୀକରୋତି, ସ ଜ୍ଞାନଗୁରୁରିତ୍ୟର୍ଥଃ ।। ୨୨ ।।

– ବିଶ୍ୱର ଭେଦକୁ ନିରାସ କରୁଥିବା ନିର୍ବିକାର ଚିଦାକାଶର ଯିଏ (ଅଦ୍ୱୈତ ଶାସ୍ତ୍ରର) ଯୁକ୍ତିଦ୍ୱାରା ପ୍ରତ୍ୟକ୍ଷ କରନ୍ତି, ସେ ଜ୍ଞାନଗୁରୁ କୁହାଯାଆନ୍ତି ।। ୨୨ ।।

ଅଥ ଶିବଜ୍ଞାନଂ ପ୍ରସ୍ତୌତି ସୂତ୍ରଦ୍ୱୟେନ –

**କଳଙ୍କବାନସୌ ଚନ୍ଦ୍ରଃ କ୍ଷୟବୃଦ୍ଧିପରିପ୍ଲୁତଃ ।**

**ନିଷ୍କଳଙ୍କସ୍ଥିତୋ ଜ୍ଞାନଚନ୍ଦ୍ରମା ନିର୍ବିକାରବାନ୍ ।। ୨୩ ।।**

କ୍ଷୟବୃଦ୍ଧିପରିପ୍ଲୁତଃ କ୍ଷୟବୃଦ୍ଧିପୀଡ୍ୟମାନଃ, ଅସୌ ଚନ୍ଦ୍ରଃ କଳଙ୍କବାନ୍ । ନିର୍ବିକାରବାନ୍ ବିକାରରହିତୋ ଜ୍ଞାନଚନ୍ଦ୍ରମାଃ ଚିଚ୍ଚନ୍ଦ୍ରଃ, ନିଷ୍କଳଙ୍କସ୍ଥିତଃ କଳଙ୍କ ରହିତଃ ସନ୍ ତିଷ୍ଠତୀତ୍ୟର୍ଥଃ ।। ୨୩ ।।

– ଏହି (ଆକାଶରେ ଦୃଶ୍ୟମାନ) ଚନ୍ଦ୍ରମା କଳଙ୍କଯୁକ୍ତ ତଥା ହ୍ରାସ ଏବଂ ବୃଦ୍ଧିରେ ପୀଡ଼ିତ । କିନ୍ତୁ ଜ୍ଞାନରୂପୀ ଚନ୍ଦ୍ରମା ନିଷ୍କଳଙ୍କ ଏବଂ ନିର୍ବିକାର ଅଟେ ।। ୨୩ ।।

**ପାର୍ଶ୍ୱସ୍ଥତିମିରଂ ହନ୍ତି ପ୍ରଦୀପୋ ମଣିନିର୍ମିତଃ ।**

**ସର୍ବଗାମି ତମୋ ହନ୍ତି ବୋଧଦୀପୋ ନିରଙ୍କୁଶଃ ।। ୨୪ ।।**

ମଣିନିର୍ମିତୋ ରତ୍ନନିର୍ମିତୋ ଦୀପଃ ପାର୍ଶ୍ୱସ୍ଥାନ୍ଧକାରଂ ନିବାରୟତି,

ନିରଙ୍କୁଶୋଦ୍ଧନର୍ଗଳୋ ବୋଧଦୀପଶ୍ଚିଦ୍ପ୍ରଦୀପଃ ସର୍ବଗାମି ତମଃ ସର୍ବତ୍ର ବିଦ୍ୟମାନଂ ତମୋ ନିବାରୟତୀତ୍ୟର୍ଥଃ ।। ୨୪।।

– ମଣି ନିର୍ମିତ ଦୀପ ପାଖରେ ଥିବା ଅନ୍ଧକାରକୁ ଦୂର କରେ, କିନ୍ତୁ ନିର୍ବାଧ ଜ୍ଞାନରୂପୀ ଦୀପ ସର୍ବବ୍ୟାପୀ ଅନ୍ଧକାରକୁ ଦୂର କରିଥାଏ ।। ୨୪।।

ଅଥ ଶିବଜ୍ଞାନୋପଦେଶତତ୍ପରଂ ଶ୍ରୀଗୁରୁଂ ସୂତ୍ରଦ୍ୱୟେନ ପ୍ରସ୍ତୌତି –

**ସର୍ବାର୍ଥସାଧକଜ୍ଞାନବିଶେଷାଦେଶତତ୍ପରଃ ।**
**ଜ୍ଞାନାଚାର୍ଯ୍ୟଃ ସମସ୍ତାନାମନୁଗ୍ରହକରଃ ଶିବଃ ।। ୨୫।।**

ଭୋଗମୋକ୍ଷଲକ୍ଷଣସର୍ବପ୍ରୟୋଜନସାଧକଶିବଜ୍ଞାନବିଶେଷୋପଦେଶାସକ୍ତୋ ଜ୍ଞାନଗୁରୁରେବ ସମସ୍ତାନାଂ ମୁମୁକ୍ଷୂଣାମ୍ ଅନୁଗ୍ରହକରଃ, ସାକ୍ଷାଚ୍ଛିବ ଇତ୍ୟର୍ଥଃ ।। ୨୫।।

– ସମ୍ପୂର୍ଣ୍ଣ ଅର୍ଥର ସାଧନଭୂତ ବିଶେଷ ଜ୍ଞାନର ଦାନରେ ତତ୍ପର ଏବଂ ସମସ୍ତଙ୍କ ଉପରେ କୃପା କରୁଥିବା ଜ୍ଞାନାଚାର୍ଯ୍ୟ ସାକ୍ଷାତ୍ ଶିବ ଅଟନ୍ତି ।। ୨୫।।

**କଟାକ୍ଷଚନ୍ଦ୍ରମା ଯସ୍ୟ ଜ୍ଞାନସାଗରବର୍ଦ୍ଧନଃ ।**
**ସଂସାରତିମିରଚ୍ଛେଦୀ ସ ଗୁରୁର୍ଜ୍ଞାନପାରଗଃ ।। ୨୬।।**

ଯସ୍ୟାଚାର୍ଯ୍ୟସ୍ୟ କଟାକ୍ଷଚନ୍ଦ୍ରମାଃ ଶିବଜ୍ଞାନୋଦଧିବର୍ଦ୍ଧନଃ ସଂସାରତିମିରଚ୍ଛେଦୀ, ସ ଗୁରୁଃ ଶ୍ରୀଗୁରୁଃ, ଜ୍ଞାନପାରଗଃ ପରାପରଜ୍ଞାନପାରଙ୍ଗତ ଇତ୍ୟର୍ଥଃ ।। ୨୬।।

– ଯାହାଙ୍କର ଅନୁଗ୍ରହ କଟାକ୍ଷରୂପୀ ଚନ୍ଦ୍ରମା ଜ୍ଞାନରୂପୀ ସାଗରକୁ ବଢ଼ାଇଥାଏ, ସଂସାରରୂପୀ ଅନ୍ଧକାରର ନାଶ କରୁଥିବା ସେହି ଗୁରୁ ଜ୍ଞାନର ପାରଗାମୀ ହୋଇଥାନ୍ତି ।। ୨୬।।

ଅଥ ତମେବ ଗୁରୁଂ ଭାନୁତ୍ୱେନ ବର୍ଣ୍ଣୟନ୍ ତତୋଽପ୍ୟାଧିକ୍ୟଂ ପ୍ରତିପାଦୟତି –

**ବହିସ୍ତିମିରବିଚ୍ଛେତ୍ତା ଭାନୁରେଷ ପ୍ରକୀର୍ତ୍ତିତଃ ।**
**ବହିରନ୍ତସ୍ତମଚ୍ଛେଦୀ ବିଭୁର୍ଦେଶିକଭାସ୍କରଃ ।। ୨୭।।**

ଏଷ ଭାନୁଃ, ବହିସ୍ତିମିର ବିଚ୍ଛେତ୍ତା ବାହ୍ୟାନ୍ଧକାରନିବାରକଃ, ବିଭୁଃ ଚିଦ୍‌ବ୍ୟାପକୋ ଦେଶିକଭାସ୍କରୋ ଜ୍ଞାନାଚାର୍ଯ୍ୟସୂର୍ଯ୍ୟୋ ବହିରନ୍ତସ୍ତମଚ୍ଛେଦୀ, ନାୟଂ ଶିବ ଇତି ବିଷୟଗତମଜ୍ଞାନମ୍, ନାହଂ ଶିବ ଇତ୍ୟନ୍ତର୍ଗତାଜ୍ଞାନଂ ଚ ଭିନତ୍ତୀତି ପ୍ରକୀର୍ତ୍ତିତଃ ।। ୨୭।।

– ଏହା (ପ୍ରାକୃତିକ ସୂର୍ଯ୍ୟ) ବାହ୍ୟ ଅନ୍ଧକାରର ନାଶକ ଅଟେ କିନ୍ତୁ ଆଚାର୍ଯ୍ୟରୂପୀ ବ୍ୟାପକ-ସୂର୍ଯ୍ୟ ବାହ୍ୟ ଏବଂ ଆଭ୍ୟନ୍ତର ଉଭୟ ପ୍ରକାର ଅଜ୍ଞାନାନ୍ଧକାରର ନାଶ କରିଥାଏ ।। ୨୭।।

ବିଶେଷ – ଏହି ସଂସାର ଶିବଠାରୁ ଭିନ୍ନ ଅଟେ । ଏପରି ବିଚାର ବାହ୍ୟ ଅଜ୍ଞାନ ଅଟେ। ମୁଁ ଶିବଠାରୁ ଭିନ୍ନ ଅଟେ – ଏପରି ଭାବିବା ଆନ୍ତର ଅଜ୍ଞାନ ଅଟେ ।

ଅଥ ଶିବବେଦକଂ ଶିବଜ୍ଞାନଂ ସୂଚୟିତ୍ୱା ଜ୍ଞାନଗୁରୁସ୍ଥଳଂ ସୂତ୍ରଦ୍ୱୟେନ ସମାପୟତି –

**କଟାକ୍ଷଲେଶମାତ୍ରେଣ ବିନା ଧ୍ୟାନାଦିକଳ୍ପନମ୍ ।**

**ଶିବତ୍ୱଂ ଭାବୟେଦ୍ୟତ୍ର ସ ବେଦଃ ଶାମ୍ଭବୋ ମତଃ ।। ୨୮ ।।**

ଧ୍ୟାନ ଧାରଣାଦି ସଙ୍କଳ୍ପଂ ବିନା ଶ୍ରୀଗୁରୋଃ କୃପାଦ୍ଵପାଙ୍ଗଦର୍ଶନମାତ୍ରେଣ ଶିବତ୍ୱଂ ଭାବୟେତ୍ ସ୍ଫୁଟଂ ଭବେତ୍, ସ ବେଦଃ ଶାମ୍ଭବ ଇତି ମତଃ ସମ୍ମତ ଇତ୍ୟର୍ଥଃ ।। ୨୮ ।।

– ଯାହାଦ୍ୱାରା ଧ୍ୟାନ ଆଦି କଳ୍ପନା ବିନା କେବଳ କୃପାକଟାକ୍ଷରେ ଶିବତ୍ୱର ଭାବନା ଉତ୍ପନ୍ନ ହୋଇଯାଏ, ତାହା ଶାମ୍ଭବଜ୍ଞାନ କୁହାଯାଏ ।। ୨୮ ।।

**ଶିବବେଦକରେ ଜ୍ଞାନେ ଦତ୍ତେ ଯେନ ସୁନିର୍ମଳେ ।**

**ଜୀବନ୍ମୁକ୍ତୋ ଭବେଚ୍ଛିଷ୍ୟଃ ସ ଗୁରୁର୍ଜ୍ଞାନସାଗରଃ ।। ୨୯ ।।**

ଯେନ ଶ୍ରୀଗୁରୁଣା ଶିବବେଦକରେ ସ୍ୱାତ୍ମଶିବତାସ୍ଫୁଟୀକରଣପ୍ରବୀଣେ ନିର୍ମଳେ ଶିବଜ୍ଞାନେ ଦତ୍ତେ ସତି ଶିଷ୍ୟୋ ଜୀବନ୍ନପି ମୁକ୍ତଃ ସ୍ୟାତ୍, ସ ଗୁରୁଃ ଶିବଜ୍ଞାନସାଗର ଇତ୍ୟର୍ଥଃ ।। ୨୯ ।।

– ଯାହାଦ୍ୱାରା ଶିବଭାବନା ଉତ୍ପନ୍ନ କରୁଥିବା ନିର୍ମଳଜ୍ଞାନ ଦିଆଯିବା ଦ୍ୱାରା ଶିଷ୍ୟ ଜୀବନ୍ମୁକ୍ତ ହୋଇଯାଏ, ସେହି ଗୁରୁ ଜ୍ଞାନର ସାଗର ଅଟନ୍ତି ।। ୨୯ ।।

ଇତି ଜ୍ଞାନଗୁରୁ ସ୍ଥଳମ୍

## ଅଥ କ୍ରିୟାଲିଙ୍ଗସ୍ଥଳମ୍

ଅଥ 'ଇଷ୍ଟମୂର୍ଜଂ ତପସାନୁଯଚ୍ଛତି' ଇତ୍ୟାର୍ଥଣୀ ଶ୍ରୁତିଃ, ଏତଦ୍ୱିବରଣରୂପେଣ –

ସକଳଂ ଦୃକ୍କଳାଗ୍ରାହ୍ୟମିଷ୍ଟଲିଙ୍ଗସ୍ଥଳଂ ମହତ୍ ।
ଇଷ୍ଟାବାପ୍ତିକରଂ ସାକ୍ଷାଦନିଷ୍ଟପରିହାରକମ୍ ।।
ଇଷ୍ଟମୂର୍ଜଂ ସ୍ୱଭକ୍ତାନାମନୁଯଚ୍ଛତି ସର୍ବଦା ।
ଇଷ୍ଟଲିଙ୍ଗମିତି ପ୍ରାହ ତସ୍ମାଦାଥର୍ବଣୀ ଶ୍ରୁତି ।।

ଇତି ବାତୁଳତନ୍ତ୍ରବଚନେନ ଜ୍ଞାନଗୁରୁପଦିଷ୍ଟକ୍ରିୟା ଯତ୍ର ଲୟଂ ଗଚ୍ଛତି, ତତ୍ କ୍ରିୟାଲିଙ୍ଗ–ସ୍ଥଳମିତି ସପ୍ତଭିଃ ସୂତ୍ରୈଃ ପ୍ରତିପାଦୟତି –

**ଗୁରୋର୍ବିଜ୍ଞାନଯୋଗେନ କ୍ରିୟା ଯତ୍ର ବିଲୀୟତେ ।**

**ତତ୍କ୍ରିୟା ଲିଙ୍ଗମାଖ୍ୟାତଂ ସର୍ବୈରାଗମପାରଗୈଃ ।। ୩୦ ।।**

ଗୁରୋଃ ଜ୍ଞାନଗୁରୋଃ, ବିଜ୍ଞାନଯୋଗେନ ବିଶେଷଜ୍ଞାନଯୋଗେନ କ୍ରିୟା ଯତ୍ର ଯସ୍ମିନ୍ନଧିକରଣେ ବିଲୀୟତେ ତତ୍ କ୍ରିୟାଲିଙ୍ଗଂ କ୍ରିୟାର୍ଥକମିଷ୍ଟଲିଙ୍ଗମିତ୍ୟାଗମପାରଗୈଃ ଶିବସିଦ୍ଧାନ୍ତପାରଙ୍ଗତୈଃ ସର୍ବୈର୍ବୀରଶୈବାଚାର୍ଯ୍ୟୈରାଖ୍ୟାତଂ ପ୍ରୋକ୍ତମିତ୍ୟର୍ଥଃ ।। ୩୦ ।।

– (କ୍ରିୟାଲିଙ୍ଗସ୍ଥଳ ବର୍ଣ୍ଣନ) – ଗୁରୁଙ୍କର ବିଜ୍ଞାନ ଯୋଗରେ ଯାହାଙ୍କଠାରେ କ୍ରିୟା ଲୀନ ହୋଇଯାଏ, ସମସ୍ତ ଆଗମପାରଙ୍ଗ ତାଙ୍କୁ କ୍ରିୟାଲିଙ୍ଗ କହନ୍ତି ।। ୩୦ ।।

ନନୁ କିଂ ତତ୍‌ସ୍ୱରୂପମିତ୍ୟତ୍ରାହ –

**ପରାନନ୍ଦ ଚିଦାକାରଂ ପରବ୍ରହ୍ମୈବ କେବଲମ୍ ।**
**ଲିଙ୍ଗଂ ସଦ୍ରୂପତାପନ୍ନଂ ଲକ୍ଷ୍ୟତେ ବିଶ୍ୱସିଦ୍ଧୟେ ।। ୩୧ ।।**

ନିତ୍ୟାନନ୍ଦସ୍ୱରୂପଂ ସଦ୍ ଅନ୍ତର୍ମୁଖଜ୍ଞାନସ୍ୱରୂପଂ ସଦ୍ ଅସ୍ତିତାରୂପଂ ଗତଂ କେବଳଂ ପରବ୍ରହ୍ମୈବ ବିଶ୍ୱସିଦ୍ଧୟେ ସମସ୍ତସତ୍‌କ୍ରିୟାସିଦ୍ଧ୍ୟର୍ଥଂ ଲିଙ୍ଗମ୍ ଇଷ୍ଟଲିଙ୍ଗମିତି ଲକ୍ଷ୍ୟତ ଇତ୍ୟର୍ଥଃ ।। ୩୧ ।।

– ପରାନନ୍ଦ ଚିଦାକାର ତଥା କେବଳ ଅର୍ଥାତ୍ ଅଦ୍ୱିତୀୟ ପରବ୍ରହ୍ମ ବିଶ୍ୱର ରଚନା (ଅଥବା ସମ୍ପୂର୍ଣ୍ଣ କ୍ରିୟା)ର ସିଦ୍ଧି ପାଇଁ ସଦ୍‌ରୂପତା (ସ୍ଥୂଳରୂପତା) କୁ ପ୍ରାପ୍ତ ହେବାର ପ୍ରତୀତ ହୁଏ ।। ୩୧ ।।

ଅଥ ସା ସିଦ୍ଧିଃ କଥଂ ଭବତୀତ୍ୟତ୍ରାହ –

**ଲିଙ୍ଗମେବ ପରଂ ଜ୍ୟୋତିର୍ଭବତି ବ୍ରହ୍ମ କେବଲମ୍ ।**
**ତସ୍ମାତ୍ ତତ୍‌ପୂଜନାଦେବ ସର୍ବକର୍ମଫଲୋଦୟଃ ।। ୩୨ ।।**

ପରଂଜ୍ୟୋତିଃ ସ୍ୱରୂପଂ କେବଳଂ ପରବ୍ରହ୍ମୈବ କ୍ରିୟାର୍ଥଲିଙ୍ଗମ୍ । ତସ୍ମାତ୍ ତତ୍‌ପୂଜନାଦେବ ସର୍ବକର୍ମଫଲୋଦୟଃ ସକଲସତ୍‌କର୍ମଫଲାବିର୍ଭାବୋ ଭବତି (ଜାୟତ ଇତ୍ୟର୍ଥଃ) ।। ୩୨ ।।

– ପରଜ୍ୟୋତି କେବଳ ପରବ୍ରହ୍ମ ହିଁ ଲିଙ୍ଗ (ରୂପରେ ସ୍ଥିତ), ତେଣୁ ତାଙ୍କର ପୂଜାରେ ସମସ୍ତ କର୍ମଫଳର ଉଦୟ ହୋଇଥାଏ ।। ୩୨ ।।

ତସ୍ମାଲ୍ଲିଙ୍ଗମେବ ଶ୍ରେଷ୍ଠମିତ୍ୟାହ –

**ପରିତ୍ୟଜ୍ୟ କ୍ରିୟାଃ ସର୍ବା ଲିଙ୍ଗପୂଜୈକତତ୍‌ପରାଃ ।**
**ବର୍ତ୍ତନ୍ତେ ଯୋଗିନଃ ସର୍ବେ ତସ୍ମାଲ୍ଲିଙ୍ଗଂ ବିଶିଷ୍ୟତେ ।। ୩୩ ।।**

ସର୍ବେ ଯୋଗିନଃ ସନକାଦିସମସ୍ତଯୋଗିନଃ ସର୍ବାଃ କ୍ରିୟାଃ ସମସ୍ତା ଯୋଗାଦିକ୍ରିୟାଃ ପରିତ୍ୟଜ୍ୟ ଇଷ୍ଟଲିଙ୍ଗପୂଜୈକତତ୍‌ପରାଃ ସନ୍ତୋ ବର୍ତ୍ତନ୍ତେ, ତସ୍ମାଲ୍ଲିଙ୍ଗଂ କ୍ରିୟାଲିଙ୍ଗଂ ବିଶିଷ୍ୟତ ଇତ୍ୟର୍ଥଃ ।। ୩୩ ।।

– ସମସ୍ତ ଯୋଗୀଜନ ସମସ୍ତ କ୍ରିୟାକୁ ଛାଡ଼ି କେବଳ ଲିଙ୍ଗପୂଜାରେ ତତ୍ପର ହୁଅନ୍ତି । ତେଣୁ କ୍ରିୟାଲିଙ୍ଗ ଶ୍ରେଷ୍ଠ ଅଟେ ।। ୩୩।।

ନନୁ ସନକାଦୀନାଂ ଯଜ୍ଞାଦିକ୍ରିୟାପରିତ୍ୟାଗଃ କିଂ ନିବନ୍ଧନ ଇତ୍ୟତ୍ରାହ –

**ଯଜ୍ଞାଦୟଃ କ୍ରିୟାଃ ସର୍ବା ଲିଙ୍ଗପୂଜାଂଶସମ୍ମିତାଃ ।**

**ଇତି ଯତ୍ ପୂଜ୍ୟତେ ସିଦ୍ଧୈସ୍ତତ୍କ୍ରିୟାଲିଙ୍ଗମୁଚ୍ୟତେ ।। ୩୪।।**

ଯଜ୍ଞାଦୟଃ କ୍ରିୟାଃ ସର୍ବା ଲିଙ୍ଗପୂଜାଲେଶଭାଜିନ ଇତି ମତ୍ୱା ସନକାଦିଭିଃ ସିଦ୍ଧୈର୍ଯଲ୍ଲିଙ୍ଗଂ ପୂଜ୍ୟତେ, ତସ୍ମାତ୍ କ୍ରିୟାଲିଙ୍ଗଂ ସକଳକ୍ରିୟାର୍ଥଲିଙ୍ଗମିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୩୪।।

– 'ଯଜ୍ଞ ଆଦି ସମସ୍ତ କ୍ରିୟା ଲିଙ୍ଗପୂଜାର ଅଂଶମାତ୍ର ସମାନ' – ଏହି ଭାବନାରେ ସିଦ୍ଧଜନ ଯାହାଙ୍କର ପୂଜା କରନ୍ତି, ତାହା କ୍ରିୟାଲିଙ୍ଗ କୁହାଯାଏ ।। ୩୪।।

ତସ୍ମାଲ୍ଲିଙ୍ଗପୂଜା ସମ୍ପନ୍ନସ୍ୟ କାପି କ୍ରିୟା ମାସ୍ତିତ୍ୟାହ –

**କିଂ ଯଜ୍ଞୈରଗ୍ନିହୋତ୍ରାଦ୍ୟୈଃ କିଂ ତତୋଭିଶ୍ଚ ଦୁଷ୍କରୈଃ ।**

**ଲିଙ୍ଗାର୍ଚ୍ଚନରତିର୍ଯସ୍ୟ ସ ସିଦ୍ଧଃ ସର୍ବକର୍ମସୁ ।। ୩୫।।**

ସର୍ବକର୍ମସୁ ସକଳକର୍ମବିଷୟେ ସିଦ୍ଧଃ ସିଦ୍ଧିମାନିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୫।।

– ଅଗ୍ନିହୋତ୍ର ଆଦି ଯଜ୍ଞ ତଥା ଚାନ୍ଦ୍ରାୟଣ ଆଦି ଦୁଷ୍କର ତପସ୍ୟାର କ'ଣ ଆବଶ୍ୟକତା ? ଯାହାଙ୍କର ଲିଙ୍ଗାର୍ଚ୍ଚନରେ ରତି ଅଛି, ସେ ସମସ୍ତ କାର୍ଯ୍ୟରେ ସିଦ୍ଧ ହୁଅନ୍ତି ।। ୩୫।।

ଅଥ କିମୁ ବ୍ରହ୍ମାଦୟୋଽପୀଷ୍ଟଲିଙ୍ଗପୂଜାମହିମ୍ନୈବ ଜଗନ୍ନିର୍ମାଣାଦିକ୍ରିୟାସିଦ୍ଧିମନ୍ତଃ ସନ୍ତଃ ସ୍ୱ ସ୍ୱ ସ୍ଥାନେଷୁ ଲସନ୍ତୀତ୍ୟୁକ୍ତ୍ୱା କ୍ରିୟାଲିଙ୍ଗସ୍ଥଲଂ ସମାପୟତି –

**ବ୍ରହ୍ମବିଷ୍ଣ୍ୱାଦୟଃ ସର୍ବେ ବିବୁଧା ଲିଙ୍ଗମାଶ୍ରିତାଃ ।**

**ସିଦ୍ଧାଃ ସ୍ୱ ସ୍ୱ ପଦେ ଭାନ୍ତି ଜଗତନ୍ତ୍ରାଧିକାରିଣଃ ।। ୩୬।।**

ସିଦ୍ଧାଃ ପ୍ରସିଦ୍ଧାସ୍ତେତ୍ୟର୍ଥଃ । ଜଗତ୍ତନ୍ତ୍ରାଧିକାରିଣଃ ଜଗନ୍ନିର୍ମାଣାଦିକ୍ରିୟାଧିକାରିଣ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୬।।

– ବ୍ରହ୍ମା, ବିଷ୍ଣୁ ଆଦି ସମସ୍ତ ଦେବତା ଲିଙ୍ଗର ଆଶ୍ରିତ ହୋଇଥିବାରୁ ନିଜ ନିଜ ସ୍ଥାନରେ ସିଦ୍ଧ ଅର୍ଥାତ୍ ସ୍ଥିତ ଅଟନ୍ତି ତଥା ଜଗତର ତନ୍ତ୍ର ଅର୍ଥାତ୍ ସୃଜନ ଆଦିର ଅଧିକାରୀ ବ୍ରହ୍ମା, ବିଷ୍ଣୁ ଆଦି ସମସ୍ତ ଦେବତା ଲିଙ୍ଗ ଉପରେ ଆଶ୍ରିତ ହୋଇ ନିଜ ନିଜ ପଦରେ ଦେଦୀପ୍ୟମାନ ହୋଇଛନ୍ତି ।। ୩୬।।

**ଇତି କ୍ରିୟାଲିଙ୍ଗସ୍ଥଲମ୍**

## ଅଥ ଭାବଲିଙ୍ଗସ୍ଥଲମ୍

ଅଥ – 'ଭାବଗ୍ରାହ୍ୟମନୀଡ଼୍ୟାଖ୍ୟଂ ଭାବାଭାବକରଂ ପରମ୍ । କଳାସର୍ଗକରଂ ଦେବଂ ଯେ ବିଦୁସ୍ତେ ଜହୁସ୍ତନୁମ୍ ।'[୧୯୭] ଇତି ଶ୍ୱେତାଶ୍ୱତରଶ୍ରୁତ୍ୟନୁସାରେଣ, 'ନିଷ୍କଳଂ ଭାବଲିଙ୍ଗଂ ସ୍ୟାଦ୍ ଭାବଗ୍ରାହ୍ୟଂ ପରାତ୍ପରମ୍' ଇତି ବାତୁଳତନ୍ତ୍ରବଚନାନୁସାରେଣ ଚ କ୍ରିୟେବ ଭାବୋଽପି ଯତ୍ର ଲୟଂ ଗଚ୍ଛତି, ତଦ୍ଭାବଲୟକାରଣୀଭୂତ ପ୍ରାଣଲିଙ୍ଗମିତି ଭାବଲିଙ୍ଗସ୍ଥଳଂ ନିରୂପୟତି –

**କ୍ରିୟା ଯଥା ଲୟଂ ପ୍ରାପ୍ତା ତଥା ଭାବୋଽପି ଲୀୟତେ ।**
**ଯତ୍ର ତଦ୍ ଦେଶିକୈରୁକ୍ତଂ ଭାବଲିଙ୍ଗମିତି ସ୍ଫୁଟମ୍ ।। ୩୭ ।।**

ଯଥା କ୍ରିୟାଲୟସ୍ଥାନଂ କ୍ରିୟାଲିଙ୍ଗଂ ତଥା ଭାବଲୟସ୍ଥାନଂ ଭାବଲିଙ୍ଗଂ ଭାବଲୟକାରଣୀଭୂତଂ ପ୍ରାଣଲିଙ୍ଗମିତି ଦେଶିକୈଃ ସ୍ଫୁଟମୁକ୍ତମିତ୍ୟର୍ଥଃ ।। ୩୭ ।।

– (ଭାବଲିଙ୍ଗସ୍ଥଳ ବର୍ଣ୍ଣନ) – ଯେପରି କ୍ରିୟା (କ୍ରିୟାଲିଙ୍ଗରେ) ଲୀନ ହୋଇଯାଏ, ସେପରି ଏଠାରେ ଭାବ ମଧ୍ୟ ଲୀନ ହୋଇଥାଏ । ତାହାକୁ ଆଚାର୍ଯ୍ୟଗଣ ସ୍ପଷ୍ଟ ଭାବଲିଙ୍ଗ କହିଥାନ୍ତି ।। ୩୭ ।।

ଅଥାନୟୋଃ କିଂ ବୈଶିଷ୍ଟ୍ୟମିତ୍ୟତ୍ର ଭାବଲିଙ୍ଗଂ ସୂତ୍ରଦ୍ୱୟେନ ବିଶେଷୟତି –

**ଭାବେନ ଗୃହ୍ୟତେ ଦେବୋ ଭଗବାନ୍ ପରମଃ ଶିବଃ ।**
**କିଂ ତେନ କ୍ରିୟତେ ତସ୍ୟ ନିତ୍ୟପୂର୍ଣ୍ଣୋ ହି ସ ସ୍ମୃତଃ ।। ୩୮ ।।**

ଭଗବାନ୍ ଷଡ୍ଗୁଣୈଶ୍ୱର୍ଯ୍ୟସମ୍ପନ୍ନଃ ପରମେଶ୍ୱରୋ ଭାବେନ ଗୃହ୍ୟତେ ନିର୍ମଳାନ୍ତଃ-କରଣବୃତ୍ତ୍ୟା ପ୍ରକାଶ୍ୟତ ଇତି ତେନ ବାହ୍ୟକ୍ରିୟାଲୟେନ କିଂ କିଂ ପ୍ରୟୋଜନମ୍, ନ କିଞ୍ଚିଦ୍ ପ୍ରୟୋଜନମିତ୍ୟର୍ଥଃ । କୁତ ଇତ୍ୟତ୍ରାହ – ସଃ ପରମେଶ୍ୱରୋ ହି ଯସ୍ମାଦ୍ କାରଣାନ୍ନିତ୍ୟପୂର୍ଣ୍ଣୋ ନିତ୍ୟତୃପ୍ତ ଇତି ସ୍ମୃତଃ, ତସ୍ମାଦ୍ କାରଣାଦ୍ କ୍ରିୟାପୂଜନେନ ପ୍ରୟୋଜନଂ ନାସ୍ତୀତ୍ୟର୍ଥଃ ।। ୩୮ ।।

– ଭଗବାନ୍ ପରମ ଶିବ ଭାବ (ଅର୍ଥାତ୍ ନିର୍ମଳ ହୃଦୟ ଭାବନା) ଦ୍ୱାରା ଉପଲବ୍ଧ ହୁଅନ୍ତି । ସେଥିରେ (ଅର୍ଥାତ୍ ବାହ୍ୟ ପୂଜାଦି) ତାଙ୍କର କ'ଣ ସମ୍ବନ୍ଧ ? ସେ ତ ନିତ୍ୟ, ପୂର୍ଣ୍ଣ କୁହାଯାଆନ୍ତି ।। ୩୮ ।।

**ଅଖଣ୍ଡପରମାନନ୍ଦବୋଧରୂପଃ ପରଃ ଶିବଃ ।**
**ଭକ୍ତାନାମୁପଚାରେଣ ଭାବଯୋଗାତ୍ ପ୍ରସୀଦତି ।। ୩୯ ।।**

ଅପରିଚ୍ଛିନ୍ନ ପରମାନନ୍ଦଚିଦ୍ରୂପଃ ପରମେଶ୍ୱରଃ ଶିବଭକ୍ତାନାଂ ଭକ୍ତିପୂର୍ବକମାନସୋ-

---

୧୯୭. ଶ୍ୱେ. ଉ., – ୫/୧୪

ପଚାରେଣ ଭାବଯୋଗାଦ୍ ମନସ୍ ସନ୍ନିବେଶାଦ୍ ପ୍ରସୀଦତି ପ୍ରସନ୍ନୋ ଭବତୀତି ଭାବଲିଙ୍ଗଂ ପ୍ରଶସ୍ତମିତି ଭାବଃ ।। ୩୯ ।।

– ପରମଶିବ ଅଖଣ୍ଡ, ପରମାନନ୍ଦ ଏବଂ ଜ୍ଞାନସ୍ୱରୂପ ଅଟନ୍ତି । ଭକ୍ତଙ୍କର ଉପଚାର (ଅର୍ଥାତ୍ ପୂଜନ ସାମଗ୍ରୀ) ଦ୍ୱାରା ସେ ଭାବ ହେତୁ ପ୍ରସନ୍ନ ହୁଅନ୍ତି ।। ୩୯ ।।

ତସ୍ମାଦ୍ ଭାବଲିଙ୍ଗମେବ ପ୍ରଶସ୍ତମିତି କଣ୍ଠୋକ୍ତ୍ୟୈବାହ –

**ମୃଚ୍ଛିଳାବିହିତାଲ୍ଲିଙ୍ଗାଦ୍ ଭାବଲିଙ୍ଗଂ ବିଶିଷ୍ୟତେ ।**
**ନିରସ୍ତସର୍ବଦୋଷତ୍ୱାଦ୍ ଜ୍ଞାନମାର୍ଗପ୍ରବେଶନାଦ୍ ।। ୪୦ ।।**

ମୃଚ୍ଛିଳାଦିନିର୍ମିତାଲ୍ଲିଙ୍ଗାଦ୍ ଭାବଲିଙ୍ଗଂ ଭାବଲୟକାରଣୀଭୂତପ୍ରାଣଲିଙ୍ଗଂ ବିଶିଷ୍ୟତେ ବିଶିଷ୍ଟଂ ଭବତି । କୁତ ଇତ୍ୟତ୍ରାହ – ନିରସ୍ତସର୍ବଦୋଷତ୍ୱାଦ୍ ଛେଦନଭେଦନାଦିଦୋଷରହିତତ୍ୱାଦ୍ ଜ୍ଞାନମାର୍ଗପ୍ରବେଶନାଦିତି ।। ୪୦ ।।

– ମାଟି ଏବଂ ପଥର ଲିଙ୍ଗ ଅପେକ୍ଷା ଭାବଲିଙ୍ଗ ବିଶିଷ୍ଟ ଅର୍ଥାତ୍ ଶ୍ରେଷ୍ଠ ଅଟେ କାରଣ ସମସ୍ତ ଦୋଷ ସେଥିରେ ନିରସ୍ତ ହୋଇଥାନ୍ତି ତଥା ତାହା (ଭକ୍ତଙ୍କର) ଜ୍ଞାନମାର୍ଗରେ ପ୍ରବେଶ କରିଥାଏ ।। ୪୦ ।।

ଅଥ ଭାବଲିଙ୍ଗିନଂ କଥୟତି –

**ବିହାୟ ବାହ୍ୟଲିଙ୍ଗାନି ଚିଲ୍ଲିଙ୍ଗଂ ମନସି ସ୍ମରନ୍ ।**
**ପୂଜୟେଦ୍ ଭାବପୁଷ୍ପୈର୍ଯୋ ଭାବଲିଙ୍ଗୀତି କଥ୍ୟତେ ।। ୪୧ ।।**

ଯୋ ମୃଚ୍ଛିଳାଦିନିର୍ମିତ ବାହ୍ୟଲିଙ୍ଗାନି ପରିତ୍ୟଜ୍ୟ 'ତଦ୍ ପ୍ରାଣେଷ୍ୱନ୍ତର୍ମନସୋ ଲିଙ୍ଗମାହୁଃ' ଇତ୍ୟାଥର୍ବଣଶ୍ରୁତିପ୍ରସିଦ୍ଧଚିନ୍ମୟପ୍ରାଣଲିଙ୍ଗଂ ମନସି ହୃଦ୍‌କମଳେ ସ୍ମରନ୍ ସନ୍ ଭାବପୁଷ୍ପୈଃ ଭାବକଳ୍ପିତାହିଂସାଦ୍ୟଷ୍ଟପୁଷ୍ପୈଃ ପୂଜୟେତ୍, ସ ଭାବଲିଙ୍ଗୀତି ଭାବଗୋଚରୀଭୂତ ପ୍ରାଣଲିଙ୍ଗବାନିତି କଥ୍ୟତ ଇତ୍ୟର୍ଥଃ ।। ୪୧ ।।

– ଯେଉଁ ଭକ୍ତ ବାହ୍ୟ ଲିଙ୍ଗକୁ ଛାଡ଼ି ଚିଦ୍‌ଲିଙ୍ଗକୁ ମନରେ ସ୍ମରଣ କରି ଭାବପୁଷ୍ପରେ ପୂଜା କରେ, ସେ ଭାବଲିଙ୍ଗୀ କୁହାଯାଏ ।। ୪୧ ।।

ଅଥ ତଦ୍‌ପ୍ରାଣଲିଙ୍ଗପୂଜକ ଏବ ଶିବଯୋଗୀତି କଥ୍ୟତେ –

**ମୂଳାଧାରେଽଥବା ଚିତ୍ତେ ଭ୍ରୂମଧ୍ୟେ ବା ମୁନିର୍ମଳମ୍ ।**
**ଦୀପାକାରଂ ଯଜନ୍ ଲିଙ୍ଗଂ ଭାବଦ୍ରବ୍ୟୈଃ ସ ଯୋଗବାନ୍ ।। ୪୨ ।।**

ମୂଳାଧାରେ ମୂଳକମଳେ ଅଥବା ଚିତ୍ତେ ମଧ୍ୟହୃଦୟେ ଭ୍ରୂମଧ୍ୟେ ଉର୍ଦ୍ଧ୍ୱହୃଦୟୋ ବା ଦୀପାକାରମ୍, 'ହୃଦୟକମଳମଧ୍ୟେ ଦୀପବଦ୍ବେଦସାରଂ ପ୍ରଣବମୟମତର୍କ୍ୟଂ ଯୋଗିଭିର୍ଧ୍ୟାନଗମ୍ୟମ୍' ଇତି ଯୋଗଶାସ୍ତ୍ରପ୍ରସିଦ୍ଧଦୀପୋଗମମ୍ ଅତ୍ୟନ୍ତନିର୍ମଳଂ ଲିଙ୍ଗଂ ପ୍ରାଣଲିଙ୍ଗଂ

ଭାବଦ୍ରବ୍ୟୈଃ ପୂର୍ବୋକ୍ତଭାବପୁଷ୍ପୈର୍ଯଃ ପୂଜୟେତ୍, ସ ଯୋଗବାନ୍ ଶିବଯୋଗବାନିତ୍ୟର୍ଥଃ ।। ୪୨।।

– ମୂଳାଧାର, ହୃଦୟ ଅଥବା ଭ୍ରୂମଧ୍ୟରେ ନିର୍ମଳ ଦୀପକଳିକା ଆକାରର ଲିଙ୍ଗର ଭାବଦ୍ରବ୍ୟରେ ଯିଏ ପୂଜା କରେ, ସେ ଶିବଯୋଗୀ ଅଟେ ।। ୪୨।।

ଅଥ ଭାବପୂଜାମେବ ବିଶେଷୟିତ୍ୱା ଶିବଯୋଗୀ କ୍ରିୟାଲିଙ୍ଗନିଷ୍ଠୋ ନେତି କଥୟତି –

**ସ୍ୱାନୁଭୂତିପ୍ରମାଣେନ ଜ୍ୟୋତିର୍ଲିଙ୍ଗେନ ସଂଯୁତଃ ।**
**ଶିଳାମୃଦ୍‌ଦାରୁସମ୍ଭୂତଂ ନ ଲିଙ୍ଗଂ ପୂଜୟତ୍ୟସୌ ।। ୪୩।।**

ଅସୌ ଶିବଯୋଗୀ ସ୍ୱାନୁଭୂତିପ୍ରମାଣେନ ଅହମସ୍ମୀତ୍ୟକର୍ମକସ୍ୱାନୁଭବପ୍ରମାଣେନ ଜ୍ୟୋତିର୍ଲିଙ୍ଗେନ ଚିନ୍ମୟପ୍ରାଣଲିଙ୍ଗେନ ସଂଯୁକ୍ତଃ ସନ୍ ପାଷାଣମୃତ୍‌କାଷ୍ଠନିର୍ମିତଂ ଲିଙ୍ଗଂ ନ ପୂଜୟେଦ୍ ନାର୍ଚ୍ଚୟତୀତ୍ୟର୍ଥଃ ।। ୪୩।।

– ଯିଏ ନିଜର ଅନୁଭବରେ ପ୍ରମାଣିତ ଜ୍ୟୋତିର୍ଲିଙ୍ଗରେ ଯୁକ୍ତ ହୁଏ, ସିଏ ପଥର, ମାଟି ଅଥବା କାଠର ଲିଙ୍ଗର ପୂଜା କରେ ନାହିଁ ।। ୪୩।।

ଅଥ ଭାବସିଦ୍ଧଜ୍ୟୋତିର୍ଲିଙ୍ଗପୂଜାଂ ବିଶିଷ୍ଟୀକୃତ୍ୟ ଭାବଲିଙ୍ଗସ୍ଥଳଂ ସମାପୟତି –

**କ୍ରିୟାରୂପା ତୁ ଯା ପୂଜା ସା ଜ୍ଞେୟା ସ୍ୱଳ୍ପସଂବିଦାମ୍ ।**
**ଅନ୍ତରା ଭାବପୂଜା ତୁ ଶିବସ୍ୟ ଜ୍ଞାନିନାଂ ମତା ।। ୪୪।।**

ଶିବସ୍ୟ ଶିବଲିଙ୍ଗସ୍ୟ କ୍ରିୟାରୂପା ତୁ ଯା ପୂଜା କର୍ମକାଣ୍ଡପ୍ରସିଦ୍ଧକ୍ରିୟାସ୍ୱରୂପିଣୀ ଯା ପୂଜାଽସ୍ତି, ସା ସ୍ୱଳ୍ପସଂବିଦାମ୍ ଅଜ୍ଞାନିନାମେବ ମତା ସମ୍ମତା ସତୀ ଜ୍ଞେୟା ଆନ୍ତରା ଭାବପୂଜା ତୁ ଜ୍ଞାନକାଣ୍ଡପ୍ରସିଦ୍ଧାନ୍ତଃପୂଜା ଜ୍ଞାନିନାଂ ପରିପୂର୍ଣ୍ଣଶିବଜ୍ଞାନିନାଂ ମତା ସମ୍ମତା ।। ୪୪।।

– ଶିବଙ୍କର ଯେଉଁ କ୍ରିୟାରୂପୀ (ବାହ୍ୟ) ପୂଜା ଅଛି, ତାହା ଅଳ୍ପଜ୍ଞାନୀ ଲୋକଙ୍କଦ୍ୱାରା କରାଯାଏ । ତାଙ୍କର ଆନ୍ତରିକ ଭାବପୂଜା ଜ୍ଞାନୀମାନଙ୍କର ପୂଜା ମନା ଯାଏ ।। ୪୪।।

### ଇତି ଭାବଲିଙ୍ଗସ୍ଥଳମ୍

### ଅଥ ଜ୍ଞାନଲିଙ୍ଗସ୍ଥଳମ୍

ଅଥ – 'ଅଚିନ୍ତ୍ୟଂ ଚାପ୍ରମେୟଂ ଚ ବ୍ୟକ୍ତାବ୍ୟକ୍ତଂ ପରଂ ଚ ଯତ୍ । ସୂକ୍ଷ୍ମାଦ୍ ସୂକ୍ଷ୍ମତରଂ ଜ୍ଞାନଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ' ଇତି ଶ୍ରୁତ୍ୟନୁସାରେଣ 'ପରାତ୍‌ପରଂ ତୁ ଯତ୍ ପ୍ରୋକ୍ତଂ ତୃପ୍ତିଲିଙ୍ଗଂ ତଦୁଚ୍ୟତେ । ଭାବନାତୀତମବ୍ୟକ୍ତଂ ପରଂ ବ୍ରହ୍ମ ଶିବାଭିଧମ୍' ଇତି ପ୍ରବୃତ୍ତବାତୁଳୋତ୍ତରବଚନାନୁସାରେଣ ଚ ଭାବଲିଙ୍ଗପ୍ରକାଶକଜ୍ଞାନଲୟସ୍ଥାନଂ ତୃପ୍ତିଲିଙ୍ଗାଗରପର୍ଯ୍ୟାୟଂ ଜ୍ଞାନଲିଙ୍ଗସ୍ଥଳଂ ନିରୂପୟତି –

**ତଦ୍‌ଭାବଜ୍ଞାପକଜ୍ଞାନଂ ଲୟଂ ଯତ୍ର ସମଶ୍ନୁତେ ।**
**ତଜ୍ ଜ୍ଞାନ ଲିଙ୍ଗମାଖ୍ୟାତଂ ଶିବତତ୍ତ୍ୱାର୍ଥକୋବିଦୈଃ ।। ୪୫ ।।**

ତଦ୍‌ଭାବଜ୍ଞାପକଜ୍ଞାନଂ ତଦ୍‌ଭାବଲିଙ୍ଗପ୍ରକାଶକଜ୍ଞାନଂ ଯତ୍ର ଲୟଂ ଗଚ୍ଛତି, ତଦ୍ ଜ୍ଞାନଲିଙ୍ଗଂ ଜ୍ଞାନାଶ୍ରୟୀଭୂତତୃପ୍ତିଲିଙ୍ଗମିତି ଶିବତତ୍ତ୍ୱରହସ୍ୟାର୍ଥବେଦିଭିର୍ବୀରଶୈବୈରାଖ୍ୟାତ-ମିତ୍ୟର୍ଥଃ ।। ୪୫ ।।

– (ଜ୍ଞାନଲିଙ୍ଗସ୍ଥଳ ବର୍ଣ୍ଣନ) – ସେହି (ଶିବ) ଭାବର ଜ୍ଞାପକ ଜ୍ଞାନ ଯାହାଠାରେ ଲୀନ ହୋଇଯାଏ, ଶିବତତ୍ତ୍ୱରୂପୀ ଅର୍ଥ (ଅଥବା ଶିବ ତତ୍ତ୍ୱର ଅର୍ଥ)କୁ ଜାଣିଥିବା ଲୋକ ତାଙ୍କୁ ଜ୍ଞାନଲିଙ୍ଗ କହନ୍ତି ।। ୪୫ ।।

ଅଥ ତଦେବ ବିଶଦୟତି –

**ତ୍ରିମୂର୍ତ୍ତିଭେଦନିର୍ମୁକ୍ତଂ ତ୍ରିଗୁଣାତୀତବୈଭବମ୍ ।**
**ବ୍ରହ୍ମ ଯଦ୍ ବୋଧତେ ତତ୍ତୁ ଜ୍ଞାନଲିଙ୍ଗମୁଦାହୃତମ୍ ।। ୪୬ ।।**

ବ୍ରହ୍ମବିଷ୍ଣୁରୁଦ୍ରଲକ୍ଷଣମୂର୍ତ୍ତିତ୍ରୟଭେଦରହିତଂ ସତ୍ତ୍ୱରଜସ୍ତମୋରୂପଗୁଣତ୍ରୟୋତ୍ତୀର୍ଣ୍ଣ-ତୁର୍ଯ୍ୟତୁର୍ଯ୍ୟାତୀତସମ୍ପତ୍ତିମଦ୍ ବ୍ରହ୍ମ ବୋଧତେ ଶ୍ରୁତିଗୁରୁତ୍ତ୍ୱାନୁଭବୈଃ ପ୍ରକାଶ୍ୟତେ, ତଜ୍ଜ୍ଞାନଲିଙ୍ଗଂ ଜ୍ଞାନସ୍ୟାଶ୍ରୟୀଭୂତତୃପ୍ତିଲିଙ୍ଗମିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୪୬ ।।

– (ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ରୂପୀ) ତ୍ରିମୂର୍ତ୍ତି ଭେଦରୁ ରହିତ (ସତ୍ତ୍ୱ, ରଜସ୍, ତମସ୍) ତିନିଗୁଣରୁ ଉର୍ଦ୍ଧ୍ୱ ବୈଭବବାଲା ଯେଉଁ ବ୍ରହ୍ମ ବତା ଯାଆନ୍ତି, ତାହା ଜ୍ଞାନଲିଙ୍ଗ କୁହାଯାଏ ।। ୪୬ ।।

ଅଥ ତଦ୍ ଜ୍ଞାନଲିଙ୍ଗଂ ସୂତ୍ରଦ୍ୱୟେନ ବିଶେଷୟତି –

**ସ୍ଥୂଳେ କ୍ରିୟାସମାପତ୍ତିଃ ସୂକ୍ଷ୍ମେ ଭାବସ୍ୟ ସମ୍ଭବଃ ।**
**ସ୍ଥୂଳସୂକ୍ଷ୍ମପଦାତୀତେ ଜ୍ଞାନମେବ ପରାତ୍ମନି ।। ୪୭ ।।**

ସ୍ଥୂଳେ ସ୍ଥୂଳରୂପେଷ୍ଟଲିଙ୍ଗେ କ୍ରିୟାରୂପପୂଜାସମ୍ପତ୍ତିଃ, ସୂକ୍ଷ୍ମେ ପ୍ରାଣଲିଙ୍ଗେ ଭାବୋଦ୍‌ଭବଃ, ନିର୍ମଲତ୍ତ୍ୱମିତ୍ୟର୍ଥଃ । ସ୍ଥୂଳସୂକ୍ଷ୍ମପଦାତୀତେ ପରାତ୍ମନି ତୃପ୍ତିଲିଙ୍ଗରୂପପରମାତ୍ମନି ଜ୍ଞାନମେବ ।। ୪୭ ।।

– ସ୍ଥୂଳ (ଲିଙ୍ଗ) ବିଷୟରେ କ୍ରିୟାର ସମାପତ୍ତି (ପ୍ରାପ୍ତି) ହୁଏ ଅର୍ଥାତ୍ କ୍ରିୟା କରିବାକୁ ପଡ଼େ । ସୂକ୍ଷ୍ମଲିଙ୍ଗ ସନ୍ଦର୍ଭରେ ଭାବମୟ ସାମଗ୍ରୀର ଆବଶ୍ୟକତା ହୁଏ । ଯାହା ସ୍ଥୂଳ ଏବଂ ସୂକ୍ଷ୍ମଉଭୟ ସ୍ତରରୁ ଉର୍ଦ୍ଧ୍ୱରେ ସେହି ପରମାତ୍ମାଙ୍କ ବିଷୟରେ ଜ୍ଞାନ ହିଁ (ପୂଜା ସମ୍ଭାର) ଅଟେ ।। ୪୭ ।।

ନନୁ ଉପାସନାର୍ଥଂ ସ୍ଥୂଳସୂକ୍ଷ୍ମରୂପାଣି ଶିବସ୍ୟାବଶ୍ୟମପେକ୍ଷଣୀୟାନୀତ୍ୟତ୍ରାହ -

**କଳ୍ପିତାନି ହି ରୂପାଣି ସ୍ଥୂଳାନି ପରମାତ୍ମନଃ ।**

**ସୂକ୍ଷ୍ମାଣ୍ୟପି ଚ ତୈଃ କିଂ ବା ପରବୋଧଂ ସମାଚରେତ୍ ।। ୪୮ ।।**

ପରମାତ୍ମନଃ ସ୍ଥୂଳସୂକ୍ଷ୍ମରୂପାଣାଂ ମାୟାକଳ୍ପିତତ୍ୱେନ କେବଲମୁମୁକ୍ଷୂଣାଂ ତୈଃ ପ୍ରୟୋଜନାଭାବାତ୍ ପରବୋଧଂ ପରବ୍ରହ୍ମମୟତୃପ୍ତିଲିଙ୍ଗମେବ ସମାଚରେତ୍ ଉତ୍କୃଷ୍ଟତ୍ୱେନ ଜାନୀୟାଦିତ୍ୟର୍ଥଃ ।। ୪୮ ।।

– ସ୍ଥୂଳ ଏବଂ ସୂକ୍ଷ୍ମ ଉଭୟ ପରମାତ୍ମାଙ୍କର ମାୟାଦ୍ୱାରା କଳ୍ପିତ ରୂପ ଅଟନ୍ତି। ତାଙ୍କଠାରୁ କ'ଣ ବା ଲାଭ ଅର୍ଥାତ୍ ସେମାନେ ଉଭୟ ମୋକ୍ଷସାଧନ ହୋଇପାରିବେ ନାହିଁ । ପରବୋଧରୂପକ ତୃପ୍ତିଲିଙ୍ଗକୁ ଆଚରଣରେ ରଖିବା ଉଚିତ୍ ଅର୍ଥାତ୍ ଜ୍ଞାନର ବିଷୟ କରିବା ଉଚିତ୍ ।। ୪୮ ।।

ଅଥ ଉତ୍କୃଷ୍ଟପରବୋଧାଭିଜ୍ଞ ଏବ ଜ୍ଞାନଲିଙ୍ଗୀତି କଥୟତି –

**ପରାତ୍ପରଂ ତୁ ଯଦ୍ ବ୍ରହ୍ମ ପରମାନନ୍ଦଲକ୍ଷଣମ୍ ।**

**ଶିବାଖ୍ୟଂ ଜ୍ଞାୟତେ ଯେନ ଜ୍ଞାନଲିଙ୍ଗୀତି କଥ୍ୟତେ ।। ୪୯ ।।**

ପରାତ୍ପରଂ ବିଶ୍ୱାପେକ୍ଷୟା ପରମୁତ୍କୃଷ୍ଟଶକ୍ତିତତ୍ତ୍ୱଂ ତଦାଶ୍ରୟତ୍ୱାତ୍ ତତୋଽପ୍ୟୁତ୍କୃଷ୍ଟଂ ପରମାନନ୍ଦଲକ୍ଷଣଂ ଶିବାଖ୍ୟଂ ଯତ୍ପରବ୍ରହ୍ମ, ତଦ୍ ଯେନ ଜ୍ଞାୟତେ, ସ ଜ୍ଞାନଲିଙ୍ଗୀତି ଭଣ୍ୟତ ଇତ୍ୟର୍ଥଃ ।। ୪୯ ।।

– ଯିଏ ପରାତ୍ପର ପରମାନନ୍ଦସ୍ୱରୂପ ଶିବ ନାମକ ବ୍ରହ୍ମଙ୍କୁ ଜାଣିଛି, ସେ ଜ୍ଞାନଲିଙ୍ଗୀ କୁହାଯାଏ ।। ୪୯ ।।

ଅଥ ଜ୍ଞାନଲିଙ୍ଗ୍ୟେବ ପରମୁକ୍ତ ଇତ୍ୟୁକ୍ତ୍ୱା ଜ୍ଞାନଲିଙ୍ଗସ୍ଥଳଂ ସମାପୟତି –

**ବାହ୍ୟକ୍ରିୟାଂ ପରିତ୍ୟଜ୍ୟ ଚିନ୍ତାମପି ଚ ମାନସୀମ୍ ।**

**ଅଖଣ୍ଡଜ୍ଞାନରୂପତ୍ୱଂ ଯୋ ଭଜେନ୍ମୁକ୍ତ ଏବ ସଃ ।। ୫୦ ।।**

ଯୋ ବାହ୍ୟକ୍ରିୟାମ୍ ଇଷ୍ଟଲିଙ୍ଗସମ୍ବନ୍ଧିନୀଂ ବାହ୍ୟକ୍ରିୟା ପୂଜାମ୍, ମାନସୀଂ ଚିନ୍ତାମଣି ଚ ପ୍ରାଣଲିଙ୍ଗ ସମ୍ବନ୍ଧିନୀମାନ୍ତରଧ୍ୟାନପୂଜାଂ ଚ ପରିତ୍ୟଜ୍ୟ ଅଖଣ୍ଡଜ୍ଞାନରୂପତ୍ୱଂ ପରିପୂର୍ଣ୍ଣତୃପ୍ତିଲିଙ୍ଗଂ ଭଜେତ୍, ସ ମୁକ୍ତ ଏବେତ୍ୟର୍ଥଃ ।। ୫୦ ।।

– ଯିଏ ବାହ୍ୟ କ୍ରିୟା ଏବଂ ମାନସ ଧ୍ୟାନକୁ ଛାଡ଼ି ଅଖଣ୍ଡ ଜ୍ଞାନ ରୂପତାର ଭଜନ ଅର୍ଥାତ୍ ସେବନ କରେ, ସେ ମୁକ୍ତ ହିଁ ଅଟେ ।। ୫୦ ।।

ଇତି ଜ୍ଞାନଲିଙ୍ଗସ୍ଥଳମ୍

## ଅଥ ସ୍ୱୟଂସ୍ଥଳମ୍

ଅଥ – ପରଂ ଜ୍ୟୋତିରୂପସମ୍ପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ । ସ ଉତ୍ତମଃ ପୁରୁଷସ୍ତତ୍ର ପର୍ଯେତି ଇତି ଛାନ୍ଦୋଗ୍ୟଶ୍ରୁତେଃ –

ପ୍ରାଣଲିଙ୍ଗପରିଜ୍ଞାନାନନ୍ଦଃ ସ ଶିବଲାଞ୍ଛନଃ ।
ବାହ୍ୟକର୍ମପରିତ୍ୟାଗୀ ସ ସ୍ୱୟଂ ଲିଙ୍ଗମୁଚ୍ୟତେ ।।

ଇତି ବାତୁଲୋତ୍ତରବଚନାଚ୍ଚ ଜ୍ଞାନଲିଙ୍ଗୈବ ସ୍ୱୟଂ ସ୍ଥଳ ସମ୍ପନ୍ନ ଇତି ନିରୂପୟତି –

**ତଦ୍‌ଭାବଜ୍ଞାପକଜ୍ଞାନଂ ଯତ୍ର ଜ୍ଞାନେ ଲୟଂ ବ୍ରଜେତ୍ ।**
**ତଦ୍ୱାନେଷ ସମାଖ୍ୟାତଃ ସ୍ୱାଭିଧାନୋ ମନୀଷିଭିଃ ।। ୫୧ ।।**

ତଦ୍‌ଭାବଜ୍ଞାପକଜ୍ଞାନଲୟସ୍ଥାନବାନେଷ ଜ୍ଞାନଲିଙ୍ଗୀ ସ୍ୱାଭିଧାନଃ ସ୍ୱୟଂଲିଙ୍ଗାଭିଧାନ ଇତି ମନୀଷିଭିଃ ଶିବଜ୍ଞାନିଭିଃ ସମାଖ୍ୟାତ ଇତ୍ୟର୍ଥଃ ।। ୫୧ ।।

– (ସ୍ୱୟଂସ୍ଥଳ ବର୍ଣ୍ଣନ) – ସେହି ଅର୍ଥାତ୍ ଭାବଲିଙ୍ଗର ଜ୍ଞାପକ ଜ୍ଞାନ ଯେଉଁ ଜ୍ଞାନରେ ଲୀନ ହୁଏ, ସେହି ଜ୍ଞାନଯୁକ୍ତ ବ୍ୟକ୍ତିମନୀଷି (ବୁଦ୍ଧିମାନ୍) ମାନଙ୍କଦ୍ୱାରା 'ସ୍ୱୟଂ' ନାମରେ କୁହାଯାଇ ଥାଏ ।। ୫୧ ।।

ଅଥ ତଦାଚାରଂ ପ୍ରକାଶୟତି ସୂତ୍ରଚତୁଷ୍ଟୟେନ –

**ସ୍ୱଚ୍ଛନ୍ଦାଚାରସନ୍ତୁଷ୍ଟୋ ଜ୍ୟୋତିର୍ଲିଙ୍ଗପରାୟଣଃ ।**
**ଆତ୍ମସ୍ଥସକଳାକାରଃ ସ୍ୱାଭିଧୋ ମୁନିସତ୍ତମଃ ।। ୫୨ ।।**

ଜ୍ୟୋତିଲିଙ୍ଗପରାୟଣୋ ବାହ୍ୟଲିଙ୍ଗବୈମୁଖ୍ୟେନ ଚିଲ୍ଲିଙ୍ଗନିଷ୍ଠଃ ସ୍ୱୈରାଚାରସନ୍ତୁଷ୍ଟଃ ଶିବାତ୍ମନି ବିଦ୍ୟମାନସକଳାକାରବାନ୍ ମୁନିଶ୍ରେଷ୍ଠ ଏବ ସ୍ୱୟଂଲିଙ୍ଗାଭିଧାନବାନିତ୍ୟର୍ଥଃ ।। ୫୨ ।।

– ସ୍ୱଚ୍ଛନ୍ଦ ଆଚାରରେ ସନ୍ତୁଷ୍ଟ, ଜ୍ୟୋତିର୍ଲିଙ୍ଗର ଅର୍ଚ୍ଚନାରେ ତତ୍ପର, ନିଜର ଆତ୍ମାରେ ସମ୍ପୂର୍ଣ୍ଣ ଆକାର ଅଥବା ବିଶ୍ୱକୁ ରଖିବାବାଲା ମୁନିସତ୍ତମ ସ୍ୱୟଂ କୁହାଯାଏ ।। ୫୨ ।।

**ନିର୍ମମୋ ନିରହଙ୍କାରୋ ନିରସ୍ତକ୍ଲେଶପଞ୍ଚକଃ ।**
**ଭିକ୍ଷାଶୀ ସମବୁଦ୍ଧିଶ୍ଚ ମୁକ୍ତପ୍ରାୟୋ ମୁନିର୍ଭବେତ୍ ।। ୫୩ ।।**

ବିଷୟେଷୁ ମମତାଶୂନ୍ୟଃ ଶରୀରାଦିଷ୍ୱହମିତ୍ୟଭିମାନଶୂନ୍ୟଃ, ଅବିଦ୍ୟାଦିପଞ୍ଚକ୍ଲେଶ- ରହିତଃ, ଭିକ୍ଷାନ୍ନଭୋକ୍ତା, ଲୋଷ୍ଟାଶ୍ମକାଞ୍ଚନେଷୁ ସମବୁଦ୍ଧିମାନ୍ ମୁନିଃ ସ୍ୱୟଂଲିଙ୍ଗାଭିଧାନବାନ୍ ଯତିଃ, ମୁକ୍ତପ୍ରାୟଃ ପରମୁକ୍ତସଦୃଶଃ ସ୍ୟାତ୍ ଚରମଦେହତ୍ୱାଦିତି ।। ୫୩ ।।

– ବିଷୟ ପ୍ରତି ମମତା ରହିତ, ଶରୀରରେ ଆତ୍ମଭାବନାରୂପ ଅହଙ୍କାରରୁ ରହିତ ତଥା (ଅବିଦ୍ୟା ଆଦି) ପାଞ୍ଚ କ୍ଲେଶକୁ ସମାପ୍ତ କରିଦେଉଥିବା, ଭିକ୍ଷା ମାଗି ଭୋଜନ କରୁଥିବା ସମବୁଦ୍ଧି ମୁନି ମୁକ୍ତପ୍ରାୟ ହୋଇଥାଏ ।। ୫୩ ।।

**ଯଦୃଚ୍ଛାଲାଭସନ୍ତୁଷ୍ଟୋ ଭସ୍ମନିଷ୍ଠୋ ଜିତେନ୍ଦ୍ରିୟଃ ।**
**ସମବୃତ୍ତିର୍ଭବେଦ୍ ଯୋଗୀ ଭିକ୍ଷୁକେ ବା ନୃପେଦ୍ଧଥବା ।। ୫୪।।**

ସ୍ପଷ୍ଟମ୍ ।। ୫୪।।

– ଯେତିକି ଏବଂ ଯାହାକିଛି ମିଳୁଛି, ସେଥିରେ ସନ୍ତୁଷ୍ଟ, ଭସ୍ମଧାରଣ କରିବାରେ ଶ୍ରଦ୍ଧା ରଖିବାବାଲା, ଜିତେନ୍ଦ୍ରିୟ, ଭିକ୍ଷକ ଅଥବା ରାଜାଙ୍କ ବିଷୟରେ ସମାନ ବୁଦ୍ଧି ଏବଂ ବ୍ୟବହାରବାଲା ଶିବଯୋଗୀ ହୋଇଥାଏ ।। ୫୪।।

**ପଶ୍ୟନ୍ ସର୍ବାଣି ଭୂତାନି ସଂସାରସ୍ଥାନି ସର୍ବଶଃ ।**
**ସ୍ମୟମାନଃ ପରାନନ୍ଦେ ଲୀନାତ୍ମା ବର୍ତ୍ତତେ ସୁଧୀଃ ।। ୫୫।।**

ସୁଧୀଃ ଶୋଭନବୁଦ୍ଧିମାନ୍ ସ୍ୱୟଂଲିଙ୍ଗଯତିଃ ସର୍ବଶଃ ସର୍ବତ୍ର ସଂସାରସ୍ଥାନି ସଂସାରଚକ୍ର ସ୍ଥିତାନି ସର୍ବାଣି ଭୂତାନି ପଶ୍ୟନ୍ ସ୍ମୟମାନଃ ସନ୍ ବିସ୍ମୟବାନ୍ ସନ୍ ପରାନନ୍ଦ ପରମାନନ୍ଦମୟ ମହାଲିଙ୍ଗେ ଲୀନାତ୍ମା ଲୟଂ ଗତଃ ସନ୍ ବର୍ତ୍ତତ ଇତ୍ୟର୍ଥଃ ।। ୫୫।।

– ବିଦ୍ୱାନ୍ ସାଧକ ପରାନନ୍ଦରେ ସଦା ଲୀନ ଅତଏବ ସଂସାରରେ ରହୁଥିବା ସମସ୍ତ ପ୍ରାଣୀଙ୍କୁ ଆଶ୍ଚର୍ଯ୍ୟ (ପ୍ରସନ୍ନତା) ସହିତ ଦେଖି ବ୍ୟବହାର କରିଥାଏ (ରହିଥାଏ)।। ୫୫।।

ଅଥ ତସ୍ୟ ଯତୀଶ୍ୱରସ୍ୟ ନିତ୍ୟକର୍ମୋକ୍ତ୍ୱା ସ୍ୱୟଂସ୍ଥଲଂ ସମାପୟତି –

**ଧ୍ୟାନଂ ଶୈବଂ ତଥା ଜ୍ଞାନଂ ଭିକ୍ଷା ଚୈକାନ୍ତଶୀଳତା ।**
**ଯତେଶ୍ଚତ୍ୱାରି କର୍ମାଣି ନ ପଞ୍ଚମମିହେଷ୍ୟତେ ।। ୫୬।।**

ଶିବଜ୍ଞାନଂ ଶିବାଧିକ୍ୟଜ୍ଞାନମ୍, ଶିବଧ୍ୟାନମ୍, ଭିକ୍ଷାହାରଃ ଏକାନ୍ତଶୀଳତ୍ୱମ୍ – ଯତେଃ ସ୍ୱୟଂ ଲିଙ୍ଗଶିବଯୋଗିନ ଏତାନି ଚତ୍ୱାରି କର୍ମାଣି । ପଞ୍ଚକର୍ମ ନେଚ୍ଛାବିଷୟୀ–କ୍ରିୟତେ ।। ୫୬।।

– ଶିବଙ୍କର ଜ୍ଞାନ, ଶିବଙ୍କର ଧ୍ୟାନ, ଭିକ୍ଷା ଏବଂ ଏକାନ୍ତବାସ – ଏହି ଚାରି ପ୍ରକାରର କର୍ମ ଶିବଯୋଗୀର ହୋଇଥାଏ । ଏହି ସଂସାରରେ ପଞ୍ଚମକର୍ମ ଇଚ୍ଛା କରି ନଥାଏ ।। ୫୬।।

**ଇତି ସ୍ୱୟଂ ସ୍ଥଳମ୍**

## ଅଥ ଚରସ୍ଥଳମ୍

ଅଥ – 'ଆତ୍ମରତିରାତ୍ମକ୍ରୀଡ଼ ଆତ୍ମ ମିଥୁନ ଆତ୍ମାନନ୍ଦଃ ସ ସ୍ୱରାଟ୍ ଭବତି । ତସ୍ୟ ସର୍ବେଷୁ ଲୋକେଷୁ କାମଚାରୋ ଭବତି'[୧୯୮] ଇତି ଛାନ୍ଦୋଗ୍ୟଶ୍ରୁତେଃ –

---

୧୯୮. ଛା. ଉ., ୭/୨୫/୨

ଅହଂମମତ୍ୱଶୂନ୍ୟାତ୍ମା ନିଜବୋଧୈକରୂପଦୃକ୍ ।
ସ୍ୱୟମେବ ସ୍ୱୟଂ ଭୂତ୍ୱା ଚରତୀତି ଚରଃ ସ୍ମୃତଃ ।।

ଇତି ବାତୁଲୋତ୍ତରବଚନାଚ୍ଚ ସ ସ୍ୱୟଂଲିଙ୍ଗସମ୍ପନ୍ନ ଏବ ସ୍ୱୟଂ ଭୂତ୍ୱା ସଞ୍ଚରତୀତି ଚରଲିଙ୍ଗସ୍ଥଳରୂପ ଇତି କଥୟତି –

**ସ୍ୱରୂପଜ୍ଞାନ ସମ୍ପନ୍ନୋ ଧ୍ୱସ୍ତାହଂମମତାକୃତିଃ ।**
**ସ୍ୱୟମେବ ସ୍ୱୟଂ ଭୂତ୍ୱା ଚରତୀତି ଚରାଭିଧଃ ।। ୫୭।।**

– (ଚରସ୍ଥଳ ବର୍ଣ୍ଣନ) – ଯିଏ ସ୍ୱରୂପଜ୍ଞାନରେ ସମ୍ପନ୍ନ, ଯିଏ ଅହଙ୍କାର ଓ ମମକାର (ମୁଁ ଏବଂ ମୋର) ଭାବନାକୁ ନଷ୍ଟ କରି ଦେଇଛନ୍ତି, ଏବଂ ଏହିପରି ସ୍ୱୟଂ ସ୍ଥଳୀ ହୋଇ ସ୍ୱୟଂ ଏହି ସଂସାରରେ ସଞ୍ଚାର କରୁଛନ୍ତି, ତାଙ୍କୁ ଚରସ୍ଥଳ କହନ୍ତି ।। ୫୭।।

ଅଥ ତସ୍ୟ ଚରଲିଙ୍ଗସ୍ୟାଚାରଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**କାମକ୍ରୋଧାଦିନିର୍ମୁକ୍ତଃ ଶାନ୍ତିଦାନ୍ତିସମନ୍ୱିତଃ ।**
**ସମବୁଦ୍ଧ୍ୟା ଚରେଦ୍ ଯୋଗୀ ସର୍ବତ୍ର ଶିବବୁଦ୍ଧିମାନ୍ ।। ୫୮ ।।**

ସ୍ପଷ୍ଟମ୍ ।। ୫୮ ।।

– କାମ କ୍ରୋଧ ଆଦିରୁ ରହିତ, ଶମ, ଦମରେ ଯୁକ୍ତ, ସମସ୍ତ ବିଷୟରେ ଶିବବୁଦ୍ଧି ରଖିଥିବା ଯୋଗୀ ସର୍ବତ୍ର ସମତ୍ୱ ବୁଦ୍ଧିରେ ବ୍ୟବହାର କରିବା ଉଚିତ୍ ।। ୫୮ ।।

**ଇଦଂ ମୁଖ୍ୟମିଦଂ ହୀନମିତି ଚିନ୍ତାମକଳ୍ପୟନ୍ ।**
**ସର୍ବତ୍ର ସଞ୍ଚରେଦ୍ ଯୋଗୀ ସର୍ବଂ ବ୍ରହ୍ମେତି ଭାବୟନ୍ ।। ୫୯ ।।**

ଯୋଗୀ ଶିବଯୋଗୀତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୯ ।।

– 'ଏହା ମୁଖ୍ୟ ଅଟେ, ଏହା ଗୌଣ ଅଟେ' – ଏପରି ବିଚାର ନ କରି ତଥା 'ସବୁ କିଛି ବ୍ରହ୍ମ ଅଟେ'[୧୯୯] – ଏହିପରି ଭାବନା ରଖି ଯୋଗୀ ସର୍ବତ୍ର ସଞ୍ଚରଣ କରିବା ଉଚିତ୍ ।। ୫୯ ।।

**ନ ସମ୍ମାନେଷୁ ସଂପ୍ରୀତିଂ ନାବମାନେଷୁ ଚ ବ୍ୟଥାମ୍ ।**
**କୁର୍ବାଣଃ ସଞ୍ଚରେଦ୍ ଯୋଗୀ କୂଟସ୍ଥେ ସ୍ୱାତ୍ମନି ସ୍ଥିତଃ ।। ୬୦ ।।**

କୂଟସ୍ଥେ ସ୍ୱାତ୍ମନି ତୁର୍ଯ୍ୟସାକ୍ଷିକପ୍ରତ୍ୟଗାତ୍ମଲକ୍ଷଣନିଜରୂପେ ବିଦ୍ୟମାନଃ ଶିବଯୋଗୀ ସମ୍ମାନେଷୁ ସଂପ୍ରୀତିମବମାନେଷୁ ଦୁଃଖଂ ଚ ନ କୁର୍ବାଣଃ ଅକୁର୍ବାଣଃ ସନ୍ ସଞ୍ଚରେତ୍ ।। ୬୦ ।।

---

୧୯୯. ତୁଳନୀୟ –
ସର୍ବଂ ଖଲ୍ୱିଦଂ ବ୍ରହ୍ମ ତଜ୍ଜଲାନ୍ ଇତିଶାନ୍ତୋପାସୀତ – (ଛା. ଉ., ୩/୧୪/୧)

– ସମ୍ମାନ ମିଳିଲେ ହର୍ଷ ଏବଂ ଅପମାନ ମିଳିଲେ ବିଷାଦ ନ କରି ଶିବଯୋଗୀ କୂଟସ୍ଥ ଆତ୍ମାରେ ସ୍ଥିତ ହୋଇ ବ୍ୟବହାର କରିବା ଉଚିତ୍ ।। ୬୦।।

ଅପ୍ରାକୃତୈର୍ଗୁଣୈଃ ସ୍ୱୀୟୈଃ ସର୍ବଂ ବିସ୍ମାପୟନ୍ ଜନମ୍ ।
ଅଦ୍ୱୈତପରମାନନ୍ଦମୁଦିତୋ ଦେହିବଚ୍ଚରେତ୍ ।। ୬୧ ।।

ଶିବାଦ୍ୱୈତୋଦ୍ଭୂତପରମାନନ୍ଦସନ୍ତୋଷିତଃ ଶିବଯୋଗୀ ଅପ୍ରାକୃତୈର୍ଲୋକୋତ୍ତରୈଃ ସ୍ୱକୀୟୈର୍ଗୁଣୈଃ ସର୍ବଜନଂ ବିସ୍ମୟଯୁକ୍ତଂ ସନ୍ତଂ କୁର୍ବନ୍ ସନ୍ ଶରୀରୀବ ଚରେତ୍ ଚରତୀତ୍ୟର୍ଥଃ ।। ୬୧ ।।

– ନିଜର ଅଲୌକିକ ଗୁଣରେ ସମସ୍ତ ସଂସାରକୁ ଆଶ୍ଚର୍ଯ୍ୟଚକିତ କରି ତଥା ଅଦ୍ୱୈତ ପରମାନନ୍ଦରେ ଆନନ୍ଦିତ (ସେହି ଶିବଯୋଗୀ ସାଧାରଣ) ମନୁଷ୍ୟ ପରି ଆଚରଣ କରିବା ଉଚିତ୍ ।। ୬୧ ।।

ନ ପ୍ରପଞ୍ଚେ ନିଜେ ଦେହେ ନ ଧର୍ମେ ନ ଚ ଦୁଷ୍କୃତେ ।
ଗତବୈଷମ୍ୟଧୀର୍ଧୀରୋ ଯତିଶ୍ଚରତି ଦେହିବତ୍ ।। ୬୨ ।।

ଗତବୈଷମ୍ୟଧୀଃ ବିଧିନିଷେଧାଦିଷୁ ବିଗତବିଷମବୁଦ୍ଧିଃ ଧୀରଃ ସ୍ଥିରଚିତ୍ତଃ ଯତିଃ ଶିବଯୋଗୀ, ନିଜେ ଦେହେ ସତି ଦେହିବତ୍ ପ୍ରାକୃତବତ୍ ପ୍ରପଞ୍ଚେ ନ ଚରତି, ଧର୍ମେ ପୁଣ୍ୟକୃତ୍ୟେ ପାପକୃତ୍ୟେଽପି ନ ଚରତୀତ୍ୟର୍ଥଃ ।। ୬୨ ।।

– ଯୋଗୀ ପ୍ରପଞ୍ଚ ଅର୍ଥାତ୍ ସଂସାର, ନିଜର ଶରୀର ଧର୍ମ ତଥା ଅଧର୍ମ ବିଷୟରେ ବୈଷମ୍ୟ ବୁଦ୍ଧିରୁ ରହିତ ହୋଇ ସାଧାରଣ ଦେହୀ ପରି ବ୍ୟବହାର କରେ ।। ୬୨ ।।

ଅଥ ଚରଲିଙ୍ଗସ୍ଥଲଂ ସମାପୟତି –

ପ୍ରାକୃତୈଶ୍ୱର୍ଯ୍ୟ ସମ୍ପତ୍ତିପରାଙ୍ମୁଖମନଃ ସ୍ଥିତିଃ ।
ଚିଦାନନ୍ଦନିଜାତ୍ମସ୍ଥୋ ମୋଦତେ ମୁନିପୁଙ୍ଗବଃ ।। ୬୩ ।।

ପ୍ରକୃତିତତ୍ତ୍ୱସମୁଦ୍ଭୂତବ୍ରହ୍ମ ବିଷ୍ଣ୍ୱାଦ୍ୟୈଶ୍ୱର୍ଯ୍ୟସମ୍ପତ୍ତିବିମୁଖୀଭୂତଚିତ୍ତବୃତ୍ତିର୍ଯତିଃ ଶ୍ରେଷ୍ଠ ଶ୍ଚିଦାନନ୍ଦସ୍ୱରୂପନିଷ୍ଠଃ ସନ୍ ମୋଦତେ ସୁଖମନୁଭବନ୍ନାସ୍ତ ଇତ୍ୟର୍ଥଃ ।। ୬୩ ।।

– ପ୍ରକୃତିର ଐଶ୍ୱର୍ଯ୍ୟ ବୈଭବ ପ୍ରତି ପରାଙ୍ମୁଖ ଅର୍ଥାତ୍ ନିଃସ୍ପୃହ ମନବାଲା ଅତଏବ ଚିତ୍, ଆନନ୍ଦ ସ୍ୱରୂପ ଆତ୍ମାରେ ସ୍ଥିତ ଅର୍ଥାତ୍ ଆତ୍ମାର ସାକ୍ଷାତ୍କାର କରିବାବାଲା ମୁନିଶ୍ରେଷ୍ଠ ସଦା ଆନନ୍ଦମୟ ରହେ ।। ୬୩ ।।

ଇତି ଚରସ୍ଥଲମ୍

## ଅଥ ପରସ୍ଥଲମ୍

ଅଥ – 'ତଦ୍‌ବ୍ରହ୍ମାହମିତି ଜ୍ଞାତ୍ୱା ବ୍ରହ୍ମ ସମ୍ପଦ୍ୟତେ ଧ୍ରୁବମ୍'[200] ଇତ୍ୟମୃତ– (ବ୍ରହ୍ମ) ବିନ୍ଦୁ ଶ୍ରୁତେଃ –

ସ୍ୱୟଂ ସ୍ୱୟଂ ତ୍ୱମାସାଦ୍ୟ ଚରତୋ ନ ପରଃ ସ୍ମୃତଃ ।
ଅସୌ ତତୋଦ୍ଧତୀତବର୍ଣ୍ଣାଶ୍ରମତ୍ୱେନ ପରଃ ସ୍ମୃତଃ ।।

ଇତି ବାତୁଳୋତ୍ତରବଚନାଚ୍ଚ ସ୍ୱରୂପସିଦ୍ଧତ୍ୱେନ ଚରତସ୍ତସ୍ୟ ଶିବଯୋଗୀଶ୍ୱରସ୍ୟ ପରଂ ନାସ୍ତୀତି ଜ୍ଞାନସ୍ୟ ପରଲିଙ୍ଗସ୍ଥଲଂ ସପ୍ତଭିଃ ସୂତ୍ରୈଃ ପ୍ରତିପାଦୟତି –

**ସ୍ୱୟମେବ ସ୍ୱୟଂ ଭୂତ୍ୱା ଚରତଃ ସ୍ୱସ୍ୱରୂପତଃ ।**
**ପରଂ ନାସ୍ତୀତି ବୋଧସ୍ୟ ପରତ୍ୱମଭିଧୀୟତେ ।। ୬୪ ।।**

ସ୍ୱୟମେବ ସ୍ୱୟଂ ଭୂତ୍ୱା ଚରତସ୍ତସ୍ୟ ଶିବଯୋଗିନଃ ସ୍ୱସ୍ୱରୂପତଃ ପରଂ ନାସ୍ତୀତି ଜ୍ଞାନସ୍ୟ ପରଲିଙ୍ଗତ୍ୱମଭିଧୀୟତ ଇତ୍ୟର୍ଥଃ ।। ୬୪ ।।

– (ପରସ୍ଥଳ ବର୍ଣ୍ଣନ) – ସ୍ୱୟମେବ ସ୍ୱୟଂ ହୋଇ ନିଜର ସ୍ୱରୂପରେ ଆଚରଣ କରୁଥିବା (ଶିବଯୋଗୀ) (ଶିବଙ୍କ ଅତିରିକ୍ତ) କେହି ଅନ୍ୟ ନୁହନ୍ତି । ଏହି ଜ୍ଞାନ ତାଙ୍କର ପରତ୍ୱ କୁହାଯାଏ ।। ୬୪ ।।

ଅଥ ତସ୍ୟ ବର୍ତ୍ତନାପ୍ରକାରମାହ –

**ସ୍ୱତନ୍ତ୍ରଃ ସର୍ବକୃତ୍ୟେଷୁ ସ୍ୱଂ ପରତ୍ୱେନ ଭାବିତଃ ।**
**ତୃଣୀକୁର୍ବନ୍ ଜଗଜ୍ଜାଲଂ ବର୍ତ୍ତତେ ଶିବଯୋଗିରାଟ୍ ।। ୬୫ ।।**

ସ୍ୱଂ ପରତ୍ୱେନ ବିଶ୍ୱାଧିକତ୍ୱେନ ଭାବିତଃ ପରାମୃଷ୍ଟଃ ଶିବଯୋଗିରାଟ୍ ଶିବଯୋଗୀଶ୍ୱରଃ ସର୍ବକୃତ୍ୟେଷୁ ସ୍ୱତନ୍ତ୍ରଃ ସନ୍ ଜଗଜ୍ଜାଲଂ ଜଗଦ୍‌ସମୂହଂ ତୃଣୀକୁର୍ବନ୍ ସନ୍ ବର୍ତ୍ତତ ଇତ୍ୟର୍ଥଃ ।। ୬୫ ।।

– ସବୁ କାର୍ଯ୍ୟରେ ସ୍ୱତନ୍ତ୍ର ଏବଂ ନିଜକୁ ପରତତ୍ତ୍ୱ ଭାବରେ ଜାଣୁଥିବା ତଥା ସଂସାରକୁ ତୃଣ ପରି ତୁଚ୍ଛ ଭାବୁଥିବା (ଯୋଗୀ) ଶିବଯୋଗିରାଟ୍ ହୋଇଥାଏ ।। ୬୫ ।।

ଅଥ ସ କଥଂ ମୋଦତ ଇତ୍ୟତ୍ରାହ –

**ବର୍ଣ୍ଣାଶ୍ରମସମାଚାରମାର୍ଗନିଷ୍ଠାପରାଙ୍ମୁଖଃ ।**
**ସର୍ବୋତ୍କୃଷ୍ଟଂ ସ୍ୱମାତ୍ମାନଂ ପଶ୍ୟନ୍ ଯୋଗୀ ତୁ ମୋଦତେ ।। ୬୬ ।।**

ଯୋଗୀ ଶିବଯୋଗୀତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୬ ।।

---

୨୦୦. ବ୍ର. ବି. ଉ., – ୮

– ବର୍ଣ୍ଣାଶ୍ରମ ଆଚରଣ ପଥରୁ ପରାଙ୍ମୁଖ ହୋଇଥିବା ଶିବଯୋଗୀ ନିଜକୁ ପର ଅର୍ଥାତ୍ ସର୍ବୋତ୍କୃଷ୍ଟ ଭାବି ଆନନ୍ଦିତ ହୋଇଥାଏ ।। ୬୬।।

ଅଥ କିମିଦଂ ସର୍ବୋତ୍କୃଷ୍ଟତ୍ୱମିତ୍ୟତ୍ରାହ –

**ବିଶ୍ୱାତୀତଂ ପରଂବ୍ରହ୍ମ ଶିବାଖ୍ୟଂ ଚିତ୍ସ୍ୱରୂପକମ୍ ।**
**ତଦେବାହମିତି ଜ୍ଞାନୀ ସର୍ବୋତ୍କୃଷ୍ଟଃ ସ ଉଚ୍ୟତେ ।। ୬୭।।**

ସ୍ପଷ୍ଟମ୍ ।। ୬୭।।

– ବିଶ୍ୱାତୀତ ଶିବ ନାମକ ଚିତ୍ ସ୍ୱରୂପ ବ୍ରହ୍ମ ପର ଅର୍ଥାତ୍ ଅନ୍ତିମ ତତ୍ତ୍ୱ ଅଟେ । 'ମୁଁ ମଧ୍ୟ ସେହି ଅଟେ' – ଏହିପରି ଜ୍ଞାନ ରଖିଥିବା (ଯୋଗୀ) ପର ଅର୍ଥାତ୍ ସର୍ବୋତ୍କୃଷ୍ଟ କୁହାଯାଏ ।। ୬୭।।

ନନୁ ବ୍ରହ୍ମସ୍ୱରୂପତ୍ୱେ ବ୍ରହ୍ମବନ୍ମୁକ୍ତ ଏବ ସ୍ୟାଦିତ୍ୟତ୍ରାହ –

**ଅଚଲଂ ଧ୍ରୁବମାତ୍ମାନମନୁପଶ୍ୟନ୍ନିରନ୍ତରମ୍ ।**
**ନିରସ୍ତବିଶ୍ୱବିଭ୍ରାନ୍ତିର୍ଜୀବନ୍ମୁକ୍ତୋ ଭବେନ୍ମୁନିଃ ।। ୬୮ ।।**

ଅଚଲମଚଞ୍ଚଲଂ ଧ୍ରୁବଂ ନିତ୍ୟମାତ୍ମାନଂ ସ୍ୱରୂପଂ ନିରନ୍ତରମଖଣ୍ଡିତ୍ୱେନ ଅନୁପଶ୍ୟନ୍ ଅନନ୍ୟତ୍ୱେନ ପଶ୍ୟନ୍ ମୁନିଃ ଶିବଯୋଗୀ ନିରସ୍ତବିଶ୍ୱବିଭ୍ରାନ୍ତିଃ ନିରାକୃତପ୍ରାପଞ୍ଚିକ ଭ୍ରାନ୍ତିମାନ୍ ସନ୍ ଜୀବନ୍ମୁକ୍ତ ଆହାରବ୍ୟବହାରାଦିନା ଜୀବନ୍ନପି ପୁନର୍ଜନ୍ମାନ୍ତରାଭାବାନ୍ମୁକ୍ତ ଇତ୍ୟର୍ଥଃ ।। ୬୮ ।।

– ନିଜକୁ ନିରନ୍ତର ଅଚଳ, ଧ୍ରୁବ ଭାବୁଥିବା ତଥା ଯାହାଙ୍କର ସମସ୍ତ ଭ୍ରମ ଦୂର ହୋଇଯାଇଛି, ଏପରି ମୁନି ଜୀବନ୍ମୁକ୍ତ ହୋଇଥାନ୍ତି ।। ୬୮ ।।

ନନୁ ବର୍ଣ୍ଣାଶ୍ରମଗତସମାଚାର ପରିତ୍ୟାଗେନ କର୍ମଦେବତାଃ କୁପିତା ଭବନ୍ତୀତି କଥଂ ଜୀବନ୍ମୁକ୍ତ ଇତ୍ୟତ୍ରାହ –

**ବ୍ରହ୍ମାଦ୍ୟାଃ କିଂ ନୁ କୁର୍ବନ୍ତି ଦେବତାଃ କର୍ମମାର୍ଗଗାଃ ।**
**କର୍ମାତୀତପଦସ୍ଥସ୍ୟ ସ୍ୱୟଂ ବ୍ରହ୍ମସ୍ୱରୂପିଣଃ ।। ୬୯ ।।**

ସ୍ୱୟଂ ସ୍ୱୟମେବ ବ୍ରହ୍ମସ୍ୱରୂପିଣଃ ବ୍ରହ୍ମସ୍ୱରୂପବାନ୍ ସନ୍ କର୍ମାତୀତ ପଦସ୍ଥସ୍ୟ ପୁଣ୍ୟପାପାଦି କର୍ମକାଣ୍ଡୋତ୍ତୀର୍ଣ୍ଣସ୍ଥାନଗତସ୍ୟ ଶିବଯୋଗିନଃ କର୍ମମାର୍ଗଗା ବ୍ରହ୍ମବିଷ୍ଣ୍ୱାଦ୍ୟା ଦେବତାଃ କିଂ ନୁ କୁର୍ବନ୍ତି ନ କିମପି କର୍ତ୍ତୁଂ କୁଶଳା ଇତ୍ୟର୍ଥଃ ।। ୬୯ ।।

– କର୍ମରୁ ଅଧିକ ଅର୍ଥାତ୍ ଊର୍ଦ୍ଧ୍ୱ ପଦରେ ସ୍ଥିତ ସ୍ୱୟଂ ବ୍ରହ୍ମରୂପୀ ଯୋଗୀର କର୍ମମାର୍ଗୀ ବ୍ରହ୍ମା ଆଦି ଦେବଗଣ କ'ଣ କରିପାରିବେ ? ।। ୬୯ ।।

ପୁନରୟଂ ଶିବଯୋଗ୍ୟେବାଜ୍ଞାନଂ ବିମୋଚୟତୀତ୍ୟାହ –

**ସ୍ୱେଚ୍ଛୟା ସଞ୍ଚରେଦ୍ ଯୋଗୀ ବିମୁଞ୍ଚନ୍ ଦେହମାନିତାମ୍ ।**
**ଦର୍ଶନୈଃ ସ୍ପର୍ଶନୈଃ ସର୍ବାଜ୍ଞାନପି ବିମୋଚୟେଦ୍ ।। ୭୦।।**

ଦେହମାନିତାଂ ଦେହାଭିମାନଂ ବିମୁଞ୍ଚନ୍ ଶିବଯୋଗୀ ସ୍ୱେଚ୍ଛୟା ସଞ୍ଚରନପି ସ୍ୱୈରାଚାର ସମ୍ପନ୍ନୋଽପି ଦର୍ଶନସ୍ପର୍ଶନାଭ୍ୟାଂ ସର୍ବାନଜ୍ଞାନ୍ ପ୍ରାକୃତଜନାନ୍ ବିମୋଚୟେଦ୍ ମୁକ୍ତାନ୍ କୁର୍ଯ୍ୟାଦିତ୍ୟର୍ଥଃ ।। ୭୦।।

– ଦେହଭାବ (ଅହଂ ଭାବ ଓ ମମ ଭାବ)କୁ ତ୍ୟାଗ କରିଥିବା ଯୋଗୀ ଏହି ସଂସାରରେ ସ୍ୱେଚ୍ଛାରେ ଆଚରଣ କରେ ତଥା ନିଜର ଦର୍ଶନ ଏବଂ ସ୍ପର୍ଶରେ ସମସ୍ତ ଅଜ୍ଞାନୀଙ୍କୁ ବିମୁକ୍ତ କରିଦିଏ ।। ୭୦।।

ଅଥ – ନିରଞ୍ଜନଃ ପରମଂ ସାମ୍ୟମୁପୈତି ଦିବ୍ୟମ୍ ଇତି ଶ୍ରୁତେ ପରଲିଙ୍ଗରୂପ ଶିବଯୋଗୀଶ୍ୱର ଏବ ଶିବଭାବସମ୍ପନ୍ନତ୍ୱାଜ୍ଜୀବନ୍ମୁକ୍ତ ଇତ୍ୟୁକ୍ତ୍ୱା ପରସ୍ଥଲଂ ସମାପୟତି –

**ନିତ୍ୟେ ନିର୍ମଳଭାବନେ ନିରୁପମେ ନିର୍ଧୂତବିଶ୍ୱଭ୍ରମେ**
**ସତ୍ତାନନ୍ଦଚିଦାତ୍ମକେ ପରଶିବେ ସାମ୍ୟଂ ଗତଃ ସଂଯମୀ ।**
**ପ୍ରଧ୍ୱସ୍ତାଶ୍ରମବର୍ଣ୍ଣଧର୍ମନିଗଳଃ ସ୍ୱଚ୍ଛନ୍ଦସଞ୍ଚାରବାନ୍**
**ଦେହୀବାଦ୍ଭୁତବୈଭବୋ ବିଜୟତେ ଜୀବନ୍ମୁକ୍ତଃ ସୁଧୀଃ ।। ୭୧।।**

ନିତ୍ୟେ ନିର୍ମଳସ୍ୱରୂପେ ଉପମାତୀତେ ନିରସ୍ତସମସ୍ତ ଦୋଷେ ସଚ୍ଚିଦାନନ୍ଦାତ୍ମକେ ପରଶିବେ ଜ୍ଞାତୃତ୍ୱକର୍ତ୍ତୃତ୍ୱଯୋଗାତ୍ ସାମ୍ୟଂ ଗତଃ ପ୍ରଧ୍ୱସ୍ତଚତୁର୍ବର୍ଣ୍ଣଚତୁରାଶ୍ରମଧର୍ମଶୃଙ୍ଖଳଃ ସ୍ୱଚ୍ଛନ୍ଦାଚାରବାନ୍ ସ୍ୱେଚ୍ଛାଚାରବାନ୍ ଜୀବନ୍ମୁକ୍ତଃ ସୁଧୀଃ ପରଲିଙ୍ଗରୂପଶିବଯୋଗୀଦେହୀବ ଦେହବାନପି ଅଦ୍ଭୁତବୈଭବଃ ସନ୍ ଆଶ୍ଚର୍ଯ୍ୟଭୂତମହତ୍ତ୍ୱସମ୍ପତ୍ତିମାନ୍ ସନ୍ ବିଜୟତେ ସର୍ବୋତ୍କର୍ଷେଣ ବର୍ତତ ଇତ୍ୟର୍ଥଃ ।। ୭୧ ।।

– ନିତ୍ୟ, ନିର୍ମଳ, ଭାବରୂପ, ଅନୁପମ, ସମସ୍ତ ଭ୍ରମର ନାଶକ, ସତ୍–ଚିତ୍–ଆନନ୍ଦ ସ୍ୱରୂପ, ପରଶିବ ସହିତ ସାମରସ୍ୟ ସ୍ଥାପିତ କରିଥିବା ସଂଯମୀ ଆଶ୍ରମ ବର୍ଣ୍ଣଧର୍ମର ବନ୍ଧନ ଶୃଙ୍ଖଳାକୁ ଧ୍ୱଂସ (ଛିଡ଼ାଇ) କରି ସ୍ୱଚ୍ଛନ୍ଦ ଅର୍ଥାତ୍ ନିଜର ଇଚ୍ଛାନୁସାର ବିଚରଣ କରୁଥିବା ବିଦ୍ୱାନ୍ ଅଦ୍ଭୁତ ବୈଭବରେ ଯୁକ୍ତ ହୋଇ ଜୀବନ୍ମୁକ୍ତ ହୋଇ ମଧ୍ୟ ସାମାନ୍ୟ ଜନ ପରି ବ୍ୟବହାର କରେ ।। ୭୧।।

ଇତି ଶ୍ରୀମତ୍ଷଟ୍ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ସିଦ୍ଧାନ୍ତ ଶିଖାମଣୌ ଲିଙ୍ଗସ୍ଥଲେ ଭକ୍ତସ୍ଥଲଗତନବବିଧଲିଙ୍ଗପ୍ରସଙ୍ଗୋ ନାମ ପଞ୍ଚଦଶଃ ପରିଚ୍ଛେଦଃ ସମାପ୍ତଃ ।। ୧୫।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣା ଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱ ପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ଭକ୍ତସ୍ଥଳସ୍ୟ ନବବିଧଲିଙ୍ଗପ୍ରସଙ୍ଗନାମା ପଞ୍ଚଦଶଃ ପରିଚ୍ଛେଦଃ ।। ୧୫ ।।

– ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ଭକ୍ତସ୍ଥଳର ନବବିଧଲିଙ୍ଗ ପ୍ରସଙ୍ଗ ନାମକ ପଞ୍ଚଦଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମ ଚତୁର୍ବେଦୀ କୃତ ଜ୍ଞାନବତୀ ହିନ୍ଦି ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୧୫ ।।



# ଷୋଡ଼ଶଃ ପରିଚ୍ଛେଦଃ

## ଅଥ କ୍ରିୟାପଗମସ୍ଥଳମ୍

ଅଥାଗସ୍ତ୍ୟପ୍ରଶ୍ନଃ । ଅଗସ୍ତ୍ୟ ଉବାଚେତି –

**ସ୍ଥଳାନାଂ ନବକଂ ପ୍ରୋକ୍ତଂ ଭକ୍ତସ୍ଥଳସମାଶ୍ରୟମ୍ ।**
**ମାହେଶ୍ୱରସ୍ଥଳେ ସିଦ୍ଧଂ ସ୍ଥଳଭେଦଂ ବଦସ୍ୱ ମେ ।। ୧ ।।**

ସ୍ପଷ୍ଟମ୍ ।। ୧ ।।

– (କ୍ରିୟାଗମସ୍ଥଳ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – (ହେ ରେଣୁକାଚାର୍ଯ୍ୟ, ଆପଣ) ଭକ୍ତସ୍ଥଳ ଅନ୍ତର୍ଗତ ନବ ସ୍ଥଳର ବର୍ଣ୍ଣନ କରିଛନ୍ତି । ମାହେଶ୍ୱର ସ୍ଥଳରେ ସିଦ୍ଧସ୍ଥଳ ଭେଦର ବର୍ଣ୍ଣନ ମତେ କୁହନ୍ତୁ ।। ୧ ।।

ଶ୍ରୀରେଣୁକଃ ପ୍ରତ୍ୟୁତ୍ତରଂ ବକ୍ତି, ରେଣୁକ ଉବାଚେତି –

**ମାହେଶ୍ୱରସ୍ଥଳେ ସନ୍ତି ସ୍ଥଳାନି ନବ ତାପସ ।**
**କ୍ରିୟାଗମସ୍ଥଳଂ ପୂର୍ବଂ ତତୋ ଭାବାଗମସ୍ଥଳମ୍ ।। ୨ ।।**
**ଜ୍ଞାନାଗମସ୍ଥଳଂ ଚାଥ ସକାୟସ୍ଥଳମୀରିତମ୍ ।**
**ତତୋଽକାୟସ୍ଥଳଂ ପ୍ରୋକ୍ତଂ ପରକାୟସ୍ଥଳଂ ତତଃ ।। ୩ ।।**
**ଧର୍ମାଚାରସ୍ଥଳଂ ଚାଥ ଭାବାଚାରସ୍ଥଳଂ ତତଃ ।**
**ଜ୍ଞାନାଚାରସ୍ଥଳଂ ଚେତି କ୍ରମାଦେଷାଂ ଭେଦୋଚ୍ୟତେ ।। ୪ ।।**

ସ୍ପଷ୍ଟମ୍ ।। ୨–୪ ।।

– ରେଣୁକାଚାର୍ଯ୍ୟ କହିଲେ – ହେ ତପସ୍ୱୀ, ମାହେଶ୍ୱରସ୍ଥଳରେ ନବ ସ୍ଥଳ ଅଛନ୍ତି । ପ୍ରଥମେ କ୍ରିୟାଗମସ୍ଥଳ, ତା'ପରେ ଭାବାଗମସ୍ଥଳ, ତଦ୍‌ପଶ୍ଚାଦ୍ ଜ୍ଞାନାଗମସ୍ଥଳ ପୁଣି ସକାୟସ୍ଥଳ କୁହାଯାଇଛି । ଏହାପରେ ଅକାୟସ୍ଥଳ, ତା'ପରେ ପରକାୟସ୍ଥଳ କୁହାଯାଇଛି । ଧର୍ମାଚାରସ୍ଥଳ, ପୁଣି ଭାବାଚାରସ୍ଥଳ ଓ ଜ୍ଞାନାଚାରସ୍ଥଳ ଅଛନ୍ତି । ଏବେ କ୍ରମରେ ଏମାନଙ୍କର ଭେଦ କୁହାଯାଉଛି ।। ୨–୪ ।।

ଅଥ – 'ଯାନ୍ୟନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି ନୋ ଇତରାଣି'[୨୦୧] ଇତି ଶ୍ରୁତେ, ଅଙ୍ଗକ୍ରିୟା ବହୁଫଳଂ ବୀରଶୈବେ ମହେଶ୍ୱରି ଇତି ବାତୁଲତନ୍ତ୍ରବଚବାଚ୍ଚ ପୂର୍ବୋକ୍ତପରସ୍ଥଳସମ୍ପନ୍ନଃ ଶିବଯୋଗୀଶ୍ୱର ଏବ ଶିବଃ, ତସ୍ୟ ପୂଜୈବ କ୍ରିୟା, ତଦ୍‌ପରାଗମ ଏବ କ୍ରିୟାଗମ ଇତି କ୍ରିୟାଗମସ୍ଥଳଂ ନିରୂପୟତି –

---

୨୦୧. ତୈ. ଉ., ୧୧/୧

**ଶିବୋ ହି ପରମଃ ସାକ୍ଷାତ୍ ପୂଜା ତସ୍ୟ କ୍ରିୟୋଚ୍ୟତେ ।**
**ତତ୍ପରା ଆଗମା ଯସ୍ମାତ୍ ତଦୁକ୍ତୋଽୟଂ କ୍ରିୟାଗମଃ ।। ୫।।**

ପରମଃ ପୂର୍ବୋକ୍ତପରଲିଙ୍ଗଶିବଯୋଗୀଶ୍ୱର ଏବ ସାକ୍ଷାଚ୍ଛିବୋ ହି ପ୍ରତ୍ୟକ୍ଷୀଭୂତଃ ଶିବଃ, ତସ୍ୟ ପୂଜା କ୍ରିୟୋଚ୍ୟତେ, କ୍ରିୟେତ୍ୟୁଚ୍ୟତ ଇତ୍ୟର୍ଥଃ । ଆଗମା ଯସ୍ମାତ୍ କାରଣାତ୍ ତତ୍ପରାଃ କ୍ରିୟାପ୍ରଧାନାଃ, ତତ୍ ତସ୍ମାତ୍ କାରଣାଦ୍ ଅୟଂ କ୍ରିୟାଗମ ଇତ୍ୟୁଚ୍ୟତ ଇତ୍ୟର୍ଥଃ ।। ୫।।

– ପରଲିଙ୍ଗ ଶିବଯୋଗୀ ସାକ୍ଷାତ୍ ଶିବ ଅଟେ । ତାଙ୍କର ପୂଜାକୁ କ୍ରିୟା କୁହାଯାଏ । ସେହି କ୍ରିୟାକୁ ବତାଉଥିବା ଆଗମ କ୍ରିୟାଗମ କୁହାଯାଏ ।। ୫।।

ଅଥ ତତ୍ପୂଜାକ୍ରିୟାମେବ ପଞ୍ଚଭିଃ ସୂତ୍ରୈର୍ବିଶେଷୟତି –

**ପ୍ରକାଶତେ ଯଥା ନାଗ୍ନିରରଣ୍ୟାଂ ମନ୍ଥନଂ ବିନା ।**
**କ୍ରିୟାଂ ବିନା ତଥାନ୍ତଃସ୍ଥୋ ନ ପ୍ରକାଶୋ ଭବେଚ୍ଛିବଃ ।। ୬।।**

ଅରଣ୍ୟାଂ ଦାରୁପାତ୍ରେ ବହ୍ନିର୍ମନ୍ଥନଂ ବିନା ଯଥା ନ ପ୍ରକାଶତେ, ତଥା ପୂଜାକ୍ରିୟାଂ ବିନା ଅନ୍ତଃସ୍ଥୋ ଲିଙ୍ଗମଧ୍ୟସ୍ଥଃ ଶିବଃ ପ୍ରକାଶୋ ନ ଭବେଦିତ୍ୟର୍ଥଃ ।। ୬।।

– ଯେପରି ଅରଣିରେ (ପ୍ରଚ୍ଛନ୍ନ ରୂପରେ ଥିବା) ଅଗ୍ନି ମନ୍ଥନ ବିନା ପ୍ରକଟ ହୁଏ ନାହିଁ, ସେହିପରି କ୍ରିୟା ବିନା ଭିତରେ ଥିବା ଶିବ ପ୍ରକାଶିତ ହୁଅନ୍ତି ନାହିଁ ।। ୬।।

ଅଥ ସା ପୂଜା କଥଂ କର୍ତ୍ତବ୍ୟେତ୍ୟତ୍ରାହ –

**ନ ଯଥା ବିଧିଲୋପଃ ସ୍ୟାଦ୍ୟଥା ଦେବଃ ପ୍ରସୀଦତି ।**
**ଯଥାଗମଃ ପ୍ରମାଣଂ ସ୍ୟାତ୍ତଥା କର୍ମ ସମାଚରେତ୍ ।। ୭।।**

ବିଧିଲୋପ ଇତିକର୍ତ୍ତବ୍ୟତା ଲକ୍ଷଣନିୟମଲୋପ ଇତ୍ୟର୍ଥଃ । ବିଧେର୍ଲୋପେ ଶିବୋ ନ ପ୍ରସୀଦତି, ତଥାଗମସ୍ୟାପ୍ରାମାଣ୍ୟଂ ପ୍ରାପ୍ନୁୟାତ୍ । ତସ୍ମାଦ୍ ଯଥା ବିଧେର୍ଲୋପୋ ନ ଭବତି, ତଥା ପୂଜା କର୍ତ୍ତବ୍ୟେତ୍ୟର୍ଥଃ ।। ୭।।

– ଯେପରି ବିଧାନ ଅର୍ଥାତ୍ ଇତିକର୍ତ୍ତବ୍ୟତାର ଲୋପ ନ ହେବ ଏବଂ ଯେଉଁ ବିଧିରେ ଦେବ ଅର୍ଥାତ୍ ଶିବ ପ୍ରସନ୍ନ ହେବେ ଏବଂ ଯେଉଁଥିରେ ଆଗମ ପ୍ରମାଣ ଅଟେ (ଅର୍ଥାତ୍ ଆଗମ ଯେଉଁ କାମକୁ କରିବା ପାଇଁ କହେ), ସେହିପରି କର୍ମ କରିବା ଉଚିତ୍ ।। ୭।।

ନନୁ ଶିବପୂଜା କିମର୍ଥଂ କର୍ତ୍ତବ୍ୟେତ୍ୟତ୍ରାହ –

**ବିଧିଃ ଶିବନିୟୋଗୋଽୟଂ ତସ୍ମାଦ୍ ବିହିତକର୍ମଣି ।**
**ଶିବାରାଧନବୁଦ୍ଧ୍ୟୈବ ନିରତଃ ସ୍ୟାଦ୍ ବିଚକ୍ଷଣଃ ।। ୮।।**

ବିହିତକର୍ମଣି ଶାସ୍ତ୍ରୋକ୍ତକର୍ମଣ୍ୟୟଂ ବିଧିଃ ଶିବପୂଜା କର୍ତ୍ତବ୍ୟେତି ବିଧିଃ ଶିବନିୟୋଗଃ ଶିବସ୍ୟାଜ୍ଞାରୂପଃ, ତସ୍ମାଦ୍ ବିଚକ୍ଷଣଃ ପ୍ରବୀଣଃ ଶିବାରାଧନବୁଦ୍ଧୌ ନିରତ ଆସକ୍ତଃ ସ୍ୟାତ୍, ଅନ୍ୟଥା ଶିବାଜ୍ଞାନଲଙ୍ଘନେ ନରକଂ ବ୍ରଜେଦିତ୍ୟର୍ଥଃ ।। ୮ ।।

– ଆଗମଶାସ୍ତ୍ର ଦ୍ୱାରା ବିହିତ କର୍ମବିଷୟରେ ଏହା ଶିବଙ୍କର ଆଜ୍ଞା ଅଟେ – ଏହିପରି ବୁଝି ବିଦ୍ୱାନ୍ ଶିବାରାଧନବୁଦ୍ଧିରେ (ପୂଜା କର୍ମରେ) ନିରତ ହେବା ଉଚିତ୍ ।। ୮ ।।

ଅଥ ଶିବପୂଜାପ୍ରକାରଃ କଥଂ ଜ୍ଞାତବ୍ୟ ଇତ୍ୟତ୍ରାହ –

**ଗୁରୋରାଦେଶମାସାଦ୍ୟ ପୂଜୟେତ୍ ପରମେଶ୍ୱରମ୍ ।**
**ପୂଜିତେ ପରମେଶାନେ ପୂଜିତାଃ ସର୍ବଦେବତାଃ ।। ୯ ।।**

ଗୁରୂପଦିଷ୍ଟପ୍ରକାରେଣ ଶିବଲିଙ୍ଗଂ ପୂଜୟେତ୍ । ତସ୍ମିନ୍ ପୂଜିତେ ସର୍ବେ ଦେବାଃ ପୂଜିତାଃ ସ୍ୟୁଃ, ଶିବଲିଙ୍ଗସ୍ୟ ସର୍ବଦେବମୟତ୍ୱେନ ସର୍ବଦେବାଃ ପ୍ରସନ୍ନାଃ ସ୍ୟୁରିତ୍ୟର୍ଥଃ ।

– (ଶିବଭକ୍ତ) ଗୁରୁଙ୍କର ଆଜ୍ଞା ନେଇ ପରମେଶ୍ୱର ଶିବଙ୍କର ପୂଜା ହେଲେ ସମସ୍ତ ଦେବତାଙ୍କର ପୂଜା ହୋଇଥାଏ ।। ୯ ।।

ନନୁ ଶିବପୂଜନସ୍ୟ କିଂ ଫଲମିତ୍ୟତ୍ରାହ –

**ସଦା ଶିବାର୍ଚ୍ଚନୋପାୟସାମଗ୍ରୀବ୍ୟଗ୍ରମାନସଃ ।**
**ଶିବଯୋଗରତୋ ଯୋଗୀ ମୁଚ୍ୟତେ ନାତ୍ର ସଂଶୟଃ ।। ୧୦ ।।**

ସର୍ବଦା ଶିବଲିଙ୍ଗପୂଜାସାଧନସାମଗ୍ରୀ ସମ୍ପାଦନରୂପଶିବଯୋଗନିଷ୍ଠଃ ଶିବଯୋଗୀ ମଲମାୟାଦିପାଶମୁକ୍ତୋ ଭବତି । ଅସ୍ମିନ୍ନର୍ଥେ ସଂଶୟୋ ନାସ୍ତୀତ୍ୟର୍ଥଃ ।। ୧୦ ।।

– ଶିବଙ୍କର ପୂଜାସାମଗ୍ରୀ ବ୍ୟବସ୍ଥା କରିବାରେ ସଦା ବ୍ୟସ୍ତ ଚିତ୍ତବାଲା ତଥା ଶିବଯୋଗରେ ନିରନ୍ତର ଯୁକ୍ତ ଯୋଗୀ ମୁକ୍ତ ହୋଇଥାଏ, ଏଥିରେ ସନ୍ଦେହ ନାହିଁ ।। ୧୦ ।।

ନନୁ – 'ଜ୍ଞାନାଦେବ ତୁ କୈବଲ୍ୟମ୍' ଇତ୍ୟାଦିବଚନୈର୍ଜ୍ଞାନସ୍ୟୈବ ମୋକ୍ଷସାଧତ୍ୱଂ ପ୍ରତୀୟତେ, ନ କର୍ମଣ ଇତ୍ୟାଶଙ୍କ୍ୟ –

ନ କ୍ରିୟାରହିତଂ ଜ୍ଞାନଂ ନ ଜ୍ଞାନରହିତା କ୍ରିୟା ।
ଅପଶ୍ୟନ୍ନନ୍ଧକୋ ଦଗ୍ଧୋଦ୍ଧଗଚ୍ଛନ୍ ପଙ୍ଗୁଶ୍ଚ ଦହ୍ୟତେ ।।

ଇତି ଶିବରହସ୍ୟବଚନାନୁସାରେଣ ସମାଧତେ –

**ଅନ୍ଧପଙ୍ଗୁବଦନ୍ୟୋନ୍ୟସାପେକ୍ଷେ ଜ୍ଞାନକର୍ମଣୀ ।**
**ଫଲୌପ୍ରାପ୍ତୌ ବିରକ୍ତସ୍ୟ ତସ୍ମାତ୍ ତଦ୍ଦ୍ୱୟମାଚରେତ୍ ।। ୧୧ ।।**

ଜ୍ଞାନକର୍ମଣୀ ଜ୍ଞାନକ୍ରିୟେ ଅନ୍ଧପଙ୍ଗୁବଦନ୍ୟୋନ୍ୟସାପେକ୍ଷେ ଇତି ତଦ୍ଦ୍ୱୟଂ ଜ୍ଞାନକ୍ରିୟା-ଦ୍ୱୟମ୍ । ତସ୍ମାତ୍ ଫଲୋପ୍ରାପ୍ତୌ ପରାପରମୁକ୍ତିରୂପଫଲୋପ୍ରାପ୍ତୌ ବିରକ୍ତ ଆଚରେଦିତ୍ୟର୍ଥଃ ।। ୧୧ ।।

– ଅନ୍ଧ ଏବଂ ପଙ୍ଗୁ ପରି ଜ୍ଞାନ ଓ କର୍ମ ପରସ୍ପର ସାପେକ୍ଷ ଅଟନ୍ତି । ଏଥିପାଇଁ ଫଳର ଉତ୍ପତ୍ତିରେ ଅନାସକ୍ତ ହୋଇ ଯୋଗୀ ଏହି ଦୁଇଟି କରିବା ଉଚିତ୍ ।। ୧୧।।

ନନୁ ସିଦ୍ଧଜ୍ଞାନିନାଂ କର୍ମଣା ପ୍ରୟୋଜନଂ ନାସ୍ତୀତ୍ୟତ୍ରାହ –

**ଜ୍ଞାନେ ସିଦ୍ଧେଽପି ବିଦୁଷାଂ କର୍ମାପି ବିନିଯୁଜ୍ୟତେ ।**
**ଫଳାଭିସନ୍ଧିରହିତଂ ତସ୍ମାତ୍ କର୍ମ ନ ସନ୍ତ୍ୟଜେତ୍ ।। ୧୨।।**

'ନ କର୍ମଣା' ଇତି ଶ୍ରୁତେଃ କାମ୍ୟକର୍ମପରତ୍ୱାଦ୍ ବିଦୁଷାଂ ଜ୍ଞାନେ ସିଦ୍ଧେଽପି ବେଦାନ୍ତେଷ୍ୱଗ୍ନିହୋତ୍ରବତ୍ ଫଳାପେକ୍ଷାରହିତଂ କର୍ମ ବିଧୀୟତ ଏବ, ତତ୍ତଦାଶ୍ରମବିହିତ କର୍ମପରିତ୍ୟାଗେ ପତିତ୍ୟାତ୍ –

ଜ୍ଞାନଂ ପ୍ରଧାନଂ ନ ତୁ କର୍ମହୀନଂ
କର୍ମ ପ୍ରଧାନଂ ନ ତୁ ଚିଦ୍ୱିହୀନମ୍ ।
ତସ୍ମାଦ୍ ଦ୍ୱୟୋରେବ ଭବେତ୍
ପ୍ରସିଦ୍ଧିର୍ନହ୍ୟେକପକ୍ଷୋ ବିହଗଃ ପ୍ରଯାତି ।।

ଇତ୍ୟଭିଯୁକ୍ତୋକ୍ତେଶ୍ଚ ନିଷ୍କାମକର୍ମାନୁଷ୍ଠାନଂ ନ ସନ୍ତ୍ୟଜେଦିତ୍ୟର୍ଥଃ ।। ୧୨ ।।

– ବିଦ୍ୱାନ୍ ଅର୍ଥାତ୍ ଜ୍ଞାନୀଲୋକଙ୍କର ଜ୍ଞାନ ସିଦ୍ଧ ଅର୍ଥାତ୍ ପ୍ରାପ୍ତ ହେବା ପରେ ମଧ୍ୟ କର୍ମ କରିବାକୁ ପଡ଼ିଥାଏ । ଏଥିପାଇଁ ଯଦିଓ ଫଳର ଇଚ୍ଛାରୁ ରହିତ ହୁଅ, ତଥାପି କର୍ମ ତ୍ୟାଗ କରିବା ଉଚିତ୍ ନୁହେଁ ।। ୧୨ ।।

ଆଚାରସ୍ୟାଧିକ୍ୟଂ ପ୍ରତିପାଦୟତି –

**ଆଚାର ଏବ ସର୍ବେଷାମଲଙ୍କାରାୟ କଳ୍ପ୍ୟତେ ।**
**ଆଚାରହୀନଃ ପୁରୁଷୋ ଲୋକେ ଭବତି ନିନ୍ଦିତଃ ।। ୧୩।।**

ସ୍ପଷ୍ଟମ୍ ।। ୧୩।।

– ଆଚାର ହିଁ ସମସ୍ତଙ୍କର ଅଳଙ୍କାର ହୋଇଥାଏ । ଆଚାରହୀନ ପୁରୁଷଲୋକରେ ନିନ୍ଦାର ପାତ୍ର ହୋଇଥାଏ ।। ୧୩।।

ତସ୍ମାତ୍ ସତ୍କର୍ମାଚରଣବାନ୍ ଭବେଦିତ୍ୟୁକ୍ତ୍ୱା କ୍ରିୟାଗମସ୍ଥଳଂ ସମାପୟତି –

**ଜ୍ଞାନେନାଚାରଯୁକ୍ତେନ ପ୍ରସୀଦତି ମହେଶ୍ୱରଃ ।**
**ତସ୍ମାଦାଚାରବାନ୍ ଜ୍ଞାନୀ ଭବେଦାଦେହପାତନମ୍ ।। ୧୪।।**

ସ୍ପଷ୍ଟମ୍ ।। ୧୪।।

– ସଦାଚାରଯୁକ୍ତ ଜ୍ଞାନଦ୍ୱାରା ମହେଶ୍ୱର ପ୍ରସନ୍ନ ହୁଅନ୍ତି । ତେଣୁ ଜ୍ଞାନୀ ଶରୀରର ମୃତ୍ୟୁ ପର୍ଯ୍ୟନ୍ତ ଆଚାରବାନ୍ ହେବା ଉଚିତ୍ ।। ୧୪।।

**ଇତି କ୍ରିୟାଗମସ୍ଥଳମ୍**

## ଅଥ ଭାବାଗମସ୍ଥଲମ୍

ଅଥ – 'ଯଂ ଯଥୋପାସତେ ତଦେବ ଭବତି ଯଦ୍‌ଭାବଂ ତଦ୍ ଭବତି ଯଥାକାରି ତଥାଚାରି ତଥା ଭବତି' ଇତି ବୃହଦାରଣ୍ୟକଶ୍ରୁତେଃ, 'ଶିବଭାବାନୁସନ୍ଧାନାଚ୍ଛିବୋ ଭାବେ ପ୍ରକାଶତେ' ଇତି ଯୋଗଜାଗମସ୍ଥିତେଶ୍ଚ ନିଷ୍କାମକର୍ମାନୁଷ୍ଠାନବତୋ ବିରକ୍ତସ୍ୟ ଭାବଚିହ୍ନମେବ ଭାବାଗମସ୍ଥଲମିତି ନିରୂପୟତି –

**ଭାବଚିହ୍ନାନି ବିଦୁଷୋ ଯାନି ସନ୍ତି ବିରାଗିଣଃ ।**
**ତାନି ଭାବାଗମତ୍ୱେନ ବର୍ତ୍ତନ୍ତେ ସର୍ବଦେହିନାମ୍ ।। ୧୫ ।।**

ବିରାଗିଣଃ ଅସତ୍‌କ୍ରିୟାଫଳବିରକ୍ତସ୍ୟ ବିଦୁଷୋ ଜ୍ଞାନିନଃ ଶିବଯୋଗିନଃ, ଯାନି ଭାବଚିହ୍ନାନି ସନ୍ତି, ତାନି ସର୍ବଦେହିନାଂ ପ୍ରାକୃତାନାଂ ଭାବାଗମତ୍ୱେନ ବର୍ତ୍ତନ୍ତ ଇତ୍ୟର୍ଥଃ ।। ୧୫ ।।

– (ଭାବାଗମସ୍ଥଳ ବର୍ଣ୍ଣନ) – ବୈରାଗ୍ୟଯୁକ୍ତ ବିଦ୍ୱାନ୍‌ଙ୍କର ଯେଉଁ ଭାବଚିହ୍ନ ଥାଏ, ତାହା ହିଁ ସମସ୍ତ ସାମାନ୍ୟ ଲୋକଙ୍କର ଭାବାଗମ ଅର୍ଥାତ୍ ଭାବରୂପୀ ଆଗମଶାସ୍ତ୍ର ରୂପରେ ପ୍ରମାଣ ହୋଇଥାଏ ।। ୧୫ ।।

ଅଥ ପୂର୍ବୋକ୍ତଜ୍ଞାନାଚାରାପେକ୍ଷୟା ଭାବ ଏବ ବିଶିଷ୍ଟ ଇତି ସୂତ୍ର ଦ୍ୱୟେନ କଥୟତି –

**ଶିବୋଽହମିତି ଭାବୋଽପି ଶିବତାପତ୍ତିକାରଣମ୍ ।**
**ନ ଜ୍ଞାନମାତ୍ରଂ ନାଚାରୋ ଭାବଯୁକ୍ତଃ ଶିବୋ ଭବେତ୍ ।। ୧୬ ।।**

ଶିବୋଽହମିତି ଭାବଃ ଶିବତ୍ୱପ୍ରାପ୍ତିକାରଣମ୍, ଜ୍ଞାନମାତ୍ରଂ ନ, ଶିବତାପତ୍ତିକାରଣଂ ନ ଭବତୀତ୍ୟର୍ଥଃ । ଆଚାରଃ କେବଳସତ୍‌କ୍ରିୟାଚାରୋଽପି ନ, ଶିବତ୍ୱପ୍ରାପ୍ତିକାରଣଂ ନ, କିନ୍ତୁ ଭାବଯୁକ୍ତଃ ଶିବୋଽହମିତି ଭାବେନ ସଂଯୁକ୍ତ ଏବ ଶିବଃ ଶିବସ୍ୱରୂପୋ ଭବେଦିତ୍ୟର୍ଥଃ ।। ୧୬ ।।

– ଶିବୋଽହମ୍ (ମୁଁ ଶିବ ଅଟେ) ଏହି ଭାବ ମଧ ଶିବତ୍ୱ ପ୍ରାପ୍ତିର କାରଣ ହୋଇଥାଏ । କେବଳ ଜ୍ଞାନ ଅଥବା କେବଳ ଆଚାର ଯୁକ୍ତ ନୁହଁ, ବରଂ କେବଳ ଭାବଯୁକ୍ତ ଭକ୍ତ ଶିବ ହୋଇପାରେ ।। ୧୬ ।।

ନନୁ ଜ୍ଞାନଭାବୟୋଃ କୋ ଭେଦ ଇତ୍ୟତ୍ରାହ –

**ଜ୍ଞାନଂ ବସ୍ତୁପରିଚ୍ଛେଦୋ ଧ୍ୟାନଂ ତଦ୍‌ଭାବକାରଣମ୍ ।**
**ତସ୍ମାଦ୍ ଜ୍ଞାତେ ମହାଦେବେ ଧ୍ୟାନଯୁକ୍ତୋ ଭବେତ୍ ସୁଧୀଃ ।। ୧୭ ।।**

ବସ୍ତୁପରିଚ୍ଛେଦ ଇଦମେତାଦୃଶମିତି ବସ୍ତୁସ୍ୱରୂପ ନିର୍ଣ୍ଣାୟକଂ ଜ୍ଞାନମ୍, ତଦ୍‌ଭାବକାରଣଂ ନିର୍ଣ୍ଣୀତସ୍ୟ ବସ୍ତୁନୋ ଭାବସ୍ୟ ଧର୍ମଲାଭସ୍ୟ କାରଣଂ ଧ୍ୟାନଂ ତଦେବାହମିତି ମନନମ୍। ତସ୍ମାଦ୍ ଶିବେ ଜ୍ଞାତେ ସତି ସୁଧୀଃ ସୁଜ୍ଞାନୀ ଧ୍ୟାନଯୁକ୍ତୋ ଭାବେନ ସଂଯୁକ୍ତୋ ଭବେତ୍ ସ୍ୟାଦିତ୍ୟର୍ଥଃ ।। ୧୭ ।।

– ଜ୍ଞାନ ବସ୍ତୁର ପରିଚ୍ଛେଦ ଅର୍ଥାତ୍ ତାହାର ବାସ୍ତବିକ ସ୍ୱରୂପର ନିର୍ଣ୍ଣାୟକ ହୋଇଥାଏ । ଧ୍ୟାନ ସେହି ଭାବର କାରଣ ଅଟେ । ତେଣୁ ମହାଦେବଙ୍କର ଜ୍ଞାନ ହେବା ପରେ ବିଦ୍ୱାନ୍ ଶିବଧ୍ୟାନରେ ଯୁକ୍ତ ହେବା ଉଚିତ୍ ।। ୧୭।।

ଅଥ କଥଂ ଭାବୟେଦିତ୍ୟତ୍ରାହ –

**ଅନ୍ତର୍ବହିଶ୍ଚ ସର୍ବତ୍ର ପରିପୂର୍ଣ୍ଣଂ ମହେଶ୍ୱରମ୍ ।**
**ଭାବୟେତ୍ ପରମାନନ୍ଦଲବ୍ଧୟେ ପଣ୍ଡିତୋତ୍ତମଃ ।। ୧୮ ।।**

ଅନ୍ତର୍ବହିଶ୍ଚ ଶରୀରାନ୍ତର୍ବହିଶ୍ଚେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୮ ।।

– ଉତ୍ତମ ପଣ୍ଡିତ ପରମାନନ୍ଦ ପ୍ରାପ୍ତ କରିବା ପାଇଁ ଶରୀର ଭିତରେ ଓ ବାହାରେ ସର୍ବତ୍ର ପରିପୂର୍ଣ୍ଣ ମହେଶ୍ୱରଙ୍କର ଧ୍ୟାନ ଓ ତାଙ୍କର ଭାବନା କରିବା ଉଚିତ୍ ।। ୧୮।।

ଅଥ ସା କ୍ରିୟାପୂଜା ଭାବରହିତା ଚେଦ୍ ବୃଥେତି ସଦୃଷ୍ଟାନ୍ତଂ ସୂତ୍ରଦ୍ୱୟେନାହ –

**ଅର୍ଥହୀନା ଯଥା ବାଣୀ ପତିହୀନା ଯଥା ସତୀ ।**
**ଶ୍ରୁତିହୀନା ଯଥା ବୁଦ୍ଧିର୍ଭାବହୀନା ତଥା କ୍ରିୟା ।। ୧୯ ।।**

ଶ୍ରୁତିହୀନା ବେଦଶ୍ରୁତିସମ୍ମତିରହିତା ବୁଦ୍ଧିର୍ଜ୍ଞାନମିତ୍ୟର୍ଥଃ ।। ୧୯ ।।

– ଯେପରି ଅର୍ଥହୀନ ବାଣୀ, ପତିହୀନ ସତୀ ସ୍ତ୍ରୀ, ବେଦଜ୍ଞାନ ରହିତ ବୁଦ୍ଧି ସେହିପରି ଶିବଭାବନା ରହିତ କ୍ରିୟା ବ୍ୟର୍ଥ ଅଟେ ।। ୧୯।।

**ଚକ୍ଷୁର୍ହୀନୋ ଯଥା ରୂପଂ ନ କିଞ୍ଚିଦ୍ୱୀକ୍ଷିତୁଂ କ୍ଷମଃ ।**
**ଭାବହୀନସ୍ତଥା ଯୋଗୀ ନ ଶିବଂ ଦ୍ରଷ୍ଟୁମୀଶ୍ୱରଃ ।। ୨୦ ।।**

ଈଶ୍ୱରଃ ସମର୍ଥ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୦।।

– ଯେପରି ଚକ୍ଷୁ ବିହନୀ ମନୁଷ୍ୟ କିଛି ଦେଖିବାକୁ ସମର୍ଥ ହୋଇ ନଥାଏ, ସେହିପରି ଭାବହୀନ ଯୋଗୀ ଶିବଙ୍କର ସାକ୍ଷାତ୍କାର କରିବାରେ ସମର୍ଥ ହୋଇନଥାଏ ।। ୨୦।।

**ଭାବଶୁଦ୍ଧେନ ମନସା ପୂଜୟେତ୍ ପରମେଷ୍ଠିନମ୍ ।**
**ଭାବହୀନାଂ ନ ଗୃହ୍ଣାତି ପୂଜାଂ ସୁମହତୀମପି ।। ୨୧ ।।**

ଭାବଶୁଦ୍ଧେନ ଧ୍ୟାନଶୁଦ୍ଧେନେତ୍ୟର୍ଥଃ । ସଃ ସ ପରମେଶ୍ୱର ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୧।।

– ତେଣୁ ମନୁଷ୍ୟ ଶୁଦ୍ଧ ଭାବ ଯୁକ୍ତ ମନଦ୍ୱାରା ପରମେଶ୍ୱର ଶିବଙ୍କର ପୂଜା କରିବା ଉଚିତ୍ । ଭାବହୀନ ବିଶିଷ୍ଟ ପୂଜାର ପରମେଶ୍ୱର ସ୍ୱୀକାର କରନ୍ତି ନାହିଁ ।। ୨୧।।

ଅଥ –

ଭ୍ରମଦ୍‌ଭ୍ରମରଚିନ୍ତାୟାଂ କୀଟୋଽପି ଭ୍ରମରାୟତେ ।
ଶିବଚିନ୍ତାସମାକ୍ରାନ୍ତଃ ଶିବରୂପୀ ଭବେଦ୍ ଧ୍ରୁବମ୍ ।।

ଇତି ବୀରାଗମବଚନାନୁସାରେଣ ଭାବମହତ୍ତ୍ୱଂ ପ୍ରକାଶୟତି –

**ନୈରନ୍ତର୍ଯ୍ୟେଣ ସମ୍ପନ୍ନେଭାବେ ଧ୍ୟାତୁଂ ଶିବଂ ପ୍ରତି ।**
**ତଦ୍ ଭାବୋ ଜାୟତେ ଯଦ୍ୱତ୍ କ୍ରିମେଃ କୀଟସ୍ୟ ଚିନ୍ତନାତ୍ ।। ୨୨।।**

କ୍ରିମେଃ କୀଟସ୍ୟ ଭ୍ରମରସ୍ୟ ଚିନ୍ତନାଦ୍ ଯଦ୍ୱଦ୍ ଯଥା ତଦ୍‌ଭାବୋ ଭ୍ରମରକୀଟଭାବୋ ଜାୟତେ, ତଥା ଭାବେ ଚିତ୍ତେ ଚିତ୍ତବିଶିଷ୍ଟେ ଶିବଂ ଧ୍ୟାତୁଂ ନୈରନ୍ତର୍ଯ୍ୟେଣ ସମ୍ପନ୍ନେ ସତି ତଦ୍‌ଭାବଃ ଶିବସ୍ୱରୂପ ଏବ ଜାୟତେ, ଶିବଂ ପ୍ରତୀୟତ ଇତ୍ୟର୍ଥଃ ।। ୨୨।।

– ଯେପରି କୃମି ଭ୍ରମରର ଚିନ୍ତା କରି କରି ଭ୍ରମର ହୋଇଥାଏ, ସେପରି ଶିବଙ୍କର ଧ୍ୟାନରେ ନିରନ୍ତର ଭାବରେ ଯୁକ୍ତ ଯୋଗୀ ମଧ୍ୟ ଶିବ ହୋଇଯାଏ ।। ୨୨।।

ଅଥ ନିଷ୍କଳଶିବଚିନ୍ତନେ ଯଦ୍ୟସମର୍ଥଃ, ତଦ୍ୱିଭୂତିଂ ବା ଚିନ୍ତୟେଦିତ୍ୟୁକ୍ତ୍ୱା ଭାବାଗମସ୍ଥଳଂ ସମାପୟତି –

**ନିଷ୍କଳଙ୍କଂ ନିରାକାରଂ ପରବ୍ରହ୍ମ ଶିବଭିଧମ୍ ।**
**ନିର୍ଧ୍ୟାତୁମସମର୍ଥୋଽପି ତଦ୍ୱିଭୂତିଂ ବିଭାବୟେତ୍ ।। ୨୩।।**

ତଦ୍ୱିଭୂତିଂ ସର୍ବଜ୍ଞତ୍ୱାଦିମହଦୈଶ୍ୱର୍ଯ୍ୟମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୩।।

– ଯଦି କୌଣସି ଭକ୍ତ ଶିବ ନାମକ ନିଷ୍କଳଙ୍କ ନିରାକାର ପରବ୍ରହ୍ମଙ୍କର ଧ୍ୟାନ କରିବାରେ ସମର୍ଥ ନହୁଏ, ତେବେ ମଧ୍ୟ ସେହି ଶିବଙ୍କର ସର୍ବଜ୍ଞତା ଆଦି ଐଶ୍ୱର୍ଯ୍ୟର ଧ୍ୟାନ କରିବା ଉଚିତ୍ ।। ୨୩।।

### ଇତି ଭାବାଗମସ୍ଥଲମ୍

### ଅଥ ଜ୍ଞାନାଗମସ୍ଥଲମ୍

ଅଥ – 'ଜ୍ଞାନୀ ବିଜ୍ଞାନତତ୍ପରଃ' ଇତ୍ୟମୃତବିନ୍ଦୁଶ୍ରୁତେ, 'ଜ୍ଞାନମେତଚ୍ଛୈବସଂସ୍ଥମ୍' ଇତି ପତିପରାତନ୍ତ୍ରବଚନାଚ୍ଚ ତଦ୍‌ଭାବାଗମସମ୍ପନ୍ନସ୍ୟ ପରଯୋଗିନୋ ଜ୍ଞାନଚିହ୍ନମେବ ଜ୍ଞାନାଗମସ୍ଥଲମିତି ପ୍ରତିପାଦୟତି –

**ପରସ୍ୟ ଜ୍ଞାନଚିହ୍ନାନି ଯାନି ସନ୍ତି ଶରୀରିଣାମ୍ ।**
**ତାନି ଜ୍ଞାନାଗମତ୍ୱେନ ପ୍ରବର୍ତ୍ତନ୍ତେ ବିମୁକ୍ତୟେ ।। ୨୪।।**

ପରସ୍ୟ ଭାବାଗମସମ୍ପନ୍ନସ୍ୟ ପରମଶିବଯୋଗିନୋ ଜ୍ଞାନଚିହ୍ନାନ୍ୟେବ ପ୍ରାକୃତାନାଂ ପଶୁଜନାନାଂ ବିମୁକ୍ତୟେ ତଦ୍‌ଗତୟେ ଜ୍ଞାନାଗମତ୍ୱେନ ପ୍ରବର୍ତ୍ତନ୍ତ ଇତ୍ୟର୍ଥଃ ।। ୨୪।।

– (ଜ୍ଞାନାଗମସ୍ଥଳ ବର୍ଣ୍ଣନ) – ପର ଅର୍ଥାତ୍ ଭାବାଗମ ସମ୍ପନ୍ନ ଜ୍ଞାନଯୋଗୀର ଯେଉଁ ଜ୍ଞାନଚିହ୍ନ ଥାଏ, ସେହିସବୁ ସାମାନ୍ୟ ଦେହଧାରୀମାନଙ୍କ ପାଇଁ ମୋକ୍ଷାର୍ଥ ଜ୍ଞାନାଗମ ଭାବରେ ବ୍ୟବହୃତ ହୋଇଥାଏ ।। ୨୪।।

ଅଥ – 'ଯଥେହ କର୍ମଚିତୋ ଲୋକଃ କ୍ଷୀୟତେ, ଏବମେବାମୁତ୍ର ପୁଣ୍ୟଚିତୋ ଲୋକଃ କ୍ଷୀୟତେ'[୨୦୨] 'ଜ୍ଞାତ୍ୱା ଦେବଂ ମୃତ୍ୟୁପାଶାଦ୍ ଛିନତ୍ତି'[୨୦୩] ଇତି ଶ୍ରୁତ୍ୟନୁସାରେଣ ପୂର୍ବୋକ୍ତକେବଲଭାବକର୍ମଭ୍ୟାଂ ଫଳଂ ନାସ୍ତୀତ୍ୟୁକ୍ତ୍ୱା ଜ୍ଞାନମେବ ପଞ୍ଚଭିଃ ସୂତ୍ରୈର୍ବିଶେଷୟତି –

**ଭାବେନ କିଂ ଫଳଂ ପୁସାଂ କର୍ମଣାଂ ବା କିମିଷ୍ୟତେ ।**
**ଭାବକର୍ମସମାଯୁକ୍ତଂ ଜ୍ଞାନମେବ ବିମୁକ୍ତିଦମ୍ ।। ୨୫।।**

ଅହଂ ବ୍ରହ୍ମାସ୍ମୀତ୍ୟପରୋକ୍ଷଜ୍ଞାନଂ ଜ୍ଞାନମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୫।।

– କେବଳ ଭାବଦ୍ୱାରା ମନୁଷ୍ୟଙ୍କୁ କିଛି ଫଳ ମିଳିବ ନାହିଁ । କେବଳ କର୍ମଦ୍ୱାରା ମଧ୍ୟ କିଛି ଲାଭ ନାହିଁ । ଭାବ ଏବଂ କର୍ମ ଉଭୟରେ ଯୁକ୍ତ ଜ୍ଞାନ ହିଁ ମୋକ୍ଷଦାୟକ ହୋଇଥାଏ ।। ୨୫।।

**କେବଳଂ କର୍ମମାତ୍ରେଣ ଜନ୍ମକୋଟିଶତୈରପି ।**
**ନାତ୍ମନାଂ ଜାୟତେ ମୁକ୍ତିର୍ଜ୍ଞାନଂ ମୁକ୍ତେର୍ହି କାରଣମ୍ ।। ୨୬।।**

ହି 'ନ କର୍ମଣା'[୨୦୪] ଇତି 'ତରତି ଶୋକମାତ୍ମବିତ୍'[୨୦୫] ଇତ୍ୟାଦି ବହୁସୁତ୍ୟାଦି-ପ୍ରସିଦ୍ଧୋଦ୍ଧୟମର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨୬।।

– କେବଳ କର୍ମଦ୍ୱାରା କୋଟି କୋଟି ଜନ୍ମରେ ମଧ୍ୟ ଆତ୍ମାର ମୁକ୍ତି ହୋଇ ନଥାଏ ଜ୍ଞାନ ହିଁ ମୁକ୍ତିର ଏକମାତ୍ର କାରଣ ଅଟେ ।। ୨୬।।

ଅଥ କର୍ମଣା ମୁକ୍ତିର୍ନାସ୍ତୀତ୍ୟେଦେବ ନ, କିନ୍ତୁ କର୍ମ ଜ୍ଞାନହୀନଂ ଚେଦ୍ ପୁନଃ ସଂସାରକାରଣମିତ୍ୟାହ –

**ଜ୍ଞାନହୀନଂ ସଦା କର୍ମ ପୁଂସାଂ ସଂସାରକାରଣମ୍ ।**
**ତଦେବ ଜ୍ଞାନଯୋଗେନ ସଂସାରବିନିବର୍ତକମ୍ ।। ୨୭।।**

---

୨୦୨. ଛା. ଉ., ୮/୧/୬

୨୦୩. ତୁଳନୀୟ – ଜ୍ଞାତ୍ୱା ଦେବଂ ସର୍ବପାଶାପହାନିଃ (ଶ୍ୱେ. ଉ., ୧/୧୧)

୨୦୪. କୈ. ଉ., ୩

୨୦୫. ଛା. ଉ., ୭/୧/୩

ସ୍ୱଷ୍ଟମ୍ ।। ୨୭।।

– ପୁରୁଷମାନଙ୍କର ଜ୍ଞାନହୀନ କର୍ମ ସଦା ସଂସାର ଅର୍ଥାତ୍ ପୁନର୍ଜନ୍ମର କାରଣ ହୋଇଥାଏ । ସେହି କର୍ମ ଜ୍ଞାନଯୁକ୍ତ ହେଲେ ସଂସାରର ବିନିବର୍ତ୍ତକ ଅର୍ଥାତ୍ ମୋକ୍ଷପ୍ରଦ ହୋଇଥାଏ ।। ୨୭।।

ଅଥ ଜ୍ଞାନହୀନଂ କର୍ମ କଥଂ ପୁନଃ ସଂସାରକାରଣମିତ୍ୟତ୍ରାହ –

**ଫଳଂ କ୍ରିୟାବତାଂ ପୁଂସାଂ ସ୍ୱର୍ଗାଦ୍ୟଂ ନଶ୍ୱରଂ ଯତଃ ।**

**ତସ୍ମାତ୍ ସ୍ଥାୟିଫଳପ୍ରାପ୍ତ୍ୟୈ ଜ୍ଞାନମେବ ସମଭ୍ୟସେତ୍ ।। ୨୮।।**

'ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି'[୨୦୬] ଇତ୍ୟାଦିବଚନବଳାତ୍ କେବଳକ୍ରିୟାନିଷ୍ଠାନାଂ ପୁଂସାଂ ସ୍ୱର୍ଗାଦ୍ୟଂ ଫଳଂ ନଶ୍ୱରଂ ନାଶଶୀଳମ୍, ତସ୍ମାତ୍ ସ୍ଥାୟିମୋକ୍ଷଫଳପ୍ରାପ୍ତ୍ୟୈ ଜ୍ଞାନମେବ ସମ୍ୟଗଭ୍ୟସେଦିତ୍ୟର୍ଥଃ ।। ୨୮।।

– ଯେହେତୁ କ୍ରିୟାବାନ୍ ପୁରୁଷମାନଙ୍କର ଅର୍ଥାତ୍ ମନୁଷ୍ୟମାନଙ୍କର କ୍ରିୟାଦ୍ୱାରା ପ୍ରାପ୍ତ ସ୍ୱର୍ଗ ଆଦି ଫଳ ନଶ୍ୱର ହୋଇଥାଏ, ତେଣୁ ସ୍ଥାୟୀ ଅର୍ଥାତ୍ ଅନଶ୍ୱର ଫଳର ପ୍ରାପ୍ତି ପାଇଁ ଜ୍ଞାନର ଅଭ୍ୟାସ କରିବା ଉଚିତ୍ ।। ୨୮।।

ନନୁ ତଜ୍ଜ୍ଞାନଂ କଥମଭ୍ୟସନୀୟମିତ୍ୟତ୍ରାହ –

**ଶାସ୍ତ୍ରାଭ୍ୟାସାଦିଯତ୍ନେନ ସଦ୍‌ଗୁରୋରୁପଦେଶତଃ ।**

**ଜ୍ଞାନମେବ ସମଭ୍ୟସ୍ୟେତ୍ କିମନ୍ୟେନ ପ୍ରୟୋଜନମ୍ ।। ୨୯।।**

ଶାସ୍ତ୍ରାଭ୍ୟାସାଦିଯତ୍ନେନ ନିଗମାଗମଶିରଃ ସିଦ୍ଧବୀରଶୈବଶାସ୍ତ୍ରାଭ୍ୟାସାଦିପ୍ରଯତ୍ନେନ ସଦ୍‌ଗୁରୋରୁପଦେଶତୋଽନୁଗ୍ରହାତ୍ ଜ୍ଞାନମେବ ଶିବଜ୍ଞାନମେବ ସମଭ୍ୟସ୍ୟେତ୍ ସମ୍ୟଗଭ୍ୟାସଂ କୁର୍ଯ୍ୟାତ୍ । ଅନ୍ୟେନ ପାଶବହବିର୍ଭକ୍ଷଣୋପଯୁକ୍ତପୂର୍ବମୀମାଂସାଦିଶାସ୍ତ୍ରେଣ କିଂ ପ୍ରୟୋଜନମ୍ ? ନ କିଞ୍ଚିତ୍ ପ୍ରୟୋଜନମିତ୍ୟର୍ଥଃ ।। ୨୯।।

– ଶାସ୍ତ୍ରମାନଙ୍କର ଅଭ୍ୟାସ ଆଦି ପ୍ରୟାସ ତଥା ସଦ୍‌ଗୁରୁଙ୍କର ଉପଦେଶଦ୍ୱାରା ଜ୍ଞାନର ଅଭ୍ୟାସ କରିବା ଉଚିତ୍ । ଅନ୍ୟ ସାଧନର କ'ଣ ପ୍ରୟୋଜନ ? ।। ୨୯।।

ଅଥ ତଜ୍ଜ୍ଞାନମହତ୍ତ୍ୱଂ ସୂତ୍ରଦ୍ୱୟେନ ପ୍ରକାଶୟତି –

**ଜ୍ଞାନଂ ପରଶିବାଦ୍ୱୈତପରିପାକବିନିଶ୍ଚୟଃ ।**

**ଯେନ ସଂସାରସମ୍ବନ୍ଧବିନିବୃତ୍ତିର୍ଭବେତ୍ ସତାମ୍ ।। ୩୦।।**

ପରବ୍ରହ୍ମଲିଙ୍ଗାଦନ୍ୟନ୍ନାସ୍ତୀତି ପରିପକ୍ୱନିଶ୍ଚୟ ଏବ ଜ୍ଞାନଂ ଯେନ ଜ୍ଞାନେନ ସତାଂ ସଂସାରବାଧାନିବୃତ୍ତିର୍ଭବେଦିତି ।। ୩୦।।

---

୨୦୬. ଭ. ଗୀ., ୯/୨୧

– ଜ୍ଞାନର ଅର୍ଥ ହେଉଛି – ପରଶିବଙ୍କର ଅଦ୍ୱୈତଭାବର ପରିପାକ ସନ୍ଦର୍ଭରେ ନିଶ୍ଚିତ ଅବଧାରଣା । ଏହାଦ୍ୱାରା ମହାତ୍ମାମାନଙ୍କୁ ସଂସାରର ନିବୃତ୍ତି ପ୍ରାପ୍ତ ହୋଇଥାଏ ।। ୩୦।।

ଅଥ ତଦେବ ବିଶଦୟତି –

**ଶିବାତ୍ମକମିଦଂ ସର୍ବଂ ଶିବାଦନ୍ୟନ୍ନ ବିଦ୍ୟତେ ।**
**ଶିବୋଽହମିତି ଯା ବୁଦ୍ଧିସ୍ତଦେବ ଜ୍ଞାନମୁତ୍ତମମ୍ ।। ୩୧ ।।**

ସ୍ପଷ୍ଟମ୍ ।। ୩୧ ।।

– ଏ ସମସ୍ତ ହେଉଛି ଶିବାତ୍ମକ, ଶିବ ବ୍ୟତୀତ ଅନ୍ୟ କିଛି ନୁହେଁ, ମୁଁ ମଧ ଶିବ ଅଟେ – ଏହିପରି ଯେଉଁ ବୁଦ୍ଧି, ତାହା ହେଉଛି ଉତ୍ତମ ଜ୍ଞାନ ।। ୩୧ ।।

ଅଥ ତଜ୍ଜ୍ଞାନମହତ୍ତ୍ୱଂ ସୂତ୍ରଦ୍ୱୟେନ ପ୍ରକାଶୟତି –

**ଅନ୍ଧୋ ଯଥା ପୁରସ୍ଥାନି ବସ୍ତୂନି ଚ ନ ପଶ୍ୟତି ।**
**ଜ୍ଞାନହୀନସ୍ତଥା ଦେହୀ ନାତ୍ମସ୍ଥଂ ବୀକ୍ଷତେ ଶିବମ୍ ।। ୩୨ ।।**

ସ୍ପଷ୍ଟମ୍ ।। ୩୨ ।।

– ଯେପରି ଅନ୍ଧବ୍ୟକ୍ତି ସମ୍ମୁଖରେ ଥିବା ବସ୍ତୁମାନଙ୍କୁ ଦେଖିପାରେ ନାହିଁ, ସେହିପରି ଜ୍ଞାନହୀନ ଜୀବ ନିଜ ଭିତରେ ଥିବା ଶିବଙ୍କୁ ଦେଖେ ନାହିଁ ।। ୩୨ ।।

ନନୁ ଶିବଦର୍ଶନେନ କିମିତ୍ୟତ୍ରାହ –

**ଶିବସ୍ୟ ଦର୍ଶନାଦ୍ ପୁଂସାଂ ଜନ୍ମରୋଗନିବର୍ତ୍ତନମ୍ ।**
**ଶିବଦର୍ଶନମପ୍ୟାହୁଃ ସୁଲଭଂ ଜ୍ଞାନଚକ୍ଷୁଷାମ୍ ।। ୩୩ ।।**

ଅତ୍ର ସ୍ୟାଦିତି ଶେଷଃ । ଜନ୍ମରୋଗନିବର୍ତ୍ତନଂ ସ୍ୟାଦିତି ସମ୍ବନ୍ଧଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୩ ।।

– ଶିବଙ୍କର ସାକ୍ଷାତ୍କାର ହେଲେ ମନୁଷ୍ୟଙ୍କର ଜନ୍ମରୂପୀ ରୋଗ ଦୂର ହୋଇଥାଏ । ଜ୍ଞାନରୂପୀ ନେତ୍ରବାଲା ମହାତ୍ମାମାନଙ୍କ ପାଇଁ ଶିବଙ୍କର ଦର୍ଶନ ମଧ ସୁଲଭ ହୋଇଥାଏ ।। ୩୩ ।।

ତସ୍ମାଦ୍ ଜ୍ଞାନେନ ବିନା ଅଜ୍ଞାନନିବୃତ୍ତିର୍ନାସ୍ତୀତ୍ୟୁକ୍ତ୍ୱା ଜ୍ଞାନାଗମସ୍ଥଲଂ ସମାପୟତି –

**ଦୀପଂ ବିନା ଯଥା ଗେହେ ନାନ୍ଧକାରୋ ନିବର୍ତ୍ତତେ ।**
**ଜ୍ଞାନଂ ବିନା ତଥା ଚିତ୍ତେ ମୋହୋଽପି ନ ନିବର୍ତ୍ତତେ ।। ୩୪ ।।**

ଜ୍ଞାନଂ ବିନା ଶିବଜ୍ଞାନଂ ବିନେତ୍ୟର୍ଥଃ । ମୋହୋଽଜ୍ଞାନମ୍ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୪ ।।

– ଯେପରି ଘର ଭିତରର ଅନ୍ଧକାର ଦୀପ ବିନା ଦୂର ହୁଏନି, ସେହିପରି ଚିତ୍ତରେ ଥିବା ମୋହ (ରୂପକ ଅନ୍ଧକାର) ମଧ୍ୟ ଜ୍ଞାନ ବିନା ଦୂର ହୋଇ ନଥାଏ ।। ୩୪ ।।

ଇତି ଜ୍ଞାନାଗମସ୍ଥଲମ୍

## ଅଥ ସକାୟସ୍ଥଲମ୍

ଅଥ – 'ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍'[୨୦୭] ଇତି ବଚନାନୁସାରେଣ ତଚ୍ଛିବଜ୍ଞାନସମ୍ପନ୍ନସ୍ୟ ଯୋଗିନଃ ଶରୀରସ୍ୟ କ୍ରିୟାଭାବଜ୍ଞାନକାରଣତ୍ୱେନାତ୍ମତ୍ୱନିରୂପଣାଦୟଂ ଲୋକଃ ସକାୟ ଇତି ଷଡ୍‌ଭିଃ ସୂତ୍ରୈଃ ସକାୟସ୍ଥଲଂ ପ୍ରତିପାଦୟତି –

**ପରସ୍ୟ ଯା ତନୁର୍ଜ୍ଞେୟାଦ୍ଧଦେହକର୍ମାଭିମାନିନଃ ।**
**ତୟା ସକାୟୋ ଲୋକୋଽୟଂ ତଦାତ୍ମତ୍ୱନିରୂପଣାତ୍ ।। ୩୫ ।।**

ଅଦେହକର୍ମାଭିମାନିନଃ ସ୍ଥୂଲୋଽହମହଂ କରୋମୀତି ଲୌକିକବଦ୍ ଦେହକର୍ମାଭିମାନଶୂନ୍ୟସ୍ୟ ପରସ୍ୟ ପୂର୍ବୋକ୍ତଜ୍ଞାନସମ୍ପନ୍ନସ୍ୟ ଯୋଗିନଃ ପରୈର୍ଜ୍ଞେୟା ଯା ତନୁରସ୍ତି, ତୟା ତନ୍ୱା ତଦାତ୍ମତ୍ୱନିରୂପଣାତ୍ ତଚ୍ଛରୀରସ୍ୟ ଆତ୍ମତ୍ୱନିରୂପଣାତ୍ ଅୟଂ ଲୋକଃ ସକାୟ ଇତି କାୟେନ ସହିତ ଇତ୍ୟର୍ଥଃ ।। ୩୫ ।।

– (ସକାୟସ୍ଥଲ ବର୍ଣ୍ଣନ) – (ସ୍ଥୂଳ ଆଦି ବିଶିଷ୍ଟ) ଦେହ ଏବଂ କର୍ମର ଯିଏ ଅଭିମାନୀ ନୁହେଁ, ଏହିପରି ପର ଅର୍ଥାତ୍ ଜ୍ଞାନସ୍ଥଳୀର ଯେଉଁ ଜ୍ଞେୟ ଶରୀର ଅଛି, ତାହାଦ୍ୱାରା ଏହି ଲୋକ ସକାୟ କୁହାଯାଏ, କାରଣ ତାହାର (ଜ୍ଞାନୀ) ଶରୀର ଆତ୍ମା ରୂପରେ ପ୍ରତିପାଦିତ ହୋଇଥାଏ ।। ୩୫ ।।

ନନୁ ଦେହାଭିମାନଶୂନ୍ୟସ୍ୟ ପରଯୋଗିନଃ କାୟାପେକ୍ଷା କିମର୍ଥମିତ୍ୟତ୍ରାହ –

**କାୟଂ ବିନା ସମସ୍ତାନାଂ ନ କ୍ରିୟା ନ ଚ ଭାବନା ।**
**ନ ଜ୍ଞାନଂ ଯତ୍ତତୋ ଯୋଗୀ କାୟବାନେବ ସଞ୍ଚରେତ୍ ।। ୩୬ ।।**

ଯଦ୍ୟସ୍ମାତ୍ କାରଣାତ୍ ସମସ୍ତାନାଂ ଚ କାୟଂ ବିନା କ୍ରିୟାଧ୍ୟାନଶୂନ୍ୟତ୍ୱାତ୍ ଶିବଜ୍ଞାନସମ୍ପନ୍ନଃ ଶିବଯୋଗୀ କାୟବାନେବ ସଞ୍ଚରେଦିତି ।। ୩୬ ।।

– କାୟ (ଶରୀର) ବିନା ସମସ୍ତ ଲୋକଙ୍କର କ୍ରିୟା, ଭାବନା ଅଥବା ଜ୍ଞାନ ସମ୍ଭବ ହୋଇ ନଥାଏ, ତେଣୁ ଯୋଗୀ କାୟବାନ୍ ହୋଇ (ସଂସାରରେ) ବିଚରଣ କରିବା ଉଚିତ୍ ।। ୩୬ ।।

---

୨୦୭. କୁ. ସଂ.

ନନ୍ୱସ୍ୟ ଯୋଗିନଃ ଶିବଜ୍ଞାନସମ୍ପନ୍ନତ୍ୱାତ୍ କିମିତି କାୟାପେକ୍ଷତ୍ୟତ୍ରାହ –

**ଶିବୈକଜ୍ଞାନଯୁକ୍ତସ୍ୟ ଯୋଗିନୋଽପି ମହାତ୍ମନଃ ।**

**କାୟଯୋଗେନ ସିଦ୍ଧ୍ୟନ୍ତି ଭୋଗମୋକ୍ଷାଦୟଃ ସଦା ।। ୩୭।।**

ମୋକ୍ଷସ୍ୟ ଜ୍ଞାନମୂଳତ୍ୱାତ୍, ଜ୍ଞାନସ୍ୟ କାୟମୂଳତ୍ୱାଦିତି ଭାବଃ ।। ୩୭।।

– ଶିବଙ୍କର ଜ୍ଞାନରେ ଯୁକ୍ତ ମହାନ୍ ଆତ୍ମାବାଲା ଯୋଗୀର ମଧ୍ୟ ଭୋଗ, ମୋକ୍ଷ ଆଦି (କର୍ମ) ସର୍ବଦା କାୟଯୋଗରେ ହିଁ ସିଦ୍ଧ ହୋଇଥାଏ ।। ୩୭।।

ଅତ୍ର ଦୃଷ୍ଟାନ୍ତମାହ –

**କାଷ୍ଠଂ ବିନା ଯଥା ବହ୍ନିର୍ଜାୟତେ ନ ପ୍ରକାଶବାନ୍ ।**

**ମୂର୍ତ୍ତିଂ ବିନା ତଥା ଯୋଗୀ ନାତ୍ମତତ୍ତ୍ୱପ୍ରକାଶବାନ୍ ।। ୩୮।।**

– ସ୍ପଷ୍ଟମ୍ ।। ୩୮।।

– ଯେପରି ଅଗ୍ନି କାଷ୍ଠ ବିନା ପ୍ରକାଶବାନ୍ ଅର୍ଥାତ୍ ପ୍ରକଟ ହୁଏ ନାହିଁ, ସେହିପରି ମୂର୍ତ୍ତି (ଶରୀର) ବିନା ଯୋଗୀ ଆତ୍ମତତ୍ତ୍ୱର ପ୍ରକାଶ କରି ପାରିବ ନାହିଁ ।। ୩୮ ।।

ପୁନଶ୍ଚ ଦୃଷ୍ଟାନ୍ତାନ୍ତରମାହ –

**ମୂର୍ତ୍ତ୍ୟାତ୍ମନୈବ ଦେବସ୍ୟ ଯଥାପୂଜ୍ୟତ୍ୱକଳ୍ପନା ।**

**ତଥା ଦେହାତ୍ମନୈବାସ୍ୟ ପୂଜ୍ୟତ୍ୱଂ ପରଯୋଗିନଃ ।। ୩୯ ।।**

ସ୍ପଷ୍ଟମ୍ ।। ୩୯ ।।

– ଯେପରି ମୂର୍ତ୍ତିଯୁକ୍ତ ହୋଇଥିବାରୁ ଦେବତାଙ୍କୁ ପୂଜ୍ୟ ମନା ହୁଏ, ସେହିପରି ପରଯୋଗୀ ମଧ୍ୟ ଦେହ ଧାରଣ କରିଥିବାରୁ ପୂଜ୍ୟ ହୋଇଥାଏ ।। ୩୯ ।।

କିମୁତ ଶିବୋଽପି ମୂର୍ତ୍ତ୍ୟାତ୍ମନୈବ ସୃଷ୍ଟ୍ୟାଦୀନ୍ କରୋତୀତ୍ୟାହ –

**ନିଷ୍କଳୋ ହି ମହାଦେବଃ ପରିପୂର୍ଣ୍ଣଃ ସଦାଶିବଃ ।**

**ଜଗତ୍ସୃଷ୍ଟ୍ୟାଦିସଂସିଦ୍ଧ୍ୟୈ ମୂର୍ତ୍ତିମାନେବ ଭାସତେ ।। ୪୦।।**

ସ୍ପଷ୍ଟମ୍ ।। ୪୦।।

– ନିଷ୍କଳ (ତଥାପି) ପରିପୂର୍ଣ୍ଣ ଅତଏବ ମହାଦେବ ହିଁ ସଦାଶିବ, ଜଗତ୍‌ର ସୃଷ୍ଟି ଆଦି କରିବା ପାଇଁ ମୂର୍ତ୍ତିମାନ୍ ହୋଇ (ସର୍ବତ୍ର) ଭାସିତ ହୋଇଥାନ୍ତି ।। ୪୦।।

ଅଥ ବ୍ରହ୍ମାଦିଦିବ୍ୟଜ୍ଞାନିନୋଽପି କାୟବନ୍ତ ଏବେତ୍ୟାହ –

**ବ୍ରହ୍ମାଦ୍ୟା ଦେବତାଃ ସର୍ବା ମୁନୟୋଽପି ମୁମୁକ୍ଷବଃ ।**

**କାୟବନ୍ତୋ ହି କୁର୍ବନ୍ତି ତପଃ ସର୍ବାର୍ଥସାଧକମ୍ ।। ୪୧।।**

ସ୍ପଷ୍ଟମ୍ ।। ୪୧।।

– ବ୍ରହ୍ମା ଆଦି ସମସ୍ତ ଦେବତା, ମୋକ୍ଷ ଚାହୁଁଥିବା ସମସ୍ତ ମୁନିଗଣ ମଧ୍ୟ ସର୍ବାର୍ଥ ସାଧକ ତପକୁ ଶରୀର ଧାରଣ କରି ହିଁ କରିଥାନ୍ତି ।। ୪୧ ।।

ଅଥ – 'ବୈରାଗ୍ୟେଣ ବପୁସ୍ତ୍ୟାଗୋ ନୈବ କାର୍ଯ୍ୟୋ ମନୀଷିଭିଃ' ଇତି ଦେବୀକାଲୋତ୍ତରବଚନାନୁସାରେଣ ଶରୀରସ୍ୟ ସକଳସିଦ୍ଧିମୂଳତ୍ୱାନ୍ନ ତତ୍ପରିତ୍ୟାଗୋ ଯୁକ୍ତ ଇତ୍ୟୁକ୍ତ୍ୱା ସକାୟସ୍ଥଳଂ ସମାପୟତି –

**ତପୋ ହି ମୂଳଂ ସର୍ବାସାଂ ସିଦ୍ଧୀନାଂ ଯଜ୍ଜଗତ୍ତ୍ରୟେ ।**
**ତପସ୍ତତ୍କାୟମୂଳଂ ହି ତସ୍ମାତ୍ କାୟଂ ନ ସନ୍ତ୍ୟଜେତ୍ ।। ୪୨ ।।**

ସର୍ବାସାଂ ସିଦ୍ଧୀନାଂ ତପଃ କାରଣମ୍, ତପସଃ ଶରୀରଂ କାରଣମ୍, ତସ୍ମାତ୍ କାୟଂ ବୈରାଗ୍ୟେଣ ନ ପରିତ୍ୟଜେଦିତି ।। ୪୨ ।।

– ତିନି ଲୋକରେ ସମସ୍ତ ସିଦ୍ଧିର ମୂଳ କାରଣ ତପ ଅଟେ ଏବଂ ସେହି ତପ କାୟମୂଳ (ଅର୍ଥାତ୍ ଶରୀରଦ୍ୱାରା ସମ୍ପାଦିତ କରାଯାଏ) ଅଟେ । ତେଣୁ ଶରୀରର ତ୍ୟାଗ କରିବା ଉଚିତ୍ ନୁହେଁ ।। ୪୨ ।।

ଇତି ସକାୟସ୍ଥଳମ୍

## ଅଥ ଅକାୟସ୍ଥଳମ୍

ଅଥ – 'ଅଚ୍ଛାୟମ୍'[୨୦୮] 'ଅଶରୀରମ୍'[୨୦୯] ଇତି ଶ୍ରୁତେଃ ପରଯୋଗିନଶ୍ଚୌପଚାରିକଦେହିତ୍ୱାଦକାୟ ଇତି ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ଔପଚାରିକଦେହିତ୍ୱାଜ୍ଜଗଦାତ୍ମତ୍ୱଭାବନାତ୍ ।**
**ମାୟାସମ୍ବନ୍ଧରାହିତ୍ୟାଦକାୟୋ ହି ପରଃ ସ୍ମୃତଃ ।। ୪୩ ।।**

ପର ଉକ୍ତଲକ୍ଷଣସକାୟଃ ପରଯୋଗୀ, ଔପଚାରିକଦେହିତ୍ୱାତ୍ ଦେହାଭିମାନ-ଶୂନ୍ୟତ୍ୱାଦ୍ ଜଗଦାତ୍ମତ୍ୱଭାବନାତ୍ 'ସ୍ୱଶକ୍ତିପ୍ରଚୟୋ ବିଶ୍ୱମ୍'[୨୧୦] ଇତି ଶିବସୂତ୍ରସ୍ଥିତେଃ ସର୍ବଂ ବିଶ୍ୱଂ ଶିବସ୍ୱଭାବଭୂତଚିତ୍କ୍ରିୟାଶକ୍ତିମୟମ୍, ତଦ୍ୱିଷୟତ୍ୱାତ୍, ଅନ୍ୟଥା ତଦ୍ବାହ୍ୟତ୍ୱେନାପ୍ରମେୟ କାର୍ଯ୍ୟଂ ସ୍ୟାଦିତି ଚିନ୍ତନାଦ୍ ମାୟାସମ୍ବନ୍ଧରହିତ୍ୟାତ୍, ଅତଏବାନ୍ୟୋନ୍ୟଭାବଲକ୍ଷଣଭେଦ-ବୁଦ୍ଧିରାହିତ୍ୟାଦ୍ ଅକାୟ ଇତି ସ୍ମୃତଃ, ହି ପ୍ରସିଦ୍ଧ ଇତ୍ୟର୍ଥଃ ।। ୪୩ ।।

– (ଅକାୟସ୍ଥଳ ବର୍ଣ୍ଣନ) – ପର ଅର୍ଥାତ୍ ସକାୟ ପରଯୋଗୀ ଔପଚାରିକ

---

୨୦୮. ବୃ. ଉ., ୩/୮/୮

୨୦୯. ଛା. ଉ., ୮/୧୨/୧

୨୧୦. ଶି. ସୂ., ୩/୩୦

(ଗୌଣ ରୂପରେ) ଦେହ ଧାରଣ କରି, ସଂସାରକୁ ନିଜର ସ୍ୱରୂପ ଭାବି ଏବଂ ମାୟାର ସମ୍ବନ୍ଧରୁ ରହିତ ହୋଇ ଅକାୟ ମନାଯାଏ ।। ୪୩।।

ନନ୍ୱସ୍ୟ ଦେହାଭିମାନଶୂନ୍ୟତ୍ୱେନାକାୟତ୍ୱେଽପି ଦେହସମ୍ବନ୍ଧସ୍ୟ ବିଦ୍ୟମାନତ୍ୱାତ୍ ତତ୍କୃତବିକାରୋଽସ୍ତି କିମିତ୍ୟତ୍ରାହ –

**ପରସ୍ୟ ଦେହଯୋଗେଽପି ନ ଦେହାଶ୍ରୟବିକ୍ରିୟା ।**

**ଶିବସ୍ୟେବ ଯତସ୍ତସ୍ମାଦକାୟୋଽୟଂ ପ୍ରକୀର୍ତ୍ତିତଃ ।। ୪୪।।**

ଶିବସ୍ୟ ଦେହଯୋଗେଽପି ଯଥା ଶରୀରପ୍ରଯୁକ୍ତକାମାଦିବିକାରୋ ନାସ୍ତି । ତଥା ପରଯୋଗିନଃ ଶିବତୁଲ୍ୟତ୍ୱାଦ୍ ଦେହପ୍ରଯୁକ୍ତବିକାରୋ ନାସ୍ତୀତ୍ୟର୍ଥଃ ।। ୪୪।।

– ଯେପରି ଶିବ ପର ହୋଇଥିବାରୁ ତାଙ୍କଠାରେ ଦେହ ସମ୍ବନ୍ଧୀ ବିକାର ହୁଏ ନାହିଁ, ସେହିପରି ପର ଅର୍ଥାତ୍ ଶିବସ୍ୱରୂପ ଯୋଗୀ ଦେହଧାରଣ କରିଥିଲେ ମଧ (ସାମାନ୍ୟ ମନୁଷ୍ୟଙ୍କର) ଶରୀରଦ୍ୱାରା ସମ୍ପନ୍ନ ହେଉଥିବା କ୍ରିୟା ସବୁର ସଂସ୍କାର ରୂପ ବିକାର ହୁଏ ନାହିଁ । ତେଣୁ ଏହି ଯୋଗୀ ଅକାୟ କୁହାଯାଏ ।। ୪୪।।

ନନ୍ୱକାୟକାୟତ୍ୱେନ ଭାସନଂ କିଂ ପ୍ରଯୁକ୍ତମିତ୍ୟତ୍ରାହ –

**ପରଲିଙ୍ଗେ ବିଲୀନସ୍ୟ ପରମାନନ୍ଦଚିନ୍ମୟେ ।**

**କୃତୋ ଦେହେନ ସମ୍ବନ୍ଧୋ ଦେହିବଦ୍ଭାସନଂ ଭ୍ରମଃ ।। ୪୫।।**

ଦ୍ରଷ୍ଟୃଣାଂ ଭ୍ରମ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୫।।

– ପରମ ଆନନ୍ଦ ସ୍ୱରୂପ ଏବଂ ଚିନ୍ମୟ ପରଲିଙ୍ଗ ଅର୍ଥାତ୍ ପରମଶିବରେ ବିଲୀନ ଯୋଗୀର ଦେହ ସହିତ ସମ୍ବନ୍ଧ କେଉଁଠି ରହେ ? ଅର୍ଥାତ୍ ରହେ ନାହିଁ । ସେ ଯେଉଁ ଦେହଧାରୀ ଦେଖାଯାଏ ତାହା ଭ୍ରମ ଅଟେ ।। ୪୫।।

ଅଥ ଦେହସମ୍ବନ୍ଧେ ସତ୍ୟପି ତେନ ବାଧକଂ ନାସ୍ତୀତ୍ୟାହ –

**ଦେହାଭିମାନହୀନସ୍ୟ ଶିବଭାବେ ସ୍ଥିତାତ୍ମନଃ ।**

**ଜଗଦେତଚ୍ଛରୀରଂ ସ୍ୟାଦ୍ ଦେହେନୈକେନ କା ବ୍ୟଥା ।। ୪୬।।**

ଦେହାଭିମାନଶୂନ୍ୟତ୍ୱେନ ଶିବଭାବେ ସ୍ଥିତସ୍ୱରୂପବତ୍ ଏତତ୍ ପରଯୋଗିନଃ ଶିବବଦ୍ ବିଶ୍ୱଂ ଶରୀରଂ ସ୍ୟାଦିତ୍ୟେକେନ ଶରୀରେଣ କା ବ୍ୟଥା ନ କାଽପୀତ୍ୟର୍ଥଃ ।। ୪୬।।

– ଦେହାଭିମାନରୁ ରହିତ ଅତଏବ ଶିବଭାବରେ ସ୍ଥିତ (ଯୋଗୀ) ପାଇଁ ଏହି ସମ୍ପୂର୍ଣ୍ଣ ସଂସାର ତାଙ୍କର ଶରୀର ଅଟେ । ତେବେ ଏକ (ଦୃଶ୍ୟମାନ ବ୍ୟକ୍ତିଗତ) ଶରୀରରୁ କ'ଣ ହାନି ଲାଭ ? ।। ୪୬।।

ଅଥ ଶିବବତ୍ ସ୍ୱାତନ୍ତ୍ର୍ୟାଭାବାତ୍ କସ୍ମାନ୍ନାସ୍ତୀତ୍ୟତ୍ରାହ –

**ଶିବଜ୍ଞାନୈକନିଷ୍ଠସ୍ୟ ନାହଙ୍କାରଭବଭ୍ରମଃ ।**
**ନ ଚେନ୍ଦ୍ରିୟଭବଂ ଦୁଃଖଂ ତ୍ୟକ୍ତଦେହାଭିମାନିନଃ ।। ୪୭ ।।**

ଶିବାହଂ ଭାବନିଷ୍ଠସ୍ୟ ପରିଚ୍ଛିନ୍ନଶରୀରାହଙ୍କାରଶୂନ୍ୟତ୍ୱାଦ୍ ନାହମୀଶ୍ୱର ଇତି ତତ୍କୃତ ଭ୍ରାନ୍ତିରିନ୍ଦ୍ରିୟଜନ୍ୟଂ ଦୁଃଖଂ ଚ ନାସ୍ତୀତ୍ୟର୍ଥଃ ।। ୪୭ ।।

– ଯେଉଁ ଶିବାଦ୍ୱୈତ ସର୍ବଦା ଜ୍ଞାନରେ ରତ, ତାଙ୍କର ଅହଙ୍କାରରୁ ଉତ୍ପନ୍ନ ଭ୍ରମ ହୁଏ ନାହିଁ । ଯିଏ ଦେହାଭିମାନର ତ୍ୟାଗ କରି ଦେଇଛି, ତା'ର ଇନ୍ଦ୍ରିୟଜନ୍ୟ ଦୁଃଖ ହୁଏ ନାହିଁ ।। ୪୭ ।।

ଅଥୋକ୍ତାର୍ଥମେବ ସ୍ଫୁଟୀକୃତ୍ୟାକାୟସ୍ଥଳଂ ସମାପୟତି –

**ନ ମନୁଷ୍ୟୋ ନ ଦେବୋଽହଂ ନ ଯକ୍ଷୋ ନୈବ ରାକ୍ଷସଃ ।**
**ଶିବୋଽହମିତି ଯୋ ବୁଦ୍ଧ୍ୟାତ୍ ତସ୍ୟ କିଂ ଦେହକର୍ମଣା ।। ୪୮ ।।**

ତସ୍ୟାକାୟସ୍ୟ ଶାରୀରକକର୍ମଣା କିମ୍, କିଂ ପ୍ରୟୋଜନମ୍, ନ କ୍ଵିମପୀତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୮ ।।

– 'ମୁଁ ମନୁଷ୍ୟ ନୁହେଁ, ଦେବତା ନୁହେଁ, ଯକ୍ଷ ନୁହେଁ ଓ ରାକ୍ଷସ ନୁହେଁ, ମୁଁ କେବଳ ଶବ ଅଟେ' – ଯିଏ ନିଜକୁ ଏପରି ଭାବେ, ତା'ର ଶରୀର କର୍ମରୁ କ'ଣ ଲାଭ ? (ଅର୍ଥାତ୍ ଶରୀରଦ୍ୱାରା କରାଯାଉଥିବା କର୍ମ ଦ୍ୱାରା ସେ ଉପଲିପ୍ତ ହୁଏ ନାହିଁ) ।। ୪୮ ।।

ଇତ୍ୟକାୟସ୍ଥଳମ୍

## ଅଥ ପରକାୟସ୍ଥଳମ୍

'ସଏବୈଂ (ବେଦୈ) ତତ୍ ପରମଂ ବ୍ରହ୍ମଧାମ'[୨୧୧] ଇତି ମୁଣ୍ଡକଶ୍ରୁତେଃ ଅକାୟପରଯୋଗୀ ପ୍ରକୃତିମାୟାତୀତ ଇତି ପରବ୍ରହ୍ମଶରୀରତ୍ୱାଦ୍ ପରକାୟ ଇତି ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ବଶୀକୃତତ୍ୱାଦ୍ ପ୍ରକୃତେର୍ମାୟାମାର୍ଗାତିବର୍ତନାତ୍ ।**
**ପରକାୟୋଽୟମାଖ୍ୟାତଃ ସତ୍ୟଜ୍ଞାନସୁଖାତ୍ମକଃ ।। ୪୯ ।।**

ଅୟମକାୟଃ ଶିବଯୋଗୀ ପ୍ରକୃତେର୍ବଶୀକୃତତ୍ୱାଦ୍ ବଶୀକୃତେର୍ମାୟାମାର୍ଗୋଲ୍ଲଙ୍ଘନାତ୍ ସତ୍ୟଜ୍ଞାନସୁଖାତ୍ମକଃ ସଚ୍ଚିଦାନନ୍ଦସ୍ୱରୂପବାନ୍ ପରକାୟ ଇତ୍ୟାଖ୍ୟାତ ଇତ୍ୟର୍ଥଃ ।। ୪୯ ।।

---

୨୧୧. ମୁ. ଉ., ୩/୨/୧

– (ପରକାୟସ୍ଥଳ ବର୍ଣ୍ଣନ) – ପ୍ରକୃତିକୁ ନିଜର ଅଧୀନ କରିଥିବାରୁ ଏବଂ ମାୟା ମାର୍ଗର ଅତିକ୍ରମଣ କରିଥିବାରୁ ସଚ୍ଚିଦାନନ୍ଦସ୍ୱରୂପ ଏହି ଯୋଗୀ ପରକାୟ କୁହାଯାଏ ।। ୪୯ ।।

ନନ୍ୱେବଂ ପରକାୟତ୍ୱେ କଥିତେଽପି ସ୍ଥୂଳଶରୀରସ୍ୟ ବିଦ୍ୟମାନତ୍ୱାତ୍ କଥମଧୁନୈବ ପରକାୟତ୍ୱମିତ୍ୟତ୍ରାହ –

**ପରବ୍ରହ୍ମବପୁର୍ଯସ୍ୟ ପ୍ରବୋଧାନନ୍ଦଭାସୁରମ୍ ।**
**ପ୍ରାକୃତେନ ଶରୀରେଣ କିମେତେନାସ୍ୟ ଜାୟତେ ।। ୫୦ ।।**

ଚିଦାନନ୍ଦାଭ୍ୟାଂ ପ୍ରକାଶମାନଂ ପରବ୍ରହ୍ମ ଯସ୍ୟ ବପୁଃ ଶରୀରଂ ଜାୟତେ, ଅସ୍ୟ ପରକାୟସ୍ୟ ପ୍ରାକୃତେନ ଶରୀରେଣ କିମ୍ ? ଅନ୍ୟୋନ୍ୟଭେଦାଭାବବୁଦ୍ଧିରୂପମାୟା-ମାର୍ଗୋଲ୍ଲଙ୍ଘନେନ ତତ୍କାର୍ଯ୍ୟରୂପପ୍ରକୃତିତତ୍ତ୍ୱସ୍ୟ ବଶୀକରଣାତ୍ ସାଗରତରଙ୍ଗନ୍ୟାୟେନ ସ୍ୱାଧୀନୀ-କରଣାତ୍ ପ୍ରକୃତି ସମ୍ଭବେନ ଶରୀରେଣ କିଂ ବାଧକମ୍ ? ନ କିମପିବାଧକମିତ୍ୟର୍ଥଃ ।। ୫୦ ।।

– ପ୍ରକୃଷ୍ଟବୋଧ ଅର୍ଥାତ୍ ପରଜ୍ଞାନ ଏବଂ ଆନନ୍ଦରେ ଦେଦୀପ୍ୟମାନ ଯାହାଙ୍କର ଶରୀର ପରବ୍ରହ୍ମସ୍ୱରୂପ ହୋଇଯାଇଛି, ତାଙ୍କର ପ୍ରକୃତିର ତତ୍ତ୍ୱରୁ ଉତ୍ପନ୍ନ ଏହି ସ୍ଥୂଳ ଶରୀରର କ'ଣ ପ୍ରୟୋଜନ ? (ଅର୍ଥାତ୍ ଏହି ଶରୀରରେ ବିହିତ କର୍ମରେ ସେ ପ୍ରଭାବିତ ହୁଏ ନାହିଁ) ।। ୫୦ ।।

ନନୁ ତଥାପି ଶରୀରମେବ ପ୍ରତିବନ୍ଧକମିତ୍ୟତ୍ରାହ –

**ସମ୍ୟଗ୍ଜ୍ଞାନାଗ୍ନିସନ୍ଦଗ୍ଧଜନ୍ମବୀଜକଳେବରଃ ।**
**ଶିବତତ୍ତ୍ୱାବଲମ୍ବୀ ଯଃ ପରକାୟଃ ସ ଉଚ୍ୟତେ ।। ୫୧ ।।**

ସମ୍ୟଗ୍ଜ୍ଞାନାଗ୍ନିନା ଦୃଢ଼ତରଶିବାଦ୍ୱୈତଜ୍ଞାନାଗ୍ନିନା ସନ୍ଦଗ୍ଧଂ ପୁନରୁତ୍ପତ୍ତିଶଙ୍କା ଯଥା ନ ଭବତି ତଥା ସମ୍ୟଗ୍ ଦଗ୍ଧଂ ଜନ୍ମୈବ ବୀଜଂ ଯସ୍ୟ ତାଦୃଶଂ କଳେବରୋ ଭବାନ୍ତର-କାରଣୀଭୂତ ସୂକ୍ଷ୍ମଶରୀରୋ ଯସ୍ୟ ସ ତଥାବିଧଃ ଶିବତତ୍ତ୍ୱାବଲମ୍ବୀ ପରଶିବସ୍ୱରୂପବାନ୍ ଯୋ ଅସ୍ତି, ସଃ ପରକାୟ ଇତ୍ୟୁଚ୍ୟତ ଇତ୍ୟର୍ଥଃ । ଜନ୍ମରୋଗପ୍ରବର୍ତ୍ତକସ୍ୟ ସୂକ୍ଷ୍ମଶରୀରସ୍ୟ ନଷ୍ଟତ୍ୱାତ୍ ସ୍ଥୂଳଶରୀରେ ସତ୍ୟପି ବାଧକଂ ନାସ୍ତୀତି ଭାବଃ ।। ୫୧ ।।

– ସମ୍ୟକ୍ ଜ୍ଞାନ (ଅର୍ଥାତ୍ 'ସର୍ବଂ ଶିବମୟମ୍' ଏହିପରି ଜ୍ଞାନ) ରୂପୀ ଅଗ୍ନିରେ ଯାହାଙ୍କର ଜନ୍ମର କାରଣଭୂତ ସୂକ୍ଷ୍ମ ଶରୀର ଜଳିଯାଇଛି, ତଥା ଯିଏ ଶିବ ତତ୍ତ୍ୱାବଲମ୍ବୀ ଅଟନ୍ତି, ସେ ପରକାୟ କୁହାଯାଆନ୍ତି ।। ୫୧ ।।

ନନୁ ଶରୀରସ୍ୟ ବିଦ୍ୟମାନତ୍ୱେନେନ୍ଦ୍ରିୟବ୍ୟାପାରାନୁବୃତ୍ତେର୍ବାଧକମେବେତ୍ୟତ୍ରାହ –

**ଇନ୍ଦ୍ରିୟାଣି ମନୋବୃତ୍ତିବାସନାଃ କର୍ମସମ୍ଭବାଃ ।**
**ଯତ୍ର ଯାନ୍ତି ଲୟଂ ତେନ ସକାୟୋଽଦ୍ୱୟଂ ପରାତ୍ମନା ।। ୫୨ ।।**

କର୍ମସମ୍ଭବାଃ କର୍ମପାଶସମ୍ଭୂତା ମନୋବୃତ୍ତିବାସନା ଇନ୍ଦ୍ରିୟାର୍ଥବାସନା ଇନ୍ଦ୍ରିୟାଣି ଚ ଦଶେନ୍ଦ୍ରିୟ ବ୍ୟାପାରା ଯତ୍ର ଲୟଂ ଯାନ୍ତି, ତେନ ପରାତ୍ମନା ପରବ୍ରହ୍ମଣା ଅୟଂ ଏଷ ପରକାୟଃ ସକାୟଃ କାୟେନ ସହିତଃ ସନ୍ ବର୍ତ୍ତତେ । ଏତତ୍ କାୟସ୍ୟାପି ବ୍ରହ୍ମମୟତ୍ୱାଦିତି ଭାବଃ ।। ୫୨ ।।

– କର୍ମଦ୍ୱାରା ଉତ୍ପନ୍ନ ମାନସିକ ଭାବନା ସଂସ୍କାର ତଥା ଇନ୍ଦ୍ରିୟ ସବୁ ଯେଉଁଥିରେ ଲୀନ ହୋଇଯାଆନ୍ତି, ସେହି ପରମାତ୍ମାଙ୍କ ପାଇଁ ଏହା ସକାୟ ହୋଇଥାଏ ।। ୫୨ ।।

ନନୁ ଶରୀରସ୍ୟ କଥଂ ବ୍ରହ୍ମମୟତ୍ୱମିତ୍ୟତ୍ରାହ –

**ପରାହନ୍ତାମନୁପ୍ରାପ୍ୟ ପଶ୍ୟେଦ୍ ବିଶ୍ୱଂ ଚିଦାତ୍ମକମ୍ ।**
**ସଦେହୋଦ୍ଧତିଭ୍ରମସ୍ତସ୍ୟ ନିଶ୍ଚିତା ହି ଶିବାତ୍ମତା ।। ୫୩ ।।**

ପରାହନ୍ତାଂ ପରବ୍ରହ୍ମପରଶିବପରାତ୍ମପର୍ଯ୍ୟାୟପରତତ୍ତ୍ୱମେବ ସ୍ୱୟମିତି ଭାବମନୁ-ପ୍ରାପ୍ୟ ବିଶ୍ୱଂ ସକଳଜଗଜ୍ଜାଲଂ ଚିଦାତ୍ମକଂ ପରବ୍ରହ୍ମସ୍ୱଭାବଭୂତଚିଦ୍‌କ୍ରିୟାନ୍ତର୍ଗତତ୍ୱାତ୍ତନ୍ମୟମିତି ଯଃ ପଶ୍ୟତି, ତସ୍ୟ ସନ୍ଦେହଃ ଦେହେନ ସହ ବର୍ତ୍ତମାନତ୍ୱମ୍, ଅତିଭ୍ରମଃ ପଶ୍ୟତାଂ ପ୍ରାକୃତାନାଂ ଭ୍ରମଃ। ନିଶ୍ଚିତା ହି ଶିବାତ୍ମତା, କିନ୍ତୁ ତସ୍ୟ ଶରୀରସ୍ୟ ଶିବାତ୍ମତା ନିଶ୍ଚିତା, ଶକ୍ତିମୟତ୍ୱାଦିତି ।। ୫୩ ।।

– ପର ଅହନ୍ତା (ଅର୍ଥାତ୍ 'ଅହଂ ପରଃ ଶିବଃ' ଅଥବା 'ଅହଂ ସର୍ବମ୍' ଏହି ଭାବନା) କୁ ପ୍ରାପ୍ତ କରି ଯୋଗୀ ସମ୍ପୂର୍ଣ୍ଣ ବିଶ୍ୱକୁ ଚିନ୍ମୟ ଦେଖେ । ତାହାର ଶିବରୂପତା ନିଶ୍ଚିତ ଅଟେ (ଅର୍ଥାତ୍ ସେ ନିଶ୍ଚିତ ରୂପରେ ଶିବ ହୋଇଯାଏ) । ତାହାଙ୍କୁ ସଦେହ ଭାବିବା ବଡ଼ ଭ୍ରମ ଅଟେ ।। ୫୩ ।।

ତର୍ହି ସ ପରକାୟଃ ଶିବବଦକାୟଃ ସନ୍ ପରମମୁକ୍ତ ଏବ ସ୍ୟାଦିତ୍ୟତ୍ରାହ –

**ସ୍ୱସ୍ୱରୂପଂ ଚିଦାକାରଂ ଜ୍ୟୋତିଃ ସାକ୍ଷାଦ୍ୱିଚିନ୍ତୟନ୍ ।**
**ଦେହବାନପି ନିର୍ଦେହୋ ଜୀବନ୍ମୁକ୍ତୋ ହି ସାଧକଃ ।। ୫୪ ।।**

ସ୍ୱସ୍ୱରୂପଂ ସାକ୍ଷାଚ୍ଚିଦାକରଂ ଜ୍ୟୋତିରିତି ଚିନ୍ତୟନ୍ ସାଧକୋ ଦେହବାନପି ପୁନର୍ଦେହାନ୍ତରାଭାବାନ୍ନିର୍ଦେହୋ ଜୀବନ୍ମୁକ୍ତ ଇତି ହି ପ୍ରସିଦ୍ଧମିତ୍ୟର୍ଥଃ ।। ୫୪ ।।

– ନିଜର ସ୍ୱରୂପକୁ ଚିଦାକାର ଏବଂ ସାକ୍ଷାତ୍ ଜ୍ୟୋତିଃ ସ୍ୱରୂପ ଜାଣୁଥିବା ଦେହବାନ୍ ମଧ୍ୟ ବସ୍ତୁତଃ ଦେହରହିତ ହିଁ ହୋଇଥାଏ । ସେହି ସାଧକ ନିଶ୍ଚିତ ରୂପରେ ଜୀବନ୍ମୁକ୍ତ ଅଟେ ।। ୫୪ ।।

ତଦେବୋପପାଦୟତି –

ଦେହସ୍ତିଷ୍ଠତୁ ବା ଯାତୁ ଯୋଗିନଃ ସ୍ୱାତ୍ମବୋଧିନଃ ।
ଜୀବନ୍ମୁକ୍ତିର୍ଭବେତ୍ ସଦ୍ୟଶ୍ଚିଦାନନ୍ଦପ୍ରକାଶିନୀ ।। ୫୫।।

ସ୍ପଷ୍ଟମ୍ ।। ୫୫।।

– ଯାହାଙ୍କର ଆତ୍ମସାକ୍ଷାତ୍କାର ହୋଇସାରିଛି, ଏପରି ଯୋଗୀର ଶରୀର ରହୁ କି ଯାଉ, ତାହାଙ୍କୁ ଚିଦାନନ୍ଦ ପ୍ରକାଶ କରିବାବାଲା ଜୀବନ୍ମୁକ୍ତି ତତ୍କାଳ ପ୍ରାପ୍ତ ହୁଏ ।। ୫୫।।

ଅଥ ଦୃଷ୍ଟାନ୍ତମାହ –

ଆତ୍ମଜ୍ଞାନାବସାନଂ ହି ସଂସାରପରିପୀଡ଼ନମ୍ ।
ସୂର୍ଯ୍ୟୋଦୟେଽପି କିଂ ଲୋକସ୍ତିମିରେଣୋପରୁଦ୍ଧ୍ୟତେ ।। ୫୬।।

ଉପରୁଦ୍ଧ୍ୟତେ ବ୍ୟାପ୍ୟତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୬।।

– ସଂସାରର ପୀଡ଼ା ଆତ୍ମଜ୍ଞାନ ପର୍ଯ୍ୟନ୍ତ ଥାଏ । କ'ଣ ସୂର୍ଯ୍ୟୋଦୟ ପରେ ମଧ୍ୟ ସଂସାର ଅନ୍ଧକାରରେ ଆଚ୍ଛନ୍ନ ଥାଏ ? (ଅର୍ଥାତ୍ ନ ଥାଏ) ।। ୫୬।।

ଅଥ ପରକାୟସ୍ଥଳଂ ସମାପୟତି –

ଦେହାଭିମାନନିର୍ମୁକ୍ତଃ କଳାତୀତପଦାଶ୍ରୟଃ ।
କଥଂ ଯାତି ପରିଚ୍ଛେଦଂ ଶରୀରେଷୁ ମହାବୁଧଃ ।। ୫୭।।

ଶରୀରକଳାଭିମାନଶୂନ୍ୟଃ ସନ୍ ଶରୀରସ୍ୟ ପାଞ୍ଚଭୌତିକତ୍ୱାତ୍ ତତ୍କାରଣୀଭୂତ-ନିବୃତ୍ତ୍ୟାଦି କଳାତୀତ ପରବ୍ରହ୍ମ ପଦାଶ୍ରିତୋ ମହାବୁଧଃ ପରମଜ୍ଞାନୀ ପରକାୟଃ ଶରୀରେଷୁ ପରିଚ୍ଛେଦଂ ପରିମିତତ୍ୱଂ କଥଂ କେନ ପ୍ରକାରେଣ ଯାତି ? ନ କେନାପି ଯାତୀତ୍ୟର୍ଥଃ।। ୫୭।।

– ଯିଏ ଦେହାଭିମାନରୁ ରହିତ ଏବଂ କଳାତୀତ ଅର୍ଥାତ୍ ନିଷ୍କଳ ପଦରେ ପ୍ରତିଷ୍ଠିତ ହୋଇଛନ୍ତି, ଏପରି ମହାବିଦ୍ୱାନ୍ ଶରୀର ବିଷୟରେ ସୀମିତ କିପରି ହୋଇପାରିବେ ? ।। ୫୭।।

## ଇତି ପରକାୟସ୍ଥଳମ୍

## ଅଥ ଧର୍ମାଚାରସ୍ଥଳମ୍

ଅଥ – 'ଯ (ଦ୍ୟେବ) ଦବିଦ୍ୟାଧିଗମଃ ସ୍ୱ (ଗମସ୍ୟ) ଧର୍ମସ୍ୟାନୁଚରଣଂ ସ୍ୱାଶ୍ରମେଷ୍ୱେବାନୁକ୍ରମଣଂ ସ୍ୱଧର୍ମ ଏବ ସଂବର୍ଧତେ ସ୍ତମ୍ଭଶାଖେବେତରାଣ୍ୟନେନୋର୍ଧ୍ୱଭାଗ୍ ଭବତ୍ୟନ୍ୟଥା ପତତି'[୨୧୨] ଇତି ମୈତ୍ରେୟଶ୍ରୁତେସ୍ତସ୍ୟ ପରକାୟସ୍ୟାଚାର ଏବ ସର୍ବଜନାନାଂ

---

୨୧୨. ମୈ. ଉ., ୪/୩

ଧର୍ମାଚାର ଇତି ଧର୍ମାଚାରସ୍ଥଲଂ ପ୍ରତିପାଦୟତି –

**ତସ୍ୟୈବ ପରକାୟସ୍ୟ ସମାଚାରୋ ଯ ଇଷ୍ୟତେ ।**

**ସ ଧର୍ମଃ ସର୍ବଲୋକାନାମୁପକାରାୟ କଳ୍ପ୍ୟତେ ।। ୫୮ ।।**

ତସ୍ୟ ପରବ୍ରହ୍ମକାୟସ୍ୟ ଶିବଯୋଗିନୋ ଯ ଆଚାର ଇଚ୍ଛାବିଷୟୀକ୍ରିୟତେ, ସ ଧର୍ମଃ ସନ୍ ସମସ୍ତଜନାନାମ୍ ଉପକାରାୟ କଳ୍ପ୍ୟତ ଇତ୍ୟର୍ଥଃ ।। ୫୮ ।।

– (ଧର୍ମାଚାର ସ୍ଥଳ ବର୍ଣ୍ଣନ) – ଏପରି ପରକାୟ ଶିବଯୋଗୀର ଯାହା ଆଚରଣ ହୁଏ, ତାହା କର୍ମ କୁହାଯାଏ । ଏପରି ଧର୍ମ ସମସ୍ତ ଜନଙ୍କର ଉପକାର କରିବାରେ ସମର୍ଥ ହୋଇଥାଏ ।। ୫୮ ।।

ଅଥ ତଦ୍ଧର୍ମାଚାରଂ ସୂତ୍ରତ୍ରୟେଣ କଥୟତି –

**ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଦୟା କ୍ଷମା ।**

**ଦାନଂ ପୂଜା ଜପୋ ଧ୍ୟାନମିତି ଧର୍ମସ୍ୟ ସଂଗ୍ରହଃ ।। ୫୯ ।।**

ଦାନଂ ସହଜଦାନମ୍, ପୂଜା ଶିବଲିଙ୍ଗପୂଜା, ଧ୍ୟାନଂ ଶିବଲିଙ୍ଗଚିନ୍ତନମ୍, ଜପଃ ଶୈବପଞ୍ଚାକ୍ଷରାଭ୍ୟାସ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୯ ।।

– ଅହିଂସା, ସତ୍ୟ, ଚୋରୀ ନ କରିବା (ଅଚୌର୍ଯ୍ୟ), ବ୍ରହ୍ମଚର୍ଯ୍ୟ, ଦୟା, କ୍ଷମା, ଦାନ, ପୂଜା (ଶିବଲିଙ୍ଗାର୍ଚ୍ଚନ), ଜପ (ପଞ୍ଚାକ୍ଷରର ଜପ), ଧ୍ୟାନ (ଶିବଙ୍କର ଧ୍ୟାନ) – ଏ ସବୁ ଧର୍ମର ସଂଗ୍ରହ ଅଟେ ।। ୫୯ ।।

ନନ୍ୱିଦଂ ଧର୍ମାଚରଣଂ କିମର୍ଥଂ କର୍ତ୍ତବ୍ୟମିତ୍ୟତ୍ରାହ –

**ଶିବେନ ବିହିତୋ ଯସ୍ମାଦାଗମୈର୍ଧର୍ମସଂଗ୍ରହଃ ।**

**ତସ୍ମାତ୍ତମାଚରନ୍ ବିଦ୍ୱାନ୍ ତତ୍ପ୍ରସାଦାୟ କଳ୍ପ୍ୟତେ ।। ୬୦ ।।**

ଆଗମୈଃ ଶିବେନ ଧର୍ମସମୂହୋ ବିହିତ ଇତି ବିଧେୟ ଏବ । ତସ୍ମାଦ୍ଧର୍ମାଚାରବାନ୍ ଶିବପ୍ରସାଦାୟ ସମର୍ଥୋ ଭବତି, ଅନ୍ୟଥା ଶିବପ୍ରସାଦଶୂନ୍ୟଃ ସନ୍ ନରକଂ ବ୍ରଜେଦିତ୍ୟର୍ଥଃ ।। ୬୦ ।।

– ଆଗମଶାସ୍ତ୍ରଗୁଡ଼ିକ ଶିବଙ୍କ ଦ୍ୱାରା ବିହିତ ଧର୍ମସଂଗ୍ରହର ବର୍ଣ୍ଣନ ଓ ଉଦଦେଶ କରିଛନ୍ତି । ତେଣୁ ସେ ସବୁର ଆଚରଣ କରୁଥିବା ବିଦ୍ୱାନ୍ ତାଙ୍କୁ (ଶିବଙ୍କୁ) ପ୍ରସନ୍ନ କରିବା ପାଇଁ ସମର୍ଥ ହୋଇଥାଏ ।। ୬୦ ।।

ନନୁ ସ ଧର୍ମଃ କଥଂ କର୍ତ୍ତବ୍ୟ ଇତ୍ୟତ୍ରାହ –

**ଅଧର୍ମଂ ନ ସ୍ପୃଶେଦ୍ କିଞ୍ଚିଦ୍ ବିହିତଂ ଧର୍ମମାଚରେଦ୍ ।**

**ତଂ ଚ କାମବିନିର୍ମୁକ୍ତଂ ତମପି ଜ୍ଞାନପୂର୍ବକମ୍ ।। ୬୧ ।।**

ବିହିତମହିଂସାଦିରୂପମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୧ ।।

– ଅଧର୍ମର ତିଳେମାତ୍ର ସ୍ପର୍ଶ କରିବା ଉଚିତ୍ ନୁହେଁ । (ଶାସ୍ତ୍ର ଦ୍ୱାରା) ବିହିତ ଧର୍ମର ଆଚରଣ କରିବା ଉଚିତ୍ । ତାହାର (ଧର୍ମର) ଫଳ ଇଚ୍ଛା ନ କରି ଆଚରଣ କରିବା ଉଚିତ୍ ଏବଂ ତାହା (ନିଷ୍କାମ କର୍ମ) ଜ୍ଞାନୀ ହୋଇ କରିବା ଉଚିତ୍ ।। ୬୧ ।।

ଅଥ ତଜ୍ଜ୍ଞାନଂ କୀଦୃଶମିତ୍ୟତ୍ର –

ମାତୃବତ୍ ପରଦାରାଂଶ୍ଚ ପରଦ୍ରବ୍ୟାଣି ଲୋଷ୍ଟବତ୍ ।
ଆତ୍ମବତ୍ ସର୍ବଭୂତାନି ଯଃ ପଶ୍ୟତି ସ ଧର୍ମରାଟ୍ ।।

ଇତି ଶ୍ରୁତ୍ୟନୁସାରେଣ ସୂତ୍ରଦ୍ୱୟେନାହ –

**ଆତ୍ମବତ୍ ସର୍ବଭୂତାନି ସଂପଶ୍ୟେଦ୍ ଯୋଗବିତ୍ତମଃ ।**
**ଜପଦେକାତ୍ମତାଭାବାନ୍ନିଗ୍ରହାଦିବିରୋଧତଃ ।। ୬୨ ।।**

ଯୋଗବିତ୍ତମୋ ଯୋଗୀଶ୍ୱରୋ ଜଗଦେକାତ୍ମତାଭାବାଜ୍ଜପତଃ ପ୍ରକାଶୈକରୂପତ୍ୱ-ଚିନ୍ତନାନ୍ନିଗ୍ରହାଦିବିରୋଧତୋ ନିଗ୍ରହାନୁଗ୍ରହୟୋରବକାଶାଭାବାଦ୍ ସର୍ବଭୂତାନି ଆତ୍ମବତ୍ ସ୍ୱାତ୍ମବତ୍ ସଂପଶ୍ୟେତ୍, ଅପକ୍ଷପାତେନ ପଶ୍ୟେଦିତ୍ୟର୍ଥଃ ।। ୬୨ ।।

– ଯୋଗକୁ ଜାଣିଥିବା ସାଧକ ସଂସାରକୁ ଏକମାତ୍ର ପରମାତ୍ମରୂପ ଜାଣି ନିଗ୍ରହ – ଅନୁଗ୍ରହକୁ ଅବସର ନ ଦେଇ ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କୁ ଆତ୍ମବତ୍ ଦେଖେ ।। ୬୨।।

ଏବଂ ପଶ୍ୟତୋ ମମକାରୋ ନୈବେତ୍ୟାହ –

**ଏକ ଏବ ଶିବଃ ସାକ୍ଷାଜ୍ଜଗଦେତଦିତି ସ୍ଫୁଟମ୍ ।**
**ପଶ୍ୟତଃ କିଂ ନ ଜାୟେତ ମମକାରୋ ହି ବିଭ୍ରମଃ ।। ୬୩।।**

ଶିବ ଏକ ଏବୈତଜ୍ଜଗଦିତି ସ୍ଫୁଟଂ ସାକ୍ଷାଦ୍ ପଶ୍ୟତଃ କିଂ ନ ଜାୟେତ୍ ? ସର୍ବଂ ସ୍ୟାଦେବ। ତସ୍ମିନ୍ ଜଗତି ମମକାରଃ ପ୍ରତିନିୟତମସ୍ତୁ ମମେତ୍ୟଭିମାନୋ ବିଭ୍ରମୋ ନାସ୍ତୀତ୍ୟର୍ଥଃ ।। ୬୩।।

– ଏକମାତ୍ର ଶିବ ଏହି ଜଗଦ୍ ରୂପରେ ଅଛନ୍ତି, ଏପରି ସ୍ପଷ୍ଟ ଦୃଷ୍ଟି ରଖିଥିବା ଯୋଗୀକୁ କ'ଣ ପ୍ରାପ୍ତ ହୁଏ ନାହିଁ ଅର୍ଥାତ୍ ସବୁ କିଛି ତାକୁ ମିଳିଥାଏ । ମମକାର (ଅର୍ଥାତ୍ ଏହା ମୋର, ଏହା ମୋର ନୁହେଁ – ଏପରି ଜ୍ଞାନ) ଭ୍ରମାତ୍ମକ ହୋଇଥାଏ ।। ୬୩।।

ଅଥ ତଦ୍ଧର୍ମାଚାରଂ ବିରକ୍ତୋଽପି ନ ତ୍ୟଜେଦିତ୍ୟାହ –

**ଧର୍ମ ଏବ ସମସ୍ତାନାଂ ଯତଃ ସଂସିଦ୍ଧିକାରଣମ୍ ।**
**ନିଃସ୍ପୃହୋଽପି ମହାଯୋଗୀ ଧର୍ମମାର୍ଗଂ ଚ ନ ତ୍ୟଜେତ୍ ।। ୬୪।।**

ସଂସିଦ୍ଧିକାରଣଂ ଭୋଗମୋକ୍ଷକାରଣମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୪।।

– ଧର୍ମ ହିଁ ସମସ୍ତ ସିଦ୍ଧିର କାରଣ । ତେଣୁ ଯୋଗୀ ନିଃସ୍ପୃହ ହୋଇ ମଧ୍ୟ ଧର୍ମମାର୍ଗର ତ୍ୟାଗ କରିବା ଉଚିତ୍ ନୁହେଁ (ଅର୍ଥାତ୍ ଧର୍ମାଚରଣ କରିବା ଉଚିତ୍) ।। ୬୪।।

ନନୁ ଜ୍ଞାନିନାଂ କିଂ ଧର୍ମାଚରଣେନେତ୍ୟତ୍ରାହ –

**ଜ୍ଞାନାମୃତେନ ତୃପ୍ତୋଽପି ଯୋଗୀ ଧର୍ମଂ ନ ସଂତ୍ୟଜେତ୍ ।**
**ଆଚାରଂ ମହତାଂ ଦୃଷ୍ଟ୍ୱା ପ୍ରବର୍ତ୍ତନ୍ତେ ହି ଲୌକିକାଃ [୨୧୩] ।। ୬୫।।**

ଜ୍ଞାନାମୃତେନ ଶିବଜ୍ଞାନାମୃତେନ ତୃପ୍ତୋଽପି ମହାଯୋଗୀ ଲୋକହିତାର୍ଥଂ ଧର୍ମାଚାରଂ ନ ପରିତ୍ୟଜେଦିତ୍ୟର୍ଥଃ ।। ୬୫।।

– ଜ୍ଞାନରୂପକ ଅମୃତରେ ତୃପ୍ତ ଯୋଗୀ ଧର୍ମର ତ୍ୟାଗ କରିବା ଉଚିତ୍ ନୁହେଁ। କାରଣ ବଡ଼ ଲୋକଙ୍କର ବ୍ୟବହାର ଦେଖି ମନୁଷ୍ୟ ଏହି ସଂସାରରେ ପ୍ରବୃତ୍ତ ହୋଇଥାନ୍ତି ।। ୬୫ ।।

ଅଥ କାରଣାନ୍ତରମପ୍ୟାହ –

**ସଦାଚାରପ୍ରିୟଃ ଶମ୍ଭୁଃ ସଦାଚାରେଣ ପୂଜ୍ୟେତ୍ ।**
**ସଦାଚାରଂ ବିନା ତସ୍ୟ ପ୍ରସାଦୋ ନୈବ ଜାୟତେ ।। ୬୬।।**

ଜ୍ଞାନିନୋଽପି ଶିବପ୍ରସାଦସିଦ୍ଧ୍ୟର୍ଥମହିଂସା ଧର୍ମାଚରଣମାବଶ୍ୟକମିତି ଭାବଃ ।। ୬୬।।

– ସଦାଚାର ପ୍ରିୟ ଶିବଙ୍କର ସଦାଚାରରେ ହିଁ ପୂଜା କରାଯାଏ । ସଦାଚାର ବିନା ସେ ପ୍ରସନ୍ନ ହୁଅନ୍ତି ନାହିଁ ।। ୬୬।।

**ଇତି ଧର୍ମାଚାରସ୍ଥଲମ୍**

## ଅଥ ଭାବାଚାରସ୍ଥଲମ୍

ଅଥ – ଜ୍ୟୋତୀରୂପଂ ଶିବଂ ପୂର୍ଣ୍ଣଂ ବିଶ୍ୱତେଜୋନିବର୍ତ୍ତକମ୍ ।
ଆଶୟଂ ଭାସୟନ୍ତଂ ଚ ଭାବୟସ୍ତନ୍ମୟୋ ଭବେତ୍ ।।

ଇତି କାମିକବଚନାନୁସାରେଣ ଧର୍ମାଚାରସମ୍ପନ୍ନସ୍ୟ ଶିବଯୋଗିନୋ ଭାବ ଏବ ସର୍ବେଷାଂ ଭାବାଚାର ଇତ୍ୟୁପପାଦୟତି –

---

୨୧୩. ତୁଳନୀୟ –
ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।
ସ ଯତ୍ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।। (ଭ.ଗୀ., ୩/୨୧)

**ଭାବ ଏବାସ୍ୟ ସର୍ବେଷାଂ ଭାବାଚାରଃ ପ୍ରକୀର୍ତ୍ତିତଃ ।**

**ଭାବୋ ମାନସଚେଷ୍ଟାତ୍ମା ପରିପୂର୍ଣ୍ଣଃ ଶିବାଶ୍ରୟଃ ।। ୬୭ ।।**

ଅସ୍ୟ ଧର୍ମାଚାରସମ୍ପନ୍ନସ୍ୟ ଶିବଯୋଗିନୋ ଭାବ ଏବ ସର୍ବେଷାଂ ପ୍ରାକୃତାନାଂ ଭାବାଚାର ଇତି ପରିକୀର୍ତ୍ତିତଃ । ଭାବୋ ନାମ କ ଇତ୍ୟତ୍ରାହ – ମାନସେତି । ମନୋବ୍ୟାପାରରୂପଃ ସନ୍ ପରିପୂର୍ଣ୍ଣଶିବାଶ୍ରୟୋଽନ୍ତର୍ବହିଶ୍ଚ ପୂର୍ଣ୍ଣଶିବ ଏବ ଆଶ୍ରୟୋ ଯସ୍ୟ, ତାଦୃଶସ୍ତୁ ବିଶେଷଣଭାବ ଇତ୍ୟର୍ଥଃ ।। ୬୭ ।।

– (ଭାବାଚାରସ୍ଥଳ ବର୍ଣ୍ଣନ) – ଏହି ଧର୍ମାଚାରସ୍ଥଳୀ ଯୋଗୀର ଭାବ ହିଁ ସମସ୍ତଙ୍କ ପାଇଁ ସଦାଚାର କୁହାଯାଇଛି । ଭାବର ଅର୍ଥ ହେଉଛି – ମାନସିକ ଚେଷ୍ଟା ଅର୍ଥାତ୍ ବିଚାରାତ୍ମିକା କ୍ରିୟା । ଏହା ପରିପୂର୍ଣ୍ଣ ଏବଂ ଶିବଙ୍କୁ ଆଶ୍ରିତ କରି ହୋଇଥାଏ ।। ୬୭ ।।

ଅଥ ଭାବଯୁକ୍ତକର୍ମ ସୂତ୍ରଦ୍ୱୟେନ ବିଶେଷୟତି –

**ଭାବନାବିହିତଂ କର୍ମ ପାବନାଦପି ପାବନମ୍ ।**

**ତସ୍ମାଦ୍ ଭାବନୟା ଯୁକ୍ତଂ ପରଧର୍ମଂ ସମାଚରେତ୍ ।। ୬୮ ।।**

ସ୍ପଷ୍ଟମ୍ ।। ୬୮ ।।

– ଭାବନା ସହିତ ବିହିତ କର୍ମ (ଅର୍ଥାତ୍ ଏହି କର୍ମକୁ କରୁଥିବା, କରାଉଥିବା ତଥା ସ୍ୱୟଂ କର୍ମ ମଧ୍ୟ ଶିବ ହିଁ ଅଟନ୍ତି – ଏପରି ଭାବନାରେ କରାଯାଇଥିବା କର୍ମ) ପବିତ୍ରରୁ ମଧ୍ୟ ପବିତ୍ର ଅଟେ । ଏହି କାରଣରୁ ଶିବ ଭାବନାରେ ଯୁକ୍ତ ପର ଧର୍ମର ଆଚରଣ କରିବା ଉଚିତ୍ ।। ୬୮ ।।

ନନୁ ଭାବେନ କିମିତ୍ୟତ୍ରାହ –

**ଭାବେନ ହି ମନଃଶୁଦ୍ଧିର୍ଭାବଶୁଦ୍ଧିଶ୍ଚ କର୍ମଣା ।**

**ଇତି ସଞ୍ଚିନ୍ତ୍ୟ ମନସା ଯୋଗୀ ଭାବଂ ନ ସଂତ୍ୟଜେତ୍ ।। ୬୯ ।।**

ସ୍ପଷ୍ଟମ୍ ।। ୬୯ ।।

– ଭାବଦ୍ୱାରା ମନ ଶୁଦ୍ଧି ହୋଇଥାଏ ଏବଂ ଭାବଶୁଦ୍ଧି (ଶିବାରାଧନ ଆଦି) କର୍ମରେ ହୁଏ । ଏପରି ଭାବି ଯୋଗୀ କେବେ ହେଲେ ଭାବର ତ୍ୟାଗ କରେ ନାହିଁ ।। ୬୯ ।।

ନନୁ ଭାବେନ କର୍ମସିଦ୍ଧିଶ୍ଚେତ୍ ପ୍ରତିବନ୍ଧକଂ ସ୍ୟାଦିତ୍ୟତ୍ରାହ –

**ଶିବଭାବନୟା ସର୍ବଂ ନିତ୍ୟନୈମିତ୍ତିକାଦିକମ୍ ।**

**କୁର୍ବନ୍ନପି ମହାଯୋଗୀ ଗୁଣଦୋଷୈର୍ନ ବାଧତେ ।। ୭୦ ।।**

ଶିବ ଏବ କର୍ତ୍ତେତି ଶିବଭାବନୟା (କର୍ମ) କୁର୍ବନ୍ ଯୋଗୀ ଗୁଣଦୋଷୈର୍ନ ଲିପ୍ୟତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୦ ।।

– ମହାଯୋଗୀ ଶିବଭାବନା ସହିତ ସମସ୍ତ ନିତ୍ୟ ନୈମିତ୍ତିକ ଆଦି (କାମ୍ୟ) କର୍ମକୁ କରି ମଧ (ସେହି କର୍ମଗୁଡ଼ିକର) ଗୁଣ ଅଥବା ଦୋଷରେ (ଅର୍ଥାତ୍ ସେଥିରୁ ଜାତ ପୁଣ୍ୟ ଅଥବା ପାପ) ବାଧିତ ହୁଏ ନାହିଁ ।। ୭୦।।

ନନୁ ପରଯୋଗୀଶ୍ୱରସ୍ୟ ନିତ୍ୟନୈମିତ୍ତିକକର୍ମସଙ୍ଗାଭାବାଦ୍ କଥଂ ତଦାଚରଣମଙ୍ଗୀକୃତମିତ୍ୟତ୍ରାହ –

**ଅନ୍ତଃ ପ୍ରକାଶମାନସ୍ୟ ସଂବିଦ୍ ସୂର୍ଯ୍ୟସ୍ୟ ସନ୍ତତମ୍ ।**
**ଭାବେନ ଯଦୁପସ୍ଥାନଂ ତଦ୍‌ସନ୍ଧ୍ୟାବନ୍ଦନଂ ବିଦୁଃ ।। ୭୧ ।।**

ଅନ୍ତଃ ଊର୍ଦ୍ଧ୍ୱଂ ହୃତ୍‌କମଲେ ନିରନ୍ତରଂ ଭାସମାନସ୍ୟ ଚିଦାଦିତ୍ୟସ୍ୟ ଭାବେନ ଯଦୁପସ୍ଥାନମନୁବର୍ତ୍ତନମ୍, ତତ୍ ସନ୍ଧ୍ୟାବନ୍ଦନମିତି ବୀରଶୈବାଚାର୍ଯ୍ୟା ଜାନନ୍ତୀତ୍ୟର୍ଥଃ ।। ୭୧ ।।

– ନିଜ ଭିତରେ ପ୍ରକାଶମାନ ସଂବିଦ୍ ରୂପକ ସୂର୍ଯ୍ୟଙ୍କର ଶିବଭାବନାଦ୍ୱାରା ନିରନ୍ତର ଯେଉଁ ଉପସ୍ଥାନ[୨୧୪] ଅଛି (ବିଦ୍ୱାନ୍ ଲୋକ) ତାହାକୁ ସନ୍ଧ୍ୟାବନ୍ଦନ କହନ୍ତି ।। ୭୧ ।।

ତର୍ହି ହୋମୋଦ୍ଧପ୍ୟାବଶ୍ୟକ ଇତି ସ କୀଦୃଶ ଇତ୍ୟତ୍ରାହ –

**ଆତ୍ମଜ୍ୟୋତିଷି ସର୍ବେଷାଂ ବିଷୟାଣାଂ ସମର୍ପଣମ୍ ।**
**ଅନ୍ତର୍ମୁଖେନ ଭାବେନ ହୋମକର୍ମେତି ଗୀୟତେ ।। ୭୨ ।।**

ଆତ୍ମଜ୍ୟୋତିଷି ଚିଦଗ୍ନୌ, ଅନ୍ତର୍ମୁଖେନ ଭାବେନ ଅବହିର୍ମୁଖେନ ଭାବେନ ସର୍ବେଷାଂ ବିଷୟାଣାଂ ଯଦ୍‌ସମର୍ପଣଂ ସାଗରତରଙ୍ଗନ୍ୟାୟେନ ଲୟଚିନ୍ତନଂ ତଦେକଲୋକୀଭାବଚିନ୍ତନଂ ଯଦସ୍ତି, ତଦ୍ ହୋମକର୍ମେତି ଗୀୟତେ କଥ୍ୟତ ଇଥ୍ୟର୍ଥଃ ।। ୭୨ ।।

– ଆତ୍ମରୂପୀ ଜ୍ୟୋତି ଅର୍ଥାତ୍ ଚିଦଗ୍ନିରେ ଅନ୍ତର୍ମୁଖୀ ଭାବରେ ସମସ୍ତ ବିଷୟ ଗୁଡ଼ିକର ସମର୍ପଣ ହୋମକର୍ମ କୁହାଯାଏ ।। ୭୨ ।।

ଏବଂ ନିତ୍ୟନୈମିତ୍ତିକକର୍ମାଣି ଭାବୟନ୍ ସଙ୍ଗରହିତଃ ସ୍ୟାଦିତ୍ୟାହ –

**ଭାବୟେତ୍ ସର୍ବକର୍ମାଣି ନିତ୍ୟନୈମିତ୍ତିକାନି ଚ ।**
**ଶିବପ୍ରୀତିକରାଣ୍ୟେବ ସଙ୍ଗରାହିତ୍ୟସିଦ୍ଧୟେ ।। ୭୩।।**

ସଂସାରସମ୍ବନ୍ଧନିବୃତ୍ତ୍ୟର୍ଥଂ ନିତ୍ୟନୈମିତ୍ତିକାନି ସର୍ବାଣି କର୍ମାଣି ଶିବପ୍ରୀତି-କାରାଣ୍ୟେବେତି ଭାବୟେଦିତ୍ୟର୍ଥଃ ।। ୭୩।।

---

୨୧୪. ପ୍ରାତଃକାଳ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଇ 'ଉଦ୍ୱୟଂ..... ।' ''ଉଦୁତ୍ୟଂ.......।' 'ଚିତ୍ରଂ ଦେବାନାଂ ......।' ତଥା 'ତଚ୍ଚକ୍ଷୁର୍ଦେବହିତଂ......।' ଏହି ଚାରୋଟି ମନ୍ତ୍ରକୁ ଦୁଇ ହାତ ଉପରକୁ ଉଠାଇ ଉଚ୍ଚାରଣ କରିବା ସୂର୍ଯ୍ୟୋପସ୍ଥାନ କୁହାଯାଏ ।

– ସଂସାରର ଆସକ୍ତିରୁ ରହିତ ହେବା ପାଇଁ ସାଧକ ନିତ୍ୟ, ନୈମିତ୍ତିକ ଆଦି ସମସ୍ତ କର୍ମକୁ ଶିବଙ୍କୁ ପ୍ରସନ୍ନ କରିବାବାଲା ବୋଲି ବୁଝିବା ଉଚିତ୍ ।। ୭୩।।

ନନୁ କର୍ମଣଃ ସଙ୍ଗହେତୁତ୍ୱାଦ୍ କଥଂ ସଙ୍ଗରାହିତ୍ୟଂ ସ୍ୟାଦିତ୍ୟତ୍ରାହ –

**ଶିବେ ନିବେଶ୍ୟ ସକଳଂ କାର୍ଯ୍ୟାକାର୍ଯ୍ୟଂ ବିବେକତଃ ।**
**ବର୍ତ୍ତତେ ଯୋ ମହାଭାଗଃ ସ ସଙ୍ଗରହିତୋ ଭବେତ୍ ।। ୭୪।।**

ବିବେକତଃ କର୍ତ୍ତା କାରୟିତା କର୍ମ ତତ୍ଫଳଂ ଚ ଶିବ ଏବେତି ବିବେକତଃ କାର୍ଯ୍ୟାକାର୍ଯ୍ୟଂ କର୍ତ୍ତୁଂ ଯୋଗ୍ୟମଯୋଗ୍ୟଂ ଚ ଶିବେ ନିବେଶ୍ୟ ସମର୍ପ୍ୟ ଯୋ ମହାଭାଗୋ ମହାପୁରୁଷୋ ବର୍ତ୍ତତେ, ସ ସଙ୍ଗରହିତୋ ଭବସଙ୍ଗରହିତ ଇତ୍ୟର୍ଥଃ ।। ୭୪।।

– ଯେଉଁ ମହାଭାଗ୍ୟଶାଳୀ ସାଧକ ବିବେକ ପୂର୍ବକ କରଣୀୟ ଅକରଣୀୟ ସମସ୍ତ କର୍ମକୁ ଶିବଙ୍କୁ ସମର୍ପିତ କରିଦିଏ, ସେ ଆସକ୍ତି ରହିତ ହୋଇଯାଏ ।। ୭୪।।

ନନୁ ଭବସଙ୍ଗରାହିତ୍ୟଂ ଶିବଦର୍ଶନେନ ବିନା ନ ସମ୍ଭବତୀତ୍ୟତ୍ରାହ –

**ଆତ୍ମାନମଖିଳଂ ବସ୍ତୁ ଶିବମାନନ୍ଦଚିନ୍ମୟମ୍ ।**
**ଏକଭାବେନ ସତତଂ ସମ୍ପଶ୍ୟନ୍ନେବ ପଶ୍ୟତି ।। ୭୫।।**

ଆତ୍ମାନଂ ସ୍ୱାତ୍ମାନମ୍ ଅଖିଳଂ ବସ୍ତୁ ସର୍ବଂ ବିଶ୍ୱମ୍ ଆନନ୍ଦଚିନ୍ମୟଂ ପରଶିବଂ ଚ ଏକଭାବେନ ଏକତ୍ୱେନ ସତତଂ ପଶ୍ୟନ୍ନେବ ଚିଦ୍ରୂପତ୍ୱାଚ୍ଛିବଜୀବୈକ୍ୟଂ ଶିବସ୍ୱଭାବଭୂତ-ଚିତ୍କ୍ରିୟାବ୍ୟାପ୍ତତ୍ୱାଦ୍ ତଦବାହ୍ୟତ୍ୱେନ ସର୍ବଂ ବିଶ୍ୱଂ ଶିବାତ୍ମକମିତି ପଶ୍ୟନ୍ନେବ ପଶ୍ୟତି ଶିବଂ ପଶ୍ୟତୀତ୍ୟର୍ଥଃ ।। ୭୫।।

– ଆତ୍ମା ସମସ୍ତ ସଂସାର ତଥା ଚିନ୍ମୟ ଆନନ୍ଦସ୍ୱରୂପ ଶିବଙ୍କୁ ଏକଭାବରେ (ଅର୍ଥାତ୍ ଏ ସମସ୍ତ ଶିବ ହିଁ ଅଟନ୍ତି – ଏପରି ଭାବନା) ନିରନ୍ତର ଦେଖୁଥିବା (ସାଧକ) ହିଁ ବାସ୍ତବିକ ଦର୍ଶନ କରେ (ଅର୍ଥାତ୍ ସେ ପ୍ରକୃତରେ ଶିବଦ୍ରଷ୍ଟା ଅଟେ) ।। ୭୫।।

**ଇତି ଭାବାଚାରସ୍ଥଳମ୍**

## ଅଥ ଜ୍ଞାନାଚାରସ୍ଥଳମ୍

ଅଥ – 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ'[୨୧୫] ଇତି ଶ୍ରୁତେସ୍ତସ୍ୟ ଭାବାଚାରସମ୍ପନ୍ନସ୍ୟ ଶିବଯୋଗିନୋ ଜ୍ଞାନାଚାର ଏବ ସର୍ବଦେହିନାଂ ଜ୍ଞାନାଚାର ଇତି ଜ୍ଞାନାଚାରସ୍ଥଳଂ ନିରୂପୟତି –

**ଅସ୍ୟ ଜ୍ଞାନସମାଚାରୋ ଯୋଗିନଃ ସର୍ବଦେହିନାମ୍ ।**
**ଜ୍ଞାନାଚାରୋ ଯଦୁକ୍ତୋଦ୍ଦୟଂ ଜ୍ଞାନାଚାରଃ ସ କଥ୍ୟତେ ।। ୭୬।।**

---

୨୧୫. ତୈ. ଉ., ୨/୧/୧

ଭାବାଚାରସମ୍ପନ୍ନସ୍ୟାସ୍ୟ ଯୋଗିନୋ ଜ୍ଞାନସମାଚାର ଏବ ସର୍ବଦେହିନାଂ ଜ୍ଞାନାଚାର ଇତି ଯଦ୍ୟସ୍ମାତ୍ କାରଣାଦୁକ୍ତଃ, ତସ୍ମାତ୍ କାରଣାତ୍ ସୋଽୟଂ ଜ୍ଞାନାଚାର ଇତି କଥ୍ୟତ ଇତ୍ୟର୍ଥଃ ।। ୭୬।।

– (ଜ୍ଞାନାଚାରସ୍ଥଳ ବର୍ଣ୍ଣନ) – (ଭାବାଚାର ସମ୍ପନ୍ନ) ଏହି ଯୋଗୀର ଜ୍ଞାନାଚାର ହିଁ ସମସ୍ତ ମନୁଷ୍ୟଙ୍କ ପାଇଁ ଜ୍ଞାନାଚାର କୁହାଯାଏ । ଏହା ଜ୍ଞାନାଚାରସ୍ଥଳ ଅଟେ ।। ୭୬।।

ଅଥ ତଜ୍ଜ୍ଞାନାଚାରମେବ ଲକ୍ଷଣପୂର୍ବକଂ ସୂତ୍ରତ୍ରୟେଣ କଥୟତି –

**ଶିବାଦ୍ୱୈତପରଂ ଜ୍ଞାନଂ ଜ୍ଞାନମିତ୍ୟୁଚ୍ୟତେ ବୁଧୈଃ ।**
**ସିଦ୍ଧେନ ବାପ୍ୟସିଦ୍ଧେନ ଫଳଂ ଜ୍ଞାନାନ୍ତରେଣ କିମ୍ ।। ୭୭।।**

ଶିବାଦ୍ୱୈତମେବ ପରଂ ପ୍ରଧାନଂ ଯସ୍ୟ ତାଦୃଶଂ ଜ୍ଞାନଂ ବୁଧୈର୍ଜ୍ଞାନମିତ୍ୟୁଚ୍ୟତେ, ଶାସ୍ତ୍ରସିଦ୍ଧେନ ବା ତଦସିଦ୍ଧେନ ବା ଜ୍ଞାନାନ୍ତରେଣ ଭିନ୍ନଜ୍ଞାନେନ କିଂ ଫଳଂ ନ କିମପ୍ୟତ୍ୟର୍ଥଃ ।। ୭୭।।

– ବିଦ୍ୱାନ୍ ଶିବାଦ୍ୱୈତ ପୂର୍ବକ ଜ୍ଞାନକୁ ହିଁ ଯଥାର୍ଥ ଜ୍ଞାନ କହନ୍ତି । ଅନ୍ୟ ଜ୍ଞାନ ସିଦ୍ଧି ଦେଉ ଅଥବା ନ ଦେଉ, ତାହା ଶାସ୍ତ୍ର ସମ୍ମତ ହେଉ ଅଥବା ଶାସ୍ତ୍ର ବିରୁଦ୍ଧ, ସେଥିରୁ କ'ଣ ଲାଭ ? (ଅର୍ଥାତ୍ ତାହା ସମ୍ପୂର୍ଣ୍ଣ ବ୍ୟର୍ଥ ଅଟେ ।। ୭୭।।

ଅଥ ତତ୍ କଥମିତ୍ୟତ୍ରାହ –

**ନିର୍ମଳଂ ହି ଶିବଜ୍ଞାନଂ ନିଃଶ୍ରେୟସକଳଂ ପରମ୍ ।**
**ରାଗଦ୍ୱେଷାଦିକଲୁଷଂ ଭୂୟଃ ସଂସୃତିକାରଣମ୍ ।। ୭୮।।**

ଶିବଜ୍ଞାନଂ ଶିବାଦ୍ୱୈତଜ୍ଞାନଂ ନିର୍ମଳମ୍ ଆଣବାଦିମଳସଙ୍ଗରହିତଂ ସତ୍ ପରଂ ନିଃଶ୍ରେୟ କାରଣଂ ସର୍ବୋତ୍କୃଷ୍ଟ ମୋକ୍ଷପ୍ରଦମିତ୍ୟର୍ଥଃ । ତଦ୍ୱ୍ୟତିରିକ୍ତଭେଦଜ୍ଞାନଂ ରାଗଦ୍ୱେଷାଦିକଲୁଷଂ କାମକ୍ରୋଧାଦିମିଶ୍ରଂ ସତ୍ ଭୂୟଃ ପୁନଃ ପୁନଃ ସଂସୃତିକାରଣଂ ଯାତାଯାତକାରଣମିତି ହି ପ୍ରସିଦ୍ଧମିତ୍ୟର୍ଥଃ ।। ୭୮।।

– ଶିବଜ୍ଞାନ ହିଁ ନିର୍ମଳ (ଅର୍ଥାତ୍ ଆଣବ, ମାୟୀୟ ଓ କାର୍ମ – ଏହି ତିନି ମଳରୁ ରହିତ) । ଅତଏବ ମୋକ୍ଷ ଦାୟକ ଅଟେ । ଯେଉଁ ଜ୍ଞାନ-ରାଗ-ଦ୍ୱେଷ ଆଦି କାରଣରୁ ମଳିନ ଅଟେ, ତାହା ସଂସାର ଅର୍ଥାତ୍ ଜନ୍ମ-ମୃତ୍ୟୁର କାରଣ ଅଟେ ।। ୭୮।।

ଏବଂ ଜ୍ଞାନସ୍ୱରୂପମୁକ୍ତ୍ୱା ତଦାଚାରସ୍ୱରୂପଂ କଥୟତି –

**ପରିପୂର୍ଣ୍ଣଂ ମହାଜ୍ଞାନଂ ପରତତ୍ତ୍ୱପ୍ରକାଶକମ୍ ।**
**ଅବଲମ୍ବ୍ୟ ପ୍ରବୃତ୍ତୋ ଯୋ ଜ୍ଞାନାଚାରଃ ସ ଉଚ୍ୟତେ ।। ୭୯।।**

ପରତତ୍ତ୍ୱପ୍ରକାଶକଂ ପରିପୂର୍ଣ୍ଣମ୍ ଅପରିଚ୍ଛିନ୍ନଂ ମହାଜ୍ଞାନଂ ଶିବାଦ୍ୱୈତଜ୍ଞାନମବଲମ୍ବ୍ୟ ଧୃତ୍ୱା ଯ ଆଚାରଃ ପ୍ରବୃତ୍ତଃ, ସ ଜ୍ଞାନାଚାର ଇତ୍ୟୁଚ୍ୟତ ଇତ୍ୟର୍ଥଃ ।। ୭୯।।

– ପରସ୍ୱରର (ଅର୍ଥାତ୍ ପରମଶିବ ନାମକ ତତ୍ତ୍ୱ) ପ୍ରକାଶକ ଅର୍ଥାତ୍ ଆଭାସ କରୁଥିବା ପରିପୂର୍ଣ୍ଣ ମହାଜ୍ଞାନକୁ ଆଧାର କରି ଯିଏ ପ୍ରବୃତ୍ତ ହୁଏ, ସେ ଜ୍ଞାନାଚାର କୁହାଯାଏ ।। ୭୯।।

ଅଥ ତଜ୍ଜ୍ଞାନାଚାରିଣଂ ପ୍ରକାଶୟତି –

**ନିର୍ବିକଳ୍ପେ ପରେ ଧାମ୍ନି ନିଷ୍କଲେ ଶିବନାମନି ।**
**ଜ୍ଞାନେନ ଯୋଜୟେତ୍ ସର୍ବଂ ଜ୍ଞାନାଚାରୀ ପ୍ରକୀର୍ତ୍ତିତଃ ।। ୮୦।।**

ନିଷ୍କଲେ ନିରବୟବେ ନିର୍ବିକଳ୍ପେ ଭେଦରହିତେ ଶିବନାମାନି ଶିବ ଇତ୍ୟଭିଧାନବତି ପରେ ଧାମ୍ନି ପରବ୍ରହ୍ମାଧାରେ ସର୍ବଂ ଜଗଜ୍ଜାଲଂ ଜ୍ଞାନେନ ଅଭେଦଜ୍ଞାନେନ ଯୋ ଯୋଜୟେତ୍, ସ ଜ୍ଞାନାଚାରୀତି କୀର୍ତ୍ତିତ ଇତ୍ୟର୍ଥଃ ।। ୮୦।।

– ଯିଏ ସବୁକିଛି ନିଷ୍କଳ, ନିର୍ବିକଳ୍ପ ଶିବ ନାମକ ପରଧାମରେ ଜୋଡ଼ି ଦିଏ, ସେ ଜ୍ଞାନାଚାରୀ କୁହାଯାଏ ।। ୮୦।।

ଅଥ ତସ୍ୟ ଜ୍ଞାନାଚାରିଣଃ କର୍ମକାର୍ପଣ୍ୟଂ ନାସ୍ତୀତି ସୂତ୍ରଦ୍ୱୟେନ କଥୟତି –

**ଜ୍ଞାନଂ ମୁକ୍ତିପ୍ରଦଂ ପ୍ରାପ୍ୟ ଗୁରୁଦୃଷ୍ଟିପ୍ରସାଦତଃ ।**
**କଃ କୁର୍ଯ୍ୟାଦ୍ କର୍ମକାର୍ପଣ୍ୟେ ବାଞ୍ଛାଂ ସଂସାରବର୍ଧନେ ।। ୮୧।।**

ମୁକ୍ତିପଦଂ ପରାପରମୋକ୍ଷପ୍ରଦଂ ଶିବଜ୍ଞାନଂ ଗୁରୁକୃପାଦୃଷ୍ଟିପ୍ରସନ୍ନତାବଶାଦ୍ ପ୍ରାପ୍ୟ ସଂସାରବର୍ଧନେ କର୍ମକାର୍ପଣ୍ୟେ ବାଞ୍ଛାମ୍ ଇଚ୍ଛାଂ କଃ କୁର୍ଯ୍ୟାଦ୍ ? ନ କୋଽପି କୁର୍ଯ୍ୟାଦିତ୍ୟର୍ଥଃ ।। ୮୧।।

– ଗୁରୁଙ୍କର କୃପାଦୃଷ୍ଟିରେ ମୁକ୍ତିଦାୟକ ଜ୍ଞାନକୁ ପ୍ରାପ୍ତ କରି କେଉଁ ବ୍ୟକ୍ତି କର୍ମ କାରଣରୁ ଦୁଃଖଦାୟୀ ସଂସାରକୁ ବଢ଼େଇବାକୁ ଇଚ୍ଛା କରିବ ? ।। ୮୧।।

କୁତ ଇତ୍ୟତ୍ରାହ –

**କର୍ମ ଜ୍ଞାନାଗ୍ନିନା ଦଗ୍ଧଂ ନ ପ୍ରରୋହେଦ୍ କଥଞ୍ଚନ ।**
**ଯଦାହୁଃ ସଂସୃତେର୍ମୂଳଂ ପ୍ରବାହାନୁଗତଂ ବୁଧାଃ ।। ୮୨।।**

ଯତ୍ କର୍ମ ବୁଧାଃ ସଂସୃତେର୍ମୂଳଂ ମୂଳକାରଣଂ ସତ୍ ପ୍ରବାହାନୁଗତଂ ଜଳପ୍ରବାହ-ନ୍ୟାୟେନାନାଦିତ୍ୱେନ ଶ୍ରୁତେରନୁଗତଂ ସଦ୍ ଆହୁଃ, ତତ୍‌କର୍ମବନ୍ଧନଂ ଶିବଜ୍ଞାନାଗ୍ନିନା ଦଗ୍ଧଂ ସତ୍ କଥଞ୍ଚନ କେନାପି ପ୍ରକାରେଣ ନ ପ୍ରରୋହେଦ୍ ନାଙ୍କୁରେଦିତ୍ୟର୍ଥଃ ।। ୮୨।।

– ବିଦ୍ୱାନ୍ ଲୋକ ପ୍ରବାହାନୁଗତ ଅର୍ଥାତ୍ ଅନାଦି ପରମ୍ପରାରୁ ପ୍ରାପ୍ତ ଯେଉଁ କର୍ମକୁ

ସଂସାରର କାରଣ ମାନନ୍ତି, ସେହି କର୍ମ ଜ୍ଞାନରୂପୀ ଅଗ୍ନିରେ ଜଳିଗଲା ପରେ କୌଣସି ପ୍ରକାରେ ସଂସାରର ଅଙ୍କୁରଣ କରେ ନାହିଁ ।। ୮୨।।

ତର୍ହି କର୍ମବନ୍ଧନଂ କସ୍ୟେତ୍ୟତ୍ରାହ –

**ଜ୍ଞାନେନ ହୀନଃ ପୁରୁଷଃ କର୍ମଣା ବଦ୍ଧ୍ୟତେ ସଦା ।**
**ଜ୍ଞାନିନଃ କର୍ମସଙ୍କଳ୍ପା ଭବନ୍ତି କିଲ ନିଷ୍ଫଲାଃ ।। ୮୩।।**

'ଯଥା ପୁଷ୍କରପଲାଶ ଆପୋ ନ ଶ୍ଲିଷ୍ୟନ୍ତେ, ଏବମେବଂବିଦି ପାପକର୍ମ ନ ଶ୍ଲିଷ୍ୟତେ' 'ସ ଉତ୍ତମଃ ପୁରୁଷଃ' ଇତି ଛାନ୍ଦୋଗ୍ୟଶ୍ରୁତେଃ,

ଅଦ୍ୱୈତ ଭକ୍ତିଯୁକ୍ତସ୍ୟ ଯୋଗିନଃ ସକଳାଃ କ୍ରିୟାଃ ।
ସନ୍ତି ଦଗ୍ଧପଟନ୍ୟାୟାତ୍ କ୍ରିୟାମାତ୍ରା ହି ନ କ୍ରିୟାଃ ।।

ଇତି ବୀରାଗମୋକ୍ତେଶ୍ଚ ଜ୍ଞାନିନଃ କର୍ମପାଶୋ ନାସ୍ତୀତ୍ୟର୍ଥଃ ।। ୮୩।।

– ଜ୍ଞାନରହିତ ପୁରୁଷ ସଦା କର୍ମଦ୍ୱାରା ବନ୍ଧନରେ ପଡ଼ିଥାଏ । ଜ୍ଞାନୀର କର୍ମସଙ୍କଳ୍ପ ନିଶ୍ଚିତ ଭାବରେ ନିଷ୍ଫଳ ହୋଇଥାଏ ।। ୮୩।।

ଅଥ ଜ୍ଞାନାଚାରସ୍ଥଲଂ ସମାପୟତି –

**ଶୁଦ୍ଧାଚାରେ ଶୁଦ୍ଧଭାବୋ ବିବେକୀ**
**ଜ୍ୟୋତିଃ ପଶ୍ୟନ୍ ସର୍ବତଶ୍ଶୈବମେକମ୍ ।**
**ଜ୍ଞାନଧ୍ୱସ୍ତପ୍ରାକୃତାତ୍ମପ୍ରପଞ୍ଚେ**
**ଜୀବନ୍ମୁକ୍ତଶ୍ଚେଷ୍ଟତେ ଦିବ୍ୟଯୋଗୀ ।। ୮୪।।**

ଶୁଦ୍ଧାଚାରେ ନିର୍ମଲଜ୍ଞାନାଚାରେ ଶୁଦ୍ଧଭାବେ ନିର୍ମଲଭାବବାନ୍ ବିବେକୀ, ଏବଂ ପ୍ରତିଯୋଗିରହିତଂ ଶୈବଂ ତେଜଃ ସର୍ବତଃ ପଶ୍ୟନ୍ ଜ୍ଞାନଧ୍ୱସ୍ତପ୍ରାକୃତାତ୍ମପ୍ରପଞ୍ଚଃ ଶିବାଦ୍ୱୈତଜ୍ଞାନନାଶିତପ୍ରକୃତିନ୍ୟଦେହପ୍ରପଞ୍ଚବାନ୍ ଦିବ୍ୟଯୋଗୀ ସ୍ୱୟଂ ପ୍ରକାଶରୂପଃ ଶିବଯୋଗୀ ଜୀବନ୍ମୁକ୍ତଃ ସନ୍ ଚେଷ୍ଟତେ ଲୌକିକବଦ୍ ବ୍ୟବହରତୀତ୍ୟର୍ଥଃ ।। ୮୪।।

– ବିଶୁଦ୍ଧ ଜ୍ଞାନାଚାର ହେବା ପରେ ଶୁଦ୍ଧ ଭାବନାବାଲା ଅତଏବ ବିବେକପୂର୍ଣ୍ଣ ଦିବ୍ୟଯୋଗୀ ସର୍ବତ୍ର ଏକ (ଶିବାତ୍ମକ) ଜ୍ୟୋତିର ସାକ୍ଷାତ୍କାର କରି ତଥା ଜ୍ଞାନଦ୍ୱାରା ପ୍ରାକୃତ ପ୍ରପଞ୍ଚକୁ ନଷ୍ଟ କରିବାବାଲା ହୋଇ ଜୀବନ୍ମୁକ୍ତ ହୋଇଯାଏ । ତଥାପି ସେ ସାମାନ୍ୟ ଜନ ପରି ବ୍ୟବହାର କରେ ।। ୮୪।।

ଇତି ଶ୍ରୀମଦ୍ ଷଟ୍ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ସିଦ୍ଧାନ୍ତଶିଖାମଣୌ ମାହେଶ୍ୱରସ୍ଥଲାଶ୍ରିତନବଲିଙ୍ଗପ୍ରସଙ୍ଗୋ ନାମ ଷୋଡ଼ଶଃ ପରିଚ୍ଛେଦଃ ।। ୧୬।।

ଇତି ଶ୍ରୀମଦ୍ ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ମାହେଶ୍ୱରସ୍ଥଳାଶ୍ରିତ ନବଲିଙ୍ଗପ୍ରସଙ୍ଗନାମା ଷୋଡ଼ଶଃ ପରିଚ୍ଛେଦଃ ।। ୧୬ ।।

ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ମାହେଶ୍ୱର ସ୍ଥଳାଶ୍ରିତନବଲିଙ୍ଗପ୍ରସଙ୍ଗ ନାମକ ଷୋଡ଼ଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୧୬ ।।



# ସପ୍ତଦଶଃ ପରିଚ୍ଛେଦଃ

## ଅଥ ପ୍ରସାଦିସ୍ଥଳମ୍

## (ଅଥ କାୟାନୁଗ୍ରହସ୍ଥଳମ୍)

ଅଥାଗସ୍ତ୍ୟପ୍ରଶ୍ନଃ । ଅଗସ୍ତ୍ୟ ଉବାଚେତି –

ସ୍ଥଳାନି ତାନି ଚୋକ୍ତାନି ଯାନି ମାହେଶ୍ୱରସ୍ଥଳେ ।
ବଦସ୍ୱ ସ୍ଥଳଭେଦଂ ମେ ପ୍ରସାଦିସ୍ଥଳସଂଶ୍ରିତମ୍ ।। ୧ ।।

ବଦସ୍ୱ ଉପଦିଶେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧ ।।

– (ପ୍ରସାଦିସ୍ଥଳ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – (ହେ ଆଚାର୍ଯ୍ୟ) ମାହେଶ୍ୱର ସ୍ଥଳରେ ଯେତେ ସ୍ଥଳ ଅଛି, ଆପଣ ତାହାର ବର୍ଣ୍ଣନ କଲେ । ଏବେ ପ୍ରସାଦିସ୍ଥଳରେ ଆସୁଥିବା ସ୍ଥଳଭେଦକୁ ମତେ ବତାଅ ।। ୧ ।।

ଶ୍ରୀରେଣୁକ ଉବାଚ

ସ୍ଥଳଭେଦା ନବ ପ୍ରୋକ୍ତାଃ ପ୍ରସାଦିସ୍ଥଳସଂଶ୍ରିତାଃ ।
କାୟାନୁଗ୍ରହଣଂ ପୂର୍ବମିନ୍ଦ୍ରିୟାନୁଗ୍ରହଂ ତତଃ ।। ୨ ।।
ପ୍ରାଣାନୁଗ୍ରହଣଂ ପଶ୍ଚାତ୍ ତତଃ କାୟାର୍ପିତଂ ମତମ୍ ।
କରଣାର୍ପିତମାଖ୍ୟାତଂ ତତୋ ଭାବାର୍ପିତଂ ମତମ୍ ।। ୩ ।।
ଶିଷ୍ୟସ୍ଥଳଂ ତତଃ ପ୍ରୋକ୍ତଂ ଶୁଶ୍ରୂଷାସ୍ଥଳମେବ ଚ ।
ତତଃ ସେବ୍ୟସ୍ଥଳଂ ତୈଷାଂ କ୍ରମଶଃ ଶୃଣୁ ଲକ୍ଷଣମ୍ ।। ୪ ।।

ଶ୍ରୀରେଣୁକାଚାର୍ଯ୍ୟ କହିଲେ – ପ୍ରସାଦିସ୍ଥଳ ଅନ୍ତର୍ଗତ ନବ ସ୍ଥଳଭେଦ କୁହାଯାଇଛି । ସେ ସବୁ ହେଉଛନ୍ତି – କାୟାନୁଗ୍ରହସ୍ଥଳ, ଇନ୍ଦ୍ରିୟାନୁଗ୍ରହସ୍ଥଳ, ପ୍ରାଣାନୁଗ୍ରହସ୍ଥଳ, କାୟାର୍ପିତସ୍ଥଳ, କରଣାର୍ପିତସ୍ଥଳ, ଭବାର୍ପିତସ୍ଥଳ, ଶିଷ୍ୟସ୍ଥଳ, ସୁଶ୍ରୁଷୁସ୍ଥଳ ଏବଂ ସେବ୍ୟସ୍ଥଳ । ଏବେ ଏମାନଙ୍କର କ୍ରମରେ ଲକ୍ଷଣ ଶୁଣ ।। ୨–୪ ।।

## ଅଥ କାୟାନୁଗ୍ରହସ୍ଥଳମ୍

ଅଥ – 'ଶୁଚିଃ ସମଗ୍ରୀବଶିରଃ ଶରୀରଃ'[୨୧୬] ଇତି କୈବଲ୍ୟଶ୍ରୁତେଃ ସ ଜ୍ଞାନାଚାରବାନ୍ ଶିବଯୋଗୀ ସ୍ୱରୂପଶରୀରଂ ଦର୍ଶୟନ୍ନନୁଗୃହ୍ଣାତୀତି କାୟାନୁଗ୍ରାହକ ଇତି ସୂତ୍ରତ୍ରୟେଣ ନିରୂପୟତି –

---

୨୧୬. କୈ. ଉ., ୫

**ଅନୁଗୃହ୍ଣାତି ଯଲ୍ଲୋକାନ୍ ସ୍ୱକାୟଂ ଦର୍ଶୟନ୍ନସୌ ।**

**ତସ୍ମାଦେବ ସମାଖ୍ୟାତଃ କାୟାନୁଗ୍ରହନାମକଃ ।। ୫।।**

ଅସୌ ଜ୍ଞାନାଚାରସମ୍ପନ୍ନଃ ଶିବଯୋଗୀ ଯଦ୍ୟସ୍ମାତ୍ କାରଣାତ୍ ସ୍ୱକାୟଂ ଦର୍ଶୟନ୍ ସନ୍ ଲୋକାନ୍ ପ୍ରାକୃତାନ୍ (ଜନାନ୍) ଅନୁଗୃହ୍ଣାତ୍ୟନୁଗ୍ରହଂ କରୋତି, ତସ୍ମାଦେଷ କାୟାନୁଗ୍ରହନାମକଃ କାୟାନୁଗ୍ରହ ଇତ୍ୟଭିଧାନବାନିତି ସମାଖ୍ୟାତ ଇତ୍ୟର୍ଥଃ ।। ୫।।

– (କାୟାନୁଗ୍ରହସ୍ଥଳ ବର୍ଣ୍ଣନ) – ଏହି ଅର୍ଥାତ୍ ଜ୍ଞାନାଚାରସମ୍ପନ୍ନ ଶିବଯୋଗୀ (ପରବ୍ରହ୍ମ ରୂପ) ନିଜର ଶରୀରର ଦର୍ଶନ କରାଇ ଲୋକଙ୍କ ଉପରେ ଯେଉଁ ଅନୁଗ୍ରହ କରେ, ତେଣୁ ଏହାକୁ କାୟାନୁଗ୍ରହ ନାମକ ସ୍ଥଳ କୁହାଯାଏ ।। ୫।।

ତତ୍କଥମିତ୍ୟତ୍ର ଦୃଷ୍ଟାନ୍ତମାହ –

**ଯଥା ଶିବୋଽନୁଗୃହ୍ଣାତି ମୂର୍ତ୍ତିମାବିଶ୍ୟ ଦେହିନଃ ।**

**ତଥା ଯୋଗୀ ଶରୀରସ୍ଥଃ ସର୍ବାନୁଗ୍ରାହକୋ ଭବେତ୍ ।। ୬।।**

ଶିବୋ ଯଥା ଚନ୍ଦ୍ରଶେଖରାଦିମୂର୍ତ୍ତିମାବିଶ୍ୟ ଦେହିନଃ ପ୍ରାଣିନୋଽନୁଗ୍ରହଂ କରୋତି, ତଥା ଯୋଗୀ ଶରୀରସ୍ଥଃ ସନ୍ ଶିବଦୀକ୍ଷାସଂସ୍କୃତଦିବ୍ୟଶରୀରସ୍ଥଃ ସନ୍ ସର୍ବାନୁଗ୍ରାହକଃ ସ୍ୟାଦିତ୍ୟର୍ଥଃ ।। ୬।।

ଅଥ ଶିବବଦସଙ୍ଗଶ୍ଚେତ୍ୟାହ –

**ଶିବଃ ଶରୀରଯୋଗେଽପି ଯଥା ସଙ୍ଗବିବର୍ଜିତଃ ।**

**ତଥା ଯୋଗୀ ଶରୀରସ୍ଥୋ ନିଃସଙ୍ଗୋ ବର୍ତ୍ତତେ ସଦା ।। ୭।।**

ସୁଖଦୁଃଖାଦିସଙ୍ଗରହିତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୭।।

– ଯେପରି ଶିବ (ସ୍ୱୟଂ) ଶରୀର ଧାରଣ କରି ମଧ୍ୟ (ନିଜର ସେହି ଶରୀର ପ୍ରତି) ଆସକ୍ତି ରହିତ ଅଟନ୍ତି, ସେହିପରି ଯୋଗୀ ଶରୀର ଧାରଣ କରି ସଦା (ନିଜର ଶରୀର ପ୍ରତି) ଅନାସକ୍ତ ରହେ ।। ୭।।

ଏବଂ ଶିବଯୋଗିନଃ ଶିବସମାନତ୍ୱମୁକ୍ତ୍ୱା ତସ୍ୟ ମାୟାପ୍ରପଞ୍ଚଦର୍ଶନଂ ନାସ୍ତୀତି ଶିବ ଏବେତି ପଞ୍ଚଭିଃ ସୂତ୍ରୈର୍ଦୃଷ୍ଟାନ୍ତପୂର୍ବକମୁପପାଦୟତି –

**ଶିବଭାବନୟା ଯୁକ୍ତଃ ସ୍ଥିରୟା ନିର୍ବିକଳ୍ପୟା ।**

**ଶିବୋ ଭବତି ନିର୍ଧୂତମାୟାବେଶପରିପ୍ଲବଃ ।। ୮।।**

ଅତ୍ର ଶିବଯୋଗୀତି ଶେଷଃ । ଭେଦରହିତୟା ଦୃଢ଼ୟା ଶିବୋଽହଂଭାବନୟା ଯୁକ୍ତୋ ନିବାରିତମାୟାବେଶୋପପ୍ଲବଃ ସନ୍ ଶିବ ଏବ ଭବତୀତ୍ୟର୍ଥଃ ।। ୮।।

– ଦୃଢ଼ ଏବଂ ବିକଳ୍ପରହିତ ଶିବଭାବନାରେ ଯୁକ୍ତ, ଅତଏବ ମାୟାର ଆବେଶର ଉପଦ୍ରବରୁ ରହିତ ସେ (ଯୋଗୀ) ଶିବ ହିଁ ହୋଇଯାଏ ।। ୮ ।।

ନନୁ କଥଂ ତସ୍ୟ ମାୟାବେଶୋପପ୍ଲବୋ ନାସ୍ତୀତ୍ୟତ୍ରାହ –

**ଚିତ୍ତବୃତ୍ତିଷୁ ଲୀନାସୁ ଶିବେ ଚିଦ୍‌ସୁଖସାଗରେ ।**
**ଅବିଦ୍ୟାକଳ୍ପିତଂ ବସ୍ତୁ ନାନ୍ୟତ୍ ପଶ୍ୟତି ସଂଯମୀ ।। ୯ ।।**

ଜ୍ଞାନାନନ୍ଦୟୋଃ ସମୁଦ୍ରସ୍ଥାନାପନ୍ନେ ପରମଶିବେ ଚିତ୍ତବୃତ୍ତିଷୁ ମନୋବ୍ୟାପାରେଷୁ ଲୟଂ ଗତେଷୁ ସତ୍‌ସୁ ଶିବଯୋଗୀ ମାୟାକଳ୍ପିତବସ୍ତ୍ୱନ୍ତରଂ ନ ପଶ୍ୟତୀତ୍ୟର୍ଥଃ ।। ୯ ।।

– ଚିତ୍ ଏବଂ ଆନନ୍ଦର ସମୁଦ୍ର ପରି ଶିବଙ୍କଠାରେ ଚିତ୍ତବୃତ୍ତି ଲୀନ ହୋଇଯିବା ପରେ ଏହି ସଂଯମୀ (ଶିବଯୋଗୀ) ଅବିଦ୍ୟାଦ୍ୱାରା ରଚିତ ଅନ୍ୟ କୌଣସି ବସ୍ତୁକୁ ଦେଖେ ନାହିଁ (ଅନ୍ୟ ପକ୍ଷରେ ସମ୍ପୂର୍ଣ୍ଣ ସଂସାର ତାକୁ ଶିବମୟ ଶିବସ୍ୱରୂପ ହିଁ ଦେଖା ଯାଇଥାଏ) ।। ୯ ।।

ଅଥ ଦୃଷ୍ଟାନ୍ତମାହ –

**ନେଦଂ ରଜତମିତ୍ୟୁକ୍ତେ ଯଥା ଶୁକ୍ତିଃ ପ୍ରକାଶତେ ।**
**ନେଦଂ ଜଗଦିତି ଜ୍ଞାତେ ଶିବତତ୍ତ୍ୱଂ ପ୍ରକାଶତେ ।। ୧୦ ।।**

ଉକ୍ତେ ଜ୍ଞାତା ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୦ ।।

– 'ଏହା ରୂପା ନୁହେଁ' – ଏପରି କହିବା ପରେ ଯେପରି (ଦ୍ରଷ୍ଟାକୁ) ଶୁକ୍ତି ଦେଖା ଯାଇଥାଏ, ସେହିପରି 'ଏହା ସଂସାର ନୁହେଁ' – ଏପରି ଜ୍ଞାନ ହେବା ପରେ ଶିବତତ୍ତ୍ୱ ପ୍ରକାଶିତ ହୋଇଥାଏ ।। ୧୦ ।।

ଅଥ ପୁନର୍ଦୃଷ୍ଟାନ୍ତମାହ –

**ଯଥା ସ୍ୱପ୍ନକୃତଂ ବସ୍ତୁ ପ୍ରବୋଧେନୈବ ଶାମ୍ୟତି ।**
**ତଥା ଶିବସ୍ୟ ବିଜ୍ଞାନେ ସଂସାରଂ ନୈବ ପଶ୍ୟତି ।। ୧୧ ।।**

ଏଷ ଶିବଯୋଗୀତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୧ ।।

– ଯେପରି ସ୍ୱପ୍ନରେ ଦେଖିଥିବା ବସ୍ତୁ (ମିଥ୍ୟା ହୋଇଥାଏ) ଜାଗରଣ ପରେ ରହେ ନାହିଁ, ସେହିପରି ଶିବଙ୍କର ଜ୍ଞାନ ହେବାପରେ ଯୋଗୀ ସଂସାରକୁ ଦେଖେ ନାହିଁ ଏହି ସଂସାର ତାକୁ ସ୍ୱପ୍ନଗତ ବିଷୟ ପରି ମିଥ୍ୟା ପ୍ରତୀତ ହୋଇଥାଏ ।। ୧୧ ।।

ଅଥ ପୁନର୍ଦୃଷ୍ଟାନ୍ତମାହ –

**ଅଜ୍ଞାନମେବ ସର୍ବେଷାଂ ସଂସାରଭ୍ରମକାରଣମ୍ ।**
**ତନ୍ନିବୃତ୍ତୌ କଥଂ ଭୂୟଃ ସଂସାରଭ୍ରମଦର୍ଶନମ୍ ।। ୧୨ ।।**

ଯଥା ଶୁକ୍ତ୍ୟଜ୍ଞାନଂ ରଜତଭ୍ରାନ୍ତିକାରଣମ୍, ତଥା ଶିବବିଷୟକମଜ୍ଞାନଂ ସଂସାରଭ୍ରାନ୍ତି-କାରଣମ୍। ତନ୍ନିବୃତ୍ତୌ ଶୁକ୍ତ୍ୟଜ୍ଞାନନିବୃତ୍ତୌ ଯଥା ରଜତଭ୍ରମୋ ନିବର୍ତ୍ତତେ, ତଥା ଶିବବିଷୟକା-ଜ୍ଞାନନିବୃତ୍ତୌ ସାଂସାରିକଭେଦଭ୍ରାନ୍ତିଦର୍ଶନଂ ନାସ୍ତୀତ୍ୟର୍ଥଃ । ଯଥା ଶୁକ୍ତିରେବ ରଜତମ୍, ତଥା ଶିବ ଏବ ବିଶ୍ୱମିତି ଭାବଃ ।। ୧୨ ।।

– ସମସ୍ତ ଜୀବଙ୍କର ସଂସାରଭ୍ରମର କାରଣ ଅଜ୍ଞାନ (ଯଥାର୍ଥ ବସ୍ତୁର ଜ୍ଞାନ ନ ହେବା) ଅଟେ । ସେହି ଅଜ୍ଞାନର ନିବୃତ୍ତି ହେବା ପରେ ପୁନଃ ସଂସାରଭ୍ରମର ଦର୍ଶନ କିପରି ହୋଇପାରିବ ? ।। ୧୨ ।।

ବିଶେଷ – ଯେପରି ଶୁକ୍ତିକାନୁଯୋଗିକ ରଜତ ପ୍ରତିଯୋଗିକ ସମ୍ବନ୍ଧର ନିବୃତ୍ତି ହେବା ପରେ ଶୁକ୍ତି ହିଁ ଅବଶିଷ୍ଟ ରହିଯାଏ, ସେହିପରି ଶିବତତ୍ତ୍ୱାନୁଯୋଗିକ ସଂସାର ପ୍ରତିଯୋଗିକ ସମ୍ବନ୍ଧ ନିବୃତ୍ତ ହେବା ପରେ ଶିବ ହିଁ ଶେଷ ରହି ଯାଆନ୍ତି ।

ତସ୍ମାଦୟଂ ଶିବଯୋଗୀ ଜୀବନ୍ମୁକ୍ତ ଇତି ବଦନ୍ କାୟାନୁଗ୍ରହସ୍ଥଲଂ ସମାପୟତି –

> ଗଳିତାହଂକୃତିଗ୍ରନ୍ଥିଃ କ୍ରୀଡ଼ାକଳ୍ପିତବିଗ୍ରହଃ ।
> ଜୀବନ୍ମୁକ୍ତଶ୍ଚରେଦ୍ ଯୋଗୀ ଦେହିବନ୍ନିରୁପାଧିକଃ ।। ୧୩ ।।

ନିବୃତ୍ତପରିଚ୍ଛିନ୍ନଶରୀରାଦ୍ୟହଙ୍କାରବାନ୍ କ୍ରୀଡ଼ାର୍ଥଂ ସ୍ୱେଚ୍ଛାପରିକଳ୍ପିତକଳେବରଃ, ଅତ ଏବ ନିରୁପାଧିକଃ, ପ୍ରତିବନ୍ଧରହିତ ଇତ୍ୟର୍ଥଃ । ଜୀବନ୍ମୁକ୍ତଃ ସନ୍ ଦେହିବଦ୍ ଦେହବାନିବ ଲୋକାନୁଗ୍ରହାର୍ଥଂ ସଞ୍ଚରେଦିତ୍ୟର୍ଥଃ ।। ୧୩ ।।

– ଯାହାର ଅହଙ୍କାର ନାମ ଗ୍ରନ୍ଥି (ମୁଁ ଏହି ଶରୀର ଅଟେ, ମୋର ନାମ ଅମୁକ ଇତ୍ୟାଦି ଦୃଢ଼ ଭାବନା) ନଷ୍ଟ ହୋଇଯାଇଛି, ଏବଂ ଯିଏ ଲୋକ ଲୀଳା ନିମନ୍ତେ ଶରୀର ଧାରଣ କରିଛି, ଏପରି ଉପାଧିରହିତ ଯୋଗୀ ଜୀବନ୍ମୁକ୍ତ ହୋଇ ସଂସାରରେ ବ୍ୟବହାର ଓ ବିଚରଣ କରେ ।। ୧୩ ।।

## ଇତି କାୟାନୁଗ୍ରହସ୍ଥଲମ୍

## ଅଥେନ୍ଦ୍ରିୟାନୁଗ୍ରହସ୍ଥଲମ୍

ଅଥ – 'ତ୍ରିରୁନ୍ନତଂ ସ୍ଥାପ୍ୟ ସମଂ ଶରୀରଂ ହୃଦୀନ୍ଦ୍ରିୟାଣି ମନସା ସନ୍ନିବେଶ୍ୟ'[୨୧୭] ଇତିଶ୍ୱେତାଶ୍ୱତରଶ୍ରୁତ୍ୟନୁସାରେଣ ତସ୍ୟା କାୟାନୁଗ୍ରହସଜ୍ଞନସ୍ୟ ଶିବଯୋଗିନ ଇନ୍ଦ୍ରିୟ-ବିବେଚନମେବ ସର୍ବେଷାମିନ୍ଦ୍ରିୟାନୁଗ୍ରହସ୍ଥଲମିତି ନିରୂପୟତି –

୨୧୭. ଶ୍ୱେ. ଉ., ୨/୮

**ଦର୍ଶନାତ୍ ପରକାୟସ୍ୟ କରଣାନାଂ ବିବେକତଃ ।**

**ଇନ୍ଦ୍ରିୟାନୁଗ୍ରହଃ ପ୍ରୋକ୍ତଃ ସର୍ବେଷାଂ ତତ୍ତ୍ୱବେଦିଭିଃ ।। ୧୪ ।।**

ପରକାୟସ୍ୟ ସର୍ବୋତ୍କୃଷ୍ଟକାୟାନୁଗ୍ରହସମ୍ପନ୍ନସ୍ୟ ଶିବଯୋଗିନୋ ଦର୍ଶନାତ୍, କରଣାନାମିନ୍ଦ୍ରିୟାଣାଂ ବିବେକତଃ ସର୍ବେଷାଂ ପ୍ରାକୃତାନାମିନ୍ଦ୍ରିୟାନୁଗ୍ରହ ଇତି ତତ୍ତ୍ୱବେଦିଭିସ୍ତତ୍ତ୍ୱଜ୍ଞାନିଭିଃ ପ୍ରୋକ୍ତଃ କଥିତ ଇତ୍ୟର୍ଥଃ ।। ୧୪ ।।

– (ଇନ୍ଦ୍ରିୟାନୁଗ୍ରହସ୍ଥଳ ବର୍ଣ୍ଣନ) – ପରକାୟ ଯୋଗୀର ଦର୍ଶନ ଏବଂ ସମସ୍ତ ଇନ୍ଦ୍ରିୟ ଗୁଡ଼ିକର ବିବେକ (ଇନ୍ଦ୍ରିୟ ସବୁ ଭିନ୍ନ ବସ୍ତୁ ନୁହଁନ୍ତି, ଶିବ ହିଁ ଅଟନ୍ତି – ଏପରି ଜ୍ଞାନ)କୁ ତତ୍ତ୍ୱଦର୍ଶୀ ଜନ ଇନ୍ଦ୍ରିୟାନୁଗ୍ରହ କହନ୍ତି ।। ୧୪ ।।

ଅଥ ତତ୍ କଥମିତ୍ୟତ୍ର ତଦିନ୍ଦ୍ରିୟବ୍ୟାପାରଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ଇନ୍ଦ୍ରିୟାଣାଂ ସମସ୍ତାନାଂ ସ୍ୱାର୍ଥେଷୁ ସତି ସଙ୍ଗମେ ।**

**ରାଗୋ ବା ଜାୟତେ ଦ୍ୱେଷସ୍ତୌ ଯୋଗୀ ପରିବର୍ଜୟେତ୍ ।। ୧୫ ।।**

ଲୋକେ ସମସ୍ତାନାଂ ଶ୍ରୋତ୍ରାଦୀନ୍ଦ୍ରିୟାଣାଂ ସ୍ୱସ୍ୱବିଷୟେଷୁ ସମ୍ବନ୍ଧେ ସତି ରାଗୋ ବା ଦ୍ୱେଷୋ ବା ଜାୟତେ । ଯୋଗୀ ଶିବଯୋଗୀ ତୌ ରାଗଦ୍ୱେଷୌ ପରିବର୍ଜୟେତ୍, ପରିତ୍ୟଜେଦିତ୍ୟର୍ଥଃ ।। ୧୫ ।।

– ସମସ୍ତ ଇନ୍ଦ୍ରିୟ ସ୍ୱାର୍ଥ ଅର୍ଥାତ୍ ନିଜ ନିଜ ବିଷୟ (ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦ) ସହିତ ସନ୍ନିକର୍ଷ ହେବା ପରେ ରାଗ (ଅନୁରାଗ) ଅଥବା ଦ୍ୱେଷ ଉତ୍ପନ୍ନ ହୋଇଥାଏ । (ବିଷୟ ପ୍ରାପ୍ତି ନିମନ୍ତେ ରାଗ ଏବଂ ପ୍ରାପ୍ତିରେ ବାଧା ଉପସ୍ଥିତ ହେଲେ ଦ୍ୱେଷ ଉତ୍ପନ୍ନ ହୋଇଥାଏ) । ଯୋଗୀ ଏହି ଉଭୟ ଭାବକୁ ତ୍ୟାଗ କରିବା ଉଚିତ୍ ।। ୧୫ ।।

ଏବଂ ଚ ଯୋଗୀନ୍ଦ୍ରିୟବ୍ୟାପାରସ୍ୟ ଲୋକୋତ୍ତରତ୍ୱାଦନୁଗ୍ରହକରତ୍ୱମିତି ଭାବଃ –

**ଇନ୍ଦ୍ରିୟାଣାଂ ବହିର୍ବୃତ୍ତିଃ ପ୍ରପଞ୍ଚସ୍ୟ ପ୍ରକାଶିନୀ ।**

**ଅନ୍ତଃ ଶିବେ ସମାବେଶୋ ନିଷ୍ପ୍ରପଞ୍ଚସ୍ୟ କାରଣମ୍ ।। ୧୬ ।।**

ସ୍ପଷ୍ଟମ୍ ।। ୧୬ ।।

– ଇନ୍ଦ୍ରିୟଗୁଡ଼ିକର ବାହ୍ୟ ବିଷୟରେ ପ୍ରବୃତ୍ତି ପ୍ରପଞ୍ଚ (ଅର୍ଥାତ୍ ସଂସାର ଏବଂ ତାହାର ସୁଖ–ଦୁଃଖ)କୁ ଉତ୍ପନ୍ନ କରେ । ଯଦି ସେହି ବୃତ୍ତି ଅନ୍ତଃସ୍ଥିତ ଶିବସମାବେଶ ଯୁକ୍ତ ହୁଏ, ତେବେ ନିଷ୍ପ୍ରପଞ୍ଚ ଅର୍ଥାତ୍ ସଂସାର ରାହିତ୍ୟର କାରଣ ହୁଏ ।। ୧୬ ।।

ଏବଂ ସ୍ଥିତେ –

**କ୍ଷଣମନ୍ତଃ ଶିବଂ ପଶ୍ୟନ୍ କେବଳେନୈବ ଚେତସା ।**

**ବାହ୍ୟାର୍ଥାନାମନୁଭବଂ କ୍ଷଣଂ କୁର୍ବନ୍ ଦୃଗାଦିଭିଃ ।। ୧୭ ।।**

ସର୍ବେନ୍ଦ୍ରିୟନିରୂଢ଼ୋଽପି ସର୍ବେନ୍ଦ୍ରିୟବିହୀନବାନ୍ ।
ଶିବାହିତମନା ଯୋଗୀ ଶିବଂ ପଶ୍ୟତି ନାପରମ୍ ।। ୧୮ ।।

ଅନ୍ତଃ ଅନ୍ତର୍ମୁଖଃ ସନ୍ କେବଳେନ ଚେତସା ବାହ୍ୟେନ୍ଦ୍ରିୟସଙ୍ଗରହିତେନ ଚିତ୍ତେନ, କ୍ଷଣଂ ଶିବଂ ପଶ୍ୟନ୍, ଦୃଗାଦିଭିଶ୍ଚକ୍ଷୁରାଦିବାହ୍ୟେନ୍ଦ୍ରିୟୈଃ, ବାହ୍ୟାର୍ଥାନାଂ ଶବ୍ଦାଦିବାହ୍ୟ-ବିଷୟାଣାମ୍ ଅନୁଭବଂ କ୍ଷଣଂ କୁର୍ବନ୍, ଶିବାହିତମନା ଯୋଗୀ ଶିବେ ନିବେଶିତଚିତ୍ତଃ ପରଯୋଗୀ, ସର୍ବେନ୍ଦ୍ରିୟାନିରୂଢ଼ୋଽପି ସର୍ବେନ୍ଦ୍ରିୟାସକ୍ତୋଽପି ସର୍ବେନ୍ଦ୍ରିୟବିହୀନବାନ୍ ସନ୍ ଶିବଂ ପଶ୍ୟତି ଅନ୍ତର୍ବହିଶ୍ଚ ଶିବମେବ ପଶ୍ୟତି, ଅପରଂ ତଦନ୍ୟଂ ନ ପଶ୍ୟତୀତି ତଦିନ୍ଦ୍ରିୟବିବେଚନମନୁଗ୍ରହକରମିତି ଭାବଃ ।। ୧୭-୧୮ ।।

– କେବଳ ଚିତ୍ତଦ୍ୱାରା କ୍ଷଣମାତ୍ର ପାଇଁ ଶିବଙ୍କୁ ନିଜ ଭିତରେ ସାକ୍ଷାତ୍କାର କରୁଥିବା ତଥା ବାହ୍ୟ ବିଷୟଗୁଡ଼ିକୁ ନେତ୍ର ଆଦିରେ କ୍ଷଣମାତ୍ର ଅନୁଭବ କରୁଥିବା ଯୋଗୀ ସମସ୍ତ ଇନ୍ଦ୍ରିୟଯୁକ୍ତ ହେଲେ ମଧ୍ୟ ସମସ୍ତ ଇନ୍ଦ୍ରିୟରୁ ରହିତ ହୋଇ ଶିବଙ୍କ ପ୍ରତି ସମର୍ପିତ ମନବାଲା ହୋଇ ଶିବଙ୍କୁ ହିଁ ସର୍ବତ୍ର ଦେଖେ, କୌଣସି ଅନ୍ୟ ପଦାର୍ଥକୁ ନୁହେଁ ।। ୧୭-୧୮ ।।

ନନ୍ୱେବମନ୍ତର୍ବହିଶ୍ଚ ଶିବଂ ପଶ୍ୟତଃ ଶିବଯୋଗିନୋଽପି ପ୍ରାକୃତଜନବଜ୍ଜରା ମରଣାଦିଦର୍ଶନାତ୍ କଥଂ ଲୋକାନୁଗ୍ରାହକତ୍ୱମିତ୍ୟତ୍ରାହ –

ନ ଜରା ମରଣଂ ନାସ୍ତି ନ ପିପାସା ନ ଚ କ୍ଷୁଧା ।
ଶିବାହିତେନ୍ଦ୍ରିୟସ୍ୟାସ୍ୟ ନିର୍ମାନସ୍ୟ ମହାତ୍ମନଃ ।। ୧୯ ।।

ଶିବାହିତେନ୍ଦ୍ରିୟସ୍ୟ ଶିବନିବେଶିତେନ୍ଦ୍ରିୟବ୍ୟାପାରବତୋ ନିର୍ମାନସ୍ୟ ଦେହାଦ୍ୟ-ଭିମାନଶୂନ୍ୟସ୍ୟ ମହାତ୍ମନୋ ମହାପୁରୁଷସ୍ୟ ଅସ୍ୟ ଶିବଯୋଗିନୋ ଜରାମରଣଂ ନାସ୍ତି, ତୟୋଃ ଶରୀରଧର୍ମତ୍ୱାତ୍, କ୍ଷୁତ୍ପିପାସେ ଚ ନ ସ୍ତଃ, ତୟୋଃ ପ୍ରାଣଧର୍ମତ୍ୱାଦିତି ।। ୧୯ ।।

– ଶିବଙ୍କ ପ୍ରତି ସମର୍ପିତ ଇନ୍ଦ୍ରିୟବାଲା, ଅତଏବ ଦୈହିକ ଆଦି ଅଭିମାନରୁ ରହିତ ଏହି ମହାତ୍ମାଙ୍କୁ ଜରା, ମୃତ୍ୟୁ, ପିପାସା ଓ କ୍ଷୁଧାର କଷ୍ଟ ହୁଏ ନାହିଁ । କାରଣ ଜରା-ମୃତ୍ୟୁ ଶରୀରର ଏବଂ କ୍ଷୁଧା-ପିପାସା ପ୍ରାଣର ଧର୍ମ ଅଟନ୍ତି ।। ୧୯ ।।

'ସର୍ବେଷୁ ଗାତ୍ରେଷୁ ଶିରଃ ପ୍ରଧାନଂ ସର୍ବେନ୍ଦ୍ରିୟାଣାଂ ନୟନଂ ପ୍ରଧାନମ୍' 'ଇନ୍ଦ୍ରିୟାଣାଂ ମନୋ ନାଥୋ ମନୋନାଥସ୍ତୁ ମାରୁତଃ' ଇତି ପୁରାଣବଚନାନୁସାରେଣ ସର୍ବେନ୍ଦ୍ରିୟବ୍ୟାପାରକାରଣୀଭୂତମନୋମାରୁତନିଗ୍ରହଂ ସୂତ୍ରତ୍ରୟେଣ ପ୍ରକାଶୟତି –

ମନୋ ଯତ୍ର ପ୍ରବର୍ତ୍ତେତ ତତ୍ର ସର୍ବେନ୍ଦ୍ରିୟସ୍ଥିତିଃ ।
ଶିବେ ମନସି ସଂଲ୍ଲୀନେ କ୍ୱ ଚେନ୍ଦ୍ରିୟବିଚାରଣା ।। ୨୦ ।।

ଯତ୍ର ମନସ୍ଥିତିଃ (ତତ୍ର) ସର୍ବେନ୍ଦ୍ରିୟସ୍ଥିତିଃ, ମନସି ଶିବେ ସଂଲ୍ଲୀନେ ସତି

ଇନ୍ଦ୍ରିୟବିଚାରଣା ଇନ୍ଦ୍ରିୟବ୍ୟାପାରଃ କ୍ୱ ? ନାସ୍ତୀତ୍ୟର୍ଥଃ ।। ୨୦।।

– ଯେଉଁ ବିଷୟରେ ମନ ପ୍ରବୃତ୍ତ ହୁଏ, ଇନ୍ଦ୍ରିୟ ମଧ୍ୟ ସେଥିରେ ସ୍ଥିତି ଚାହାନ୍ତି । ଯେତେବେଳେ ଏହି ମନ ଶିବରେ ଲୀନ ହୋଇଯାଏ, ସେତେବେଳେ (ଆଧାରହୀନ) ଇନ୍ଦ୍ରିୟଗୁଡ଼ିକର ବ୍ୟାପାର (ଗତି) କେଉଁଠାରେ ? ।। ୨୦।।

**ଯଦ୍ୟଦ୍ ପଶ୍ୟନ୍ ଦୃଶା ଯୋଗୀ ମନସା ଚିନ୍ତୟତ୍ୟପି ।**
**ତତ୍ତଦ୍ ସର୍ବଂ ଶିବାକାରଂ ସଂବିଦ୍ରୂପଂ ପ୍ରକାଶୟତି ।। ୨୧ ।।**

ଯୋଗୀ ଶିବଯୋଗୀ ଦୃଶା ଯଦ୍ୟଦ୍ ପଶ୍ୟତି, ମନସା ଚିନ୍ତୟତି, ତତ୍ତଦ୍ ସର୍ବଂ ଚିଦ୍ରୂପଂ ଶିବାକାରଂ ସନ୍ ପ୍ରକାଶତେ ମନୁତ ଇତ୍ୟର୍ଥଃ ।। ୨୧ ।।

– ଶିବଯୋଗୀ ନେତ୍ରରେ ଯେଉଁ ଯେଉଁ ବସ୍ତୁ ଦେଖି ମନରେ ତା'ର ଧ୍ୟାନ କରେ, ସେହି ସମସ୍ତ ବସ୍ତୁ ତାକୁ ଶିବାକାର ସଂବିଦ୍ ଭାବରେ ଭାସିତ ହୋଇଥାନ୍ତି ।। ୨୧ ।।

ଅନେନାନ୍ତର୍ବାହ୍ୟେନ୍ଦ୍ରିୟନିଗ୍ରହପ୍ରକାରୋ ଦର୍ଶିତଃ । ଅଥ ପ୍ରାଣନିଗ୍ରହପ୍ରକାରଂ ଦର୍ଶୟତି –

**କରଣୈଃ ସହିତଂ ପ୍ରାଣଂ ମନସ୍ୟାଧାୟ ସଂଯମୀ ।**
**ଯୋଜୟେଦ୍ ସ ଶିବଃ ସାକ୍ଷାଦ୍ ଯତ୍ର ନାସ୍ତି ଜଗଦ୍ଭ୍ରମଃ ।। ୨୨ ।।**

କରଣୈର୍ନେତ୍ରାଦିକରଣୈଃ ସହିତଂ ପ୍ରାଣଂ ପ୍ରାଣବାୟୁଂ ମନସ୍ୟାଧାୟ ସଂସ୍ଥାପ୍ୟ ଯଃ ସଂଯମୀ ଶିବଯୋଗୀ ଯତ୍ର ବ୍ରହ୍ମଣି ଯୋଜୟେଦ୍, ନେତ୍ରାଦିକରଣାନାଂ ମନ ଏବ ପ୍ରାଣରୂପମ୍, ମନୋବାୟୁରୂପଂ ବେପବତ୍ତ୍ୱାଦ୍ ଲୋକେ କ୍ୱଚିଲ୍ଲକ୍ଷ୍ୟେ ନେତ୍ରଚଞ୍ଚଳଂ ଚେଦ୍, ପ୍ରାଣବାୟୁନିରୋଧଦ୍ୱାରା ମନୋଲୟସ୍ୟାନୁଭୂୟମାନତ୍ୱାଚ୍ଚ ତ୍ରୟାଣାମୈକ୍ୟାଦ୍ ସାମରସ୍ୟେନ ସଂଯୋଜୟେଦ୍, ସ ସାକ୍ଷାଚ୍ଛିବ ଏବ । ତସ୍ୟ ଜଗଦ୍ଭ୍ରମୋ ବିଶ୍ୱଭେଦଭ୍ରାନ୍ତିର୍ନାସ୍ତି, ଚିତ୍ତବୃତ୍ତିର୍ବ୍ରହ୍ମଣି ଲୀନା ଚେଦ୍ ବାହ୍ୟେନ୍ଦ୍ରିୟବ୍ୟାପାରୋ ନିବର୍ତ୍ତତେ, ତଦଭାବାଦ୍ ବିଭେଦଭ୍ରାନ୍ତିର୍ନାସ୍ତୀତ୍ୟର୍ଥଃ ।। ୨୨ ।।

– (ନେତ୍ର ଆଦି) ଇନ୍ଦ୍ରିୟଗୁଡ଼ିକ ସହିତ ପ୍ରାଣକୁ ମନରେ ସମାହିତ କରି ଯେଉଁ ଶିବଯୋଗୀ ଯେଉଁଥିରେ ତା'ର ଯୋଜନା (ଯୋଗ) କରେ, ସେହି ବସ୍ତୁ ସାକ୍ଷାତ୍ ଶିବରୂପ (ରେ ପ୍ରକାଶିତ) ହୁଏ । ସେଥିରେ ସଂସାରର ଭ୍ରମ ରହେ ନାହିଁ ।। ୨୨ ।।

ଅଥେନ୍ଦ୍ରିୟାନୁଗ୍ରହସ୍ଥଳଂ ସମାପୟତି –

**ସର୍ବେନ୍ଦ୍ରିୟପ୍ରବୃତ୍ତ୍ୟା ଚ ବହିରନ୍ତଃ ଶିବଂ ଯଜନ୍ ।**
**ସ୍ୱଚ୍ଛନ୍ଦଚାରୀ ସର୍ବତ୍ର ସୁଖୀ ଭବତି ସଂଯମୀ ।। ୨୩ ।।**

ସଂଯମୀ ଶିବଯୋଗୀ ସର୍ବେନ୍ଦ୍ରିୟାପ୍ରବୃତ୍ତ୍ୟା ଚ ଅନ୍ତର୍ବାହ୍ୟେନ୍ଦ୍ରିୟପ୍ରବର୍ତ୍ତନେନ ଶିବମ୍

ଇଷ୍ଟପ୍ରାଣରୂପଶିବଲିଙ୍ଗଂ ଯଜନ୍ ପୂଜୟନ୍ ସର୍ବତ୍ର ସ୍ୱେଚ୍ଛାଚାରୀଭୂତ୍ୱା ସୁଖୀ ଭବତି ସୁଖମନୁଭବନ୍ନାସ୍ତ ଇତ୍ୟର୍ଥଃ ।। ୨୩ ।।

– ସେହି ସଂଯମୀ ଅର୍ଥାତ୍ ଶିବଯୋଗୀ ସମ୍ପୂର୍ଣ୍ଣ ଇନ୍ଦ୍ରିୟଦ୍ୱାରା ନିଜର ଭିତର ତଥା ବାହାର ଜଗତରେ ସର୍ବତ୍ର ଶିବଙ୍କର ପୂଜା, ତାଙ୍କର ଧ୍ୟାନ, ତାଙ୍କ ପାଇଁ ଦାନ ଆଦି କରେ । ସେ ସର୍ବତ୍ର ନିର୍ବୋଧ ଭ୍ରମଣ କରେ ଏବଂ ସୁଖୀ ରହେ ।। ୨୩।।

ଇତୀନ୍ଦ୍ରିୟାନୁଗ୍ରହସ୍ଥଲମ୍

## ଅଥ ପ୍ରାଣାନୁଗ୍ରହସ୍ଥଲମ୍

ଅଥ – 'ପ୍ରାଣାନ୍ ପ୍ରପୀଡ୍ୟେହ ସ ମୁକ୍ତଚେଷ୍ଟଃ କ୍ଷୀଣେ ପ୍ରାଣେ ନାସିକୟୋଚ୍ଛ୍ବସୀତ'[୨୧୮] ଇତି ଶ୍ୱେତାଶ୍ୱତରଶ୍ରୁତ୍ୟନୁସାରେଣେନ୍ଦ୍ରିୟାନୁଗ୍ରହସମ୍ପନ୍ନସ୍ୟ ଶିବଯୋଗିନସ୍ତାତ୍ପର୍ଯ୍ୟାବଲୋକନମେବ ସର୍ବେଷାଂ ପ୍ରାଣାନୁଗ୍ରହସ୍ଥଲଂ ନିରୂପୟତି –

ଶିବସ୍ୟ ପରକାୟସ୍ୟ ଯତ୍ ତାତ୍ପର୍ଯ୍ୟାବଲୋକନମ୍ ।
ତତ୍ପ୍ରାଣାନୁଗ୍ରହଃ ପ୍ରୋକ୍ତଃ ସର୍ବେଷାଂ ତତ୍ତ୍ୱଦର୍ଶିଭିଃ ।। ୨୪।।

ପରକାୟସ୍ୟ ଇନ୍ଦ୍ରିୟାନୁଗ୍ରହସମ୍ପନ୍ନସ୍ୟ ପରବ୍ରହ୍ମକାୟସ୍ୟ ଶିବସ୍ୟ ଶିବଯୋଗିନୋ ଯତ୍ତାତ୍ପର୍ଯ୍ୟାବଲୋକନଂ ପ୍ରାଣବାୟୁନିରୋଧେନ ଯତ୍ତାତ୍ପର୍ଯ୍ୟାବଲୋକନମସ୍ତି, ତତ୍ ସର୍ବେଷାଂ ପ୍ରାଣାନୁଗ୍ରହ ଇତି ତତ୍ତ୍ୱଦର୍ଶିଭିସ୍ତତ୍ତ୍ୱଜ୍ଞାନିଭିଃ ପ୍ରୋକ୍ତ ଇତ୍ୟର୍ଥଃ ।। ୨୪।।

– (ପ୍ରାଣାନୁଗ୍ରହସ୍ଥଲ ବର୍ଣ୍ଣନ) – ପରକାୟ (ଅର୍ଥାତ୍ ଇନ୍ଦ୍ରିୟାନୁଗ୍ରହ ସମ୍ପନ୍ନ) ଶିବ (ଅର୍ଥାତ୍ ଶିବଯୋଗୀ)ର ଯେଉଁ ତାତ୍ପର୍ଯ୍ୟାବଲୋକନ (ଅର୍ଥାତ୍ ପ୍ରାଣବାୟୁର ନିରୋଧ) ଅଟେ, ତାହା ତତ୍ତ୍ୱଦ୍ରଷ୍ଟା ମନୀଷିମାନଙ୍କଦ୍ୱାରା ସମସ୍ତଙ୍କର ପ୍ରାଣାନୁଗ୍ରହ କୁହାଯାଇଛି ।। ୨୪।।

ଅଥ ତତ୍ତାତ୍ପର୍ଯ୍ୟାବଲୋକନଂ କୀଦୃଶମିତ୍ୟାହ –

ପ୍ରାଣୋ ଯସ୍ୟ ଲୟଂ ଯାତି ଶିବେ ପରମକାରଣେ ।
କୁତସ୍ତସ୍ୟେନ୍ଦ୍ରିୟସ୍ଫୂର୍ତ୍ତିଃ କୁତଃ ସଂସାରଦର୍ଶନମ୍ ।। ୨୫।।

ଯସ୍ୟ ଶିବଯୋଗିନଃ ପ୍ରାଣଃ ପ୍ରାଣବାୟୁଃ ପରମକାରଣେ ଶିବେ ବ୍ରହ୍ମାଦିକାରଣେଶାନା[୨୧୯]ମପି କାରଣୀଭୂତେ ପରଶିବେ ଲୟଂ ଯାତି, ତସ୍ୟ ଶିବଯୋଗିନ ଇନ୍ଦ୍ରିୟସ୍ଫୂର୍ତ୍ତିରିନ୍ଦ୍ରିୟବ୍ୟାପାରଃ କୁତଃ ? ନାସ୍ତୀତ୍ୟର୍ଥଃ । ଏବଂ ଚ ନିଷ୍ପ୍ରପଞ୍ଚଶିବଲିଙ୍ଗଦର୍ଶନଂ ତତ୍ତାତ୍ପର୍ଯ୍ୟାବଲୋକନମିତି ଭାବଃ ।। ୨୫।।

---

୨୧୮. ଶ୍ୱେ. ଉ., ୨/୯

୨୧୯. ବ୍ରହ୍ମା–ବିଷ୍ଣୁ–ରୁଦ୍ର–ଈଶ୍ୱରଃ ସଦାଶିବଶ୍ଚେତି ପଞ୍ଚକାରଣେଶାଃ ।

– ଯେଉଁ ଯୋଗୀର ପ୍ରାଣ ପରମକାରଣ ଅର୍ଥାତ୍ ପଞ୍ଚକାରଣର ମଧ୍ୟ କାରଣଭୂତ ଶିବରେ ଲୀନ ହୋଇଯାଏ, ତାହାର ଇନ୍ଦ୍ରିୟ ବ୍ୟାପାର କେଉଁଠାରେ ଏବଂ ସଂସାରଦର୍ଶନ କେଉଁଠାରେ ? ।। ୨୫।।

ଅଥ ତତ୍ କଥମିତ୍ୟତ୍ରାହ –

**କରଣେଷ୍ୱୁ ନିବୃତ୍ତେଷୁ ସ୍ୱାର୍ଥସଙ୍ଗାତ୍ ପ୍ରଯତ୍ନତଃ ।**
**ତୈଃ ସମଂ ପ୍ରାଣମାରୋପ୍ୟ ସ୍ୱାନ୍ତେ ଶାନ୍ତମତିଃ ସ୍ୱୟମ୍ ।। ୨୬।।**

କେବଲକୁମ୍ଭେନ ଶିବେ ପ୍ରାଣବାୟୌ ଲୟଂ ଗତେ ସତି କରଣେଷ୍ୱୁ ଚକ୍ଷୁରାଦିକରଣେଷ୍ୱୁ ସ୍ୱାର୍ଥସଙ୍ଗାତ୍ ଶବ୍ଦାଦିସ୍ୱବିଷୟସମ୍ବନ୍ଧାତ୍ ପ୍ରଯତ୍ନତଃ ସ୍ୱୟମେବ ନିବୃତ୍ତେଷୁ ସସ୍ୱୁ ସ୍ୱାନ୍ତେ ମନସି ତୈରିନ୍ଦ୍ରିୟୈଃ ସ୍ୟାତ୍ ।। ୨୬।।

– ପ୍ରଯତ୍ନ ଅର୍ଥାତ୍ କୁମ୍ଭକ ଆଦି ଦ୍ୱାରା ଇନ୍ଦ୍ରିୟ ଗୁଡ଼ିକ ନିଜ ନିଜ ବିଷୟରୁ ନିବୃତ୍ତ ହେଲେ ସେମାନଙ୍କୁ ଅର୍ଥାତ୍ ଇନ୍ଦ୍ରିୟଗୁଡ଼ିକ ସହିତ ପ୍ରାଣକୁ ଏକରୂପ କରି ଯୋଗୀ ସ୍ୱୟଂ ଶାନ୍ତମନା ହୋଇଯାଏ ।। ୨୬।।

ଏବଂ ସ୍ଥିତେ –

**ଶାନ୍ତତ୍ୱାତ୍ ପ୍ରାଣବୃତ୍ତୀନାଂ ମନଃ ଶାମ୍ୟତି ବୃତ୍ତିଭିଃ ।**
**ତଚ୍ଛାନ୍ତୌ ଯୋଗିନାଂ କିଞ୍ଚିଚ୍ଛିବାଦନ୍ୟନ୍ନ ଦୃଶ୍ୟତେ ।। ୨୭।।**

ପ୍ରାଣବୃତ୍ତୀନାଂ ରେଚକପୂରକରୂପପ୍ରାଣବୃତ୍ତୀନାଂ ଶାନ୍ତତ୍ୱାତ୍ କେବଲକୁମ୍ଭକେନ ନିବୃତ୍ତତ୍ୱାତ୍, ମନୋ ବୃତ୍ତିଭିଃ ସଙ୍କଳ୍ପବିକଳ୍ପରୂପବୃତ୍ତିଭିଃ ସମଂ ସାମ୍ୟତି, ତଚ୍ଛାନ୍ତୌ ସଖାଂ ଯୋଗିନାଂ ଶିବାଦନ୍ୟନ୍ନ କିଞ୍ଚିଦପି ଦୃଶ୍ୟତ ଇତ୍ୟର୍ଥଃ ।। ୨୭।।

– ପ୍ରାଣର ବୃତ୍ତି ଗୁଡ଼ିକ (ଶ୍ୱାସ-ପ୍ରଶ୍ୱାସ ଅଥବା ରେଚକ-ପୂରକ) ଶାନ୍ତ ହେବା ପରେ ମନ ମଧ୍ୟ ସେହି ବୃତ୍ତିଗୁଡ଼ିକ ସହିତ ଶାନ୍ତ ହୋଇଯାଏ । ତାହା ଅର୍ଥାତ୍ ମନ ଶାନ୍ତ ହେବା ପରେ ଯୋଗୀମାନଙ୍କୁ ଶିବଙ୍କ ଅତିରିକ୍ତ ଅନ୍ୟ କିଛି, ଦେଖାଯାଏ ନାହିଁ ।। ୨୭।।

ଅଥାତ୍ର ଶଙ୍କାଂ ସୂତ୍ରଦ୍ୱୟେନୋଦ୍ଭାବ୍ୟ ତୃତୀୟେନ ନିରାକରୋତି –

**ପ୍ରାଣ ଏବ ମନୁଷ୍ୟାଣାଂ ଦେହଧାରଣକାରଣମ୍ ।**
**ତଦାଧାରଃ ଶିବଃ ପ୍ରୋକ୍ତଃ ସର୍ବକାରଣକାରଣମ୍ ।। ୨୮।।**

ସ୍ପଷ୍ଟମ୍ ।। ୨୮।।

– ପ୍ରାଣ ହିଁ ମନୁଷ୍ୟମାନଙ୍କର ଶରୀର ଧାରଣ କରିବାର କାରଣ ଅଟେ ଏବଂ ସମସ୍ତ କାରଣର କାରଣ ସ୍ୱରୂପ ଶିବ ତାହାର (ପ୍ରାଣର) କାରଣ କୁହାଯାଇଛି ।। ୨୮।।

ଅସ୍ୟୋତ୍ତରମ୍ –

ନିରାଧାରଃ ଶିବଃ ସାକ୍ଷାତ୍ ପ୍ରାଣସ୍ତେନ ପ୍ରତିଷ୍ଠିତଃ ।
ତଦାଧାରା ତନୁର୍ଜ୍ଞେୟା ଜୀବୋ ଯେନୈବ ଚେଷ୍ଟତେ ।। ୨୯ ।।

ତଦାଧାରା ପ୍ରାଣାଧାରେତ୍ୟର୍ଥଃ ।। ୨୯ ।।

– ଶିବ ନିରାଧାର ଅଟନ୍ତି ଏବଂ ପ୍ରାଣ ତାଙ୍କଦ୍ୱାରା ପ୍ରତିଷ୍ଠିତ ଅଟେ । ଶରୀରକୁ ପ୍ରାଣର ଆଧାରବାଲା ଜାଣିବା ଉଚିତ୍ । ଜୀବ ଏହି ପ୍ରାଣ କାରଣରୁ ଚେଷ୍ଟା କରେ ।। ୨୯ ।।

ଯେନୈବ ପ୍ରାଣେନୈବ ଜୀବଶ୍ଚେଷ୍ଟତ ଇତି ସର୍ବସମ୍ମତତ୍ୱେନ ଶିବେ ପ୍ରାଣସ୍ୟ ଲୀନତ୍ୱାଦ୍ ଦେହଃ କଥଂ ତିଷ୍ଠତୀତି ଶଙ୍କା ? ଅସ୍ୟୋତ୍ତରମ୍ –

ଶିବେ ପ୍ରାଣୋ ବିଲୀନୋଽପି ଯୋଗିନୋ ଯୋଗମାର୍ଗତଃ ।
ସ୍ୱଶକ୍ତିବାସନା ଯୋଗାଦ୍ ଧାରୟତ୍ୟେବ ବିଗ୍ରହମ୍ ।। ୩୦ ।।

ଯୋଗିନଃ ଶିବଯୋଗିନୋ ଯୋଗମାର୍ଗତଃ କେବଲକୁମ୍ଭରୂପଯୋଗମାର୍ଗାଦ୍ ପ୍ରାଣଃ ଶିବେ ବିଲୀନୋଽପି ଲୟଂ ତତୋଽପି ସ୍ୱଶକ୍ତିବାସନାଯୋଗାଦ୍ ନିଜଶକ୍ତିସଂସ୍କାରବଲାଦ୍ ବିଗ୍ରହଂ ଶରୀରଂ ଧାରୟତ୍ୟେବେତ୍ୟର୍ଥଃ ।। ୩୦ ।।

– ଯୋଗୀର ପ୍ରାଣ ନିଜର ଯୋଗମାର୍ଗରେ ଶିବଠାରେ ବିଲୀନ ହେବା ପରେ ନିଜର ଶକ୍ତିର ସଂସ୍କାରର ବଳରେ ଶରୀର ଧାରଣ କରିଥାଏ ।। ୩୦ ।।

ତର୍ହି ସ କଥଂ ତିଷ୍ଠତୀତ୍ୟତ୍ର ସୂତ୍ରଦ୍ୱୟେନ କଥୟତି –

ସ ଚାଭ୍ୟାସବଶାଦ୍ ଭୂୟଃ ସର୍ବତତ୍ତ୍ୱାତିବର୍ତ୍ତିନି ।
ନିଷ୍କଳଙ୍କେ ନିରାକାରେ ନିରସ୍ତାଶେଷବିକଳ୍ପେ ।। ୩୧ ।।

ସ ଚ ଜୀବାତ୍ମାଶ୍ରୟୀଭୂତପ୍ରାଣବାୟୁର୍ଭୂୟୋଽଭ୍ୟାସବଶାତ୍ ସର୍ବତତ୍ତ୍ୱାତିବର୍ତ୍ତିନି ଭୂମ୍ୟାଦି-ଶିବାନ୍ତତତ୍ତ୍ୱୋପରିବର୍ତ୍ତିନି ନିଷ୍କଳଙ୍କେ ଜରାମରଣାଦି ଦୋଷରହିତେ ନିରାକାରେ, ଅତଏବ ପ୍ରାକୃତନୀଳପୀତାଦ୍ୟାକାରରହିତେ ନିରସ୍ତାଶେଷବିକଳ୍ପେ ନିବୃତ୍ତସମସ୍ତବାଧେ ।। ୩୧ ।।

ଚିଦ୍ୱିଳାସପରିସ୍ଫୂର୍ତ୍ତିପରିପୂର୍ଣ୍ଣସୁଖାଦ୍ୱୟେ ।
ଶିବେ ବିଲୀନଃ ସର୍ବାତ୍ମା ଯୋଗୀ ଚଳତି ନ କ୍ୱଚିତ୍ ।। ୩୨ ।।

ଚିଦ୍ୱିଳାସବାହୁଲ୍ୟେନ ପରିପୂର୍ଣ୍ଣସୁଖାଦ୍ୱୟେ ପରିପୂର୍ଣ୍ଣାନନ୍ଦସ୍ୱରୂପେଣ ଦ୍ୱିତୀୟଶୂନ୍ୟେ ପରମଶିବେ ବିଲୀନସର୍ବାତ୍ମା ଲୀୟଭୂତସର୍ବବ୍ୟାପାରବାନ୍ ଯୋଗୀ ଶିବଯୋଗୀ କ୍ୱଚିତ୍ କୁତ୍ରଚିତ୍ କଦାପି ନ ଚଳତି, ନ ସ୍ପନ୍ଦତ ଇତ୍ୟର୍ଥଃ ।। ୩୨ ।।

– ଏବଂ ସେହି ପ୍ରାଣବାୟୁ ପୁନଃ ଅଭ୍ୟାସଦ୍ୱାରା ସର୍ବତତ୍ତ୍ୱାତିଶାୟୀ ନିଷ୍କଳଙ୍କ ନିରାକାର ସମସ୍ତ ବାଧାରହିତ ଚିତ୍ ଶକ୍ତିର ବିକାସର ପରିସ୍ଫୁରଣରେ ପରିପୂର୍ଣ୍ଣ ଆନନ୍ଦରୂପ ଅଦ୍ୱିତୀୟ ଶିବଠାରେ ଯେତେବେଳେ ବିଲୀନ ହୋଇଯାଏ, ସେତେବେଳେ

ଏପରି ସର୍ବାତ୍ମା ଯୋଗୀ କେଉଁଠାକୁ ଯାଏ ନାହିଁ (ଅର୍ଥାତ୍ ସ୍ଥିର ହୋଇ ସର୍ବବ୍ୟାପୀ ହୋଇଯାଏ) ।। ୩୧-୩୨ ।।

ଅଥ କିମିବ ନ ଚଳତୀତ୍ୟତ୍ରାହ –

**ପ୍ରଧ୍ୱସ୍ତବାସନାସଙ୍ଗାଦ୍ ପ୍ରାଣବୃତ୍ତିପରିକ୍ଷୟାଦ୍ ।**
**ଶିବୈକୀଭୂତସର୍ବାତ୍ମା ସ୍ଥାଣୁବଦ୍ ଭାତି ସଂଯମୀ ।। ୩୩ ।।**

ସଂଯମୀ ଶିବଯୋଗୀଶ୍ୱରଃ ପ୍ରଧ୍ୱସ୍ତବାସନାସଙ୍ଗାଦ୍ ବିନଷ୍ଟବିଷୟବାସନାସମ୍ପର୍କାଦ୍ ପ୍ରାଣବୃତ୍ତିକ୍ଷୟାଦ୍ ପ୍ରାକୃତବୈକୃତରୂପପ୍ରାଣବ୍ୟାପାରନାଶାଦ୍ ଶିବୈକୀଭୂତସର୍ବାତ୍ମା ଶିବଲିଙ୍ଗୈକରସୀଭୂତସର୍ବେନ୍ଦ୍ରିୟବ୍ୟାପାରବାନ୍ ସନ୍ ସ୍ଥାଣୁବଦ୍ କାଷ୍ଠବଦ୍ ନିଶ୍ଚଳତ୍ୱେନ ଭାତୀତ୍ୟର୍ଥଃ ।। ୩୩ ।।

– ବାସନାର ଆସକ୍ତି ନଷ୍ଟ ହେବା ପରେ ତଥା ପ୍ରାଣବୃତ୍ତିର ପରିକ୍ଷୟ ଅର୍ଥାତ୍ ବିରାମ ହେବାରୁ ଶିବଙ୍କ ସହିତ ଏକ ହୋଇ ସର୍ବାତ୍ମା ଯୋଗୀ ସ୍ଥାଣୁ ପରି ପ୍ରତୀତ ହୋଇଥାଏ (ଅର୍ଥାତ୍ ନିଶ୍ଚଳ ହୋଇଯାଏ) ।। ୩୩ ।।

ଇତି ପ୍ରାଣାନୁଗ୍ରହସ୍ଥଳମ୍

## ଅଥ କାୟାର୍ପିତସ୍ଥଳମ୍

ଅଥ – ଯଦା ଶିବାୟ ସ୍ୱାତ୍ମାନଂ ଦତ୍ତବାନ୍ ଦେଶିକାତ୍ମନେ ।
ତଦା ଶୈବୋ ଭବେଦ୍ ଦେବି ନ ତତୋଽସ୍ତି ପୁନର୍ଭବଃ ।।

ଇତି ଯୋଗଜାଗମବଚନାନୁସାରେଣ ପ୍ରାଣାନୁଗ୍ରହସମ୍ପନ୍ନସ୍ୟ ଯୋଗ୍ୟଂ କାୟାର୍ପିତସ୍ଥଳଂ ନିରୂପୟତି –

**ଶିବସ୍ୟ ପରରୂପସ୍ୟ ସର୍ବାନୁଗ୍ରାହିଣୋଽର୍ଚ୍ଚନେ ।**
**ତ୍ୟାଗୋ ଦେହାଭିମାନସ୍ୟ କାୟାର୍ପିତମୁଦାହୃତମ୍ ।। ୩୪ ।।**

ସର୍ବାନୁ ଗ୍ରାହିଣଃ ସର୍ବାନୁଗ୍ରାହକସ୍ୟ ପରରୂପସ୍ୟ ପରବ୍ରହ୍ମକାୟସ୍ୟ ପ୍ରାଣାନୁଗ୍ରହସମ୍ପନ୍ନସ୍ୟ ପରଯୋଗିନଃ ଶିବସ୍ୟାର୍ଚ୍ଚନେ ଶିବଲିଙ୍ଗପୂଜାବିଷୟେ ଦେହାଭିମାନସ୍ୟ ତ୍ୟାଗଃ କାୟାର୍ପିତମିତ୍ୟୁଦାହୃତମିତ୍ୟର୍ଥଃ ।। ୩୪ ।।

– (କାୟାର୍ପିତସ୍ଥଳ ବର୍ଣ୍ଣନ) – ସମସ୍ତଙ୍କ ଉପରେ ଅନୁଗ୍ରହ କରୁଥିବା ପରରୂପ ଶିବଙ୍କର ପୂଜା ସମୟରେ ଦେହାଭିମାନର ତ୍ୟାଗକୁ କାୟାର୍ପିତ କୁହାଯାଏ ।। ୩୪ ।।

ଅଥ କିମନେନ ଭବତୀତ୍ୟତ୍ରାହ –

ଯଦା ଯୋଗୀ ନିଜଂ ଦେହଂ ଶିବାୟ ବିନିବେଦୟେତ୍ ।
ତଦା ଭବତି ତଦ୍ରୂପଂ ଶିବରୂପଂ ନ ସଂଶୟଃ ।। ୩୫ ।।

ତଦ୍ରୂପଂ ଯୋଗିନଃ ସ୍ୱରୂପଂ ଶିବରୂପଂ ଭବତୀତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୫ ।।

– ଯେତେବେଳେ ଯୋଗୀ ନିଜର ଶରୀରକୁ ଶିବଙ୍କ ପାଇଁ ଅର୍ପିତ କରିଦିଏ, ସେତେବେଳେ ତାହାର ସେ ରୂପ ଶିବରୂପ ହୋଇଯାଏ, ଏଥିରେ କୌଣସି ସନ୍ଦେହ ନାହିଁ ।। ୩୫ ।।

ନନୁ ଦେହମାତ୍ରଂ ସମର୍ପଣୀୟଂ ବା ଅନ୍ୟତ୍ କିଞ୍ଚିଦସ୍ତି ବେତ୍ୟତ୍ରାହ –

ଇନ୍ଦ୍ରିୟପ୍ରୀତିହେତୂନି ବିଷୟାସଙ୍ଗଜାନି ଚ ।
ସୁଖାନି ସୁଖଚିଦ୍ରୂପେ ଶିବଯୋଗୀ ନିବେଦୟେତ୍ ।। ୩୬ ।।

ଇନ୍ଦ୍ରିୟପ୍ରୀତିକାରଣୀଭୂତବିଷୟସମ୍ବନ୍ଧୋତ୍ପନ୍ନସୁଖଂ ଚିଦାନନ୍ଦରୂପେ ଶିବେ ନିବେଦୟେଦିତ୍ୟର୍ଥଃ ।। ୩୬ ।।

– ଯୋଗୀ ଇନ୍ଦ୍ରିୟକୁ ଆନନ୍ଦ ଦେଉଥିବାରୁ ସାଧନଭୂତ ତଥା ବିଷୟ ସହିତ ଆସଙ୍ଗ (ଅର୍ଥାତ୍ ପୂର୍ଣ୍ଣ ଲିପ୍ତତା)ରୁ ଉତ୍ପନ୍ନ ସୁଖକୁ ଚିଦାନନ୍ଦ ରୂପ ଶିବଙ୍କୁ ଅର୍ପିତ କରିଦେବା ଉଚିତ୍ ।। ୩୬ ।।

ଅଥ ତତ୍ କଥମିତ୍ୟତ୍ରାହ –

ଦର୍ଶନାତ୍ ସ୍ପର୍ଶନାଦ୍ ଭୁକ୍ତେଃ ଶ୍ରବଣାଦ୍ ଘ୍ରାଣନାଦପି ।
ବିଷୟେଭ୍ୟୋ ଯଦୁତ୍ପନ୍ନଂ ଶିବେ ତତ୍ସୁଖମର୍ପୟେତ୍ ।। ୩୭ ।।

ବିଷୟେଭ୍ୟ ଏତଦ୍ୱ୍ୟତିରିକ୍ତବସ୍ତ୍ରାଭରଣାଦିବିଷୟେଭ୍ୟ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୭ ।।

– ଯୋଗୀ ଦର୍ଶନ, ସ୍ପର୍ଶନ, ଭୋଜନ, ଶ୍ରବଣ ଓ ଘ୍ରାଣନ ତଥା ଧନ, ଜନ ଆଦି ଅନ୍ୟ ବିଷୟରୁ ଉତ୍ପନ୍ନ ସୁଖକୁ ଶିବଙ୍କଠାରେ ଅର୍ପଣ କରିବା ଉଚିତ୍ ।। ୩୭ ।।

ଅଥ ଦେହଦ୍ୱାରେଣ ଯଦ୍ୟତ୍ ସୁଖଂ ପ୍ରାପ୍ତଂ ତତ୍ସର୍ବଂ ଶିବଲିଙ୍ଗାୟ ସମର୍ପଣୀୟମିତି ବଦନ୍ କାୟାର୍ପିତସ୍ଥଳଂ ସମାପୟତି –

ଦେହଦ୍ୱାରେଣ ଯଦ୍ୟତ୍ ସ୍ୟାତ୍ ସୁଖଂ ପ୍ରାସଙ୍ଗମାତ୍ମନଃ ।
ତତ୍ତନ୍ନିବେଦୟନ୍ ଶମ୍ଭୋର୍ଯୋଗୀ ଭବତି ନିର୍ମଳଃ ।। ୩୮ ।।

ଦେହଦ୍ୱାରେଣ ଦେହସମ୍ବନ୍ଧଦଶେନ୍ଦ୍ରିୟଦ୍ୱାରେଣ. ଯଦ୍ୟତ୍ସୁଖଂ ସ୍ୱସ୍ୟ ପ୍ରାସଙ୍ଗଂ ପ୍ରସକ୍ତଂ ସ୍ୟାତ୍, ତତ୍ତତ୍ସୁଖଂ ଶମ୍ଭୋଃ ଶିବଲିଙ୍ଗସ୍ୟ ନିବେଦୟେତ୍ ସମର୍ପୟନ୍ ସନ୍ ଯୋଗୀ

ଶିବଯୋଗୀ ନିର୍ମଳୋ ନିର୍ଲେପଃ ସନ୍ ଚରତି ସଞ୍ଚରତୀତ୍ୟର୍ଥଃ । କାୟିନସୁଖସମର୍ପଣମେବ କାୟାର୍ପଣମିତି ଭାବଃ ।। ୩୮ ।।

– ଦେହଦ୍ୱାରା ଯେଉଁ ଯେଉଁ ସୁଖ ଆତ୍ମାକୁ ପ୍ରାପ୍ତ ହୁଏ, ଯୋଗୀ ସେହି ସେହି ସୁଖକୁ ଶିବଙ୍କୁ ନିବେଦିତ କରି ନିର୍ମଳ ହୋଇଯାଏ ।। ୩୮ ।।

– ଦେହଦ୍ୱାରା ଯେଉଁ ଯେଉଁ ସୁଖ ଆତ୍ମାକୁ ପ୍ରାପ୍ତ ହୁଏ, ଯୋଗୀ ସେହି ସେହି ସୁଖକୁ ଶିବଙ୍କୁ ନିବେଦିତ କରି ନିର୍ମଳ ହୋଇଯାଏ ।। ୩୮ ।।

ଇତି କାୟାର୍ପିତସ୍ଥଲମ୍

## ଅଥ କରଣାର୍ପିତସ୍ଥଲମ୍

ଅଥ –

ଯସ୍ତୁ ବିଜ୍ଞାନବାନ୍ ଭବତି ଯୁକ୍ତେନ ମନସା ସଦା ।
ତସ୍ୟେନ୍ଦ୍ରିୟାଣି ବଶ୍ୟାନି ସଦଶ୍ୱା ଇବ ସାରଥେଃ[୨୨୦] ।।

ଇତି କଠବଲ୍ଲୀଶ୍ରୁତ୍ୟନୁସାରେଣ କାୟାର୍ପିତସମ୍ପନ୍ନସ୍ୟ କରଣାର୍ପିତସ୍ଥଲଂ ନିରୂପୟତି –

**ଆସଞ୍ଜନଂ ସମସ୍ତାନାଂ କରଣାନାଂ ପରାତ୍ପରେ ।**
**ଶିବେ ଯତ୍ ତଦିଦଂ ପ୍ରୋକ୍ତଂ କରଣାର୍ପିତମାଗମେ ।। ୩୯ ।।**

ପରାତ୍ପରେ ବିଶ୍ୱସ୍ମାଦୁତ୍କୃଷ୍ଟପରଶକ୍ତ୍ୟପେକ୍ଷୟୋତ୍କୃଷ୍ଟେ ଶିବେ ଶିବଲିଙ୍ଗେ ସମସ୍ତାନାମ୍ ଅନ୍ତର୍ବାହ୍ୟବର୍ତ୍ତିନାଂ କରଣାନାଂ ଯଦାସଞ୍ଜନଂ ସଂଯୋଜନକର୍ତ୍ତୃତ୍ୱମସ୍ତି, ତଦିଦଂ କରଣାର୍ପିତମିତ୍ୟାଗମେ ବୀରଶୈବସିଦ୍ଧାନ୍ତେ ପ୍ରୋକ୍ତଂ କଥିତମିତ୍ୟର୍ଥଃ ।। ୩୯ ।।

– (କରଣାର୍ପିତସ୍ଥଳ ବର୍ଣ୍ଣନ) – ପରାତ୍ପର ଶିବଲିଙ୍ଗରେ ସମସ୍ତ ଲିଙ୍ଗଗୁଡ଼ିକର ଯେଉଁ ସଂଯୋଜନ ହୁଏ, ତାହାକୁ ଶୈବାଗମରେ କରଣାର୍ପିତ କୁହାଯାଏ ।। ୩୯ ।।

ଅଥ କରଣାର୍ପକଂ କଥୟତି –

**ଯଦ୍ୟତ୍କରଣମାଲମ୍ବ୍ୟ ଭୁଙ୍କ୍ତେ ବିଷୟକଂ ସୁଖମ୍ ।**
**ତତ୍ତଚ୍ଛିବେ ସମର୍ପ୍ୟୈଷ କରଣାର୍ପକ ଉଚ୍ୟତେ ।। ୪୦ ।।**

ଯତ୍କରଣମାଲମ୍ବ୍ୟ ବିଷୟକଂ ସୁଖଂ ଯଦ୍ ଭୁଙ୍କ୍ତେ ତତ୍କରଣସମ୍ବନ୍ଧଂ ତଦ୍ୱିଷୟସୁଖଂ ଶିବଲିଙ୍ଗେ ସମର୍ପ୍ୟ ଏଷ କାୟାର୍ପିତସମ୍ପନ୍ନଃ କରଣାର୍ପକ ଇତ୍ୟୁଚ୍ୟତ ଇତ୍ୟର୍ଥଃ ।। ୪୦ ।।

---

୨୨୦. କଠୋପ., ୧/୩/୬

– (ଶିବଯୋଗୀ) – ଯେଉଁ ଯେଉଁ ଇନ୍ଦ୍ରିୟକୁ ଆଧାର କରି ବିଷୟରୁ ଉତ୍ପନ୍ନ ସୁଖର ଅନୁଭବ କରେ, ସେହି ସେହି ଇନ୍ଦ୍ରିୟକୁ ଶିବଙ୍କ ପାଇଁ ଅର୍ପଣ କରିବାବାଲା କରଣାର୍ପକ କୁହାଯାଏ ।।୪୦।।

ଅଥ ତତ୍‌ପ୍ରକାରଂ ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ଅହଙ୍କାରମଦୋଦ୍ରିକ୍ତମନ୍ତଃକରଣବାରଣମ୍ ।**
**ବଧ୍ନୀୟାଦ୍ ଯଃ ଶିବାଲାନେ ସ ଧୀରଃ ସର୍ବସିଦ୍ଧିମାନ୍ ।।୪୧।।**

ଅହଙ୍କାରମମକାରରୂପୋ ଧ୍ୱାଧୋମଦମତ୍ତମନୋବୁଦ୍ଧିଚିତ୍ତଲକ୍ଷଣାନ୍ତଃକରଣଗଜଂ ଯଃ ଶିବାଲୋନେ ଶିବଲିଙ୍ଗରୂପବନ୍ଧନସ୍ତମ୍ଭେ ବଧ୍ନୀୟାଦ୍, ସଃ ସର୍ବସିଦ୍ଧିମାନ୍ ଧୀରଃ ।। ୪୧।।

– ଅହଙ୍କାରରୂପୀ ମଦରେ ମତ୍ତ ଅନ୍ତଃକରଣରୂପୀ ହାତୀକୁ ଯିଏ ଶିବରୂପୀ ଆଲାନ (ଅର୍ଥାତ୍ ବନ୍ଧନଶୃଙ୍ଖଳା)ରେ ବାନ୍ଧେ, ସେହି ଧୀର ପୁରୁଷ ସମସ୍ତ ସିଦ୍ଧିକୁ ପ୍ରାପ୍ତ କରେ (ଅଥବା ସମସ୍ତ ସିଦ୍ଧିର ସ୍ୱାମୀ ଧୀର କୁହାଯାଏ) ।। ୪୧।।

ନନ୍ୱିନ୍ଦ୍ରିୟାଣାଂ ବାହୁଲ୍ୟାନ୍ମନୋମାତ୍ରବନ୍ଧନେନ କଥଂ ଧୀରତ୍ୱମିତ୍ୟତ୍ରାହ –

**ଇନ୍ଦ୍ରିୟାଣାଂ ସମସ୍ତାନାଂ ମନଃ ପ୍ରଥମମୁଚ୍ୟତେ ।**
**ବଶୀକୃତେ ଶିବେ ତସ୍ମିନ୍ କିମନ୍ୟୈସ୍ତଦ୍ୱଶାନୁଗୈଃ ।।୪୨।।**

ପ୍ରଥମଂ କାରଣମିତ୍ୟର୍ଥଃ, 'ଇନ୍ଦ୍ରିୟାଣାଂ ମନୋ ନାଥଃ' ଇତି ଶ୍ରୁତେଃ । ଶିଷ୍ଟଂ ସ୍ପଷ୍ଟମ୍ ।।୪୨।।

– ସମସ୍ତ ଇନ୍ଦ୍ରିୟମାନଙ୍କ ଭିତରେ ମନ ପ୍ରଥମ (ପ୍ରଧାନ) ଇନ୍ଦ୍ରିୟ କୁହାଯାଏ ଶିବଙ୍କ ବଶରେ ଥିବା ମନର ଅଧୀନରେ ଅନ୍ୟ ସମସ୍ତ ଇନ୍ଦ୍ରିୟ ରହୁଥିବାରୁ, ସେମାନଙ୍କ ବିଷୟରେ କ'ଣ କହିବା ? (ଅର୍ଥାତ୍ ସେ ସମସ୍ତ ଇନ୍ଦ୍ରିୟ ମଧ୍ୟ ସ୍ୱତଃ ଶିବଙ୍କ ଅଧୀନରେ ଆସିଯାଆନ୍ତି) ।।୪୨।।

ନନ୍ୱେତାବତା କିମିତ୍ୟତ୍ରାହ –

**ଇନ୍ଦ୍ରିୟାଣାଂ ବଶୀକାରୋ ନିବୃତ୍ତିରିତି ଗୀୟତେ ।**
**ଲକ୍ଷୀକୃତେ ଶିବେ ତେଷାଂ କୁତଃ ସଂସାରଗାହନମ୍ ।।୪୩।।**

ଇନ୍ଦ୍ରିୟବଶୀକରଣମେବ ନିବୃତ୍ତିରିତି ବିଦ୍ୱଦ୍‌ଭିର୍ଗୀୟତେ । ତେଷାମିନ୍ଦ୍ରିୟାଣାଂ ଶିବଲିଙ୍ଗେ ଲକ୍ଷୀକୃତେ ସତି ସଂସାରନିମଜ୍ଜନଂ କୁତଃ, ନାସ୍ତୀତ୍ୟର୍ଥଃ ।। ୪୩।।

– ଇନ୍ଦ୍ରିୟଗୁଡ଼ିକ ବଶରେ ହେବା ଅଥବା ବଶରେ କରାଯିବାକୁ ନିବୃତ୍ତି କୁହାଯାଏ । ଯେତେବେଳେ ସେ ସବୁ ଇନ୍ଦ୍ରିୟ ଶିବଙ୍କୁ ସମର୍ପିତ କରାଯାଏ, ସେତେବେଳେ ସାଂସାରିକ

ବନ୍ଧନ କେଉଁଠି ? (ଅର୍ଥାତ୍ ଶିବାର୍ପିତ ହେବା ପରେ ଇନ୍ଦ୍ରିୟଗୁଡ଼ିକ ଶିବମୟ ହୋଇଯାଆନ୍ତି) ।। ୪୩।।

ନନ୍ୱିନ୍ଦ୍ରିୟବଶୀକାରମାତ୍ରେଣ କଥଂ ସଂସାରନିବୃତ୍ତିରିତ୍ୟତ୍ରାହ –

**ସଂସାରବିଷକାନ୍ତାରସମୁଚ୍ଛେଦକୁଠାରିକା ।**
**ଉପଶାନ୍ତିର୍ଭବେତ୍ ପୁଂସାମିନ୍ଦ୍ରିୟାଣାଂ ବଶୀକୃତୌ ।। ୪୪।।**

ଉପଶାନ୍ତିର୍ନିରପେକ୍ଷେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୪।।

– ମନୁଷ୍ୟମାନଙ୍କର ଇନ୍ଦ୍ରିୟଗୁଡ଼ିକ ବଶରେ ଆସିବା ପରେ ସଂସାରରୂପୀ ବିଷବୃକ୍ଷର ଜଙ୍ଗଲକୁ କାଟିବା ପାଇଁ କୁରାଢୀରୂପୀ ଉପଶାନ୍ତି ପ୍ରାପ୍ତ ହୋଇଥାଏ ।। ୪୪।।

ନନୁ ନିରପେକ୍ଷମାତ୍ରେଣ କଥଂ କର୍ମବନ୍ଧନିବୃତ୍ତିରିତ୍ୟତ୍ରାହ –

**ଇନ୍ଦ୍ରିୟୈରେବ ଜାୟନ୍ତେ ପାପାନି ସୁକୃତାନି ଚ ।**
**ତେଷାଂ ସମର୍ପଣାଦୀଶେ କୁତଃ କର୍ମନିବନ୍ଧନମ୍ ।। ୪୫।।**

ସ୍ପଷ୍ଟମ୍ ।। ୪୫।।

– ଇନ୍ଦ୍ରିୟଦ୍ୱାରା ହିଁ ପାପ ଓ ପୁଣ୍ୟ ଉଭୟ ହୋଇଥାଏ । ଶିବଙ୍କଠାରେ ସେ ସମସ୍ତ ସମର୍ପଣ କରିଦେବା ପରେ କର୍ମବନ୍ଧନ କେଉଁଠି ? (କାରଣ ଏପରି ପରିସ୍ଥିତିରେ ସେ ସବୁ ଦ୍ୱାରା କୃତ କର୍ମର ଉତ୍ତରଦାୟିତ୍ୱ ଶିବଙ୍କର ହୋଇଥାଏ) ।। ୪୫।।

ନନୁ ଶିବାର୍ପିତପଦାର୍ଥୈରଭିବୃଦ୍ଧିଶ୍ରବଣାଦ୍ ଶିବେ ପୁଣ୍ୟପାପସମର୍ପଣେନ ତଦଭିବୃଦ୍ଧିଃ କସ୍ମାନ୍ନ ଭବତୀତ୍ୟତ୍ରାହ –

**ପ୍ରକାଶମାନେ ଚିଦ୍ୱହ୍ନୌ ବହିରନ୍ତର୍ଜଗନ୍ମୟେ ।**
**ସମର୍ପ୍ୟ ବିଷୟାନ୍ ସର୍ବାନ୍ ମୁକ୍ତବଜ୍ଜାୟତେ ଜନଃ ।। ୪୬।।**

ବହ୍ନିପ୍ରକ୍ଷିପ୍ତପଦାର୍ଥାନାଂ ନାଶଦର୍ଶନାଦ୍ ବହିରନ୍ତର୍ଭାସମାନେ ବିଶ୍ୱରୂପେ ଚିଦଗ୍ନିରୂପ-ଶିବଲିଙ୍ଗେ ସମର୍ପିତାନାଂ ପଦାର୍ଥାନାମପି ନାଶୋଽବଶ୍ୟମଙ୍ଗୀକରଣୀୟ ଇତ୍ୟଭିବୃଦ୍ଧ୍ୟଭାବାତ୍ ସମସ୍ତବିଷୟାନ୍ ତତ୍ର ସମର୍ପ୍ୟ ଜନୋ ଜନନମରଣପରିପୀଡ଼ିତୋ ଦେହୀ ମୁକ୍ତବଜ୍ଜାୟତ ଇତ୍ୟର୍ଥଃ ।। ୪୬।।

– ବାହ୍ୟ ଏବଂ ଆଭ୍ୟନ୍ତର ଜଗତ୍‌ବାଲା ଏବଂ ପ୍ରକାଶମାନ ଚିଦଗ୍ନିରେ ସମ୍ପୂର୍ଣ୍ଣ ବିଷୟକୁ ସମର୍ପଣ କରି ମନୁଷ୍ୟ ଜୀବନ୍ମୁକ୍ତ ପରି ହୋଇଥାଏ ।। ୪୬।।

ନନୁ ବହ୍ନିସମର୍ପଣସ୍ୟ ହୋମରୂପତ୍ୱାଦ୍ କିଂ ତତ୍‌ସାଧନମିତ୍ୟତ୍ରାହ –

**ଚିତ୍ତଦ୍ରବ୍ୟଂ ସମାଦାୟ ଜଗଜ୍ଜାତଂ ମହାହବିଃ ।**
**ଚିଦ୍ୱହ୍ନୌ ଜୁହ୍ୱତାମନ୍ତଃ କୁତଃ ସଂସାରବିପ୍ଲବଃ ।। ୪୭।।**

ଜଗତଃ ପଞ୍ଚତନ୍ମାତ୍ରରୂପତ୍ୱେନ ଶବ୍ଦାଦିବିଷୟରୂପଂ ହବିଶ୍ଚିତ୍ତଦ୍ରବ୍ୟଂ ସଂଗୃହ୍ୟ ଅନ୍ତଃ ହୃଦୟକମଳସ୍ଥଚିଦ୍ୱହ୍ନୌ ଜୁହ୍ୱତାଂ ଶିବଯୋଗିନାଂ ସଂସାରବାଧଃ କୁତଃ ? ନାସ୍ତୀତ୍ୟର୍ଥଃ ।। ୪୭।।

– ପଞ୍ଚତନ୍ମାତ୍ରାତ୍ମକ ସଂସାର (ଭିତରେ ଥିବା ଶବ୍ଦ–ସ୍ପର୍ଶ ଆଦି ବିଷୟ) ସମୂହ ତଥା ଚିତ୍ତରୂପୀ (ହବନୀୟ) ଦ୍ରବ୍ୟ ଭିତରେ ସ୍ଥିତ ଚୈତନ୍ୟରୂପୀ ଅଗ୍ନିରେ ହୋମ କରୁଥିବା ବ୍ୟକ୍ତିଙ୍କ ପାଇଁ ସଂସାର ଉପଦ୍ରବ କେଉଁଠାରେ ।। ୪୭।।

ନନ୍ୱେବଂରୂପବିଶ୍ୱହବନେନ ମୁକ୍ତବଜ୍ଜାୟମାନୋ ଜନଃ କୀଦୃଗ୍ରୂପ ଇତ୍ୟତ୍ରାହ –

**ଆତ୍ମଜ୍ୟୋତିଷି ଚିଦ୍ରୂପେ ପ୍ରାଣବାୟୁନିବୋଧିତେ ।**
**ଜୁହ୍ୱନ୍ ସମସ୍ତ ବିଷୟାନ୍ ତନ୍ମୟୋ ଭବତି ଧ୍ରୁବମ୍ ।। ୪୮ ।।**

ପ୍ରାଣବାୟୁପ୍ରକାଶିତେ ଚିଦ୍ରୂପେ ଆତ୍ମଜ୍ୟୋତିଷି ଶିବାଗ୍ନୌ ତତ୍ତଦ୍‌କରଣଜନ୍ୟ-ସୁଖାଦିବିଷୟାନ୍ ଜୁହ୍ୱନ୍ ଅର୍ପୟନ୍ ଶିବଯୋଗୀ ତନ୍ମୟଶ୍ଚିନ୍ମୟଶିବସ୍ୱରୂପ ଏବ ଭବତି ଜାୟତେ (ଇତି) ଧ୍ରୁବଂ ନିଶ୍ଚୟ ।। ୪୮ ।।

– ପ୍ରାଣବାୟୁଦ୍ୱାରା ଉଦ୍‌ବୋଧିତ ଚିଦ୍‌ରୂପ ଆତ୍ମଜ୍ୟୋତି ଅର୍ଥାତ୍ ଶିବାଗ୍ନିରେ ସମସ୍ତ ବିଷୟର ହୋମ କରିବାବାଲା ନିଶ୍ଚିତ ଭାବରେ ତନ୍ମୟ ଅର୍ଥାତ୍ ଚିନ୍ମୟ ଅର୍ଥାତ୍ ଶିବସ୍ୱରୂପ ହୋଇଯାଏ ।। ୪୮ ।।

ନନୁ କରଣାନାଂ ପ୍ରାକୃତତ୍ୱେନ କଥଂ ତଜ୍ଜନ୍ୟସୁଖାଦି ଶିବସମର୍ପଣଯୋଗ୍ୟ-ମିତ୍ୟତ୍ରାହ –

**ଇନ୍ଦ୍ରିୟାଣି ସମସ୍ତାନି ଶରୀରଂ ଭୋଗସାଧନମ୍ ।**
**ଶିବପୂଜାଙ୍ଗଭାବେନ ଭାବୟନ୍ ମୁକ୍ତିମାପ୍ନୁୟାତ୍ ।। ୪୯ ।।**

ଶରୀରାଦୀନାଂ ଶିବପୂଜାଙ୍ଗତ୍ୱାତ୍ ତଜ୍ଜନ୍ୟସୁଖାଦ୍ୟପି ଶିବସମର୍ପଣଯୋଗ୍ୟମେ-ବେତ୍ୟର୍ଥଃ । ଇଦଂ କରଣାର୍ପଣଂ କାୟାର୍ପଣସ୍ଥଳେ ପ୍ରସଙ୍ଗାଦୁକ୍ତମିତି ନ ପୌନରୁକ୍ତ୍ୟମ୍ ।। ୪୯।।

– ସମସ୍ତ ଇନ୍ଦ୍ରିୟ ତଥା ଭୋଗସାଧନ ଶରୀରକୁ ଶିବପୂଜାର ଅଙ୍ଗଭାବରେ ଭାବୁଥିବା ବ୍ୟକ୍ତି ମୋକ୍ଷପ୍ରାପ୍ତ କରିଥାଏ ।। ୪୯ ।।

**ଇତି କରଣାର୍ପିତସ୍ଥଲମ୍**

## ଅଥ ଭାବାର୍ପିତସ୍ଥଲମ୍

ଅଥ – **ତସ୍ମାତ୍ ପ୍ରପଞ୍ଚସମ୍ବନ୍ଧଭାବଂ ହିତ୍ୱା ଶିବାତ୍ମକମ୍ ।**
**ଭାବମାଶ୍ରିତ୍ୟ ଯତ୍ନେନ କୁର୍ଯ୍ୟାତ୍ ବ୍ୟାପୃତିମୀଶ୍ୱରେ ।।**

ଇତି ଯୋଗଜାଗମବଚନାନୁସାରେଣ କରଣାର୍ପିତସମ୍ପନ୍ନସ୍ୟ ଶିବଯୋଗିନୋ ବିଧୀୟମାନଂ ଭାବାର୍ପଣଂ ନିରୂପୟତି –

**ଶିବେ ନିଶ୍ଚଲଭାବେନ ଭାବାନାଂ ଯତ୍ ସମର୍ପଣମ୍ ।**
**ଭାବାର୍ପିତମିଦଂ ପ୍ରୋକ୍ତଂ ଶିବସଦ୍‌ଭାବବେଦିଭିଃ ।। ୫୦।।**

ଶିବେ ଶିବଲିଙ୍ଗବିଷୟେ ନିଶ୍ଚଲଭାବେନ ସ୍ଥିରଭାବେନ ଭାବାନାଂ ଯତ୍ ସମର୍ପଣମ୍, ତଦିଦଂ ଭାବାର୍ପିତମିତି ଶିବସଦ୍‌ଭାବବେଦିଭିଃ ପ୍ରୋକ୍ତମିତ୍ୟର୍ଥଃ ।। ୫୦।।

– (ଭାବାର୍ପିତସ୍ଥଳ ବର୍ଣ୍ଣନ) – ଶିବଙ୍କଠାରେ ଦୃଢ଼ ଭାବନା ରଖି ଭାବର ଯେଉଁ ସମର୍ପଣ କରାଯାଏ, ଶିବ ସଦ୍‌ଭାବବେତ୍ତାଗଣ ତାହାକୁ ଭାବାର୍ପିତ କହନ୍ତି ।। ୫୦।।

ଅଥ କୋ ନାମ ଭାବ ଇତ୍ୟତ୍ରାହ –

**ଚିତ୍ତସ୍ଥସକଳାର୍ଥାନାଂ ମନନଂ ଯତ୍ତୁ ମାନସେ ।**
**ତଦର୍ପଣଂ ଶିବେ ସାକ୍ଷାନ୍ମାନସୋ ଭାବ ଉଚ୍ୟତେ ।। ୫୧।।**

ମାନସୋ ମନୋବିକାରୋ ଭାବୋ ଭାବ ଇତ୍ୟୁଚ୍ୟତେ, 'ବିକାରୋ ମାନସୋ ଭାବଃ' ଇତ୍ୟମରଃ । ମାନସେ ମନୋବିକାରେ ଭାବେ ଚିତ୍ତସ୍ଥସକଳାର୍ଥାନାଂ ଚିତ୍ତନିଷ୍ଠ-ସକଳପଦାର୍ଥାନାଂ ଯନ୍ମନନମ୍ ଅନୁଭବରୂପଚିନ୍ତନଂ ଯଦସ୍ତି, ତତ୍ ସାକ୍ଷାତ୍ ପ୍ରତ୍ୟକ୍ଷୀଭୂତେ ଶିବେ ଶିବଲିଙ୍ଗେ ଅର୍ପଣମ୍ ଅର୍ପିତମିତ୍ୟୁଚ୍ୟତେ ଇତ୍ୟର୍ଥଃ ।। ୫୧।।

– ଚିତ୍ତରେ ଥିବା ସକଳ ବିଷୟର ମନରେ ଯେଉଁ ମନନ ହୁଏ, ଶିବଙ୍କଠାରେ ତାହାର ସାକ୍ଷାତ୍ ଅର୍ପଣକୁ ମାନସଭାବ କୁହାଯାଏ ।। ୫୧।।

ଅଥ ତଦ୍‌ଭାବସ୍ୱରୂପଂ ପଞ୍ଚଭିଃ ସୂତ୍ରୈର୍ବିଶେଷୟତି –

**ଭାବ ଏବ ହି ଜନ୍ତୂନାଂ କାରଣଂ ବନ୍ଧମୋକ୍ଷୟୋଃ ।**
**ଭାବଶୁଦ୍ଧୌ ଭବେନ୍ମୁକ୍ତିର୍ବିପରୀତେ ତୁ ସଂସୃତିଃ ।। ୫୨।।**

ସ୍ପଷ୍ଟମ୍ ।। ୫୨।।

– ଭାବ ହିଁ ମନୁଷ୍ୟମାନଙ୍କର ବନ୍ଧନ ଓ ମୋକ୍ଷର କାରଣ ଅଟେ । ଭାବ ଶୁଦ୍ଧ ହେବା ପରେ (ଶିବାର୍ପିତ ହେବା ପରେ) ମୁକ୍ତି ଓ ବିପରୀତ ସ୍ଥିତି (ଅଶୁଦ୍ଧ ହେବା ପରେ) ସଂସାର ଅର୍ଥାତ୍ ବନ୍ଧନ ହୋଇଥାଏ ।। ୫୨।।

ଅଥ କା ନାମ ଭାବଶୁଦ୍ଧିରିତ୍ୟତ୍ରାହ –

**ଭାବସ୍ୟ ଶୁଦ୍ଧିରାଖ୍ୟାତା ଶିବୋଽହମିତି ଯୋଜନା ।**
**ବିପରୀତସମାଯୋଗେ କୁତୋ ଦୁଃଖନିବର୍ତ୍ତନମ୍ ।। ୫୩।।**

ଶିବୋଽହମିତି ସ୍ୱସ୍ୱରୂପାନୁଭବଯୋଗ ଏବ ଭାବସ୍ୟ ଶୁଦ୍ଧିରିତି ବିଦ୍ୱଦ୍‌ଭିରାଖ୍ୟାତା ।

ବିପରୀତସମାଯୋଗେ ସତି ନାହଂ ଶିବ ଇତି ବିପରୀତଯୋଗେ ସତି ଦୁଃଖନିର୍ବର୍ତନଂ ସାଂସାରିକଦୁଃଖନିବୃତ୍ତିଃ କୁତଃ ? ନାସ୍ତୀତ୍ୟର୍ଥଃ ।। ୫୩।।

– 'ମୁଁ ଶିବ ଅଟେ' – ଏପରି ଯୋଜନା (ଅର୍ଥାତ୍ ଶିବଙ୍କ ସହିତ ସମ୍ବନ୍ଧ)କୁ ଭାବଶୁଦ୍ଧି କୁହାଯାଏ । ସେଥିରୁ ବିପରୀତ ଯୋଜନା (ଅର୍ଥାତ୍ ମୁଁ ଶିବଠାରୁ ଭିନ୍ନ ଅଟେ। ଏହି ସଂସାର ଶିବ ଓ ମୋ ଠାରୁ ପୃଥକ୍ ଅଟେ – ଏପରି ଯୋଜନା) ହେଲେ ଦୁଃଖ କିପରି ଦୂର ହୋଇପାରିବ ? ।। ୫୩।।

ନନ୍ୱିଦମିତି ଭାସମାନଂ ବିଶ୍ୱଂ କଥଂ ଭାବନୀୟମିତ୍ୟତ୍ର – 'ଭୋକ୍ତା ଭୋଜ୍ୟଂ ପ୍ରେରିତାରଂ ଚ ମତ୍ୱା ସର୍ବଂ ପ୍ରୋକ୍ତଂ ତ୍ରିବିଧଂ ବ୍ରହ୍ମ ଚୈତତ୍'[୨୨୧] ଇତି ଶ୍ୱେତାଶ୍ୱତର ଶ୍ରୁତ୍ୟନୁସାରେଣ କଥୟତି –

**ଭୋକ୍ତା ଭୋଗ୍ୟଂ ଭୋଜୟିତା ସର୍ବମେତଚ୍ଚରାଚରମ୍ ।**
**ଭାବୟନ୍ ଶିବରୂପେଣ ଶିବୋ ଭବତି ବସ୍ତୁତଃ ।। ୫୪।।**

ଭୋକ୍ତା ଜୀବୋ ଭୋଗ୍ୟଂ ଭୋଗଯୋଗ୍ୟଂ ବସ୍ତୁ ଅବ୍ୟକ୍ତଂ ଭୋଜୟିତା ଭୋଗଦଃ ଶିବଃ। ଚରାଚରମେତତ୍ ସର୍ବଂ ଜଗଜ୍ଜାଲଂ ସ୍ୱନିଜସ୍ୱଭାବଭୂତଚିଦ୍କ୍ରିୟାଶକ୍ତିକାର୍ଯ୍ୟତ୍ୱାଦ୍ ଶିବରୂପେଣ ଭାବୟନ୍ ଶିବଯୋଗୀ ବସ୍ତୁତଃ ପରମାର୍ଥତଃ ଶିବୋ ଭବତି, ଶିବ ଏବ ଭବତୀତ୍ୟର୍ଥଃ । ଅତ୍ର ବସ୍ତୁତ ଇତ୍ୟନେନାସ୍ୟ ମୁଖ୍ୟପକ୍ଷତ୍ୱଂ ସୂଚିତମ୍ ।। ୫୪।।

– (ଯେଉଁ ସାଧକ) ଭୋକ୍ତା ଅର୍ଥାତ୍ ଜୀବ, ଭୋଜ୍ୟ ଅର୍ଥାତ୍ ବିଷୟ ତଥା ଭୋଜୟିତା ଅର୍ଥାତ୍ ଶିବ ତଥା ଏହି ସମସ୍ତ ଚରାଚରର ଶିବରୂପରେ ଭାବନା କରେ (ସମସ୍ତଙ୍କୁ ଶିବ ଭାବେ) ସେ ବସ୍ତୁତଃ ଶିବ ହୋଇଥାଏ ।। ୫୪।।

ଅଥ ପକ୍ଷାନ୍ତରେଣ ଭାବନାଂ କଥୟତି –

**ମିଥ୍ୟେତି ଭାବୟନ୍ ବିଶ୍ୱଂ ବିଶ୍ୱାତୀତଂ ଶିବଂ ସ୍ମରନ୍ ।**
**ସତ୍ତାନନ୍ଦଚିଦାକାରଂ କଥଂ ବଦ୍ଧୁମିହାର୍ହତି ।। ୫୫।।**

ବିଶ୍ୱଂ ସ୍ୱାତିରିକ୍ତାଧ୍ୟାସଲକ୍ଷଣାବିଦ୍ୟାକାର୍ଯ୍ୟତ୍ୱାଦ୍ ମିଥ୍ୟେତି ଭାବୟନ୍ ବିଶ୍ୱାତୀତଂ ବିଶ୍ୱୋତ୍ତୀର୍ଣ୍ଣଂ ଶିବଂ ସତ୍ତାନନ୍ଦଚିଦାକାରଂ ନିତ୍ୟପରିପୂର୍ଣ୍ଣ ସଚ୍ଚିଦାନନ୍ଦସ୍ୱରୂପଂ ସ୍ମରନ୍ ମଳମାୟାଦିପାଶୈର୍ବଦ୍ଧୁଂ କଥମିହାର୍ହତି ? ନ କେନାପି ପ୍ରକାରେଣାର୍ହତୀତ୍ୟର୍ଥଃ ।। ୫୫।।

– ଯିଏ ବିଶ୍ୱକୁ ମିଥ୍ୟା ଓ ଶିବଙ୍କୁ ବିଶ୍ୱାତୀତ ସଚ୍ଚିଦାନନ୍ଦରୂପ ଭାବେ, ସିଏ ଏହି ସଂସାରରେ (ମାୟା ଆଦି ଫାସର) ବନ୍ଧନରେ କିପରି ଆସିବ ? ।। ୫୫।।

ଅଥ ଭାବନାନ୍ତରମାହ –

୨୨୧. ଶ୍ୱେ. ଉ., ୧/୧୨

ସ୍ୱବିମର୍ଶେ ବିଲୀନସ୍ୟ ତଦେକନିଷ୍ଠସ୍ୟ ନିରୀହସ୍ୟ ବିରକ୍ତସ୍ୟ ଶିବଯୋଗିନୋ ଜ୍ଞେୟଂ ଜ୍ଞାତୁଂ ଯୋଗ୍ୟମ୍ ଅନ୍ୟତ୍ କିମ୍ ? ନ କିମପୀତ୍ୟର୍ଥଃ ।

ନନ୍ୱତ୍ର ଯୁକ୍ତିଃ କିମିତି ଚେତ୍, ଉଚ୍ୟତେ – ଭେଦୋ ନାମ କିମନ୍ୟୋନ୍ୟାଭାବୋ ବା ବୈଧର୍ମ୍ୟଂ ବା ବସ୍ତୁସ୍ୱରୂପଂ ବେତି ତ୍ରେଧା ବିକଳ୍ପଃ । ଆଦ୍ୟେ ତତ୍ରାନ୍ୟତ୍ୱଂ ଭାବସ୍ୱଭାବୋ ବା ଭେଦନିବନ୍ଧନଃ କଶ୍ଚିଦୁପାଧିର୍ବେତି ଦ୍ୱିଧା ବିକଳ୍ପଃ । ତତ୍ର ନାଦ୍ୟଃ, ଭାବସ୍ୟାଭାବତ୍ୱ ପ୍ରସଙ୍ଗାତ୍, ଅନ୍ୟତ୍ୱସ୍ୟ ଭାବସ୍ୱଭାବତ୍ୱାତ୍, ଭାବାଦନ୍ୟୋଽଭାବ ଇତି ପ୍ରସିଦ୍ଧତ୍ୱାତ୍ । ନନୁ ଭାବାନାଂ ବାହୁଲ୍ୟାତ୍ ଭାବସ୍ୟ ଭାବାନ୍ତରାନ୍ୟତ୍ୱଂ ସ୍ୱଭାବ ଇତି ଚେତ୍, ଅସ୍ତୁ, ତସ୍ୟ ବିଶେଷଘଟିତତ୍ୱାତ୍ । ଇହ ତୁ ଭେଦସାମାନ୍ୟଲକ୍ଷଣପ୍ରବିଷ୍ଟାନ୍ୟତ୍ୱସ୍ୟ ପ୍ରଶ୍ନ ବିଷୟତ୍ୱେନ ନ ତଦୁତ୍ତରଂ ଭବିତୁମର୍ହତି, ତସ୍ୟ ଭେଦସିଦ୍ଧ୍ୟନନ୍ତରଭାବିତ୍ୱାତ୍ । କିଞ୍ଚ, ଭାବସ୍ୟ ଭାବାନ୍ତରାନ୍ୟତ୍ୱଂ ସ୍ୱଭାବ ଇତି ନିୟମସ୍ତତ୍ତଦ୍ଭାବକୃତୋ ବା ତଦ୍ୱ୍ୟତିରିକ୍ତମହାପୁରୁଷକୃତୋ ବା ? ନାଦ୍ୟଃ, ଘଟାଦିଭାବସ୍ୟ ଜଡ଼ତ୍ୱେନ କର୍ତ୍ତୃତ୍ୱାଭାବାତ୍ । ନ ଦ୍ୱିତୀୟଃ, କଳ୍ପନାୟାଃ ପ୍ରାଗନନ୍ୟତ୍ୱେନାନ୍ତରାଳିକତୟାନ୍ୟତ୍ୱସ୍ୟ ତତ୍ସ୍ୱଭାବତ୍ୱାସମ୍ଭବାତ୍ । ନନୁ ନ କେନାପି କୃତଃ, କିନ୍ତୁ ସ୍ୱତଃ ସିଦ୍ଧ ଇତି ଚେତ୍, ତର୍ହି ସ୍ୱପ୍ରକାଶୋଽପି ଭବେତ୍, ବ୍ରହ୍ମବତ୍ ସ୍ୱତଃ ସିଦ୍ଧତ୍ୱାତ୍ । ନନୁ ବ୍ରହ୍ମାପି ମାନାନ୍ତରସିଦ୍ଧମିତି ନ ସ୍ୱତଃ ସିଦ୍ଧମିତି ବାଚ୍ୟମ୍, ନିତ୍ୟତ୍ୱେନ କାରକବ୍ୟାପାରାସମ୍ଭବାତ୍, ସ୍ୱପ୍ରକାଶତ୍ୱେନ ଜ୍ଞାପକବ୍ୟାପାରାସମ୍ଭବାତ୍, ଅନ୍ୟଥା ଜଡ଼ତ୍ୱପ୍ରସଙ୍ଗାତ୍ । ନାପ୍ୟନ୍ୟତ୍ୱଂ ଭେଦନିବନ୍ଧନଃ କଶ୍ଚିଦୁପାଧିଃ, ଆତ୍ମାଶ୍ରୟାଦିଦୋଷ- ପ୍ରସଙ୍ଗାତ୍ । ନାପି ଦ୍ୱିତୀୟଃ, ଘଟେ ପଟତ୍ୱଂ ନାସ୍ତି, ପଟେ ଘଟତ୍ୱଂ ନାସ୍ତି ବୈଧର୍ମ୍ୟମ୍, ଏବଂ ବିଧନିଶ୍ଚୟସ୍ୟ ଘଟପଟଭେଦସିଦ୍ଧ୍ୟନନ୍ତର ଭାବିତ୍ୱାତ୍ । ନ ଚ ଘଟପଟୟୋସ୍ତନ୍ତୁ–ମୟତ୍ୱମୃଣ୍ମୟତ୍ୱାଭ୍ୟାଂ ଭେଦଃ ସିଦ୍ଧ ଏବେତି ବାଚ୍ୟମ୍, ଘଟ ଏବ ମୃଣ୍ମୟତ୍ୱଂ ପଟେ (ଚ) ତନ୍ତୁମୟତ୍ୱମିତ୍ୟ ସାଧାରଣ ପ୍ରତୀତେର୍ଘଟପଟ ଭେଦସିଦ୍ଧ୍ୟଧୀ–ନତ୍ୱାତ୍, ତସ୍ୟା ଅଦ୍ୟାପି ସାଧ୍ୟକୋଟି ପ୍ରବିଷ୍ଟତ୍ୱାତ୍ । କିଞ୍ଚ, ତନ୍ତୁମୟତ୍ୱମୃଣ୍ମୟତ୍ୱୟୋ–ର୍ଭେଦସ୍ତତ୍ର ତଦବୟବଭେଦାଦିତି ପରମାଣୁ ପର୍ଯ୍ୟାଲୋଚନାୟାଂ ନିରବୟବତ୍ୱେନ ଭେଦାଗ୍ରହାତ୍ ମୂଳକ୍ଷୟକାରିଣ୍ୟନବସ୍ଥା ସ୍ୟାଦିତି । ନାପି ତୃତୀୟଃ, ବସ୍ତୁସ୍ୱରୂପଂ ହି ବସ୍ତ୍ୱନ୍ତରସ୍ୱରୂପାନନୁଗାମୀତ୍ୟଙ୍ଗୀକରଣୀୟମ୍, ଅନ୍ୟଥା ସ୍ୱରୂପସାଙ୍କର୍ଯ୍ୟାପତ୍ତେଃ, ଏବଂ ଚେଦିଦଂ ରଜତମିତ୍ୟତ୍ର ଶୁକ୍ତିରେବ ରଜତାକାରେଣ ନିଶ୍ଚୀୟତ ଇତି ଭ୍ରାନ୍ତିଜ୍ଞାନୋଚ୍ଛେଦ ପ୍ରସଙ୍ଗାତ୍ । ଦୂରତ୍ୱାଦିଦୋଷବଶାତ୍ ତଥା ନିଶ୍ଚୀୟତ ଇତି ଚେତ୍ ତର୍ହି ଇଙ୍ଗଳାଦିକମପି ରଜତତ୍ୱେନ କୁତୋ ନ ନିଶ୍ଚୀୟତେ ? ନ ଚ ବିଶେଷଦର୍ଶନସାମଗ୍ରୀ ପ୍ରତିବନ୍ଧିକେତି ବାଚ୍ୟମ୍, ଶୁକ୍ତିକାୟାମପି ବିଶେଷାଦର୍ଶନସାମଗ୍ରୀସତ୍ତ୍ୱେନାନାରୋପପ୍ରସଙ୍ଗାତ୍ । ଅବିଶେଷଦର୍ଶନସାମଗ୍ରୀ–ପ୍ରାବଲ୍ୟାଦାରୋପଃ ସମ୍ଭବତୀତି ଚେନ୍ନ, ବସ୍ତ୍ୱନ୍ତରେ ବସ୍ତ୍ୱନ୍ତରସ୍ୱରୂପମନନୁପ୍ରବିଷ୍ଟମିତ୍ୟଙ୍ଗୀ–

କରଣୀୟତ୍ୱେନାନନ୍ତୁ ପ୍ରବିଷ୍ଟମିତି ବକ୍ତୁମଶକ୍ୟତ୍ୱେନ ସ୍ୱରୂପସାଙ୍କର୍ଯ୍ୟାପତ୍ତେରନିବାର୍ଯତ୍ୱେନ ଭେଦବାଦୋଚ୍ଛେଦପ୍ରସଙ୍ଗାତ୍, ପୂର୍ବୋକ୍ତଦୋଷ-ପ୍ରସଙ୍ଗାଚ୍ଚ । କିଞ୍ଚ, ବସ୍ତୁନି ଭାସମାନୋ ଭେଦସ୍ତଦ୍ ବସ୍ତୁସ୍ୱରୂପାଭିନ୍ନୋ ବା ଭିନ୍ନୋ ବା ସ୍ୟାତ୍ ? ନାଦ୍ୟଃ, ଅତ୍ୟନ୍ତବିରୋଧାଦ୍ ଭେଦସ୍ୟାଭେଦତାସମ୍ଭବାତ୍ । ନ ଦ୍ୱିତୀୟଃ, ସୋଽପି ଭେଦଃ କୀଦୃଶ ଇତ୍ୟୁପର୍ଯ୍ୟୁପରି ବିଚାର୍ଯ୍ୟମାଣୋଽନବସ୍ଥାମେବୋପସ୍ଥାପୟତୀତି ବିଶ୍ରାନ୍ତ୍ୟଭାବାତ୍ । ନାପ୍ୟଭେଦାତ୍ୟନ୍ତାଭାବୋ ଭେଦଃ, ଆତ୍ମାଶ୍ରୟପ୍ରସଙ୍ଗାତ୍ । ନାପ୍ୟୈକ୍ୟ- ପ୍ରତିଯୋଗୀ, ଏକତ୍ୱସ୍ୟ ପ୍ରତିଯୋଗ୍ୟଭାବାତ୍, ଦ୍ୱିତ୍ୱାଦୀନାଂ ତନ୍ମୂଲକତ୍ୱାତ୍ । ନାପି ବିଭାଗଃ, ତସ୍ୟ ସଂଯୋଗପୂର୍ବକତ୍ୱେନ ପୂର୍ବାପରଦିଶୋଃ ପୂର୍ବପଶ୍ଚିମାଚଲୟୋଶ୍ଚ କଦାପି ସଂଯୋଗାଭାବେନ ଭେଦାଭାବପ୍ରସଙ୍ଗାତ୍ । ତସ୍ମାଦ୍ ଗତ୍ୟନ୍ତରାଭାବେନ ଭେଦବ୍ୟବହାରସିଦ୍ଧ୍ୟର୍ଥଂ ସକଳସାମରସ୍ୟାତ୍ମନୋ ମହେଶ୍ୱରସ୍ୟେଚ୍ଛାବଶାତ୍ ସାଗରତରଙ୍ଗ-ନ୍ୟାୟେନାଭେଦପର୍ଯବସାୟିତ୍ୱେନ କଳ୍ପିତବିଭାଗୋ ଭେଦ ଇତ୍ୟଙ୍ଗୀକରଣୀୟତ୍ୱେନାପ୍ୟ-ଭେଦ ଏବ ସିଦ୍ଧ୍ୟତୀତି ଶିବାଦ୍ୱୈତସିଦ୍ଧାନ୍ତବାଦିନାଂ ଯୁକ୍ତିରୀଦୃଶୀତି ବିଚକ୍ଷଣୈର୍ବିମର୍ଶ-ନୀୟେତି ।। ୫୩।।

- ଭେଦବାକ୍ୟକୁ ଦୂର କରିଥିବା, ଇଚ୍ଛା ରହିତ ଶମ, ଦମାଦି ଯୁକ୍ତ ତଥା ନିଜର ମହିମାରେ ବିଲୀନ (ଶିବଯୋଗୀ) ନିମନ୍ତେ ଅନ୍ୟ କ'ଣ ଜ୍ଞେୟ କୁହାଯିବ ।। ୫୩।।

ବିଶେଷ – ପରମାତ୍ମାଙ୍କଠାରେ କୌଣସି ପ୍ରକାର ଭେଦ ସମ୍ଭବ ନୁହେଁ । ତେଣୁ ସିଦ୍ଧାନ୍ତ ହେଉଛି ଯେ ସାମରସ୍ୟସ୍ୱରୂପ ପରମେଶ୍ୱରଙ୍କର ସ୍ୱାତନ୍ତ୍ର୍ୟବଶ ସାଗରତରଙ୍ଗ ନ୍ୟାୟରେ ତାଙ୍କଠାରେ ଭେଦ କିଛି କାଳ ବ୍ୟତିକ୍ରମରେ ପ୍ରତୀତ ହୋଇଥାଏ । ଏହି ଭେଦ କଳ୍ପନା ମଧ୍ୟ ତାଙ୍କ ଇଚ୍ଛାଶକ୍ତି କାରଣରୁ ହୋଇଥାଏ ।

ଅଥୋକ୍ତ ସୂତ୍ରତ୍ରୟାର୍ଥମେବ ବିଶେଷୟତି –

**ଏକୀଭୂତେ ନିଜାକାରେ ସଂବିଦା ନିଷ୍ପ୍ରପଞ୍ଚୟା ।**
**କେନ କିଂ ବେଦନୀୟଂ ତଦ୍ୱେତ୍ତା କଃ ପରିଭାଷ୍ୟତେ ।। ୫୪।।**

ନିଜାକାରେ ସ୍ୱ ସ୍ୱରୂପେ ନିଷ୍ପ୍ରପଞ୍ଚୟା ସଂବିଦା । ଶିବାଦ୍ୱୈତଜ୍ଞାନେନ ଏକୀଭୂତେ ସତି ସାମରସ୍ୟେ ସତି କେନ କିଂ ବସ୍ତୁ ବେଦନୀୟଂ ଜ୍ଞେୟଂ ସ୍ୟାତ୍, ତଦ୍ୱେତ୍ତା ଜ୍ଞାନେନ ଜ୍ଞେୟବେତ୍ତା ଚ କ ଇତି ପରିଭାଷ୍ୟତେ, 'ନାତଃ ପରଂ ବେଦିତବ୍ୟଂ ହି କିଞ୍ଚିତ୍' ଇତି ଶ୍ରୁତେଃ, 'ବେଦିତବ୍ୟଂ ନ କିଞ୍ଚନ' ଇତ୍ୟାଗମୋକ୍ତେଶ୍ଚାନ୍ୟୋନ୍ୟାଭାବନିବନ୍ଧନଭେଦ-ଘଟିତମାୟିକତ୍ରିପୁଟୀମୟପ୍ରପଞ୍ଚଦର୍ଶନଂ ଶିବଯୋଗିନାଂ ନାସ୍ତୀତ୍ୟର୍ଥଃ ।। ୫୪।।

- ନିଜର ସ୍ୱରୂପର ନିଷ୍ପ୍ରପଞ୍ଚ ସଂବିଦାକାର ସହିତ ଏକରୂପ ହୋଇଯିବା ପରେ କାହାଦ୍ୱାରା କ'ଣ ବେଦନୀୟ ହେବ ଏବଂ ତାହାର ବେତ୍ତା (ଜ୍ଞାତା) କାହାକୁ କୁହାଯିବ ? ।। ୫୪।।

ତର୍ହି କୀଦୃଶଂ ପ୍ରପଞ୍ଚଦର୍ଶନଂ ସ୍ୟାଦିତ୍ୟତ୍ର ବଦନ୍ ନଷ୍ଟାଗମସ୍ଥଲଂ ସମାପୟତି –

ମହାସତ୍ତା ମହାସଂବିଦ୍ ବିଶ୍ୱରୂପା ପ୍ରକାଶତେ ।
ତଦ୍ୱିନା ନାସ୍ତି ବସ୍ତ୍ୱେକଂ ଭେଦବୁଦ୍ଧିଂ ବିମୁଞ୍ଚତଃ ।। ୫୫ ।।

ମହାସତ୍ତା ଗଗନକୁସୁମମିତ୍ୟାଦୌ ଅର୍ଥବଦ୍ ପଦୟୋରେବ ସମ୍ମେଳନରୂପ-ସଂଯୋଗାଦ୍ ତଦୁପରି ବିଭକ୍ତିଯୋଗାଚ୍ଚାର୍ଥବତ୍ତ୍ୱାଦ୍ ଗଗନକୁସୁମମଙ୍ଗୀକରଣୀୟମିତି ସଦସତ୍ ସକଳବସ୍ତୁବ୍ୟାପକତ୍ୱାନ୍ ମହାସତ୍ତେତ୍ୟୁଚ୍ୟତେ, ହୃଦୟୋଲ୍ଲେଖଂ ବିନା ଗଗନକୁସୁମମିତି ବ୍ୟବହାରାସମ୍ଭବାନ୍ ମହାସଂବିଦିତ୍ୟୁଚ୍ୟତେ । ଏବଂ ସ୍ୱଶିରଚ୍ଛାୟାନୁଲ୍ଲଙ୍ଘନମିବ[୨୪୪] ସଦସଦ୍ୱିଶ୍ୱବ୍ୟାପକୀଭୂତଂ ବ୍ରହ୍ମଚୈତନ୍ୟମେବ ଜଗଦ୍ରୂପେଣ ଭାସତେ, ନ ତଦ୍ୱ୍ୟତିରିକ୍ତଂ କିଞ୍ଚିଦିତି ଭେଦବୁଦ୍ଧିଂ ବିମୁଞ୍ଚତଃ ଶିବଯୋଗିନୋ ମହାସତ୍ତାସ୍ଫୁରତ୍ତାକଚୈତନ୍ୟଂ ବିନା ଏକଂ ବସ୍ତୁ ଅନ୍ୟଦ୍ୱସ୍ତୁ ନାସ୍ତି, ସାଗରତରଙ୍ଗନ୍ୟାୟେନ ତଦ୍ବୁଦ୍ଧେରଭେଦବିଶ୍ରାନ୍ତତ୍ୱାଦିତି ।। ୫୫ ।।

– ମହାସତ୍ତା ମହାସଂବିଦ୍ ବିଶ୍ୱ ଭାବରେ ପ୍ରକାଶିତ ହେଉଛି । ଭେଦବୁଦ୍ଧି ରହିତ ଯୋଗୀ ନିମନ୍ତେ ତା ବ୍ୟତୀତ ଅନ୍ୟ ଦ୍ୱିତୀୟ ବସ୍ତୁ ନାହିଁ ।। ୫୫ ।।

ଇତି ନଷ୍ଟାଗମସ୍ଥଲମ୍

## ଅଥାଦି ପ୍ରସାଦିସ୍ଥଲମ୍

ଅଥ – ଯୋ ବ୍ରାହ୍ମଣଂ ବିଦଧାତି ପୂର୍ବଂ ଯୋ
ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ ।
ତଂ ମହାଦେବମାତ୍ମବୁଦ୍ଧିପ୍ରକାଶଂ
ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ[୨୪୫] ।।

ଇତି ଶ୍ୱେତାଶ୍ୱତରମନ୍ତ୍ରାନୁସାରେଣ ନଷ୍ଟାଗମସମ୍ପନ୍ନଶିବଯୋଗ୍ୟେବ ସର୍ବାଦିଭୂତ-ଶିବପ୍ରସାଦବାନିତ୍ୟାଦିପ୍ରସାଦୀତ୍ୟୁଚ୍ୟତ ଇତି ତଦୀୟସ୍ଥଲଂ ପ୍ରତିପାଦୟତି –

ସର୍ବାଧିଷ୍ଠାତୃକଃ ଶମ୍ଭୁରାଦିସ୍ତସ୍ୟ ପ୍ରସାଦତଃ ।
ଆଦିପ୍ରସାଦୀତ୍ୟୁକ୍ତୋଽୟଂ ନିର୍ବିକାରପଦେସ୍ଥିତଃ ।। ୫୬ ।।

ବିଶ୍ୱାଧାରଭୂମିତ୍ୱାତ୍ତନ୍ନିୟାମକତ୍ୱାଚ୍ଛମ୍ଭୁରାଦିଃ ସୃଷ୍ଟ୍ୟାଦିପଞ୍ଚକୃତ୍ୟମୂଳକାରଣମ୍ । ତସ୍ୟ

---

୨୪୪. ତୁଳନୀୟ– ସ୍ୱପତା ସ୍ୱଶିରଚ୍ଛାୟାଂ ଯଦ୍ୱଲ୍ଲଙ୍ଘିତୁମୀହତେ ।
ପାଦୋଦ୍ଦେଶେ ଶିରୋ ନ ସ୍ୟାତ୍ତଥେୟଂ ବୈନ୍ଦବୀ କଳା ।।

୨୪୫. ଶ୍ୱେ. ଉ., ୬/୧୮

ସର୍ବାଦିଭୂତସ୍ୟ ଶମ୍ଭୋଃ ପ୍ରସାଦତୋ ନିର୍ବିକାରପଦେ ବିକାରରହିତ ନଷ୍ଟାଗମସ୍ଥଳେ ସ୍ଥିତୋଦ୍ଧଙ୍ଗଂ ଶିବଯୋଗୀ ଆଦିପ୍ରସାଦୀ ଆଦିପ୍ରସାଦବାନିତ୍ୟର୍ଥଃ ।। ୫୬ ।।

– (ଆଦିପ୍ରସାଦୀସ୍ଥଳ ବର୍ଣ୍ଣନ) – ସମସ୍ତଙ୍କର ଅଧିଷ୍ଠାତା ଶିବ ଆଦି (ଅର୍ଥାତ୍ ସୃଷ୍ଟି ଆଦି ପ୍ରପଞ୍ଚର ମୂଳକାରଣ) ଅଟନ୍ତି । ତାଙ୍କର କୃପାରେ ନିର୍ବିକାର ପଦରେ ପ୍ରତିଷ୍ଠିତ ଯୋଗୀ ଆଦିପ୍ରସାଦୀ କୁହାଯାଏ ।। ୫୬ ।।

ଅଥ ତସ୍ୟ ମହତ୍ତ୍ୱଂ ଚତୁର୍ଭିଃ ସୂତ୍ରୈଃ ପ୍ରତିପାଦୟତି –

**ଅନେକଜନ୍ମଶୁଦ୍ଧସ୍ୟ ନିରହଙ୍କାରଭାବିନଃ ।**
**ଅପ୍ରପଞ୍ଚସ୍ୟାଦିଦେବଃ ପ୍ରସୀଦତି ବିମୁକ୍ତୟେ ।। ୫୭ ।।**

ଅନେକଜନ୍ମଭିଃ ଶୁଦ୍ଧାତ୍ମନଃ ପରିଚ୍ଛିନ୍ନଦେହାଦ୍ୟଭିମାନଶୂନ୍ୟସ୍ୟ ଅପ୍ରପଞ୍ଚସ୍ୟ ପ୍ରାପଞ୍ଚିକଭେଦରହିତସ୍ୟ ଶିବଯୋଗିନ ଆଦିଦେବଃ ସର୍ବାଦିଦେବଃ ଶିବୋ ବିମୁକ୍ତୟେ ପରମୋକ୍ଷାୟ ପ୍ରସୀଦତି ପ୍ରସନ୍ନୋ ଭବତୀତ୍ୟର୍ଥଃ ।। ୫୭ ।।

– ଯିଏ ଅନେକ ଜନ୍ମରୁ ଶୁଦ୍ଧ, ଅହଂକାର ଭାବନାରୁ ରହିତ ତଥା ପ୍ରପଞ୍ଚରୁ ମୁକ୍ତ, ସେପରି ମନୁଷ୍ୟର ମୁକ୍ତି ନିମନ୍ତେ ଭଗବାନ୍ ଶିବ ପ୍ରସନ୍ନ ହୁଅନ୍ତି[୨୪୬] ।। ୫୭ ।।

**ଶିବପ୍ରସାଦସମ୍ପତ୍ତ୍ୟା ଶିବଭାବମୁପେୟୁଷି ।**
**ଶିବାଦନ୍ୟଜ୍ଜଗଜ୍ଜାଲଂ ଦୃଶ୍ୟତେ ନ ଚ ଦୃଶ୍ୟତେ ।। ୫୮ ।।**

ଶିବପ୍ରସାଦପ୍ରାପ୍ତ୍ୟା ଶିବତ୍ୱମୁପେୟୁଷି ବିଷୟେ ଜଗଜ୍ଜାଲଂ ଜଗଦ୍ ସମୂହଂ ଶିବାଦନ୍ୟଦିତି ଦୃଶ୍ୟତେ । ଇଦନ୍ତ୍ୱେନ ଦୃଶ୍ୟଂ ସନ୍ନ ଚ ଦୃଶ୍ୟତେ । ଭେଦସ୍ୟ ନିରାକୃତତ୍ୱାଦ୍ ସାଗରତରଙ୍ଗନ୍ୟାୟେନାଭେଦେନ ଦୃଶ୍ୟତ ଇତ୍ୟର୍ଥଃ ।। ୫୮ ।।

– ଶିବଙ୍କର ଅନୁଗ୍ରହର ପ୍ରାପ୍ତି ଦ୍ୱାରା ଶିବଭାବକୁ ପ୍ରାପ୍ତ କରୁଥିବା (ଯୋଗୀ) ନିମନ୍ତେ ଏହି ସଂସାର ଶିବଙ୍କଠାରୁ ଭିନ୍ନ ଦେଖାଯାଏ, ଦେଖା ଯାଏନି ମଧ୍ୟ । (ଅର୍ଥାତ୍ ଏହା ଯୋଗୀର ଇଚ୍ଛା ଉପରେ ନିର୍ଭର କରେ କି ସେ ବ୍ୟବହାର ଜଗତରେ ଯୋଡ଼ି ହୋଇ ସଂସାରକୁ ଈଶ୍ୱରଙ୍କଠାରୁ ଭିନ୍ନ ଦେଖିବ ଅଥବା ସଂସାରଠାରୁ ଉର୍ଦ୍ଧ୍ୱରେ ସ୍ୱଭାବରେ ସ୍ଥିତ ହୋଇ ଜଗତ୍‌କୁ ଶିବସ୍ୱରୂପ ଅଥବା ଆତ୍ମସ୍ୱରୂପ ଦେଖିବ) ।। ୫୮ ।।

**ଶମ୍ଭୋଃ ଶିବପ୍ରସାଦେନ ସଂସାରଚ୍ଛେଦକାରିଣା ।**
**ମୋହଗ୍ରନ୍ଥିଂ ବିନିର୍ଭିଦ୍ୟ ମୁକ୍ତିଂ ଯାନ୍ତି ବିବେକିନଃ ।। ୫୯ ।।**

ନିତ୍ୟାନିତ୍ୟବିବେକିନଃ ସଂସାରଚ୍ଛେଦକାରିଣା ଶିବପ୍ରସାଦେନୈବ ଅଜ୍ଞାନଗ୍ରନ୍ଥିଂ ବିଦାର୍ଯ୍ୟ ପରମୋକ୍ଷଂ ଯାନ୍ତୀତ୍ୟର୍ଥଃ ।। ୫୯ ।।

---

୨୪୬. ତୁଳନୀୟ– ଅନେକଜନ୍ମସଂସିଦ୍ଧିସ୍ତତୋ ଯାତି ପରାଂ ଗତିମ୍ ।। (ଭ.ଗୀ., ୬/୪୫)

– ନିତ୍ୟା ନିତ୍ୟ ଭେଦକୁ ଜାଣିଥିବା ଲୋକ ଭଗବାନ୍ ଶିବଙ୍କର ସଂସାରକୁ ଛେଦନ କରୁଥିବା କଲ୍ୟାଣମୟ କୃପାକଟାକ୍ଷରେ ମୋହଗ୍ରନ୍ଥିକୁ ଭେଦନ କରି ମୁକ୍ତିକୁ ପ୍ରାପ୍ତ ହୋଇଥାନ୍ତି ।। ୫୯ ।।

ନନୁ ଶିବପ୍ରସାଦେନ ବିନା ମୁକ୍ତିର୍ନାସ୍ତି ବେତ୍ୟତ୍ରାହ –

**ବିନା ପ୍ରସାଦମୀଶସ୍ୟ ସଂସାରୋ ନ ନିବର୍ତ୍ତତେ ।**

**ବିନା ସୂର୍ଯ୍ୟୋଦୟଂ ଲୋକେ କୁତଃ ସ୍ୟାତ୍ ତମସୋ ଲୟଃ ।। ୬୦ ।।**

ସ୍ପଷ୍ଟମ୍ ।। ୬୦ ।।

– ଈଶ୍ୱରଙ୍କର କୃପା ବ୍ୟତୀତ ସଂସାରର ନିବୃତ୍ତି ହୁଏ ନାହିଁ । ବିନା ସୂର୍ଯ୍ୟୋଦୟରେ ସଂସାରରେ ଅନ୍ଧକାରର ଲୟ କିପରି ହେବ ? ।। ୬୦ ।।

ଅଥ ଶିବସ୍ୟ ସର୍ବାତ୍ମସ୍ୱପକ୍ଷପାତେନ କୃପାପ୍ରସାଦଂ ସଂସୂଚ୍ୟାଦିପ୍ରସାଦିସ୍ଥଳଂ ସମାପୟତି –

**ସର୍ବାନୁଗ୍ରାହକଃ ଶମ୍ଭୁଃ କେବଲଂ କୃପୟା ପ୍ରଭୁଃ ।**

**ମୋଚୟେତ୍ ସକଲାନ୍ ଜନ୍ତୂନ୍ ନ କିଞ୍ଚିଦିହ କାରଣମ୍ ।। ୬୧ ।।**

ପ୍ରଭୁଃ ସ୍ୱତନ୍ତ୍ରଃ ସର୍ବାନୁଗ୍ରାହକଃ ସର୍ବହିତୋଦ୍ଧପି ଶମ୍ଭୁଃ ଶିବଃ କେବଲଂ କୃପୟୈବ ସକଲାନ୍ ଜନ୍ତୂନ୍ ପ୍ରାଣିନୋ ମୋଚୟେତ୍ ପାଶମୁକ୍ତାନ୍ କୁର୍ଯ୍ୟାତ୍, ଇହ ପାଶମୋଚନବିଷୟେ ଶମ୍ଭୋଃ କିଞ୍ଚିତ୍‌କାରଣଂ ଚ ନାସ୍ତି, ସର୍ବାନୁଗ୍ରହକୃତ୍ୟସ୍ୟ ତତ୍‌ସ୍ୱଭାବତ୍ୱାଦିତି ।। ୬୧ ।।

– ପ୍ରଭୁ ଅର୍ଥାତ୍ ସର୍ବତନ୍ତ୍ର ସ୍ୱତନ୍ତ୍ର ଅତଏବଂ ସମସ୍ତଙ୍କ ଉପରେ କୃପା କରୁଥିବା ଭଗବାନ ଶିବ ନିଜର କୃପାରେ ସମସ୍ତ ପ୍ରାଣୀଙ୍କୁ ମୁକ୍ତ କରିଦିଅନ୍ତି । ଏହି ମୋକ୍ଷ ବିଷୟରେ ଅନ୍ୟ କୌଣସି କାରଣ ନାହିଁ ।। ୬୧ ।।

## ଇତ୍ୟାଦି ପ୍ରସାଦିସ୍ଥଳମ୍

## ଅଥାନ୍ତ୍ୟପ୍ରସାଦିସ୍ଥଳମ୍

ଅଥ –
ଅଣୋରଣୀୟାନ୍ ମହତୋ ମହୀୟାନା
ତ୍ମାସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍ ।
ତମକ୍ରତୁଂ ପଶ୍ୟତି ବୀତଶୋକୋ
ଧାତୁଃ ପ୍ରସାଦାନ୍ ମହିମାନମୀଶମ୍[୨୪୭] ।।

---

୨୪୭. କଠୋପ., ୧/୨/୨୦

ଇତି କଠବଲ୍ଲୀଶ୍ରୁତ୍ୟୁକ୍ତପ୍ରକାରେଣ ତଦାଦିପ୍ରସାଦ୍ୟେବ ସର୍ବାଶ୍ରୟଃ ସନ୍ ଅନ୍ତ୍ୟସ୍ୟ ଶିବସ୍ୟାନୁଭବପ୍ରସାଦବାନିତ୍ୟନ୍ତ୍ୟ ପ୍ରସାଦିସ୍ଥଲଂ ନିରୂପୟତି –

**ଲୟଃ ସର୍ବପଦାର୍ଥାନାମନ୍ତ୍ୟ ଇତ୍ୟୁଚ୍ୟତେ ବୁଧୈଃ ।**
**ପ୍ରସାଦୋଽସ୍ୟାନୁଭବସ୍ତସ୍ୟ ତଦ୍ୱାନନ୍ତ୍ୟପ୍ରସାଦବାନ୍ ।। ୬୨ ।।**

ସର୍ବପଦାର୍ଥାନାଂ ଭୂମ୍ୟାଦିଶିବାନ୍ତପଦାର୍ଥାନାଂ ଲୟୋ ଲୟାଶ୍ରୟଃ ପରଶିବ ଏବାନ୍ତ୍ୟଃ ସର୍ବାନ୍ତ୍ୟ ଇତି ବୁଧୈରୁଚ୍ୟତେ । ତସ୍ୟ ସର୍ବାନ୍ତ୍ୟସ୍ୟ ଶିବସ୍ୟ ଅନୁଭବଃ ସାକ୍ଷାତ୍କାର ଏବ ପ୍ରସାଦଃ, ତଦ୍ୱାନ୍ ତଦନୁଭବବତେ, ଆଦିପ୍ରସାଦ୍ୟେବାନ୍ତ୍ୟପ୍ରସାଦବାନିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୬୨।।

– (ଅନ୍ତ୍ୟପ୍ରସାଦୀସ୍ଥଳ ବର୍ଣ୍ଣନ) – ବିଦ୍ୱାନ୍ ସମସ୍ତ ପଦାର୍ଥର ଅନ୍ତକୁ ଲୟ କୁହନ୍ତି । ସେହି ଲୟର ଅନୁଭବ ପ୍ରସାଦ କୁହାଯାଏ । ସେହି ପ୍ରସାଦ ଯାହା ପାର୍ଶ୍ୱରେ ଅଛି, ସେ ଅନ୍ତ୍ୟପ୍ରସାଦୀ ହୋଇଥାଏ ।। ୬୨ ।।

ଅଥ ସର୍ବପଦାର୍ଥଲୟପ୍ରକାରଂ ସୂତ୍ରଦ୍ୱୟେନ କଥୟତି –

**ଦେବତିର୍ଯ୍ୟଙ୍ମନୁଷ୍ୟାଦିବ୍ୟବହାରବିକଳ୍ପନା ।**
**ମାୟାକୃତା ପରେ ତତ୍ତ୍ୱେ ତଲ୍ଲୟେ ତତ୍କ୍ଷୟୋ ଭବେତ୍ ।। ୬୩।।**

ତଲ୍ଲୟେ ମାୟାଲୟ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୩।।

– ଦେବତା, ତିର୍ଯକ୍ ଅର୍ଥାତ୍ ପକ୍ଷୀ, ମନୁଷ୍ୟ ଆଦିଙ୍କର ବ୍ୟବହାରର ବିକଳ୍ପନା ମାୟାଦ୍ୱାରା ରଚିତ ଅଟେ । ପରତତ୍ତ୍ୱରେ ତାହାର ଲୟ ହେବାପରେ ତାହାର ଅର୍ଥାତ୍ ମାୟାର ମଧ୍ୟ କ୍ଷୟ ହୋଇଥାଏ ।। ୬୩।।

ଅୟଂ କଥଂ ମାୟାକ୍ଷୟ ଇତ୍ୟତ୍ରାହ –

**ସାକ୍ଷାତ୍ କୃତେ ପରେ ତତ୍ତ୍ୱେ ସଚ୍ଚିଦାନନ୍ଦ ଲକ୍ଷଣେ ।**
**କ୍ୱ ପଦାର୍ଥପରିଜ୍ଞାନଂ କୁତୋ ଜ୍ଞାତୃତ୍ୱ ସମ୍ଭବଃ ।। ୬୪।।**

ସଚ୍ଚିଦାନନ୍ଦସ୍ୱରୂପେ ପରବ୍ରହ୍ମଣି ପ୍ରତ୍ୟକ୍ଷୀକୃତେ ସତି ମାୟାୟା ନିବୃତ୍ତତ୍ୱାତ୍ ତତ୍କଳ୍ପିତ ପଦାର୍ଥପରିଜ୍ଞାନଂ କ୍ୱ ? ଜ୍ଞାତୃତ୍ୱସମ୍ଭବୋ ଜ୍ଞେୟଜ୍ଞାନାତିରିକ୍ତଜ୍ଞାତୃତ୍ୱସ୍ୟ ଆବିର୍ଭାବଶ୍ଚ କ୍ୱ ? ଜ୍ଞେୟାଦ୍ୟପେକ୍ଷୟା ଜ୍ଞାତୃତ୍ୱସ୍ୟ କଳ୍ପିତତ୍ୱାଦିତି ଭାବଃ ।। ୬୪।।

– ସତ୍, ଚିତ୍, ଆନନ୍ଦ ରୂପରେ ତତ୍ତ୍ୱର ସାକ୍ଷାତ୍କାର ହେବାପରେ ପଦାର୍ଥର ଜ୍ଞାନ କେଉଁଠାରେ ଏବଂ ଜ୍ଞାତାର ସମ୍ଭାବନା କେଉଁଠାରେ (ଅର୍ଥାତ୍ ଏ ଉଭୟ ସମ୍ଭବ ନୁହେଁ କାରଣ ଏ ସବୁ ମାୟୀର ସ୍ତରରେ ହିଁ ଅନୁଭୂତ ହୋଇଥାନ୍ତି । ମାୟା ଲୟ ହେବା ପରେ ଏମାନଙ୍କର ଅସ୍ତିତ୍ୱ ସ୍ୱତଃ ସମାପ୍ତ ହୋଇଥାଏ ।) ।। ୬୪।।

ଅତ୍ର ଦୃଷ୍ଟାନ୍ତମାହ –

**ସୁଷୁପ୍ତସ୍ୟ ଯଥା ବସ୍ତୁ ନ କିଞ୍ଚିଦପି ଭାସତେ ।**
**ତଥା ମୁକ୍ତସ୍ୟ ଜୀବସ୍ୟ ନ କିଞ୍ଚିଦ୍ୱସ୍ତୁ ଦୃଶ୍ୟତେ ।। ୬୫।।**

ମୁକ୍ତସ୍ୟ ଜୀବସ୍ୟ ଜୀବନ୍ମୁକ୍ତସ୍ୟେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୫।।

– ଯେପରି ଗଭୀର ନିଦ୍ରାରେ ଶୋଇଥିବା ବ୍ୟକ୍ତିକୁ କିଛି ପ୍ରତୀତ ହୋଇ ନ ଥାଏ, ସେହିପରି ମୁକ୍ତଜୀବକୁ କୌଣସି ବସ୍ତୁ ଭାସିତ ହୁଏ ନାହିଁ (କାରଣ ସେ ନିଜର ସ୍ୱରୂପରେ ପ୍ରତିଷ୍ଠିତ ହୋଇଥାଏ) ।। ୬୫।।

ଅତ୍ର ଜୀବନ୍ମୁକ୍ତସ୍ୟ ପଦାର୍ଥଦର୍ଶନମସ୍ତୀତି ନାଶଙ୍କନୀୟମ୍, ଶିବାଭେଦେନୈବ ଦର୍ଶନାତ୍ ପ୍ରାକୃତତ୍ୱେନ କିମପି ନ ଦୃଶ୍ୟତ ଇତି । ଅଥ ଜୀବନ୍ମୁକ୍ତସ୍ୱରୂପଂ କୀଦୃଶମିତ୍ୟତ୍ର ସୂତ୍ରଦ୍ୱୟେନ କଥୟତି –

**ଯଥାକାଶମବିଚ୍ଛିନ୍ନଂ ନିର୍ବିକାରଂ ସ୍ୱରୂପତଃ ।**
**ତଥା ମୁକ୍ତସ୍ୟ ଜୀବସ୍ୟ ସ୍ୱରୂପମବଶିଷ୍ୟତେ ।। ୬୬।।**

ଅବଶିଷ୍ୟତେ ପ୍ରକାଶତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୬୬।।

– ଯେପରି ଆକାଶ ସ୍ୱରୂପତଃ ନିର୍ବିକାର ଏବଂ ଅବିଚ୍ଛିନ୍ନ ଅଟେ, ସେହିପରି ମୁକ୍ତ ଜୀବର ସ୍ୱରୂପ ଅବଶିଷ୍ଟ ଅଟେ ।। ୬୬।।

ଅଥ ସ ଜୀବନ୍ମୁକ୍ତଃ କିଂ ଜାନନ୍ କିଂ କୁର୍ବନ୍ କଥଂ ତିଷ୍ଠତୀତ୍ୟତ୍ରାହ –

**ନ କିଞ୍ଚିଦପି ମୁକ୍ତସ୍ୟ ଦୃଶ୍ୟଂ କର୍ତ୍ତବ୍ୟମେବ ବା ।**
**ସୁଖସ୍ଫୂର୍ତ୍ତିସ୍ୱରୂପେଣ ନିଶ୍ଚଳା ସ୍ଥିତିରୁଚ୍ୟତେ ।। ୬୭।।**

ସ୍ପଷ୍ଟମ୍ ।। ୬୭।।

– ମୁକ୍ତ ଜୀବ ନିମନ୍ତେ କୌଣସି ଦର୍ଶନୀୟ ପଦାର୍ଥ ନାହିଁ କିମ୍ବା କୌଣସି କର୍ତ୍ତବ୍ୟ କାର୍ଯ୍ୟ ନାହିଁ । ଆନନ୍ଦର ସ୍ଫୁରଣ ଭାବରେ ତାହାର ନିଶ୍ଚଳ ସ୍ଥିତି ରହେ ।। ୬୭।।

ଅଥ ଜୀବନ୍ମୁକ୍ତସ୍ୟ ଦୃଶ୍ୟଂ କର୍ତ୍ତବ୍ୟଂ କୁତୋ ନାସ୍ତୀତ୍ୟତ୍ର ବଦନ୍ନନ୍ତ୍ୟପ୍ରସାଦିସ୍ଥଳଂ ସମାପୟତି –

**ଶିବାଦ୍ୱୈତ ପରିଜ୍ଞାନଶିଥିଳାଶେଷବସ୍ତୁନଃ ।**
**କେବଲଂ ସଂବିଦୁଲ୍ଲାସଦର୍ଶିନଃ କେନ କୋ ଭବେତ୍ ।। ୬୮।।**

ଶିବାଦ୍ୱୈତପରିଜ୍ଞାନେନ ନିବୃତ୍ତସକଲଭେଦବସ୍ତୁନଃ ଅତଏବ କେବଲଂ ଚିଦ୍ୱିଲାସଂ ପଶ୍ୟତଃ ଶିବଯୋଗିନୋ ଜ୍ଞାନେନ୍ଦ୍ରିୟବ୍ୟାପାରେଣ କର୍ମେନ୍ଦ୍ରିୟବ୍ୟାପାରେଣ ବା କେନାପି କିଂ ଭବେତ୍, କିଂ ପ୍ରୟୋଜନଂ ସ୍ୟାତ୍, ନ କିଞ୍ଚିଦିତ୍ୟନୟୋରାଦ୍ୟନ୍ତପ୍ରସାଦୟୋରୁପକ୍ରମୋପ-ସଂହାରନ୍ୟାୟେନୈକ୍ୟଂ ବିମର୍ଶନୀୟମ୍ ।। ୬୮।।

– ଶିବାଦ୍ୱୈତର ପରିଜ୍ଞାନ କାରଣରୁ ବସ୍ତୁ ମଧ୍ୟରେ ଭେଦଭାବ ରଖୁ ନଥିବା ତଥା କେବଳ ସଂବିତ୍ ଶକ୍ତିର ଉଲ୍ଲାସ ଦେଖୁଥିବା ଶିବଯୋଗୀର କାହାଠାରୁ (ଇନ୍ଦ୍ରିୟ ବ୍ୟାପାର ଅଥବା କୌଣସି ବସ୍ତୁରୁ) କ'ଣ ଲାଭ ହେବ ? ।। ୬୮।।

ଇତ୍ୟନ୍ତ୍ୟପ୍ରସାଦିସ୍ଥଲମ୍

## ଅଥ ସେବ୍ୟପ୍ରସାଦିସ୍ଥଲମ୍

ଅଥ – ଅନ୍ତଃଶରୀର ଏବାୟଂ ବାହ୍ୟଂ ଏବ ନ ସଂସ୍ଥିତଃ ।
ମହାନନ୍ଦପ୍ରସାଦୋଦ୍ଭୟଂ ସର୍ବତ୍ରୈବାବଭାସତେ ।।

ଇତି ସର୍ବଜ୍ଞାନୋତ୍ତରବଚନାନୁସାରେଣ ସେବ୍ୟଶିବଗୁରୁପ୍ରସାଦସମ୍ପନ୍ନୋଦ୍ଧନ୍ତ୍ୟପ୍ରସାଦ୍ୟେବ ସେବ୍ୟପ୍ରସାଦୀତି ସୂତ୍ରତ୍ରୟେଣ କଥୟତି –

**ସେବ୍ୟୋ ଗୁରୁଃ ସମସ୍ତାନାଂ ଶିବ ଏବ ନ ସଂଶୟଃ ।**
**ପ୍ରସାଦୋଦ୍ଭବସ୍ୟ ପରାନନ୍ଦପ୍ରକାଶଃ ପରିକୀର୍ତ୍ତ୍ୟତେ ।। ୬୯।।**

ସମସ୍ତାନାଂ ସେବ୍ୟଃ ଶ୍ରୀଗୁରୁଃ ଶିବ ଏବାତ୍ର ସନ୍ଦେହୋ ନାସ୍ତି । ଅସ୍ୟ ପ୍ରସାଦଃ ଶ୍ରୀଗୁରୁରୂପଶିବପ୍ରସାଦ ଏବ ପରାନନ୍ଦପ୍ରକାଶ ଇତି କୀର୍ତ୍ତ୍ୟତେ ।। ୬୯।।

– (ସେବ୍ୟପ୍ରସାଦୀସ୍ଥଳ ବର୍ଣ୍ଣନ) – ସମସ୍ତଙ୍କର ଶିବ ହିଁ ସେବ୍ୟ ଗୁରୁ ଅଟନ୍ତି। ଏହାଙ୍କର ପ୍ରସାଦ ଅର୍ଥାତ୍ ଅନୁଗ୍ରହ ପରାନନ୍ଦପ୍ରକାଶ କୁହାଯାଏ ।। ୬୯।।

**ସେବ୍ୟୋ ଗୁରୁଃ ସ୍ମୃତୋ ହ୍ୟସ୍ୟ ପ୍ରସାଦୋଦ୍ଧନୁଭବୋ ମତଃ ।**
**ତଦେକାବେଶରୂପେଣ ତଦ୍ୱାନ୍ ସେବ୍ୟପ୍ରସାଦବାନ୍ ।। ୭୦।।**

ଗୁରୁଃ ଶିବସ୍ୱରୂପଶ୍ରୀଗୁରୁରେବ ସେବ୍ୟ ଇତି ସ୍ମୃତଃ । ଅସ୍ୟ ଶିବରୂପସ୍ୟ ଶ୍ରୀଗୁରୋରନୁଭବ ଉପଦେଶାନୁଭବ ଏବ ପ୍ରସାଦ ଇତି ସମ୍ମତଃ। ତଦେକାବେଶରୂପେଣ ତୟୋର୍ଗୁରୁପ୍ରସାଦୟୋରେକୀଭାବେନ ତଦ୍ୱାନ୍ ତତ୍ପ୍ରସାଦବାନନ୍ତ୍ୟପ୍ରସାଦ୍ୟେବ ସେବ୍ୟପ୍ରସାଦବାନ୍ ସେବ୍ୟପ୍ରସାଦୀତି ହି ପ୍ରସିଦ୍ଧ ଇତ୍ୟର୍ଥଃ ।। ୭୦।।

– ଶିବଯୋଗୀ ସେବ୍ୟ ଗୁରୁ କୁହାଯାଆନ୍ତି । ସେମାନଙ୍କର ଅନୁଭବ ପ୍ରସାଦ କୁହାଯାଏ । ଯିଏ ଏହି ଦୁଇଟି ଅର୍ଥାତ୍ ଗୁରୁ ଓ ପ୍ରସାଦକୁ ଏକ ମାନନ୍ତି, ସେ ସେବ୍ୟପ୍ରସାଦବାନ୍ କୁହାଯାଆନ୍ତି ।। ୭୦।।

**ଗୁରୁଦେବଃ ପରଂ ତତ୍ତ୍ୱଂ ପରତତ୍ତ୍ୱଂ ଗୁରୁଃ ସ୍ମୃତଃ ।**
**ତଦେକତ୍ୱାନୁଭାବେନ ନ କିଞ୍ଚିଦବଶିଷ୍ୟତେ ।। ୭୧।।**

ଗୁରୁଶିବୟୋଃ ଶକ୍ତିଶକ୍ତିମଦ୍‌ଭାବେନ ତୟୋରୈକ୍ୟାନୁସନ୍ଧାନେନ ଜ୍ଞାତବ୍ୟଂ ନ କିଞ୍ଚିଦବଶିଷ୍ୟତେ, ସର୍ବସ୍ୟାପି ବିଶ୍ୱସ୍ୟ ଶିବଶକ୍ତିମୟତ୍ୱାଦିତି ।। ୭୧ ।।

– ଗୁରୁଦେବ ପରତତ୍ତ୍ୱ ଅଟନ୍ତି । ପରତତ୍ତ୍ୱ ହିଁ ଗୁରୁ ଅଟନ୍ତି । ସେ ଦୁହିଁଙ୍କୁ ଏକ ଭାବିଲା ପରେ ଆଉ କିଛି ବାକି ରହେ ନାହିଁ ।। ୭୧ ।।

ଅଥ ପରମାନନ୍ଦବତଃ ସେବ୍ୟପ୍ରସାଦିନଃ କ୍ୱାପି ପ୍ରୀତିର୍ନାସ୍ତୀତି ସୂତ୍ରତ୍ରୟେଣ କଥୟତି –

**ଅପରିଚ୍ଛେଦ୍ୟମାତ୍ମସ୍ଥମବାଙ୍‌ମନସଗୋଚରମ୍ ।**
**ଆନନ୍ଦଂ ପଶ୍ୟତାଂ ପୁଂସାଂ ରତିରନ୍ୟତ୍ର କା ଭବେତ୍ ।। ୭୨ ।।**

ପରିଚ୍ଛେଦରହିତଂ ବାଙ୍‌ମାନସୟୋରଗୋଚରଂ ସ୍ୱସ୍ୱରୂପଂ ପରମାନନ୍ଦମ୍ ଅପରୋକ୍ଷେଣ ପଶ୍ୟତାଂ ଶିବୟୋଗିନାମନ୍ୟତ୍ର ବିଷୟେଷୁ ରତିରଭିଳାଷୋ ନ କ୍ୱାପି ସ୍ୟାଦିତ୍ୟର୍ଥଃ ।। ୭୨ ।।

– ଅସୀମ ଆତ୍ମା ମଧ୍ୟରେ ସ୍ଥିତ, ବାଣୀ ଏବଂ ମନର ଅଗୋଚର, ଆନନ୍ଦର ସାକ୍ଷାତ୍ ଅନୁଭବ କରୁଥିବା ମନୁଷ୍ୟର ଅନ୍ୟ ବିଷୟରେ କି ପ୍ରୀତି ହୋଇପାରିବ ? ।। ୭୨ ।।

**ଜ୍ଞାନାମୃତେନ ତୃପ୍ତସ୍ୟ କିମନ୍ୟୈର୍ଭୋଜ୍ୟ ବସ୍ତୁଭିଃ ।**
**ଜ୍ଞାନାଦେବ ପରାନନ୍ଦଂ ପ୍ରକାଶୟତି ସଚ୍ଛିବଃ ।। ୭୩ ।।**

ଜ୍ଞାନାମୃତେନ ସନ୍ତୁଷ୍ଟସ୍ୟ ଶିବୟୋଗିନୋଽନ୍ୟୈଶ୍ଚିତ୍ ପୀୟୁଷବ୍ୟତିରିକ୍ତୈର୍ଭୋଜ୍ୟ-ପଦାର୍ଥୈଃ କିମ୍ ? ନ କିଞ୍ଚିତ୍ ଇତ୍ୟର୍ଥଃ । ସଚ୍ଛିବୋଽଗ୍ନେରୁଷ୍ଣତ୍ୱପ୍ରକାଶକତ୍ୱାଦୟମ୍ ଇବ ଶିବସ୍ୟ ସଚ୍ଚିଦାନନ୍ଦାଃ ସ୍ୱଭାବାସ୍ତାଦୃଶଃ ଶିବୋ ଜ୍ଞାନାଦେବ ନିଜଜ୍ଞାନାଦେବ ପରାନନ୍ଦଂ ସ୍ୱସ୍ୱଭାବଭୂତନିତ୍ୟାନନ୍ଦଂ ପ୍ରକାଶୟତୀତି ।। ୭୩ ।।

– ଜ୍ଞାନାମୃତରେ ତୃପ୍ତ ମନୁଷ୍ୟ ପାଇଁ ଅନ୍ୟ ଭୋଜ୍ୟ ପଦାର୍ଥର କ'ଣ ପ୍ରୟୋଜନ ? ସଦାଶିବ ଜ୍ଞାନଦ୍ୱାରା ହିଁ ପରାନନ୍ଦକୁ ପ୍ରକାଶିତ କରନ୍ତି ।। ୭୩ ।।

ଅଥ ତଦେବ ବିଶଦୟତି –

**ମୁକ୍ତିରେବ ପରା ତୃପ୍ତିଃ ସଚ୍ଚଦାନନ୍ଦଲକ୍ଷଣା ।**
**ନିତ୍ୟତୃପ୍ତସ୍ୟ ମୁକ୍ତସ୍ୟ କିମନ୍ୟୈର୍ଭୋଗସାଧନୈଃ ।। ୭୪ ।।**

ନିତ୍ୟତୃପ୍ତସ୍ୟ ସର୍ବଜ୍ଞତାଦ୍ୟୁପଲକ୍ଷିତନିତ୍ୟତୃପ୍ତିମତୋ ମୁକ୍ତସ୍ୟ ପରମମୁକ୍ତିମତଃ ଶିବୟୋଗିନ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୪ ।।

– ସଚ୍ଚିଦାନନ୍ଦସ୍ୱରୂପ ମୁକ୍ତି ହିଁ ଅନ୍ତିମ ସର୍ବୋତ୍କୃଷ୍ଟ ତୃପ୍ତି ଅଟେ । ଯିଏ ନିତ୍ୟ ତୃପ୍ତ ଓ ନିତ୍ୟ ମୁକ୍ତ ଅଟେ, ତା'ର ଅନ୍ୟ ଭୋଗ ସାଧନରେ କ'ଣ ଲାଭ ? ।। ୭୪ ।।

ଅଥ ତସ୍ୟ ପରମୁକ୍ତସ୍ୟାନ୍ତର୍ବହିଃ କିମପି କର୍ମ ନାସ୍ତୀତି ନିରୂପୟତି –

**ନ ବାହ୍ୟଂ କର୍ମ ତସ୍ୟାସ୍ତି ନ ଚାନ୍ତର୍ନୈବ କୁତ୍ରଚିତ୍ ।**

**ଶିବୈକ୍ୟଜ୍ଞାନରୂଢ଼ସ୍ୟ ଦେହଭ୍ରାନ୍ତିଂ ବିମୁଞ୍ଚତଃ ।। ୭୫ ।।**

ସ୍ୱରୂପହାନିବୃଦ୍ଧିବ୍ୟତିରେକେଣ ସଜାତୀୟସମାନସମରସଭାବେନ ଶିବୈକ୍ୟଜ୍ଞାନମାରୁହ୍ୟ ଦେହଭ୍ରାନ୍ତିଂ ବିମୁଞ୍ଚତସ୍ତସ୍ୟ ସେବ୍ୟପ୍ରସାଦିନୋ ବହିରଙ୍ଗବିଧୀୟମାନପୂଜାକର୍ମ ନାସ୍ତି, ଅନ୍ତଶ୍ଚାନ୍ତରଙ୍ଗେ ବିଧୀୟମାନଧ୍ୟାନାଦିକର୍ମ ନାସ୍ତି, କୁତ୍ରଚିତ୍ କ୍ୱାପି ବିନ୍ଦୁତିରୋଭାବମଳମାୟାଦ୍ୟୁପଲକ୍ଷିତ କର୍ମପାଶୋଽପି ନାସ୍ତୀତ୍ୟର୍ଥଃ ।। ୭୫ ।।

– ଯିଏ ଶିବୈକ୍ୟ ଜ୍ଞାନରେ ରୂଢ଼ ଅର୍ଥାତ୍ ପୂର୍ଣ୍ଣ ଏବଂ ଦୃଢ଼ ଶିବୈକ୍ୟ ଜ୍ଞାନବାଲା ତଥା ଦେହଭ୍ରମ (ଅର୍ଥାତ୍ ଦେହକୁ ଆତ୍ମା ଭାବିବାର ଭ୍ରମ)ରୁ ରହିତ ଅଟନ୍ତି, ଏପରି ମୁକ୍ତ ପୁରୁଷ ନିମନ୍ତେ କେଉଁଠାରେ କିଛି ବାହ୍ୟକର୍ମ ଏବଂ ଅନ୍ତ୍ୟ କର୍ମ କରଣୀୟ ହୋଇ ନଥାଏ ।। ୭୫ ।।

ଅଥ ପ୍ରସାଦିସ୍ଥଲଂ ସମାପୟତି –

**ନ କର୍ମବନ୍ଧେ ନ ତପୋବିଶେଷେ**

**ନ ମନ୍ତ୍ରଯୋଗାଭ୍ୟସନେ ତଥୈବ ।**

**ଧ୍ୟାନେ ନ ବୋଧେ ଚ ତଥାତ୍ମତତ୍ତ୍ୱେ**

**ମନଃ ପ୍ରବୃତ୍ତିଃ ପରଯୋଗଭାଜାମ୍ ।। ୭୬ ।।**

ପରଯୋଗଭାଜାଂ ସର୍ବୋତ୍କୃଷ୍ଟପରଶିବଯୋଗଭାଜାଂ ସେବ୍ୟପ୍ରସାଦିନାଂ ମନଃ ପ୍ରବୃତ୍ତିଚିତ୍ତବୃତ୍ତିର୍ମନ୍ତ୍ରଯୋଗାଭ୍ୟସନେଽଜପାଗାୟତ୍ରୀରୂପସୋଽହଂମନ୍ତ୍ରଯୋଗାଭ୍ୟାସେ ନ ନାସ୍ତୀତ୍ୟର୍ଥଃ । ତଥୈବ କର୍ମବନ୍ଧେ ଷଡ୍‌କର୍ମବନ୍ଧତ୍ରୟରୂପହଠଯୋଗେଽପି ନ, ତପୋବିଶେଷେ ଯୋଗାନାଂ ବିଶିଷ୍ଟରାଜଯୋଗେଽପି ନ, ଧ୍ୟାନେଽନାହତବ୍ରହ୍ମଧ୍ୟାନରୂପଲୟଯୋଗେଽପି ନ, କିନ୍ତୁ ତଥାତ୍ମତତ୍ତ୍ୱେ ତଦ୍ୟୋଗଚତୁଷ୍ଟୟଚୈତନ୍ୟସ୍ୱରୂପେ ବୋଧେ ସ୍ୱସ୍ୱରୂପଜ୍ଞାନେ ମନଃପ୍ରବୃତ୍ତିଃ ସ୍ୟାଦିତ୍ୟର୍ଥଃ । ଅୟଂ ଭାବଃ – ଦେଶିକୋପଦେଶେନାପରଦେହପାଣିପାଦଗୁହ୍ୟାନି ପ୍ରଥମଂ ସଂଶୋଧ୍ୟ ବନ୍ଧୟିତ୍ୱା ତଦନନ୍ତରଂ ପରାପଶ୍ୟନ୍ତୀମଧ୍ୟମାବୈଖରୀସ୍ୱରୂପରୁଦ୍ରବିଷ୍ଣୁବ୍ରହ୍ମେନ୍ଦ୍ରାଦିଦୈବତଲୟରାଜହଠମନ୍ତ୍ରଯୋଗାଦ୍ କ୍ରମେଣ ପୂର୍ବକାୟସ୍ୟ କର୍ଣ୍ଣାକ୍ଷିନାସାରସନାସୁ ସଂଯୋଜ୍ୟାନନ୍ତରଂ ପୂର୍ବାପରକାୟକୀଳକଭୂତବିନ୍ଦୁମାୟାକାର୍ଯ୍ୟରୂପବାକ୍‌ତ୍ୱଚୌ ନିଶ୍ଚଳୀକୃତ୍ୟ ସର୍ବଯୋଗଜ୍ଞାନଜନନ କ୍ଷେତ୍ରଭୂତାବିମୁକ୍ତକ୍ଷେତ୍ରେ ପରବ୍ରହ୍ମପରଶିବପରଲିଙ୍ଗାପରପର୍ଯ୍ୟାୟନାମଭିଃ ସଂସେବ୍ୟ ସ୍ୱସ୍ୱରୂପସେବିତ ସେବ୍ୟପ୍ରସାଦୀତ୍ୟର୍ଥଃ । ଏତଲ୍ଲିଙ୍ଗତ୍ରୟଂ ପ୍ରାଣଲିଙ୍ଗିନୋଽଙ୍ଗତ୍ରୟସ୍ୟ କ୍ରମେଣ ସମ୍ବନ୍ଧୟେଦିତି ସେବ୍ୟପ୍ରସାଦିସ୍ଥଲମ୍ ।। ୭୬ ।।

– ଯିଏ ପରଯୋଗରେ ଉଚ୍ଚସ୍ତରକୁ ପ୍ରାପ୍ତ ହୋଇଛନ୍ତି, ତାଙ୍କ ମନର ପ୍ରବୃତ୍ତି

କର୍ମବନ୍ଧନ, ବିଶିଷ୍ଟତପ, ମନ୍ତ୍ରଯୋଗାଭ୍ୟାସ, ଧ୍ୟାନ, ବୋଧରେ ହୁଏ ନାହିଁ, କିନ୍ତୁ ଆତ୍ମତତ୍ତ୍ୱରେ ଅବଶ୍ୟ ହୁଏ ।। ୭୬ ।।

ବିଶେଷ – ଆଚାର୍ଯ୍ୟଙ୍କଦ୍ୱାରା ଉପଦିଷ୍ଟ ହେଲେ ପ୍ରଥମେ ଅ଼ପର କାୟ ହାତ, ପାଦ ଆଦିର ଶୋଧନ ହୁଏ । ତା'ପରେ ମୂଳବନ୍ଧ, ଉଡ୍ଡୀୟାନବନ୍ଧ, ବଜ୍ରାଳୀ ଆଦିଦ୍ୱାରା ପରା, ପଶ୍ୟନ୍ତୀ, ମଧ୍ୟମା, ବୈଖରୀ ସ୍ୱରୂପ ରୁଦ୍ର, ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ର ଆଦି ଦେବତାଙ୍କର ଲୟ ହେବା ପରେ ପୂର୍ବକାୟକୁ କାନ, ଆଖି, ନାକ, ଜିହ୍ୱା ସହିତ ଜୋଡ଼ି ପୂର୍ବକାୟ ଅପରକାୟ ଉଭୟଙ୍କର କୀଳକ ସ୍ୱରୂପ ବିନ୍ଦୁ, ମାୟାର କାର୍ଯ୍ୟଭୂତ ବାଣୀ ଏବଂ ତ୍ୱଚା (ଚର୍ମ)କୁ ନିଶ୍ଚଳ କରିବା ପରେ ସମ୍ପୂର୍ଣ୍ଣ ଯୋଗଜ୍ଞାନର ଜନନର କ୍ଷେତ୍ରଭୂତ ଅବିମୁକ୍ତ କ୍ଷେତ୍ର ଅର୍ଥାତ୍ ପରାଶିବଙ୍କର ସେବନ କରିବାବାଲା ସେବ୍ୟପ୍ରସାଦୀ ହୋଇଥାଏ ।

ଇତି ଶ୍ରୀମଦ୍ ଷଟ୍‌ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ବୀରଶୈବଧର୍ମନିର୍ଣ୍ଣୟେ ସିଦ୍ଧାନ୍ତଶିଖାମଣୌ ପ୍ରାଣଲିଙ୍ଗିସ୍ଥଲବିଷୟନବବିଧଲିଙ୍ଗପ୍ରସଙ୍ଗୋ ନାମାଷ୍ଟାଦଶଃ ପରିଚ୍ଛେଦଃ ।। ୧୮ ।।

ଇତି ଶ୍ରୀମଦ୍ ପଦବାକ୍ୟପ୍ରମାଣପାରାବାରଧୁରୀଣ ଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ପ୍ରାଣଲିଙ୍ଗିସ୍ଥଲବିଷୟ-ନବବିଧଲିଙ୍ଗପ୍ରସଙ୍ଗୋ ନାମାଷ୍ଟଦଶଃ ପରିଚ୍ଛେଦଃ ।। ୧୮ ।।

ଏହିପରି ଶ୍ରୀସିଦ୍ଧାନ୍ତ ଶିଖାମଣିର ପ୍ରାଣଲିଙ୍ଗିସ୍ଥଳ ବିଷୟ ନବବିଧଲିଙ୍ଗପ୍ରସଙ୍ଗ ନାମକ ଅଷ୍ଟାଦଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୧୮ ।।



# ଏକୋନବିଂଶଃ ପରିଚ୍ଛେଦଃ

## ଅଥ ଶରଣସ୍ଥଲମ୍

## (ଅଥ ଦୀକ୍ଷାପାଦୋଦକସ୍ଥଲମ୍)

ଅଥାଗସ୍ତ୍ୟ ପ୍ରଶ୍ନଃ, ଅଗସ୍ତ୍ୟ ଉବାଚେତି –

ସ୍ଥଲଭେଦାଃ ସମାଖ୍ୟାତାଃ ପ୍ରାଣଲିଙ୍ଗିସ୍ଥଲାଶ୍ରୟାଃ ।
କଥୟ ସ୍ଥଲଭେଦଂ ମେ ଶରଣସ୍ଥଲସଂଶ୍ରିତମ୍ ।। ୧ ।।

ସ୍ପଷ୍ଟମ୍ ।। ୧ ।।

– (ଶରଣସ୍ଥଲ ବର୍ଣ୍ଣନ) – ଅଗସ୍ତ୍ୟ କହିଲେ – (ହେ ଆଚାର୍ଯ୍ୟ, ଆପଣ) ପ୍ରାଣଲିଙ୍ଗୀ ସ୍ଥଳ ଅନ୍ତର୍ଗତ ଗଣନୀୟ ସ୍ଥଲଭେଦଗୁଡ଼ିକୁ ବତେଇଲେ । ବର୍ତ୍ତମାନ ଶରଣସ୍ଥଳରେ ଆସୁଥିବା ସ୍ଥଲଭେଦଗୁଡ଼ିକ ବତାନ୍ତୁ ।। ୧ ।।

ଅଥ ଶ୍ରୀରେଣୁକସ୍ୟ ଉତ୍ତରଂ ବକ୍ତି ରେଣୁକ ଉବାଚେତି –

ଶରଣସ୍ଥଲମାଶ୍ରିତ୍ୟ ସ୍ଥଲଦ୍ୱାଦଶକଂ ମୟା ।
ଉଚ୍ୟତେ ନାମ ସର୍ବେଷାଂ ସ୍ଥଲାନାଂ ଶୃଣୁ ତାପସ ।। ୨ ।।

ସ୍ଥଲାନାମବାନ୍ତରସ୍ଥଲାନାମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୨ ।।

– ଶ୍ରୀ ରେଣୁକାଚାର୍ଯ୍ୟ କହିଲେ – ହେ ତପସ୍ୱୀ, ଶରଣସ୍ଥଲକୁ ଆଶ୍ରୟ କରି ବାରଟି ସ୍ଥଳ ଅଛନ୍ତି । ମୁଁ ସେହିସବୁ ସ୍ଥାନଗୁଡ଼ିକର ନାମ ବତାଉଛି ଶୁଣ ।। ୨ ।।

ଅତ ତାନି ସ୍ଥଲାନି ସୂତ୍ରତ୍ରୟେଣୋଦ୍ଦିଶତି –

ଦୀକ୍ଷାପାଦୋଦକଂ ପୂର୍ବଂ ଶିକ୍ଷାପାଦୋଦକଂ ତତଃ ।
ଜ୍ଞାନପାଦୋଦକଂ ଚାଥ କ୍ରିୟାନିଷ୍ପତ୍ତିକଂ ତତଃ ।। ୩ ।।
ଭାବନିଷ୍ପତ୍ତିକଂ ଚାଥ ଜ୍ଞାନନିଷ୍ପତ୍ତିକଂ ତତଃ ।
ପିଣ୍ଡାକାଶସ୍ଥଲଂ ଚାଥ ବିନ୍ଦ୍ୱାକାଶସ୍ଥଲଂ ତତଃ ।। ୪ ।।
ମହାକାଶସ୍ଥଲଂ ଚାଥ କ୍ରିୟାୟାଶ୍ଚ ପ୍ରକାଶନମ୍ ।
ଭାବପ୍ରକାଶନଂ ପଶ୍ଚାଦ୍ ତତୋ ଜ୍ଞାନପ୍ରକାଶନମ୍ ।
ସ୍ୱରୂପଂ ପୃଥଗେତେଷାଂ କଥୟାମି ଯଥାକ୍ରମମ୍ ।। ୫ ।।

ସ୍ପଷ୍ଟମ୍ ।। ୫ ।।

– ପ୍ରଥମେ ଦୀକ୍ଷାପାଦୋଦକ, ତା'ପରେ ଶିକ୍ଷାପାଦୋଦକ, ତା'ପରେ ଜ୍ଞାନପାଦୋଦକ, ତା'ପରେ କ୍ରିୟାନିଷ୍ପତ୍ତି । ପୁଣି ଭାବନିଷ୍ପତ୍ତି ଏବଂ ଜ୍ଞାନନିଷ୍ପତ୍ତି ନାମକ

ସ୍ଥଳ । ପିଣ୍ଡାକାଶସ୍ଥଳ, ବିନ୍ଦ୍ୱାକାଶ ସ୍ଥଳ, ମହାକାଶସ୍ଥଳ, କ୍ରିୟାପ୍ରକାଶ ସ୍ଥଳ, ଭାବପ୍ରକାଶ ସ୍ଥଳ ଏବଂ ଶେଷରେ ଜ୍ଞାନପ୍ରକାଶସ୍ଥଳ । ଏବେ ଏମାନଙ୍କର ପୃଥକ୍-ପୃଥକ୍ ସ୍ୱରୂପକୁ କ୍ରମରେ କହିବି ।। ୩-୫ ।।

ଅଥ – 'ଆଚାର୍ଯ୍ୟଃ ପୂର୍ବରୂପଂ ଅନ୍ତେବାସ୍ୟୁତ୍ତରରୂପଂ ବିଦ୍ୟାସନ୍ଧିଃ[୨୪୮]' ଇତି ଶ୍ରୁତ୍ୟୁକ୍ତପ୍ରକାରେଣ,

ଅସ୍ମାଦ୍ ପ୍ରବିତତାଦ୍ ବନ୍ଧାଦ୍ ପରସଂସ୍ଥାନିରୋଧକାଦ୍ ।
ଦୀକ୍ଷୈନଂ ମୋଚୟେଦ୍ ପୂର୍ବଂ ଶୈବଂ ଧାମ ନୟତ୍ୟପି ।।

ଇତି ସ୍ୱାୟମ୍ଭୁବଚନାନୁସାରେଣ ଚାସ୍ୟ ସେବ୍ୟପ୍ରସାଦିନଃ ସୁଲଭଦୀକ୍ଷାପାଦୋଦକସ୍ଥଳଂ ନିରୂପୟତି –

**ଦୀକ୍ଷୟାଦ୍ଧପଗତଦ୍ୱୈତଂ ଯଜ୍ଜ୍ଞାନଂ ଗୁରୁଶିଷ୍ୟୟୋଃ ।**
**ଆନନ୍ଦସ୍ୟୈକ୍ୟମେତେନ ଦୀକ୍ଷାପାଦୋଦକଂ ସ୍ମୃତମ୍ ।। ୬ ।।**

ଗୁରୁଶିଷ୍ୟୟୋଃ ସେବ୍ୟଗୁରୁଶିଷ୍ୟୟୋରାନନ୍ଦସ୍ୟୈକ୍ୟଂ ନିଜାନନ୍ଦୈକୀଭୂତଂ ଦୀକ୍ଷୟାଦ୍ଧପଗତଦ୍ୱୈତଂ ଜ୍ଞାନଦାନମଲକ୍ଷୟରୂପଚିଦ୍କ୍ରିୟାଦୀକ୍ଷାନିବାରିତଦ୍ୱୈତଂ ଯଜ୍ଜ୍ଞାନମସ୍ତି, ଏତେନାନେନ ଜ୍ଞାନେନ ଦୀକ୍ଷାପାଦୋଦକଂ ସେବ୍ୟପ୍ରସାଦିନଃ ସୁଲଭଭୂତଦୀକ୍ଷା-ପାଦୋଦକମିତି ସ୍ମୃତମ୍ । ଶିବଦୀକ୍ଷାଗତଦ୍ୱୈତଜ୍ଞାନବଦ୍ ଗୁରୁଶିଷ୍ୟ ନିଜାନନ୍ଦୈକ୍ୟମେବ ଦୀକ୍ଷାପାଦୋଦକମିତ୍ୟର୍ଥଃ ।। ୬ ।।

– (ଦୀକ୍ଷାପାଦୋଦକସ୍ଥଳ ବର୍ଣ୍ଣନ) – ଦୀକ୍ଷାଦ୍ୱାରା ଦ୍ୱୈତ ରହିତ ହୋଇଥିବା ଜ୍ଞାନ ଏବଂ ତାହାଦ୍ୱାରା ଗୁରୁ ଓ ଶିଷ୍ୟଙ୍କର ଆନନ୍ଦର ଯେଉଁ ଐକ୍ୟ, ତାହାକୁ ଦୀକ୍ଷାପାଦୋଦକ କୁହାଯାଏ । (ତାତ୍ପର୍ଯ୍ୟ ହେଉଛି, ପ୍ରଥମେ ଗୁରୁଙ୍କର ଦୀକ୍ଷାରେ ଶିଷ୍ୟର ଭିତରେ ଥିବା ଦ୍ୱୈତଜ୍ଞାନ ନଷ୍ଟ ହୋଇଯାଏ ଏବଂ ତାହା ଭିତରେ କେବଳ ପରାନନ୍ଦ ରୁହେ । ଗୁରୁ ଭିତରେ ପରାନନ୍ଦ ପ୍ରଥମରୁ ଥାଏ କାରଣ ସେ ତାଙ୍କର ଗୁରୁଦ୍ୱାରା ପୂର୍ବରୁ ଦୀକ୍ଷିତ ହୋଇଥାନ୍ତି । ତେଣୁ ଏପରି ପରିସ୍ଥିତିରେ ଉଭୟଙ୍କର ଆନନ୍ଦ ଏକ ହୋଇଯାଏ । ପ୍ରକୃତ ପକ୍ଷେ ଆନନ୍ଦ ହିଁ ଏକହିଁ ଅଟେ । ଗୁରୁ ଏବଂ ଶିଷ୍ୟ ଉପାଧି ଭେଦରେ ଏହା ଦୁଇଟି ପରି ଜଣାପଡ଼େ । ଏହି ଉପାଧି ଦୂର ହେବା ପରେ ଐକ୍ୟ ପ୍ରତିଭାସିତ ହୋଇଥାଏ ।) ।। ୬ ।।

ଅଥ ଦୀକ୍ଷାସଞ୍ଜାତଗୁରୁଶିଷ୍ୟୈକ୍ୟମେବ ଦୀକ୍ଷାପାଦୋଦକମିତି ପକ୍ଷାନ୍ତରେଣାହ –

**ଅଥବା ପାଦଶବ୍ଦେନ ଗୁରୁରେବ ନିଗଦ୍ୟତେ ।**
**ଶିଷ୍ୟସ୍ତୋଦକଶବ୍ଦେନ ତୟୋରୈକ୍ୟଂ ତୁ ଦୀକ୍ଷୟା ।। ୭ ।।**

---

୨୪୮. ତୈ. ଉ., ୩/୨-୩

ଅଥବା ତନ୍ନ ଚେତ୍, ପାଦଶବ୍ଦେନ ଶ୍ରୀଗୁରୁରେବ କଥ୍ୟତେ, ଉଦକଶବ୍ଦେନ ଶିଷ୍ୟୋ ନିଗଦ୍ୟତେ, ଦୀକ୍ଷୟା ନିଜକରସଞ୍ଜାତଶିଷ୍ୟମୂର୍ଦ୍ଧ୍ନି ଘ୍ରାଣସ୍ୱରୂପଦୀକ୍ଷାବିଶେଷେଣ ତୟୋରୈକ୍ୟଂ ତୁ ପାଦୋଦକଶବ୍ଦବାଚ୍ୟଗୁରୁଶିଷ୍ୟୈକ୍ୟଂ ଦୀକ୍ଷାପାଦୋଦକମିତି ସ୍ମୃତିମିତ୍ୟର୍ଥଃ ।। ୭।।

– ଅଥବା 'ପାଦ' ଶବ୍ଦରେ ଗୁରୁ ବୁଝାଯାଏ । 'ଉଦକ' ଶବ୍ଦରେ ଶିଷ୍ୟ ବୁଝାଯାଏ । ଦୁଇଜଣଙ୍କର ଐକ୍ୟ ଦୀକ୍ଷାଦ୍ୱାରା ହୋଇଥାଏ ।। ୭।।

ଅଥ ଦୀକ୍ଷାପ୍ରକାଶିତସତ୍ୟଜ୍ଞାନାନନ୍ଦୈକ୍ୟମେବ ଦୀକ୍ଷାପାଦୋଦକମିତି ପକ୍ଷାନ୍ତରେଣ କଥୟତି –

**ପରମାନନ୍ଦ ଏବୋକ୍ତଃ ପାଦଶବ୍ଦେନ ନିର୍ମଳଃ ।**
**ଜ୍ଞାନଂ ଚୋଦକଶବ୍ଦେନ ତୟୋରୈକ୍ୟଂ ତୁ ଦୀକ୍ଷୟା ।। ୮।।**

ପାଦଶବ୍ଦେନ ମଳରହିତପରବ୍ରହ୍ମାନନ୍ଦ ଉଚ୍ୟତେ, ଉଦକଶବ୍ଦେନ ବ୍ରହ୍ମସ୍ୱରୂପଜ୍ଞାନମୁଚ୍ୟତେ, ଦୀକ୍ଷୟା ହୃତ୍କମଲମଧ୍ୟସ୍ଥଚିଦ୍‌ଦୀକ୍ଷୟା ତୟୋରୈକ୍ୟଂ ତୁ, 'ବିଜ୍ଞାନମାନନ୍ଦଂ ବ୍ରହ୍ମ'[୨୪୯] ଇତି ଶ୍ରୁତେଃ । ଧର୍ମଧର୍ମିସ୍ୱରୂପାନନ୍ଦଜ୍ଞାନୈକ୍ୟଂ ଦୀକ୍ଷାପାଦୋଦକମିତି ସ୍ମୃତମିତ୍ୟର୍ଥଃ ।। ୮।।

– 'ପାଦ' ଶବ୍ଦରେ ନିର୍ମଳ ପରମାନନ୍ଦ କୁହାଯାଏ ଏବଂ 'ଉଦକ' ଶବ୍ଦରେ ଜ୍ଞାନର ନିର୍ବଚନ ହୁଏ । ଏହି ଦୁଇଟିର ଐକ୍ୟ ଦୀକ୍ଷାରେ ହୁଏ ।। ୮।।

ଅଥ – ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।
ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନ[୨୫୦] ।।

ଇତି ବ୍ରହ୍ମୋ (ତୈତ୍ତିରୀୟୋ) ପନିଷଦ୍‌ବାକ୍ୟାନୁସାରେଣ ତଜ୍‌ଜ୍ଞାନାନନ୍ଦମେବ ବିଶେଷୟତି –

**ପରସଂବିତ୍ ପ୍ରକାଶାତ୍ମା ପରମାନନ୍ଦଭାବନାମ୍ ।**
**ଅଧିଗମ୍ୟ ମହାଯୋଗୀ ନ ଭେଦଂ କ୍ୱାପି ପଶ୍ୟତି ।। ୯।।**

ମହାଯୋଗୀ ତତ୍‌ପାଦୋଦକଦୀକ୍ଷାସମ୍ପନ୍ନଃ ଶିବଯୋଗୀ ପରସଂବିତ୍ ପ୍ରକାଶାତ୍ମା ପରବ୍ରହ୍ମସ୍ୱରୂପଜ୍ଞାନପ୍ରକାଶସ୍ୱରୂପବାନ୍ ସନ୍ ପରମାନନ୍ଦଭାବନାମ୍ ଅଧିଗମ୍ୟ ଭେଦଂ ନିତ୍ୟପରିପୂର୍ଣ୍ଣଜ୍ଞାନାନନ୍ଦଭେଦଂ କ୍ୱାପି ନ ପଶ୍ୟତି, ତଦ୍‌ବାହ୍ୟଦେଶାଭାବାଦିତି ।। ୯।।

– ମହାଯୋଗୀ ପରାସଂବିତ୍ ପ୍ରକାଶରୂପ ହୋଇ ପରମାନନ୍ଦର ଭାବନାକୁ ପ୍ରାପ୍ତ ହେବା ପରେ କେଉଁଠାରେ ଭେଦ ଦେଖେ ନାହିଁ ।। ୯।।

ଅତ ଏବ ନାନ୍ୟତ୍ କାଂକ୍ଷତୀତ୍ୟାହ –

---

୨୪୯. ବୃ. ଉ., ୩/୯/୨୮

୨୫୦. ତୈ. ଉ., ୨/୪/୯

**ଦେଶକାଲାଦ୍ୟବଚ୍ଛେଦବିହୀନଂ ନିତ୍ୟନିର୍ମଲମ୍ ।**

**ଆନନ୍ଦଂ ପ୍ରାପ୍ୟ ବୋଧେନ ନାନ୍ୟଦ୍ କାଂକ୍ଷତି ସଂଯମୀ ।। ୧୦।।**

ସଂଯମୀ ଶିବଯୋଗୀ ଦେଶକାଲାଦ୍ୟବଚ୍ଛେଦବିହୀନଂ ଦେଶକାଲାକାରେଷୁ ବିଚ୍ଛେଦରାହିତ୍ୟେନ ବିଦ୍ୟମାନଂ ନିତ୍ୟନିର୍ମଲମାନନ୍ଦଂ ବ୍ରହ୍ମାନନ୍ଦଂ ବୋଧେନ ବ୍ରହ୍ମଜ୍ଞାନସ୍ୱରୂପଣୈବ ପ୍ରାପ୍ୟ ଅନ୍ୟନ୍ନ କାଂକ୍ଷତି, ତଦ୍ବ୍ୟତିରିକ୍ତବସ୍ତ୍ୱନ୍ତରାଭାବାଦିତି ।। ୧୦।।

– ସଂଯମଶୀଳ[୨୫୧] ଯୋଗୀ ଦେଶ–କାଳ ଆଦି (ଅର୍ଥାତ୍ ଆକାର)ର ସୀମାରୁ ଉର୍ଦ୍ଧ୍ୱରେ ନିତ୍ୟ, ନିର୍ମଳ, ଆନନ୍ଦର ବୋଧ ପ୍ରାପ୍ତି ପରେ କିଛି ଅନ୍ୟ ବସ୍ତୁର ଇଚ୍ଛା କରେ ନାହିଁ ।। ୧୦।।

ଅଥ ଦୀକ୍ଷାପାଦୋଦକସ୍ଥଳଂ ସମାପୟତି –

**ଜ୍ଞାନାମୃତମପି ସ୍ୱଚ୍ଛଂ ଗୁରୁକା (ୟୈକ)[୨୫୨] ସମ୍ଭବମ୍ ।**

**ଆସ୍ୱାଦ୍ୟ ରମତେ ଯୋଗୀ ସଂସାରାମୟବର୍ଜିତଃ ।। ୧୧ ।।**

ଗୁରୁକୃପୋଦ୍ଭୂତଂ ନିର୍ମଳଂ ବ୍ରହ୍ମଜ୍ଞାନାମୃତମାସ୍ୱାଦ୍ୟ ଦୀକ୍ଷାପାଦୋଦକସମ୍ପନ୍ନଃ ଶିବଯୋଗୀ ଭବରୋଗମୁକ୍ତଃ ସନ୍ ସ୍ୱ ସ୍ୱରୂପେ କ୍ରୀଡ଼ତ ଇତ୍ୟର୍ଥଃ ।। ୧୧ ।।

– (କେବଳ) ଗୁରୁଙ୍କ କୃପାରୁ ପ୍ରାପ୍ତ ଅତ୍ୟନ୍ତ ନିର୍ମଳ ଜ୍ଞାନାମୃତର ଆସ୍ୱାଦନ କରି ଯୋଗୀ ସଂସାରରୂପୀ ଆମୟ ଅର୍ଥାତ୍ ରୋଗରୁ ରହିତ ହୋଇ ଆତ୍ମସ୍ୱରୂପରେ ରମଣ କରେ ।। ୧୧ ।।

### ଇତି ଦୀକ୍ଷାପାଦୋଦକସ୍ଥଳମ୍

## ଅଥ ଶିକ୍ଷାପାଦୋଦକସ୍ଥଳମ୍

ଅଥ – ମାୟାମୟ (ମାତ୍ର)ମିଦଂ ଦ୍ୱୈତମଦ୍ୱୈତଂ ପରମାର୍ଥତଃ ।
ବିକଳ୍ପୋ ବିନିବର୍ତ୍ତେତ କଳ୍ପିତୋ ଯଦି କେନଚିଦ୍ ।।
ଉପଦେଶାଦୟଂ ବାଦୋ ଜ୍ଞାତେ ଦ୍ୱୈତଂ ନ ବିଦ୍ୟତେ ।।

ଇତି ମୁଣ୍ଡକଶ୍ରୁତ୍ୟନୁସାରେଣ ତଦ୍ଦୀକ୍ଷାପାଦୋଦକସମ୍ପନ୍ନସ୍ୟ ଶିବଯୋଗିନଃ ଶିକ୍ଷାପାଦୋଦକଂ ସୂତ୍ରଦ୍ୱୟେନ କଥୟତି –

---

୨୫୧. ଧ୍ୟାନ, ଧାରଣା ଓ ସମାଧି – ଏକତ୍ର ନାମ ହେଉଛି ସଂଯମ ।
ତ୍ରୟମେକସଂଯମଃ (ପା. ଯୋ. ସୂ., ୩/୪)

୨୫୨. ମା. କା., ୩/୧୭

**ଗୁରୁଶିଷ୍ୟମୟଂ ଜ୍ଞାନଂ ଶିକ୍ଷା ଯୋଗିନମୀର୍ଯତେ ।**
**ତୟୋଃ ସମରସତ୍ୱଂ ହି ଶିକ୍ଷାପାଦୋଦକଂ ସ୍ମୃତମ୍ ।। ୧୨।।**

ଯା ଶିକ୍ଷା ଗୁରୁଶିଷ୍ୟମୟଂ ଜ୍ଞାନଂ ପୂର୍ବବତ୍ ପାଦୋଦକଶବ୍ଦବାଚ୍ୟଗୁରୁଶିଷ୍ୟୟୋସ୍ତନ୍ମୟୀଭୂତଜ୍ଞାନଂ ଯୋଗିନଂ ତଦ୍‌ଦୀକ୍ଷାପାଦୋଦକସମ୍ପନ୍ନଶିବଯୋଗିନ୍ ଈର୍ଯତେ ପ୍ରେରୟତି, ତୟୋସ୍ତଚ୍ଛିକ୍ଷାଜ୍ଞାନୟୋଃ ସମରସତ୍ୱଂ ହି ସାମରସ୍ୟଂ ହି ଶିକ୍ଷାପାଦୋଦକମିତି ସ୍ମୃତମିତ୍ୟର୍ଥଃ ।। ୧୨।।

– (ଶିକ୍ଷାପାଦୋଦକସ୍ଥଳ ବର୍ଣ୍ଣନ) – ଶିକ୍ଷା ଅର୍ଥାତ୍ ପୂର୍ବୋକ୍ତ ଜ୍ଞାନର ମନନ ଓ ଗୁରୁଶିଷ୍ୟମୟ ଅର୍ଥାତ୍ ଗୁରୁ ଏବଂ ଶିଷ୍ୟଙ୍କର ଏକରୂପତାର ଜ୍ଞାନ, ଯେଉଁଥିରୁ ଯୋଗୀକୁ ପ୍ରେରଣା ମିଳେ, ସେହି ଦୁଇଟି ଅର୍ଥାତ୍ ଶିକ୍ଷା ଏବଂ ଜ୍ଞାନର ସମରସତା ଶିକ୍ଷାପାଦୋଦକ କୁହାଯାଏ ।। ୧୨।।

ଅଥୈବଂ ରୂପଜ୍ଞାନାମୃତଂ କୈଃ କେନ କସ୍ମାଲ୍ଲଭ୍ୟତ ଇତ୍ୟତ୍ରାହ –

**ମଥିତାଚ୍ଛାସ୍ତ୍ରଜଳଧେର୍ଯୁକ୍ତିମନ୍ଥାନବୈଭବାତ୍[253] ।**
**ଗୁରୁଣା ଲଭ୍ୟତେ ବୋଧସୁଧା ସୁମନସାଂ ଗଣୈଃ ।। ୧୩।।**

ଯୁକ୍ତିମନ୍ଥାନବୈଭବାଦ୍ ଯୁକ୍ତିରୂପମନ୍ଥନଦଣ୍ଡସାମର୍ଥ୍ୟାଦ୍ ମଥିତାତ୍, ଶାସ୍ତ୍ରଜଲଧେର୍ନିଗମାଗମାତ୍ମକବୀରଶୈବଶାସ୍ତ୍ରସମୁଦ୍ରାଦ୍ ଗୁରୁଣା ଶିକ୍ଷାଚାର୍ଯ୍ୟେଣ ବୋଧସୁଧା ଶିବାଦ୍ୱୈତଜ୍ଞାନାମୃତଂ ସୁମନସାଂ ଗଣୈର୍ଦୀକ୍ଷାପାଦୋଦକସ୍ୱୀକାରେଣ ଶୁଦ୍ଧଚିତ୍ତାନାଂ ଶିବଯୋଗିନାଂ ସମୂହୈର୍ଲଭ୍ୟତେ ଯଥା ସୁରଗୁରୋଃ ସମୁଦ୍ରମଥନବିଚାରେଣ ସୁରାଣାଂ ସୁଧା ପ୍ରାପ୍ତା, ତଥେତ୍ୟର୍ଥଃ ।। ୧୩।।

– ତର୍କରୂପୀ ମନ୍ଥନଦଣ୍ଡରେ ଗୁରୁଦ୍ୱାରା ମଥିତ ନିଗମାଗମଶାସ୍ତ୍ରରୂପୀ ସମୁଦ୍ରରୁ ଉତ୍ପନ୍ନ ଶିବାଦ୍ୱୈତରୂପୀ ବୋଧସୁଧା ବିଦ୍ୱଜ୍ଜନଦ୍ୱାରା ପ୍ରାପ୍ତ ହୋଇଥାଏ ।। ୧୩।।

ଅଥ ତସ୍ୟ ଶିବଯୋଗିନୋ ଧର୍ମ ଧର୍ମିସ୍ୱରୂପଚିଦାନନ୍ଦୟୋସ୍ତତ୍ତ୍ୱଂ ସୂତ୍ରତ୍ରୟେଣ ବିଶେଷୟତି –

**ଜ୍ଞାନଚନ୍ଦ୍ରସମୁଦ୍‌ଭୂତାଂ ପରମାନନ୍ଦଚନ୍ଦ୍ରିକାମ୍ ।**
**ପଶ୍ୟନ୍ତି ପରମାକାଶେ ମୁକ୍ତିରାତ୍ରୌ ମହାଧିୟଃ ।। ୧୪।।**

ମହାଧିୟଃ ସୂକ୍ଷ୍ମଦୃଶଃ ଶିବଯୋଗିନୋ ମୁକ୍ତିରାତ୍ରୌ ପରମୁକ୍ତିଲକ୍ଷଣଗାଢ଼ାନ୍ଧକାରବତି ପରମାକାଶେ ପରବ୍ରହ୍ମଣଃ ସଦ୍ରୂପହୃଦୟାକାଶେ ଜ୍ଞାନଚନ୍ଦ୍ରସମୁଦ୍‌ଭୂତାଂ ଚିଚ୍ଚନ୍ଦ୍ରଭିତ୍ତୌ ଆବିର୍ଭୂତାଂ

---

୨୫୩. ତୁଳନୀୟ– ଘୃତମିବ ପୟସି ନିଗୂଢଂ ଭୂତେ ଭୂତେ ଚ ବସତି ବିଜ୍ଞାନମ୍ ।
ସତତଂ ମନ୍ଥୟିତବ୍ୟଂ ମନସା ମନ୍ଥାନଭୂତେନ ।। (ବ୍ର.ବି.ଉ., ୨୦)

ପରମାନନ୍ଦମୟୀଂ ଚନ୍ଦ୍ରିକାଂ ଜ୍ୟୋତ୍ସ୍ନାଂ ପଶ୍ୟନ୍ତି ସ୍ୱସ୍ୱରୂପତ୍ୱେନ ପରାମୃଶ୍ୟନ୍ତୀତ୍ୟର୍ଥଃ ।। ୧୪।।

– (ଚକୋର ରୂପୀ) ମହାବୁଦ୍ଧିମାନ୍ ଯୋଗୀ ମୁକ୍ତିର ରାତ୍ରିରେ ଜ୍ଞାନରୂପୀ ଚନ୍ଦ୍ରମାରୁ ଉତ୍ପନ୍ନ ପରମ ଆନନ୍ଦରୂପୀ ଚନ୍ଦ୍ରିକାର ପରମାକାଶ ଅର୍ଥାତ୍ ଚିଦାକାଶରେ ସାକ୍ଷାତ୍‌କାର କରେ ।। ୧୪।।

ଅଥୈବମପାରପରମାନନ୍ଦ ଚନ୍ଦ୍ରିକାୟାଂ ଦୃଷ୍ଟାୟା ମନ୍ୟଦ୍ ଦ୍ରଷ୍ଟବ୍ୟଂ ଶ୍ରୋତବ୍ୟଂ ଚ ନାସ୍ତୀତ୍ୟାହ –

**ଦୃଷ୍ଟେ ତସ୍ମିନ୍ ପରମାନନ୍ଦେ ଦେଶକାଳାଦିବର୍ଜିତେ ।**
**ଦ୍ରଷ୍ଟବ୍ୟଂ ବିଦ୍ୟତେ ନାନ୍ୟଚ୍ଛ୍ରୋତବ୍ୟଂ ଜ୍ଞେୟମେବ ବା ।। ୧୫।।**

ଦେଶକାଳାଦ୍ୟଖଣ୍ଡିତେ ତସ୍ମିନ୍ ପରାନନ୍ଦେ ଦୃଷ୍ଟେ ସତି, ଅନ୍ୟଦ୍ ଦ୍ରଷ୍ଟବ୍ୟଂ ଚକ୍ଷୁଷା ଦ୍ରଷ୍ଟବ୍ୟଂ ଶ୍ରୋତବ୍ୟଂ ଶ୍ରବଣେନ ଶ୍ରୋତବ୍ୟଂ ଜ୍ଞେୟମେବ ବା ଜ୍ଞାତୁଂ ଯୋଗ୍ୟଂ ବା ନ (କିମପି) ବିଦ୍ୟତେ, ସର୍ବସ୍ୟାପି ପଦାର୍ଥସ୍ୟ ତତ୍‌କାର୍ଯ୍ୟତ୍ୱେନ ତଦଭିନ୍ନତ୍ୱାଦିତ୍ୟର୍ଥଃ ।। ୧୫।।

ଅଥ ନାନ୍ୟଚ୍ଚ କାଂକ୍ଷତୀତ୍ୟାହ –

**ଆତ୍ମାନନ୍ଦେନ ତୃପ୍ତସ୍ୟ କା ସ୍ପୃହା ବିଷୟେ ସୁଖେ ।**
**ଗଙ୍ଗାଜଳେନ ତୃପ୍ତସ୍ୟ କୂପତୋୟେ କୁତୋ ରତିଃ ।। ୧୬।।**

ଆତ୍ମାନନ୍ଦେନ ନିଜାନନ୍ଦେନେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୬।।

– ଆତ୍ମାନନ୍ଦରେ ତୃପ୍ତ (ଶିବାଚାର୍ଯ୍ୟ)ର ବୈଷୟିକ ସୁଖରେ କି ଇଚ୍ଛା ହୋଇପାରେ ? (କାରଣ ବିଷୟସୁଖ ପରିଣାମରେ ଦୁଃଖଦାୟୀ ହୋଇଥାଏ ଏବଂ ଆତ୍ମାନନ୍ଦ ନିତ୍ୟ ନିରନ୍ତର ସୁଖ ଅଟେ ।) ଯିଏ ଗଙ୍ଗାଜଳରେ ତୃପ୍ତ ଅଟେ, ତା'ର କୂପଜଳରେ କିପରି ଆସକ୍ତି ହେବ ? ।। ୧୬।।

ନନୁ ନିଜାନନ୍ଦେନ ତୃପ୍ତସ୍ୟ ପରଯୋଗିନଃ ପରିମିତିରସ୍ତି ନ ବେତ୍ୟତ୍ରାହ

**ଯସ୍ମିନ୍ନପ୍ରାପ୍ତକଲ୍ଲୋଲେ ସୁଖସିନ୍ଧୌ ନିମଜ୍ଜତି ।**
**ସାମରସ୍ୟାନ୍ମହାଯୋଗୀ ତସ୍ୟ ସୀମା କୁତୋ ଭବେତ୍ ।। ୧୭।।**

ସ୍ପଷ୍ଟମ୍ ।। ୧୭।।

– (ରାଗ, ଦ୍ୱେଷ, କାମ, କ୍ରୋଧ ଆଦି) ଲହରିରୁ ରହିତ ଯେଉଁ ସୁଖ ସମୁଦ୍ରରେ ସାମରସ୍ୟ ସହିତ ମହାଯୋଗୀ ନିମଗ୍ନ ରହେ, ସେହି ସମୁଦ୍ରର ଅଥବା ସେହି ଆନନ୍ଦର ସୀମା କିପରି ହୋଇପାରିବ ? ଅର୍ଥାତ୍ ସେହି ଆନନ୍ଦକୁ ପରିଚ୍ଛିନ୍ନ କରିହେବ ନାହିଁ ।। ୧୭।।

ନନ୍ୱସ୍ୟ ଯୋଗିନଃ କଦାଚିତ୍ କୁତ୍ରଚିଦ୍ୱା ଭେଦଭ୍ରାନ୍ତିଃ ସମ୍ଭବତି କିମିତ୍ୟତ୍ର ବଦନ୍ ଶିକ୍ଷାପାଦୋଦକସ୍ଥଲଂ ସମାପୟତି –

**ଗୁରୁପ୍ରସାଦଚନ୍ଦ୍ରେଣ ନିଷ୍କଳଙ୍କେନ ଚାରୁଣା ।**
**ଯନ୍ମନଃ କୁମୁଦଂ ନିତ୍ୟବୋଧିତଂ ତସ୍ୟ କୋ ଭ୍ରମଃ ।। ୧୮ ।।**

ନିତ୍ୟବୋଧିତଂ ନିରନ୍ତରବିକସିତମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୮ ।।

– ନିଷ୍କଳଙ୍କ ଅତଏବ ସୁନ୍ଦର ଗୁରୁଙ୍କର ଅନୁଗ୍ରହରୂପୀ ଚନ୍ଦ୍ରଦ୍ୱାରା ଯେଉଁ ମନରୂପୀ ସମୁଦ୍ର ନିତ୍ୟ ପ୍ରକାଶିତ ରହେ, ସେହି ମନରେ ଭେଦର ଭ୍ରାନ୍ତି କିପରି ହୋଇପାରିବ? ।। ୧୮ ।।

ଇତି ଶିକ୍ଷାପାଦୋଦକସ୍ଥଲମ୍

## ଅଥ ଜ୍ଞାନପାଦୋଦକସ୍ଥଲମ୍

ଅଥ – ନାଧକ୍ଷଂ ନାପି ତଲ୍ଲିଙ୍ଗଂ ନ ଶବ୍ଦମପି ଶାଙ୍କରମ୍ ।
ଜ୍ଞାନମାଭାତି ବିମଲଂ ସର୍ବଥା ସର୍ବବସ୍ତୁଷୁ ।।

ଇତି ମୃଗେନ୍ଦ୍ରବଚନାନୁସାରେଣ ତଚ୍ଛିକ୍ଷାପାଦୋଦକସମ୍ପନ୍ନସ୍ୟ ସୁଲଭଂ ଜ୍ଞାନପାଦୋଦକଂ ପ୍ରକାଶୟତି –

**ତଦୈକ୍ୟସମ୍ପଦାନନ୍ଦଜ୍ଞାନଂ ଜ୍ଞାନଗୁରୁର୍ମତଃ ।**
**ତତ୍‌ସାମରସ୍ୟଂ ଶିଷ୍ୟସ୍ୟ ଜ୍ଞାନପାଦୋଦକଂ ବିଦୁଃ ।। ୧୯ ।।**

ଆନନ୍ଦଜ୍ଞାନମ୍ 'ବିଜ୍ଞାନମାନନ୍ଦଂ ବ୍ରହ୍ମ'[୨୫୪] ଇତି ଶ୍ରୁତି ପ୍ରସିଦ୍ଧପାଦୋଦକଶବ୍ଦବାଚ୍ୟାନନ୍ଦ-ଜ୍ଞାନମେବ ଜ୍ଞାନଗୁରୁରିତି ମତଃ ସମ୍ମତଃ ତଦୈକ୍ୟସମ୍ପଦା ତଦାନନ୍ଦଜ୍ଞାନୟୋରୈକ୍ୟସମ୍ପତ୍ତ୍ୟା ତତ୍‌ସାମରସ୍ୟଂ ତୟୋଃ ସମରସ(1) ଭାବଃ ଶିଷ୍ୟସ୍ୟ ଶିକ୍ଷାପାଦୋଦକସମ୍ପନ୍ନସ୍ୟ ଶିବଯୋଗିନୋ ଜ୍ଞାନପାଦୋଦକଂ ସଦ୍ ବିଦୁର୍ଜାନନ୍ତୀତ୍ୟର୍ଥଃ ।। ୧୯ ।।

– (ଜ୍ଞାନପାଦୋଦକସ୍ଥଳ ବର୍ଣ୍ଣନ) – (ବିଦ୍ୱାନ୍‌ମାନେ) ଆନନ୍ଦର ଜ୍ଞାନକୁ ଜ୍ଞାନଗୁରୁ ମାନିଥାନ୍ତି । ତାହାର ଐକ୍ୟର ସମ୍ପତ୍ତି ସହିତ ଶିଷ୍ୟର ସେହି ଜ୍ଞାନର ସାମରସ୍ୟ ଜ୍ଞାନପାଦୋଦକ କୁହାଯାଏ ।। ୧୯ ।।

ଅଥ ତଜ୍‌ଜ୍ଞାନଚନ୍ଦ୍ରପ୍ରକାଶଂ ସୂତ୍ରତ୍ରୟେଣୋପଦିଶତି –

**ଅବିଦ୍ୟାରାହୁନିର୍ମୁକ୍ତୋ ଜ୍ଞାନଚନ୍ଦ୍ରଃ ସୁନିର୍ମଳଃ ।**
**ପ୍ରକାଶତେ ପରାକାଶେ ପରାନନ୍ଦମହାଦ୍ୟୁତିଃ ।। ୨୦ ।।**

---

୨୫୪. ବୃ. ଉ., ୩/୯/୨୮

ଅଜ୍ଞାନଲକ୍ଷଣରାହୁସ୍ପର୍ଶରହିତୋଽତ୍ୟନ୍ତନିର୍ମଲୋ ମଲବାସନାଲେଶତୋଽପ୍ୟସଂସ୍ପୃଷ୍ଟ ଇତି ଯାବତ୍, ଜ୍ଞାନଚନ୍ଦ୍ରଃ ଶିବାଦ୍ୱୈତଜ୍ଞାନଚନ୍ଦ୍ରଃ ପରାନନ୍ଦମହାଦ୍ୟୁତିଃ ପରମାନନ୍ଦରୂପ-ମହାକଳାପ୍ରକାଶବାନ୍ ସନ୍ ପରାକାଶେ ସର୍ବୋତ୍କୃଷ୍ଟହୃଦୟାକାଶେ ପ୍ରକାଶତେ ରାଜତ ଇତ୍ୟର୍ଥଃ ।। ୨୦।।

– ଅବିଦ୍ୟାରୂପକ ରାହୁଠାରୁ ନିର୍ମୁକ୍ତ, ଅତଏବ ଅତ୍ୟନ୍ତ ସ୍ୱଚ୍ଛ ତଥା ପରାନନ୍ଦରୂପୀ ମହାଦ୍ୟୁତିବାଲା ଜ୍ଞାନଚନ୍ଦ୍ର ପରାକାଶ ଅର୍ଥାତ୍ ଚିଦାକାଶରେ ପ୍ରକାଶିତ ହୁଏ ।। ୨୦।।

ତର୍ହ୍ୟୟଂ ଜ୍ଞାନଚନ୍ଦ୍ରଃ କିଂ ବର୍ଧୟତୀତ୍ୟତ୍ରାହ –

**ଅଜ୍ଞାନମେଘନିର୍ମୁକ୍ତଃ ପୂର୍ଣ୍ଣଜ୍ଞାନସୁଧାକରଃ ।**
**ଆନନ୍ଦଜଲଧେର୍ବୃଦ୍ଧିମନୁପଶ୍ୟନ୍ ବିଭାସତେ ।। ୨୧।।**

ନାହଂ ଶିବ ଇତ୍ୟଜ୍ଞାନାବରଣନିର୍ମୁକ୍ତୋଽଖଣ୍ଡରସନ୍ୟାୟେନାହମିତି ବିଶ୍ୱତଃ ପରିପୂର୍ଣ୍ଣ-ଜ୍ଞାନଚନ୍ଦ୍ରଃ ସ୍ୱତନ୍ତ୍ରତାଲକ୍ଷଣନିଜାନନ୍ଦସମୁଦ୍ରସ୍ୟ ବୃଦ୍ଧିମନୁପଶ୍ୟନ୍ ବିଭାତୀତ୍ୟର୍ଥଃ ।। ୨୧।।

– ଅଜ୍ଞାନରୂପୀ ମେଘରୁ ନିର୍ମୁକ୍ତ ପୂର୍ଣ୍ଣଜ୍ଞାନରୂପୀ ଚନ୍ଦ୍ରମା ଆନନ୍ଦରୂପୀ ସମୁଦ୍ରର ବୃଦ୍ଧିକୁ ଦେଖି ବିଶେଷ ଭାବରେ ଚମକେ ।। ୨୧।।

ଅଥୈବଂ ବିଧଜ୍ଞାନ ଚନ୍ଦ୍ରୋଦୟେ କେ କିଂ ପଶ୍ୟନ୍ତୀତ୍ୟତ୍ରାହ –

**ଜ୍ଞାନଚନ୍ଦ୍ରୋଦୟେ ଜାତେ ଧ୍ୱସ୍ତମୋହତମୋଭରାଃ ।**
**ପଶ୍ୟନ୍ତି ପରମାଂ କାଷ୍ଠାଂ ଯୋଗିନଃ ସୁଖରୂପିଣୀମ୍ ।। ୨୨।।**

ଶିବଜ୍ଞାନଚନ୍ଦ୍ରୋଦୟେ ଜାତେ ସତି ବିନଷ୍ଟାଜ୍ଞାନାନ୍ଧକାରଭରାଃ ଶିବଯୋଗିନଃ ପରମାନନ୍ଦସ୍ୱରୂପିଣୀଂ ପରମାଂ କାଷ୍ଠାଂ ସ୍ୱସ୍ୱରୂପସ୍ଥିତିଂ ପଶ୍ୟନ୍ତୀତ୍ୟର୍ଥଃ ।। ୨୨।।

– ଜ୍ଞାନରୂପୀ ଚନ୍ଦ୍ରମାର ଉଦୟ ହେବା ପରେ ମୋହାନ୍ଧକାର ସମୂହର ନାଶ ହୋଇଥିବା ଯୋଗୀ ସୁଖରୂପୀ ପରାକାଷ୍ଠା (ଅର୍ଥାତ୍ ଆନନ୍ଦର ଅନ୍ତିମସୀମା)କୁ ଦେଖନ୍ତି ।। ୨୨।।

ଏବଂ ଚନ୍ଦ୍ରତ୍ୱେନ ବର୍ଣ୍ଣିତଂ ଶିବଜ୍ଞାନଂ ସୂର୍ଯ୍ୟତ୍ୱେନ ବର୍ଣ୍ଣୟନ୍ ବିଚିତ୍ରଂ ଦର୍ଶୟତି –

**ମାୟାରଜନ୍ୟା ବିରମେ ବୋଧସୂର୍ଯ୍ୟେ ପ୍ରକାଶିତେ ।**
**ନିରସ୍ତସର୍ବବ୍ୟାପାରଶ୍ଚିତ୍ରଂ ସ୍ୱପିତି ସଂଯମୀ ।। ୨୩।।**

ଲୋକେ ତାବନ୍ନିଶାବସାନେ ସୂର୍ଯ୍ୟୋଦୟେ ଜାତେ ସତି ସର୍ବୋଽପି ଲୋକୋ ବିନିଦ୍ରଃ ସନ୍ ସବ୍ୟାପାରୋ ଭବତି, ମାୟାରୂପନିଶାବସାନେ ଚିଦାଦିତ୍ୟେ ପ୍ରକାଶିତେ ସତି ସଂଯମୀ ଯୋଗିଜନୋ ନିରସ୍ତବ୍ୟାପାରଃ ସନ୍ ସ୍ୱପିତୀତି ଚିତ୍ରମ୍ । ଉକ୍ତୋଽୟମର୍ଥଃ ଶ୍ରୀଭଗବଦ୍‌ଗୀତାୟାମ୍ –

ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତି ସଂଯମୀ ।
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ[255] ।।

ଇତି ।। ୨୩।।

– ମାୟାରୂପୀ ରାତ୍ରିର ସମାପ୍ତି ଓ ଜ୍ଞାନରୂପୀ ସୂର୍ଯ୍ୟର ଉଦୟ ହେବା ପରେ ସଂଯମୀ ଅର୍ଥାତ୍ ଯୋଗୀ ସମ୍ପୂର୍ଣ୍ଣ ବ୍ୟବହାରରୁ ରହିତ ହୋଇ ଶୋଇଥିବା ଅର୍ଥାତ୍ ସୁଷୁପ୍ତି ଅବସ୍ଥାର ଜୀବ ପରି ପରମାନନ୍ଦର ଅନୁଭବ କରିଥା'ନ୍ତି – ଏହା ଆଶ୍ଚର୍ଯ୍ୟ ଅଟେ (କାରଣ ସାମାନ୍ୟ ଜନଙ୍କର ସମସ୍ତ ବ୍ୟବହାର ରାତ୍ରିରେ ନୁହେଁ, ଦିନରେ ହୋଇଥାଏ) ।। ୨୩।।

ଅଥ ତସ୍ୟ ପରାନନ୍ଦାବିର୍ଭାବସ୍ତଦେତ୍ୟତ୍ରାହ –

**ଅନାଦ୍ୟବିଦ୍ୟାବିଚ୍ଛିତ୍ତିବେଳାୟାଂ ପରଯୋଗିନଃ ।**
**ପ୍ରକାଶତେ ପରାନନ୍ଦଃ ପ୍ରପଞ୍ଚେନ ବିନା କୃତଃ ।। ୨୪।।**

ଅନାଦ୍ୟବିଦ୍ୟାବିଚ୍ଛିତ୍ତିବେଳାୟାଂ ମାୟାରଜନ୍ୟା ବିରମ ଏବ ପ୍ରପଞ୍ଚେନ ବିନା କୃତୋ ନିରୁପାଧିକପରମାନନ୍ଦାବିର୍ଭାବ ଇତ୍ୟର୍ଥଃ ।। ୨୪।।

– ଅନାଦି ଅବିଦ୍ୟାର ନିବୃତ୍ତି ସମୟରେ ଯୋଗୀକୁ ପ୍ରପଞ୍ଚରହିତ ପରାନନ୍ଦ[256] ପ୍ରତୀତ ହୋଇଥାଏ ।। ୨୪।।

ନନୁ ଶିବଯୋଗିନଃ ପ୍ରପଞ୍ଚ ଏବ ସନ୍ତୀତି କଥଂ ନିରୁପାଧିକାନନ୍ଦାବିର୍ଭାବ ଇତ୍ୟତ୍ରାହ –

**ନିତ୍ୟାନନ୍ଦେ ନିଜାକାରେ ବିମଳେ ପରତେଜସି ।**
**ବିଲୀନଚେତସାଂ ପୁଂସାଂ କୁତୋ ବିଶ୍ୱବିକଳ୍ପନା ।। ୨୫।।**

ନିତ୍ୟାନନ୍ଦସ୍ୱରୂପେ ବିମଳେ ନିର୍ମଳେ ନିଜାକାରେ ନିଜସ୍ୱରୂପବତି ପରତେଜସି ଚିଦାଦିତ୍ୟେ ବିଲୀନଚିତ୍ତାନାଂ ପୁଂସାଂ ସତ୍ପୁରୁଷାଣାଂ ଶିବଯୋଗିନାଂ ବିଶ୍ୱକଳ୍ପନା କୁତ ଇତ୍ୟର୍ଥଃ ।। ୨୫।।

– ନିତ୍ୟ ଆନନ୍ଦସ୍ୱରୂପ ନିର୍ମଳ ନିଜସ୍ୱରୂପ ପରତେଜରେ ଲୀନଚିତ୍ତ ମନୁଷ୍ୟଙ୍କ ନିମନ୍ତେ ବିଶ୍ୱର କଳ୍ପନା କେଉଁଠାରେ ? ।। ୨୫।।

---

୨୫୫. ଭ. ଗୀ., ୨/୬୯

୨୫୬. ଆନନ୍ଦ ଦୁଇ ପ୍ରକାରର ହୋଇଥାଏ – ସପ୍ରପଞ୍ଚାନନ୍ଦ ଓ ନିଷ୍ପ୍ରପଞ୍ଚାନନ୍ଦ । ସପ୍ରପଞ୍ଚାନନ୍ଦ ହେଉଛି ବିଷୟାନନ୍ଦର ଅପର ନାମ । ନିଷ୍ପ୍ରପଞ୍ଚାନନ୍ଦ ଅପର ଓ ପର ଭେଦରେ ଦୁଇ ପ୍ରକାରର । ଅପର ଆନନ୍ଦ ବ୍ରହ୍ମା, ବିଷ୍ଣୁ, ରୁଦ୍ର ଏବଂ ସଦାଶିବ ପଦରେ ସ୍ଥିତ ପ୍ରାଣିଙ୍କର ଅନୁଭବର ବିଷୟ ହୋଇଥାଏ । ଶକ୍ତି ଅଥବା ଶିବ ସ୍ୱରୂପର ସମାବେଶରୁ ପ୍ରାପ୍ତ ଆନନ୍ଦ ପରାନନ୍ଦ କୁହାଯାଏ ।

ଅଥ ଜ୍ଞାନପାଦୋଦକସମ୍ପନ୍ନସ୍ୟ ଶିବଯୋଗିନଃ ପୂର୍ଣ୍ଣାନନ୍ଦସ୍ୟ ବ୍ରହ୍ମାଦୀନାମ-ପ୍ୟାନନ୍ଦୋ ନ ସମ ଇତି ସୂତ୍ରଦ୍ୱୟେନ କଥୟତି –

**କୁତୋ ବ୍ରହ୍ମା କୁତୋ ବିଷ୍ଣୁଃ କୁତୋ ରୁଦ୍ରଃ କୁତୋ ରବିଃ ।**
**ସାକ୍ଷାତ୍କୃତପରାନନ୍ଦଜ୍ୟୋତିଷଃ ସାମ୍ୟକଳ୍ପନା ।। ୨୬ ।।**

ବ୍ରହ୍ମାଦୀନାମାନନ୍ଦସ୍ୟ ସାକ୍ଷାତ୍କୃତପରାନନ୍ଦଜ୍ୟୋତିଷଃ ଶିବଯୋଗିନ ଆନନ୍ଦାଂଶ ଲେଶତ୍ୱାଦିତି ଭାବଃ, 'ଅସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି' ଇତି ଶ୍ରୁତେଃ, ଯୋଗିଶିବୟୋରଭେଦାଦିତି ।। ୨୬ ।।

– କେଉଁଠି ବ୍ରହ୍ମା, କେଉଁଠି ବିଷ୍ଣୁ, କେଉଁଠି ରୁଦ୍ର ଓ କେଉଁଠି ସୂର୍ଯ୍ୟ । ଯିଏ ପରାନନ୍ଦ ତେଜର ସାକ୍ଷାତ୍କାର କରିଛି, ତା'ର ସମାନତାର କଳ୍ପନା (କାହା ସହିତ ମଧ୍ୟ ହୋଇ ପାରିବନି) ।। ୨୬ ।।

ଇମମର୍ଥମେବ ସ୍ଫୁଟୟତି –

**ଅପରୋକ୍ଷପରାନନ୍ଦବିଳାସସ୍ୟ ମହାତ୍ମନଃ ।**
**ବ୍ରହ୍ମବିଷ୍ଣ୍ୱାଦୟୋ ଦେବା ବିଶେଷାଃ ସୁଖବିନ୍ଦବଃ ।। ୨୭ ।।**

ମହାତ୍ମନୋ ଜ୍ଞାନପାଦୋଦକସମ୍ପନ୍ନସ୍ୟ ଶିବଯୋଗିନ ଇତ୍ୟର୍ଥଃ । ଶିଷ୍ଟଂ ସ୍ୱଷ୍ଟମ୍ ।। ୨୭ ।।

– ଯିଏ ଅପରୋକ୍ଷ ପରାନନ୍ଦର ବିଳାସରେ ପରିପୂର୍ଣ୍ଣ ଅଟେ, ଏପରି ମହାତ୍ମାଙ୍କର (ତୁଳନାରେ) ବ୍ରହ୍ମା, ବିଷ୍ଣୁ ଆଦି ଦେବଗଣ ସୁଖର ବିଶିଷ୍ଟ ବିନ୍ଦୁ ସଦୃଶ ଅଟନ୍ତି ।। ୨୭ ।।

ଅଥ ତଜ୍ଜ୍ଞାନାନନ୍ଦମେବ ବିଶିଷ୍ୟ ଜ୍ଞାନପାଦୋଦକସ୍ଥଳଂ ସମାପୟତି –

**ଯନ୍ମାତ୍ରାସହିତଂ ଲୋକେ ବାଞ୍ଛନ୍ତି ବିଷୟଂ ନରାଃ ।**
**ତଦପ୍ରମେୟମାନନ୍ଦଂ ପରମଂ କୋ ନ ବାଞ୍ଛତି ।। ୨୮ ।।**

ନରା ଜନା ଲୋକେ ଇହ ଲୋକେ ଯନ୍ମାତ୍ରା ସହିତଂ ଯସ୍ୟ ଚିଦାନନ୍ଦସ୍ୟାଂଶେନ ସହିତଂ ବିଷୟସୁଖଂ ବାଞ୍ଛନ୍ତି, ତଦପ୍ରମେୟଂ ତସ୍ୟ ବିଷୟଜ୍ଞାନସୁଖସ୍ୟ ଅପ୍ରମେୟମପରିମିତଂ ପରାନନ୍ଦଂ ବ୍ରହ୍ମାନନ୍ଦଂ କୋ ନ ବାଞ୍ଛତି, ସର୍ବେଽପି ବାଞ୍ଛନ୍ତୀତ୍ୟର୍ଥଃ ।। ୨୮ ।।

– ଏହି ସଂସାରରେ ମନୁଷ୍ୟ ଯାହାର ଗୋଟିଏ ମାତ୍ରା ଅର୍ଥାତ୍ ଗୋଟିଏ ଅଂଶ ମାତ୍ର ଆନନ୍ଦର କାମନା କରନ୍ତି, ସେହି ପରମ, ଅପ୍ରମେୟ ଆନନ୍ଦକୁ କିଏ ଚାହେଁ ନାହିଁ ।। ୨୮ ।।

ଇତି ଜ୍ଞାନପାଦୋଦକସ୍ଥଳମ୍

## ଅଥ କ୍ରିୟାନିଷ୍ପତ୍ତିସ୍ଥଳମ୍

ଅଥ – ଅଦ୍ୱୈତଭକ୍ତିଯୁକ୍ତସ୍ୟ ଯୋଗିନଃ ସକଳା କ୍ରିୟା ।
ଆସ୍ତେ ଦଗ୍ଧପଟନ୍ୟାୟାଦ୍ କ୍ରିୟାମାତ୍ରଂ ହି ନ କ୍ରିୟା ।।

ଇତି ବୀରତନ୍ତ୍ରବିଚାରାନୁସାରେଣ ଏଷ ଜ୍ଞାନପାଦୋଦକସମ୍ପନ୍ନ ଏବ ରଜ୍ଜୁସର୍ପନ୍ୟାୟେନ କଳ୍ପିତକ୍ରିୟାନିଷ୍ପତ୍ତିମାନିତି କ୍ରିୟାନିଷ୍ପତ୍ତିସ୍ଥଳଂ ବିଶଦୟତି –

**ପରକାୟେ କ୍ରିୟାପତ୍ତିଃ କଳ୍ପିତୈବ ପ୍ରକାଶତେ ।**
**ରଜ୍ଜୌ ଭୁଜଙ୍ଗବଦ୍ ଯସ୍ମାଦ୍ କ୍ରିୟାନିଷ୍ପତ୍ତିମାନୟମ୍ ।। ୨୯ ।।**

ପରବ୍ରହ୍ମକାୟେ ଜ୍ଞାନପାଦୋଦକସମ୍ପନ୍ନେ ଶିବଯୋଗିନି କ୍ରିୟାନିଷ୍ପତ୍ତି ରଜ୍ଜୌ ସର୍ପତ୍ୱବଦ୍ ଯସ୍ମାଦ୍ କାରଣାଦ୍ କଳ୍ପିତୈବ ପ୍ରକାଶତେ, ତସ୍ମାଦୟଂ ଜ୍ଞାନପାଦୋଦକସମ୍ପନ୍ନଃ ଶିବଯୋଗୀ କ୍ରିୟାନିଷ୍ପତ୍ତିମାନିତ୍ୟର୍ଥଃ ।। ୨୯ ।।

– (କ୍ରିୟାନିଷ୍ପତ୍ତିସ୍ଥଳ ବର୍ଣ୍ଣନ) – ଯେହେତୁ ପରକାୟ ଅର୍ଥାତ୍ ପରବ୍ରହ୍ମ ଶରୀରବାଲା ଶିବଯୋଗୀଙ୍କର ଭିତର କ୍ରିୟାର ସ୍ଥିତି କଳ୍ପିତ ହୋଇ ଦୃଷ୍ଟ ହୋଇଥାଏ, ତେଣୁ ଦଉଡ଼ିରେ ସାପର ଭୟ ପରି ଏହି କ୍ରିୟା କରିବାବାଲା ହୋଇଥାଏ । (ଅର୍ଥାତ୍ ଶିବଯୋଗୀର ଶରୀରରେ କ୍ରିୟାର ଦର୍ଶନ ଭ୍ରମମାତ୍ର ଅଟେ, ପରନ୍ତୁ ସେ ଶିବସ୍ୱରୂପ ହୋଇଥିବାରୁ 'ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତମ୍' ହୋଇଥାଏ ।) ।। ୨୯ ।।

ଅତ ଏବ ଜ୍ଞାନିନଃ କର୍ମଫଳଂ ନାସ୍ତୀତି ଷଡ୍‌ଭିଃ ସୂତ୍ରୈଃ ପ୍ରତିପାଦୟତି –

**ଜ୍ଞାନିନାଂ ଯାନି କର୍ମାଣି ତାନି ନୋ ଜନ୍ମହେତବଃ ।**
**ଅଗ୍ନିଦଗ୍ଧାନି ବୀଜାନି ଯଥା ନାଙ୍କୁରକାରଣମ୍ ।। ୩୦ ।।**

ଜ୍ଞାନିନାଂ କର୍ମବୀଜାନି ଜ୍ଞାନାଗ୍ନିଦଗ୍ଧାନୀତି ବହ୍ନିଦଗ୍ଧବୀଜବନ୍ନାଙ୍କୁରକାରଣମିତ୍ୟର୍ଥଃ ।। ୩୦ ।।

– ଜ୍ଞାନିମାନଙ୍କର ଯେଉଁ କର୍ମ ହୋଇଥାଏ, ତାହା ଜନ୍ମର କାରଣ ହୋଇ ନ ଥାଏ । ଯେପରି ନିଆଁରେ ଜଳି ଯାଇଥିବା ବୀଜ ଅଙ୍କୁରର କାରଣ ହୁଏ ନାହିଁ ।। ୩୦ ।।

ଅସ୍ମିନ୍ନର୍ଥେ – 'ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାଦ୍ କୁରୁତେଽର୍ଜୁନ'[୨୫୭] ଇତି ଭଗବଦୁକ୍ତିଃ ତସ୍ମାଦ୍ ଜ୍ଞାନିନଃ କୃତେନାପି କର୍ମଣା ପ୍ରୟୋଜନଂ ନାସ୍ତୀତ୍ୟାହ –

**କର୍ମଣା କିଂ କୃତେନାପି ଜ୍ଞାନିନୋ ନିରହଂକୃତେଃ ।**
**ବିକ୍ରିୟା ପ୍ରତିବିମ୍ବସ୍ଥା କିଂ କରୋତି ହିମଦ୍ୟୁତେଃ ।। ୩୧ ।।**

ଅହଂ କରୋମୀତି ମୂଳାହଙ୍କାରଶୂନ୍ୟସ୍ୟ ଶିବଜ୍ଞାନିନଃ କୃତେନାପି କର୍ମଣା

---

୨୫୭. ଭ. ଗୀ., ୪/୩୭

ପ୍ରୟୋଜନଂ ନାସ୍ତି, ଯଥା ପ୍ରତିବିମ୍ବସ୍ଥବିକାରୋ ବିମ୍ବରୂପସ୍ୟ ଚନ୍ଦ୍ରସ୍ୟ ନାସ୍ତି, ଜ୍ଞାନିକୋଦ୍ଧପ୍ରତିବିମ୍ବଚୈତନ୍ୟରୂପତ୍ୱାଦିତି ଭାବଃ ।। ୩୧ ।।

– ଅହଙ୍କାର ରହିତ ଜ୍ଞାନୀଦ୍ୱାରା କରାଯାଇଥିବା କର୍ମରେ କ'ଣ ହୁଏ ? (ଅର୍ଥାତ୍ ଜ୍ଞାନୀ ଉପରେ ସେ ସବୁ କର୍ମର ପ୍ରଭାବ ପଡ଼େ ନାହିଁ ।) ହିମଦ୍ୟୁତି ଅର୍ଥାତ୍ ଚନ୍ଦ୍ରମାର ପ୍ରତିବିମ୍ବରେ ଘଟିତ ହେଉଥିବା ବିକାରରୁ କ'ଣ ହୁଏ ? ।। ୩୧ ।।

ଅଥ ଜ୍ଞାନିନି ପ୍ରତୀୟମାନା କ୍ରିୟା କଳ୍ପିତେତ୍ୟତ୍ର ଦୃଷ୍ଟାନ୍ତମାହ –

**ଚନ୍ଦ୍ରସ୍ୟ ମେଘସମ୍ବନ୍ଧାଦ୍ ଯଥା ଗମନକଳ୍ପନା ।**
**ତଥା ଦେହସ୍ୟ ସମ୍ବନ୍ଧାଦାରୋପ୍ୟା ସ୍ୟାଦ୍ କ୍ରିୟାତ୍ମନଃ ।। ୩୨ ।।**

ସ୍ପଷ୍ଟମ୍ ।। ୩୨ ।।

– ଯେପରି ମେଘ ସହିତ ସମ୍ବନ୍ଧ ହେଲେ ଚନ୍ଦ୍ରମା ଚାଲିଲା ପରି ଜଣପଡ଼େ (ପ୍ରକୃତରେ କିନ୍ତୁ ମେଘ ହିଁ ଏପଟ ସେପଟ ଚାଲନ୍ତି, ଚନ୍ଦ୍ରମା ନୁହେଁ) ସେହିପରି ଦେହ ସହିତ ସମ୍ବନ୍ଧ ହେବାରୁ ଆତ୍ମା ଉପରେ କ୍ରିୟା ଆରୋପିତ ହୁଏ । (ଆତ୍ମା ତ 'ନିଷ୍କ୍ରିୟଂ ନିଷ୍କଳଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍' ଅଟେ ।) ।। ୩୨ ।।

ଅଥ କର୍ମ କୁର୍ବତୋଽପି ଜ୍ଞାନିନଃ କର୍ମଲେପୋ ନାସ୍ତୀତ୍ୟତ୍ର ଦୃଷ୍ଟାନ୍ତମାହ –

**ଜ୍ଞାନୀ କର୍ମନିରୂଢ଼ୋଽପି ଲିପ୍ୟତେ ନ କ୍ରିୟାଫଳୈଃ ।**
**ଘୃତାଦିନା ଯଥା ଜିହ୍ୱା ଭୋକ୍ତ୍ରୀ ଚାପି ନ ଲିପ୍ୟତେ ।। ୩୩ ।।**

ନିରୂଢ଼ସ୍ତତ୍ପର ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୩ ।।

– ଯେପରି (ଘୃତ ଆଦି) ଭୋଗ କରୁଥିବା ଜିହ୍ୱା ଘୃତ ଆଦିରେ ଉପଲିପ୍ତ ହୁଏ ନାହିଁ, ସେହିପରି ଜ୍ଞାନୀ କର୍ମ କରୁଥିଲେ ମଧ୍ୟ ତାହାର ଫଳରେ ଉପଲିପ୍ତ (ଅର୍ଥାତ୍ ପ୍ରଭାବିତ) ହୁଏ ନାହିଁ ।। ୩୩ ।।

ନନୁ ଜିହ୍ୱାୟା ଜଲତତ୍ତ୍ୱମୟତ୍ୱେନାଙ୍ଗୁଲ୍ୟାଦିବଦ୍ ଘୃତାଦିଲେପୋ ନାସ୍ତି, ଜ୍ଞାନିନଃ କସ୍ମାତ୍ କର୍ମଫଲଲେପୋ ନାସ୍ତୀତ୍ୟତ୍ର ଚାହ –

**ନିରସ୍ତୋପାଧିସମ୍ବନ୍ଧେ ଜୀବେ ଯା ଯା କ୍ରିୟାସ୍ଥିତିଃ ।**
**ସା ସା ପ୍ରତୀତିମାତ୍ରେଣ ନିଷ୍ଫଳା ଚାତ୍ର ଲୀୟତେ ।। ୩୪ ।।**

ନିବୃତ୍ତମୂଲାହଙ୍କାର ସମ୍ବନ୍ଧେ ଚିଦ୍ରୂପେ ଜୀବନ୍ମୁକ୍ତେ ଯା ଯା କ୍ରିୟାସ୍ଥିତିରସ୍ତି, ସା ସା ଦଗ୍ଧରଜ୍ଜୁନ୍ୟାୟେନ ପ୍ରତୀତି ମାତ୍ରେଣ ସ୍ଥିତ୍ୱା ନିଷ୍ଫଳା ସତୀ ସ୍ୱାତ୍ମନ୍ୟେବ ଲୀୟତ ଇତ୍ୟର୍ଥଃ । କର୍ମଲେପସ୍ୟାହଙ୍କାରୋ ମୂଳମିତି ଶିବଜ୍ଞାନିନସ୍ତଦଭାବାଦ୍ କର୍ମଲେପୋ ନାସ୍ତୀତି ଭାବଃ ।। ୩୪ ।।

– (ଅହଙ୍କାର ଏବଂ ମମକାର ରୂପ ଉପାଧିର ସମ୍ବନ୍ଧରୁ ରହିତ ଜୀବଠାରେ ଯେଉଁ ଯେଉଁ କ୍ରିୟା ହୁଏ, ସେହି ସେହି ପ୍ରତୀତି ମାତ୍ର ଅର୍ଥାତ୍ ନିଷ୍ଫଳ ହୋଇ ଏହି ଆତ୍ମାରେ ବିଲୀନ ହୋଇଯାଏ ।। ୩୪ ।।

ନନୁ ଜ୍ଞାନିନଃ କର୍ମଲେପୋ ଯଥା ନାସ୍ତୀତ୍ୟୁଚ୍ୟତେ, ତଥା ତସ୍ୟ କର୍ମୈବ ନାସ୍ତୀତି କୁତୋ ନୋଚ୍ୟତ ଇତ୍ୟତ୍ରାହ –

**ଗଚ୍ଛଂସ୍ତିଷ୍ଠନ୍ ସ୍ୱପନ୍ ବାପି ନ ନିଷ୍କର୍ମାସ୍ତି କଶ୍ଚନ ।**
**ସ୍ୱଭାବୋ ଦେହିନାଂ କର୍ମ ଜ୍ଞାନିନାଂ ତତ୍ତୁ ନିଷ୍ଫଳମ୍ ।। ୩୫ ।।**

ଅନେନ ରଜ୍ଜୁଭୁଜଙ୍ଗନ୍ୟାୟେନ ଶିବଯୋଗିନି କ୍ରିୟା ନିଷ୍ପତ୍ତିରାରୋପିତେତ୍ୟେତଦ୍-ପରାସ୍ତମ୍, କର୍ମ ଦେହିନାଂ ସ୍ୱଭାବ ଇତ୍ୟୁକ୍ତତ୍ୱାଦିତି ।। ୩୫ ।।

– ଚାଲୁ ଚାଲୁ, ବସୁ ବସୁ, ଶୋଇ ଶୋଇ କେହି ଶରୀରୀ କର୍ମ ରହିତ ହୁଏ ନାହିଁ । (ଅର୍ଥାତ୍ ସମସ୍ତେ ସବୁ ସମୟରେ କର୍ମ କରୁଥାନ୍ତି କାରଣ ଯିଏ ଶରୀର ଧାରଣ କରିଛି, କର୍ମ କରିବା ତା'ର ସ୍ୱଭାବ ଅଟେ । ପାର୍ଥକ୍ୟ ହେଉଛି ଅଜ୍ଞାନୀ ଜନଙ୍କର କର୍ମ କାଳାନ୍ତରରେ ଫଳ ଦେଇଥାଏ । କିନ୍ତୁ) ଜ୍ଞାନୀମାନଙ୍କର କର୍ମ ଫଳ ଦେଇ ନଥାଏ ।। ୩୫ ।।

ଅଥ କ୍ରିୟାନିଷ୍ପତ୍ତେଃ ସର୍ବଦେହସ୍ୱଭାବତ୍ୱେଽପି ଜ୍ଞାନିନଃ କର୍ମଲେପୋ ନାସ୍ତୀତି ବଦନ୍ କ୍ରିୟାନିଷ୍ପତ୍ତିସ୍ଥଳଂ ସମାପୟତି –

**ପରିପୂର୍ଣ୍ଣମହାନନ୍ଦଭାବିନଃ ଶୁଦ୍ଧ ଚେତସଃ ।**
**ନ ଭବେତ୍ କର୍ମକାର୍ମଣ୍ୟଂ ନାନାଭୋଗଫଳପ୍ରଦମ୍ ।। ୩୬ ।।**

ନିର୍ମଳାନ୍ତଃକରଣସ୍ୟ ନିତ୍ୟପରିପୂର୍ଣ୍ଣପରାନନ୍ଦାନୁଭାବିନଃ ଶିବଯୋଗିନୋ ନାନାବିଧ-ଭୋଗଫଳପ୍ରଦଂ ପୁଣ୍ୟପାପଲକ୍ଷଣକର୍ମପୀଡ଼ନଂ ନ ଭବେନ୍ନ ସ୍ୟାଦିତ୍ୟର୍ଥଃ ।। ୩୬ ।।

– ଯିଏ ଶୁଦ୍ଧ ଚିତ୍ତବାଲା ଅତଏବ ପରିପୂର୍ଣ୍ଣ ମହାନନ୍ଦର ଭାବନାରେ ଓତପ୍ରୋତ ଅଟନ୍ତି, ତାଙ୍କୁ ଅନେକ ଭୋଗରୂପୀ ଫଳ ଦେବାବାଲା କର୍ମ କାର୍ପଣ୍ୟ (ଅର୍ଥାତ୍ କର୍ମଜନ୍ୟ ଦୁଃଖ) ହୁଏ ନାହିଁ ।। ୩୬ ।।

**ଇତି କ୍ରିୟା ନିଷ୍ପତ୍ତିସ୍ଥଳମ୍**

**ଅଥ ଭାବନିଷ୍ପତ୍ତିସ୍ଥଳମ୍**

**ଅଥ –** **ଚିରେଣ ସାଧ୍ୟମାନସ୍ୟ ଭାବୁକୈର୍ବିଗତକ୍ରମୈଃ ।**
**ସ୍ଥିରଭାବୋ ହି ଭାବସ୍ୟ ଭାବନିଷ୍ପତ୍ତିରୁଚ୍ୟତେ ।।**

ଇତି କିରଣତନ୍ତ୍ରବଚନାନୁସାରେଣ ତତ୍ କ୍ରିୟାନିଷ୍ଠତ୍ତିମାନ୍ ଶିବଯୋଗୀ ଶୁକ୍ତିରଜତନ୍ୟାୟେନ ଭାବନିଷ୍ଠତ୍ତିମାନିତି ପ୍ରତିପାଦୟତି –

**ଭାବଃ ପ୍ରତୀୟମାନୋଽପି ପରକାୟେ ତୁ କଳ୍ପିତଃ ।**
**ଶୁକ୍ତୌ ରଜତବଦ୍ ଯସ୍ମାଦ୍ ଭାବନିଷ୍ଠତ୍ତିମାନୟମ୍ ।। ୩୭ ।।**

ପରକାୟେ କ୍ରିୟାନିଷ୍ଠତ୍ତିମତି ଚିତ୍କାୟେ ପ୍ରତୀୟମାନୋ ଭାବୋ ଯସ୍ମାତ୍ ଶୁକ୍ତିରଜତବତ୍ କଳ୍ପିତଃ, ତସ୍ମାଦୟଂ କ୍ରିୟାନିଷ୍ଠତ୍ତିମାନ୍ ଶିବଯୋଗୀ ଭାବନିଷ୍ଠତ୍ତିମାନିତ୍ୟର୍ଥଃ ।। ୩୭ ।।

– (ଭାବନିଷ୍ଠତ୍ତିସ୍ଥଳ ବର୍ଣ୍ଣନ) – ପରକାୟ ଅର୍ଥାତ୍ ପରବ୍ରହ୍ମଶରୀରଧାରୀ ଶିବଯୋଗୀର ଭିତରେ ପ୍ରତୀତ ହେଉଥିବା ଭାବ କଳ୍ପିତ ଅଟେ (ବାସ୍ତବିକ ନୁହେଁ)। ଏହା ଶୁକ୍ତିରେ ରଜତ ପରି (ଭ୍ରମାତ୍ମକ ଅଟେ)। ତେଣୁ ସେହି ଯୋଗୀ ଭାବ ନିଷ୍ଠତ୍ତିମାନ୍ ଅଟେ ।। ୩୭ ।।

ଅଥ ଜ୍ଞାନଯୋଗିନୋ ଭାବସମ୍ବନ୍ଧାଭାବେଽପି ସଚ୍ଚିଦାନନ୍ଦାକାରେ ପରଶିବେ ଭାବଃ ସ୍ଥାପନୀୟ ଇତି ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

**ଭାବେନ ନାସ୍ତି ସମ୍ବନ୍ଧଃ କେବଲଜ୍ଞାନଯୋଗିନଃ ।**
**ତଥାପି ଭାବଂ କୁର୍ବୀତ ଶିବେ ସଂସାରମୋଚକେ ।। ୩୮ ।।**

ସ୍ପଷ୍ଟମ୍ ।। ୩୮ ।।

– ଯଦ୍ୟପି କେବଳ ଜ୍ଞାନଯୋଗୀର ଭାବ ସହିତ କିଛି ସମ୍ବନ୍ଧ ନ ଥାଏ, ତଥାପି ଯୋଗୀ ସଂସାରବନ୍ଧନରୁ ମୁକ୍ତି ଦେଉଥିବା ଶିବଙ୍କ ପ୍ରତି ଭାବନା କରିବା ଉଚିତ୍ ।। ୩୮ ।।

ନନୁ ପରିପୂର୍ଣ୍ଣଜ୍ଞାନିନଃ କିଂ ଭାବେନେତ୍ୟତ୍ରାହ –

**ପରିପୂର୍ଣ୍ଣପ୍ରବୋଧେଽପି ଭାବଂ ଶମ୍ଭୌ ନ ବର୍ଜୟେତ୍ ।**
**ଭାବୋ ହି ନିହିତସ୍ତସ୍ମିନ୍ ଭବସାଗରତାରକଃ ।। ୩୯ ।।**

ପରିପୂର୍ଣ୍ଣସଦାନନ୍ଦବୋଧସ୍ୱରୂପେ ଶମ୍ଭୌ ଭାବଂ ନ ବର୍ଜୟେତ୍ । କୁତଃ ? ଇତ୍ୟତ୍ରାହ ତସ୍ମିନ୍ ଶମ୍ଭୌ ସ୍ଥାପିତୋ ଭାବଃ ସଂସାର ସାଗରତାରକ ଇତି ହି ପ୍ରସିଦ୍ଧ ଇତ୍ୟର୍ଥଃ ।। ୩୯ ।।

– ପ୍ରବୋଧ ପରିପୂର୍ଣ୍ଣ ହେବା ପରେ ମଧ୍ୟ ଶିବଙ୍କ ପ୍ରତି ସେବ୍ୟ–ସେବକ ଭାବ ତ୍ୟାଗ କରିବା ଉଚିତ୍ ନୁହେଁ କାରଣ ଭାବସାଗରରୁ ପାର କରିବା ଭାବ ସେହି ଶିବଙ୍କଠାରେ ନିହିତ ଥାଏ ।। ୩୯ ।।

ଅନେନାସ୍ୟ ଭାବସ୍ୟାର୍ଥକ୍ରିୟାକାରିତ୍ୱେନ ଶୁକ୍ତିରଜତବୈଲକ୍ଷଣ୍ୟଂ ସୂଚିତମ୍ । ତସ୍ମାଚ୍ଛମ୍ଭୌ ଭାବଃ ସ୍ଥିରୀକରଣୀୟ ଇତି ଭାବଃ । ତର୍ହି ସ ଭାବୋ ନିତ୍ୟଃ କିମିତ୍ୟତ୍ରାହ –

**ନିବର୍ତ୍ତ୍ୟ ଜନ୍ମଜଂ ଦୁଃଖଂ ଭାବଃ ଶୈବୋ ନିବର୍ତ୍ତତେ ।**
**ଯଥା କାଷ୍ଠାଦିକଂ ଦଗ୍ଧ୍ୱା ସ୍ୱୟଂ ଶାମ୍ୟତି ପାବକଃ ।। ୪୦।।**

ଜନ୍ମଜଂ ଦୁଃଖଂ ଭବରୋଗମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ । ଅନେନ ନିତ୍ୟମୁକ୍ତୋ ଭବତି ।। ୪୦।।

– (ଜନ୍ମଜନ୍ୟ ଦୁଃଖର ନିବୃତ୍ତି ନିମନ୍ତେ ଶୈବଭାବର ଆବଶ୍ୟକତା ଥାଏ।) ଜନ୍ମ ହେତୁକ ଦୁଃଖର ନିବାରଣ କରିବା ପରେ ଶୈବଭାବ ସେହିପରି ଶାନ୍ତ ହୋଇଯାଏ ଯେପରି କାଷ୍ଠ ଆଦିକୁ ଜଳାଇବା ପରେ ଅଗ୍ନି ସ୍ୱୟଂ ଶାନ୍ତ ହୋଇଯାଏ ।। ୪୦।।

ଅଥ ଭବରୋଗନିବୃତ୍ତ୍ୟନନ୍ତରଂ ଭାବସ୍ୟ ପ୍ରୟୋଜନଂ ନାସ୍ତି ବେତ୍ୟତ୍ରାହ –

**ପ୍ରକାଶିତେ ଶିବାନନ୍ଦେ ତଦ୍ଭାବୈଃ କିଂ ପ୍ରୟୋଜନମ୍ ।**
**ସିଦ୍ଧେ ସାଧ୍ୟେ ଚିରେଣାପି ସାଧନୈଃ କିଂ ପ୍ରୟୋଜନମ୍ ।। ୪୧।।**

ଭବରୋଗ ନିବୃତ୍ତ୍ୟନନ୍ତରଂ ନିତ୍ୟାନନ୍ଦେ ପ୍ରକାଶିତେ ସତି ଶିବଭାବୈଃ ପ୍ରୟୋଜନଂ ନାସ୍ତି । ତତ୍ର ଦୃଷ୍ଟାନ୍ତଃ – ବହୁକାଳେ ସାଧ୍ୟେ ସିଦ୍ଧେ ସତି ସାଧନୈର୍ଯଥା ପ୍ରୟୋଜନଂ ନାସ୍ତି, ତଥେତ୍ୟର୍ଥଃ ।। ୪୧ ।।

– ଶିବାନନ୍ଦ ପ୍ରକଟ ହେବା ପରେ ତାହାର ଭାବ (ଅର୍ଥାତ୍ ଶିବଙ୍କ ପ୍ରତି ଆରାଧ୍ୟ-ଆରାଧକ ଆଦି ଭାବ)ର କ'ଣ ପ୍ରୟୋଜନ ? (ତାହା ଅନାବଶ୍ୟକ) ବହୁତ ବିଳମ୍ବରେ ସାଧ୍ୟ ସିଦ୍ଧ ହେବା ପରେ ସାଧନର କ'ଣ ପ୍ରୟୋଜନ ? ।। ୪୧ ।।

ତର୍ହି ଭାବଲୟାନନ୍ତରଂ ଯୋଗୀ କଥଂ ଭାସତ ଇତ୍ୟତ୍ରାହ –

**ଏକୀକୃତେ ଶିବେ ଭାବେ ଜ୍ଞାନେନ ସହ ସଂଯମୀ ।**
**ବିସ୍ମିତାତ୍ମସମାବେଶଃ ଶିବଭାବେ ବିଭାସତେ ।। ୪୨ ।।**

କାର୍ଯ୍ୟନାଶଃ କାରଣାତ୍ମନାଶସ୍ଥିତିରେବେତି ଭାବେ ବୃତ୍ତିଜ୍ଞାନେନ ସହ ଶିବୈକଲୋଲୀଭୂତେ ସତି ଭାବନିଷ୍ପତ୍ତିମାନ୍ ଶିବଯୋଗୀ ଆଶ୍ଚର୍ଯ୍ୟସଙ୍କଳିତସ୍ୱସ୍ୱରୂପ-ସମାବେଶବାନ୍ ସନ୍ ଶିବୋଽହମିତି ଭାବେ ପ୍ରକାଶତ ଇତ୍ୟର୍ଥଃ ।। ୪୨ ।।

– ଜ୍ଞାନ ସହିତ ଶିବଭାବନା ଏକ ହେବା ପରେ ନିଜର ଶିବସମାବେଶରେ ଆଶ୍ଚର୍ଯ୍ୟ ଚକିତ ସଂଯମୀ ଶିବରୂପରେ ବିଶେଷ ଭାବରେ ପ୍ରକାଶିତ ହୋଇଥାଏ ।। ୪୨।।

ଅଥ ଭାବଜ୍ଞାନୟୋରଭେଦମୁପପାଦ୍ୟ ଭାବନିଷ୍ପତ୍ତିଫଳଂ ସମାପୟତି –

**ନ ଭାବେନ ବିନା ଜ୍ଞାନଂ ନ ଭାବୋ ଜ୍ଞାନମନ୍ତରା ।**
**ମୋକ୍ଷାୟ କାରଣଂ ପ୍ରୋକ୍ତଂ ତସ୍ମାଦୁଭୟମାଶ୍ରୟେତ୍ ।। ୪୩।।**

ଭାବେନ ବିନା ବୃତ୍ତିଜ୍ଞାନଂ ନାସ୍ତି, ତେନ (ବୃତ୍ତିଜ୍ଞାନେନ) ବିନା ଭାବୋ

ନାସ୍ତୀତି ଭାବଜ୍ଞାନୟୋରନ୍ୟୋନ୍ୟକାରଣତ୍ୱଂ ପ୍ରୋକ୍ତମ୍ । ତସ୍ମାନ୍ମୋକ୍ଷାୟ ତଦୁଭୟମାଶ୍ରୟେଦିତି ।। ୪୩ ।।

– ଭାବ ବିନା ଜ୍ଞାନ ହୁଏ ନାହିଁ ଏବଂ ଜ୍ଞାନ ବିନା ଭାବ ହୁଏ ନାହିଁ । ତେଣୁ ମୋକ୍ଷର କାରଣଭୂତ ଉଭୟଙ୍କର ଆଶ୍ରୟଣ କରିବା ଉଚିତ୍[୨୫୮] ।। ୪୩ ।।

## ଇତି ଭାବନିଷ୍ପତ୍ତିସ୍ଥଳମ୍

## ଅଥ ଜ୍ଞାନନିଷ୍ପତ୍ତିସ୍ଥଳମ୍

ଅଥ – ଯା ମନଃ ପରେ ତତ୍ତ୍ୱେ ଲବ୍ଧଲକ୍ଷ୍ୟଂ ବିଲୀୟତେ ।
ତଥା ହ୍ୟଶେଷବିଜ୍ଞାନଂ ବିନାଶମୁପଗଚ୍ଛତି ।।

ଇତି ନିଶ୍ୱାସକାରିକାନୁସାରେଣ ସୋଽୟଂ ଭାବନିଷ୍ପନ୍ନ ଏବ ସ୍ୱପ୍ନବଦ୍ ଜ୍ଞାନନିଷ୍ପତ୍ତିମାନିତି କଥୟତି –

**ଜ୍ଞାନସ୍ୟ ବ୍ୟବହାରୋଽପି ଜ୍ଞେୟାଭାବାଦ୍ ସ୍ୱଭାବତଃ ।**
**ସ୍ୱପ୍ନବଜ୍ଜ୍ଞାନନିଷ୍ପତ୍ତ୍ୟା ଜ୍ଞାନନିଷ୍ପନ୍ନ ଇତ୍ୟସୌ ।। ୪୪ ।।**

ବ୍ୟବହାରେ ବିଶ୍ୱବ୍ୟାବହାରିକଜ୍ଞାନସ୍ୟ ସ୍ୱଭାବତଃ ସ୍ଥିରତ୍ୱେନ ଜ୍ଞେୟାଭାବାଦ୍ ବିଷୟାଭାବାଦ୍ ଅସୌ ଭାବନିଷ୍ପତ୍ତିମାନ୍ ଶିବଯୋଗୀ ଅସ୍ଥିରସ୍ୱପ୍ନସଦୃଶଜ୍ଞାନନିଷ୍ପତ୍ତ୍ୟା ଜ୍ଞାନନିଷ୍ପତ୍ତିମାନିତି ପ୍ରୋଚ୍ୟତ ଇତ୍ୟର୍ଥଃ ।। ୪୪ ।।

– (ଜ୍ଞାନନିଷ୍ପତ୍ତିସ୍ଥଳ ବର୍ଣ୍ଣନ) – (ଶିବଜ୍ଞାନରେ ସମ୍ପନ୍ନ ଶିବଯୋଗୀର) ବ୍ୟବହାରରେ ମଧ୍ୟ ତା'ର ଜ୍ଞାନର ବିଷୟ ସ୍ୱଭାବତଃ କିଛି ହୁଏ ନାହିଁ । (କାରଣ ଶିବ ବ୍ୟତୀତ ତାକୁ କିଛି ପ୍ରତୀତ ହୁଏ ନାହିଁ ।) ତେଣୁ ତା'ର ଜ୍ଞାନର ନିଷ୍ପତ୍ତି ସ୍ୱପ୍ନପରି ହୋଇଥାଏ । ଏପରି ଶିବଯୋଗୀ ଜ୍ଞାନନିଷ୍ପନ୍ନ କୁହାଯାଏ ।। ୪୪ ।।

---

୨୫୮. ଯଦ୍ୟପି ଜ୍ଞାନ ଓ ଭାବ ଅନ୍ୟୋନ୍ୟାଶ୍ରିତ ଅଟନ୍ତି, ତଥାପି ଜ୍ଞାନର ପ୍ରାପ୍ତି ନିମନ୍ତେ ସର୍ବପ୍ରଥମ ଭାବର ଆବଶ୍ୟକତା ହୋଇଥାଏ । ଏହି ଭାବ ପରକୋଟିର ନ ହୋଇ ଅବର କୋଟିର ହୋଇଥାଏ । ଅବରକୋଟିର ଭାବଦ୍ୱାରା ଜ୍ଞାନ ଓ ଜ୍ଞାନଦ୍ୱାରା ପରକୋଟି ଭାବ ହୋଇଥାଏ । ଶିବସାମରସ୍ୟ ହୋଇଥାଏ । ଏହାପରେ ଯୋଗୀ ଉପରେ ନିର୍ଭର କରେ କି ସେ ପୁନଃ ଆନନ୍ଦର ଅନୁଭବ କରିବା ନିମନ୍ତେ ପରଭାବ ସ୍ତରରେ ଅବରୋହଣ କରିବ ଅଥବା ନୁହେଁ । କାରଣ ଭଗବଦ୍‌ଭକ୍ତି ମୋକ୍ଷରୁ ମଧ୍ୟ ଅଧିକ, ଏହା କିଛି ସିଦ୍ଧ ମହାତ୍ମାଙ୍କର ସିଦ୍ଧାନ୍ତ । ତେଣୁ ବଳୀ ଆଦି ରାଜାମାନେ ଭଗବାନଙ୍କଠାରୁ ଜନ୍ମ ଜନ୍ମ ରେ ଭକ୍ତିର ଯାଚନା କରିଥିଲେ ।

ଅଥ ତଦେବୋପପାଦୟତି –

**ସ୍ୱପ୍ନଜାତଂ ଯଥା ଜ୍ଞାନଂ ସହ ସ୍ୱାର୍ଥୈର୍ନିବର୍ତ୍ତତେ ।**
**ତଥାତ୍ମନି ପ୍ରକାଶେ ତୁ ଜ୍ଞାନଂ ଜ୍ଞେୟଂ ନିବର୍ତ୍ତତେ ।। ୪୫।।**

ସ୍ୱପ୍ନୋତ୍ପନ୍ନଂ ଜ୍ଞାନଂ ଯଥା ସ୍ୱବିଷୟୈଃ ସହ ନିବର୍ତ୍ତତେ, ତଥା ସ୍ୱ ସ୍ୱରୂପେ ପ୍ରକାଶିତେ ସତି ଜାଗ୍ରଦ୍ଦଶାଜ୍ଞାନେନ ସହ ଜ୍ଞେୟଂ ବିଶ୍ୱଂ ନିବର୍ତ୍ତତ ଇତ୍ୟର୍ଥଃ ।। ୪୫।।

– ଯେପରି ସ୍ୱପ୍ନରେ ଉତ୍ପନ୍ନ ଜ୍ଞାନ ନିଜର ଘଟ ପଟ ଆଦି ବିଷୟ ସହିତ ନଷ୍ଟ ହୋଇଯାଏ, ସେହିପରି ଆତ୍ମସ୍ୱରୂପର ପ୍ରକାଶ ହେବା ପରେ ଜ୍ଞାନ ଓ ଜ୍ଞେୟ ଉଭୟ ନିବୃତ୍ତ ହୋଇଯାଆନ୍ତି ।। ୪୫।।

ନନୁ ସ୍ୱରୂପେ ପ୍ରକାଶିତେ ଜ୍ଞେୟଂ କସ୍ମାନ୍ନିବର୍ତ୍ତତ ଇତ୍ୟତ୍ରାହ –

**ପରିପୂର୍ଣ୍ଣେ ମହାନନ୍ଦେ ପରମାକାଶଲକ୍ଷଣେ ।**
**ଶିବେ ବିଲୀନଚିତ୍ତସ୍ୟ କୁତୋ ଜ୍ଞେୟାନ୍ତରେ କଥା ।। ୪୬।।**

ସ୍ପଷ୍ଟମ୍ ।। ୪୬।।

– ପରିପୂର୍ଣ୍ଣ ମହାନନ୍ଦ ସ୍ୱରୂପ ଅତ ଏବ ପରମାକାଶ ଲକ୍ଷଣଯୁକ୍ତ ଶିବଙ୍କଠାରେ ବିଲୀନ ଚିତ୍ତବାଲା ଶିବଯୋଗୀର ଅନ୍ୟ ଜ୍ଞେୟ ବିଷୟରେ କ'ଣ ଚର୍ଚ୍ଚା ? (ଅର୍ଥାତ୍ ତାହା ପାଇଁ ଅନ୍ୟ ଜ୍ଞେୟ ନ ଥାଏ ।) ।। ୪୬।।

ନନୁ ଜ୍ଞାନନିଷ୍ପତ୍ତିସମ୍ପନ୍ନସ୍ୟ ଶିବଯୋଗିନୋ ଜ୍ଞାନଂ କୀଦୃଶମିତ୍ୟତ୍ରାହ –

**ଅଖଣ୍ଡାନନ୍ଦସଂବିତ୍ତିସ୍ୱରୂପଂ ବ୍ରହ୍ମ କେବଲମ୍ ।**
**ମିଥ୍ୟା ତଦନ୍ୟଦିତ୍ୟେଷା ସ୍ଥିତିର୍ଜ୍ଞାନମିହୋଚ୍ୟତେ ।। ୪୭।।**

ବ୍ରହ୍ମ ପରଶିବାଖ୍ୟଂ ବ୍ରହ୍ମ କେବଲାଖଣ୍ଡାନନ୍ଦସଂବିତ୍ ସ୍ୱରୂପମ୍ । ତଦନ୍ୟଦ୍ ତଦ୍ ବ୍ୟତିରିକ୍ତଂ ମିଥ୍ୟୈବେଦମିତି ଭାସମାନଂ ଜଗଜ୍ଜାଲଂ ମୃଷେତ୍ୟେଷା ସ୍ଥିତିର୍ଜ୍ଞାନମିହୋଚ୍ୟତେ ଜ୍ଞାନନିଷ୍ପତ୍ତିସ୍ଥଲଂ କଥ୍ୟତ ଇତ୍ୟର୍ଥଃ ।। ୪୭।।

– ଅଖଣ୍ଡ ଆନନ୍ଦ ଓ (ଅଖଣ୍ଡ) ଜ୍ଞାନ ସ୍ୱରୂପ ବ୍ରହ୍ମ ହିଁ କେବଳ (ସତ୍ୟ ଅଟନ୍ତି) । ଅନ୍ୟ ସବୁ କିଛି ମିଥ୍ୟା ଅଟେ – ଏଂପରି ସ୍ଥିତି ଏହି ସଂସାର ଅଥବା ଏହି ବିଷୟରେ ଜ୍ଞାନ କୁହାଯାଏ ।। ୪୭।।

ଅଥ ବିଶେଷଲକ୍ଷଣଂ ଦର୍ଶୟତି –

**ସତ୍ତାତ୍ମନାଭନୁବୃତ୍ତଂ ଯଦ୍ ଘଟାଦିଷୁ ପରଂ ହି ତଦ୍ ।**
**ବ୍ୟାବର୍ତ୍ତମାନା ମିଥ୍ୟେତି ସ୍ଥିତିର୍ଜ୍ଞାନମିହୋଚ୍ୟତେ ।। ୪୮।।**

'ସଦେବ ସୋମ୍ୟେଦମଗ୍ର ଆସୀତ୍'[259] ଇତି ଶ୍ରୁତେଃ ସତ୍ତାତ୍ମନା ସଦ୍ରୂପବ୍ରହ୍ମଣା ପରମ୍, ଅବ୍ୟୟତ୍ୱାଦ୍ ପରେଷୁ ଘଟାଦିଷୁ ଅନୁବୃତ୍ତମନୁଗତଂ ଯନ୍ନାମରୂପମସ୍ତି, ତଦ୍ ମିଥ୍ୟେତି ବ୍ୟାବର୍ତ୍ତମାନା ନିବାର୍ଯ୍ୟମାଣା ସ୍ଥିତିରିହ ଜ୍ଞାନମିତ୍ୟୁଚ୍ୟତ ଇତ୍ୟର୍ଥଃ ।। ୪୮ ।।

– ଯିଏ ଘଟ ଆଦିରେ ସତ୍ତା ଭାବରେ ଅନୁବୃତ୍ତ (ଅର୍ଥାତ୍ ବ୍ୟାପ୍ତ ଅଟେ – 'ଘଟୋଽସ୍ତି' 'ପଟୋଽସ୍ତି' 'ମଠୋଽସ୍ତି' 'ସର୍ବତ୍ର ଅସ୍ତି' ଭାବେ ଭାସିତ ହୁଏ ।)

ତାହା ପରତତ୍ତ୍ୱ ଅର୍ଥାତ୍ ଶିବ ଅଟେ । ଯାହା ବ୍ୟାବର୍ତ୍ତମାନ ଅଟେ (ଅର୍ଥାତ୍ ଗୋଟିଏ ରହିଲେ, ଅନ୍ୟ ରହେ ନାହିଁ, ଯେପରି ଘଟ ରହିଲେ ପଟ ରହେ ନାହିଁ) ତାହା ମିଥ୍ୟା ଅଟେ । ଏପରି ସ୍ଥିତିକୁ ଜ୍ଞାନ କୁହାଯାଏ ।। ୪୮ ।।

ନନ୍ୱେବଂ ଚେଦାବିଦ୍ୟକବ୍ରହ୍ମାଦ୍ୱୈତାପେକ୍ଷୟାସ୍ୟ ସ୍ୱତନ୍ତ୍ରଶିବାଦ୍ୱୈତସ୍ୟ କୋ ବିଶେଷ ଇତ୍ୟତ୍ରାହ –

**ଅକାରଣମକାର୍ଯ୍ୟଂ ଯଦଶେଷୋପାଧିବର୍ଜିତମ୍ ।**
**ତଦ୍ ବ୍ରହ୍ମ ତଦହଂ ଚେତି ନିଷ୍ଠା ଜ୍ଞାନମୁଦୀର୍ଯ୍ୟତେ ।। ୪୯ ।।**

ଯଦ୍ ବସ୍ତୁ 'ନ ତସ୍ୟ କାର୍ଯ୍ୟଂ କରଣଂ ଚ ବିଦ୍ୟତେ ନ ତତ୍ ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ'[260] ଇତି ଶ୍ୱେତାଶ୍ୱତରଶ୍ରୁତେଃ କାର୍ଯ୍ୟକାରଣଶୂନ୍ୟଂ ସଦଶେଷୋପାଧିବର୍ଜିତମ୍, ତଦ୍ ବ୍ରହ୍ମ ତଦ୍ ତଦ୍ ବ୍ରହ୍ମୈବ । ଅହଂ ଚ ଚିରାଦିଦମିତି ଭାସମାନଂ ପାଞ୍ଚଭୌତିକମ୍ ଏବଂ ଚରାଚରମୟଂ ବିଶ୍ୱମିତି ନିଷ୍ଠାଦାର୍ଢ୍ୟଂ ଜ୍ଞାନମିତ୍ୟୁତ୍କୃଷ୍ଟତ୍ୱେନୋଚ୍ୟତ ଇତ୍ୟର୍ଥଃ ।। ୪୯ ।।

– ଯାହା କାରଣ ନୁହେଁ କି କାର୍ଯ୍ୟ ନୁହେଁ ତଥା ଯାହା ସମସ୍ତ ଉପାଧିରୁ ରହିତ ଅଟେ, ତାହା ବ୍ରହ୍ମ ଅଟେ ଏବଂ ମୁଁ ମଧ୍ୟ ତାହା ଅଟେ – ଏପରି ଦୃଢ଼ ଧାରଣା ଜ୍ଞାନ କୁହାଯାଏ ।। ୪୯ ।।

ଅଥୈବଂ ଚିଦ୍ରୂପବ୍ରହ୍ମଣି ସାମରସ୍ୟଜ୍ଞାନନିଷ୍ଠତ୍ତମତଃ ଶିବଯୋଗିନଃ ସ୍ୱାତିରେକେଣ ତ୍ରିପୁଟୀମୟପ୍ରପଞ୍ଚବ୍ୟବହାରୋ ନାସ୍ତୀତି ବଦନ୍ ଜ୍ଞାନନିଷ୍ଠତ୍ତସ୍ଥଳଂ ସମାପୟତି –

**ଜ୍ଞାତାପ୍ୟହଂ ଜ୍ଞେୟମିଦମିତି ବ୍ୟବହୃତିଃ କୁତଃ ।**
**ଅଭେଦବ୍ରହ୍ମସ୍ୱାରସ୍ୟେ ନିରସ୍ତାଖିଳବସ୍ତୁନି ।। ୫୦ ।।**

'ନେହ ନାନାସ୍ତି କିଞ୍ଚନ'[261] ଇତି ଶ୍ରୁତେର୍ନିରସ୍ତସମସ୍ତପ୍ରାପଞ୍ଚିକ ଭେଦବଦଦ୍ୱିତୀୟ–ବ୍ରହ୍ମସାମରସ୍ୟେ ସତ୍ୟହଂ ଜ୍ଞାତା ଜ୍ଞେୟମିଦମିତି ବ୍ୟବହୃତିଃ କୁତଃ ? ବ୍ୟବହାରଃ କସ୍ମାଦ୍ ? ନ କସ୍ମାଦପୀତ୍ୟର୍ଥଃ ।। ୫୦ ।।

---

୨୫୯. ଛା. ଉ., ୬/୨/୯
୨୬୦. ଶ୍ୱେ. ଉ., ୬/୮
୨୬୧. ବୃ. ଉ., ୪/୪/୧୯

– ସମସ୍ତ ସାଂସାରିକ ପ୍ରପଞ୍ଚରୁ ରହିତ ଅଭେଦ ବ୍ରହ୍ମର ସାମରସ୍ୟରେ 'ମୁଁ ଜ୍ଞାତା ଅଟେ' 'ଏହା ଜ୍ଞେୟ ଅଟେ' – ଏପରି ବ୍ୟବହାର କେଉଁଠାରେ ସମ୍ଭବ ଅଟେ ।। ୫୦।।

ଇତି ଜ୍ଞାନନିଷ୍ଠସ୍ଥଲମ୍

## ଅଥ ପିଣ୍ଡାକାଶସ୍ଥଲମ୍

ଅଥ – ଏକ ଏବ ହି ଭୂତାତ୍ମା ଭୂତେ ଭୂତେ ବ୍ୟବସ୍ଥିତଃ ।
ଏକଧା ବହୁଧା ଚୈବ ଦୃଶ୍ୟତେ ଜଳଚନ୍ଦ୍ରବଦ୍[୨୬୨] ।।

ଇତ୍ୟମୃତବିନ୍ଦୂପନିଷଦ୍ୱଚନାନୁସାରେଣ ଜ୍ଞାନନିଷ୍ଠସମ୍ପନ୍ନସ୍ୟ ସୁଲଭୀଭୂତପିଣ୍ଡାକାଶସ୍ୱରୂପଂ ସୂତ୍ରତ୍ରୟେଣ ନିରୂପୟତି –

**ଯଥା ପିଣ୍ଡସ୍ଥ ଆକାଶସ୍ତଥାତ୍ମା ପୂର୍ଣ୍ଣ ଉଚ୍ୟତେ ।**
**ଏତଦର୍ଥ ବିବେକୋ ଯଃ ପିଣ୍ଡାକାଶସ୍ଥଲଂ ବିଦୁଃ ।। ୫୧ ।।**

ପୂର୍ଣ୍ଣ ଆକାଶୋ ଯଥା ପିଣ୍ଡେ ତିଷ୍ଠତି, ତଥା ପିଣ୍ଡସ୍ଥ ଆତ୍ମା ପୂର୍ଣ୍ଣ ଉଚ୍ୟତେ, ଅସ୍ୟେତି ଶେଷଃ । ଅସ୍ୟ ଜ୍ଞାନନିଷ୍ଠସମ୍ପନ୍ନସ୍ୟ ଶିବଯୋଗିନ ଏତଦର୍ଥବିବେକୋଽସ୍ତି, ତଦ୍ ପିଣ୍ଡାକାଶସ୍ଥଲଂ ସଦ୍ ଜାନନ୍ତୀତ୍ୟର୍ଥଃ ।। ୫୧ ।।

(ପିଣ୍ଡାକାଶସ୍ଥଲ ବର୍ଣ୍ଣନ) – ଯେପରି ଏହି ପିଣ୍ଡ ଅର୍ଥାତ୍ ଶରୀରରେ ସ୍ଥିତ ଆକାଶ ପୂର୍ଣ୍ଣ କୁହାଯାଏ[୨୬୩], ସେହିପରି ଏହି ପିଣ୍ଡରେ ସ୍ଥିତ ଆତ୍ମା ମଧ୍ୟ ପୂର୍ଣ୍ଣ କୁହାଯାଏ – ଏହି ବିଷୟରେ ଯେଉଁ ବିଶିଷ୍ଟ ଜ୍ଞାନ, ତାହାକୁ ପିଣ୍ଡାକାଶସ୍ଥଲ କୁହାଯାଏ ।। ୫୧ ।।

ଅଥ ବ୍ୟତିରେକମୁଖେନାହ –

**ଘଟୋପାଧିର୍ଯଥାକାଶଃ ପରିପୂର୍ଣ୍ଣଃ ସ୍ୱରୂପତଃ ।**
**ତଥା ପିଣ୍ଡସ୍ଥିତୋ ହ୍ୟାତ୍ମା ପରିପୂର୍ଣ୍ଣଃ ପ୍ରକାଶତେ ।। ୫୨ ।।**

ଘଟୋପାଧିବିଶିଷ୍ଟ ଆକାଶୋ ଯଥା ସ୍ୱ ସ୍ୱ ରୂପତଃ ପୂର୍ଣ୍ଣଃ, ତଥା ଶରୀରସ୍ଥ ଆତ୍ମା ସ୍ୱସଚ୍ଚିଦାନନ୍ଦସ୍ୱରୂପତଃ ପରିପୂର୍ଣ୍ଣଃ ସନ୍ ପ୍ରକାଶତ ଇତ୍ୟର୍ଥଃ ।। ୫୨ ।।

– ଯେପରି ଘଟରୂପ ଉପାଧିରେ ଯୁକ୍ତ ଆକାଶ ସ୍ୱରୂପତଃ ପରିପୂର୍ଣ୍ଣ ଅଟେ, ସେହିପରି ଶରୀରରେ ସ୍ଥିତ ଆତ୍ମା ପରିପୂର୍ଣ୍ଣ ହୋଇ ପ୍ରକାଶିତ ହୋଇଥାଏ ।। ୫୨।।

ଅଥ ପିଣ୍ଡାକାଶବିବେକବନ୍ତଂ କଥୟତି –

---

୨୬୨. ବ୍ର. ବି. ଉ., ୧୨

୨୬୩. ତୁଳନୀୟ – ଯାବାନ୍ ବା ଏଷ ବାହ୍ୟାକାଶସ୍ତାବାନ୍ ବା ଏଷ ଆଭ୍ୟନ୍ତରାକାଶଃ (ଛା. ଉ., ୮/୧/୩)

**ଅନ୍ତଃସ୍ଥିତଂ ପରାକାଶଂ ଶିବମଦ୍ୱୈତଲକ୍ଷଣମ୍ ।**

**ଭାବୟେଦ୍ ଯଃ ସୁମନସା ପିଣ୍ଡାକାଶଃ ସ ଉଚ୍ୟତେ ।। ୫୩।।**

ହୃଦୟାକାଶସ୍ଥିତଂ ମହାଚିଦାକାଶସ୍ୱରୂପମ୍ 'ଏକ ଏବ ରୁଦ୍ରୋ ନ ଦ୍ୱିତୀୟାୟ ତସ୍ଥେ (ତସ୍ଥୁଃ)'[୨୬୪] ଇତି ଶ୍ରୁତେରଦ୍ୱିତୀୟମ୍, 'ଶିବ ଏକୋ ଧ୍ୟେୟଃ' ଇତ୍ୟଥର୍ବଶିଖାଶ୍ରୁତି ପ୍ରସିଦ୍ଧପରଶିବଂ ନିରାଲମ୍ବେନ ମନସା ଯୋ ଧ୍ୟାୟେତ୍, ସ ପିଣ୍ଡାକାଶସ୍ୱରୂପ ଇତ୍ୟୁଚ୍ୟତ ଇତ୍ୟର୍ଥଃ ।। ୫୩।।

– ଅଦ୍ୱୈତ ଲକ୍ଷଣ ଶିବଙ୍କର ଯିଏ ଅନ୍ତଃସ୍ଥିତ ପରାକାଶ ରୂପରେ ଶୁଦ୍ଧମନରେ ଭାବନା କରେ, ସେ ପିଣ୍ଡାକାଶ କୁହାଯାଏ ।। ୫୩।।

ଅଥ – ଦେହଃ ଶିବାଳୟଃ ସାକ୍ଷାତ୍ତତ୍ରାସତେ ପରମଃ ଶିବଃ ।

ଇତି ନିଶ୍ଚୟସଦ୍‌ଭାବଃ ପିଣ୍ଡଜ୍ଞଂ ଲିଙ୍ଗମୁଚ୍ୟତେ ।।

ଇତି ବାତୁଲୋତ୍ତରବଚନାନୁସାରେଣୈବଂ ଧ୍ୟାୟତଃ ଶରୀରମେବ ଶିବାଗାରମ୍, ତସ୍ୟ ଶିବୋ ଭାସତ ଇତି ସୂତ୍ରଦ୍ୱୟେନ କଥୟତି –

**ଶିବାଗାରମିଦଂ ପ୍ରୋକ୍ତଂ ଶରୀରଂ ବୋଧଦୀପିତମ୍ ।**

**ଷଟ୍‌ତ୍ରିଂଶତ୍ତତ୍ତ୍ୱଘଟିତଂ ସୁମନଃ ପଦ୍ମପୀଠକମ୍ ।। ୫୪।।**

ଶିବାଦିଭୂମ୍ୟନ୍ତଷଟ୍‌ତ୍ରିଂଶତ୍ତତ୍ତ୍ୱମୟସ୍ତମ୍ଭକୁଡ୍ୟାଦିନିର୍ମିତଂ ହୃତ୍‌କମଲଲକ୍ଷଣପଦ୍ମପୀଠେନ ଯୁକ୍ତଂ ଜ୍ଞାନଦୀପେନ ପ୍ରକାଶମାନମିଦଂ ଶରୀରମେବ ଶିବାଗାରମିତି ପ୍ରୋକ୍ତମିତ୍ୟର୍ଥଃ ।। ୫୪।।

– ଛତିଶ ତତ୍ତ୍ୱରେ ରଚିତ ଶୁଦ୍ଧ ମନରୂପୀ କମଳପୀଠରେ ଯୁକ୍ତ ତଥା ବୋଧ ଅର୍ଥାତ୍ ଶିବଜ୍ଞାନରେ ଦୀପିତ (ପ୍ରକାଶିତ) ଏହି ଶରୀର ଶିବଙ୍କର ଆଗାର (ଆବାସସ୍ଥଳ) କୁହାଯାଏ ।। ୫୪।।

**ପରାକାଶସ୍ୱରୂପେଣ ପ୍ରକାଶଃ ପରମେଶ୍ୱରଃ ।**

**ହୃଦାକାଶଗୁହାଲୀନୋ ଦୃଶ୍ୟତେଽନ୍ତଃ ଶରୀରିଣାମ୍ ।। ୫୫।।**

ଚିଦାକାଶସ୍ୱରୂପେଣ ପ୍ରକାଶମାନଃ ପରମେଶ୍ୱରଃ ପ୍ରାଣିନାଂ ହୃଦ୍‌ଗୁହାବିଲୀନଃ ସନ୍ ଉପଦେଶସିଦ୍ଧୈର୍ଦୃଶ୍ୟତ ଇତ୍ୟର୍ଥଃ ।। ୫୫।।

– ପରାକାଶରୂପରେ ପ୍ରକାଶମାନ ପରମେଶ୍ୱର ଜୀବଙ୍କ ଭିତରେ ହୃଦୟାକାଶରୂପୀ ଗୁମ୍ଫାରେ ଲୀନ ଦେଖାଯାଆନ୍ତି (ତତ୍ତ୍ୱ ଉପଦେଶଦ୍ୱାରା) ।। ୫୫।।

---

୨୬୪. ଶ୍ୱେ. ଉ., ୩/୨

କଥଂ ଦୃଶ୍ୟତ ଇତ୍ୟତ୍ର ପକ୍ଷାନ୍ତରେଣ କଥୟତି –

ଏତଚ୍ଛିବପୁରଂ ପ୍ରୋକ୍ତଂ ସପ୍ତଧାତୁସମାବୃତମ୍ ।
ଅତ୍ର ହୃତ୍ପଙ୍କଜଂ ବେଶ୍ମ ସୂକ୍ଷ୍ମାମ୍ବରମନୋହରମ୍ ।। ୫୬।।
ତତ୍ର ସନ୍ନିହିତଂ ସାକ୍ଷାତ୍ ସଚ୍ଚିଦାନନ୍ଦଲକ୍ଷଣମ୍ ।
ନିତ୍ୟସିଦ୍ଧଃ ପ୍ରକାଶାତ୍ମା ଜଲସ୍ଥାକାଶବଚ୍ଛିବଃ ।। ୫୭।।

ସପ୍ତଧାତୁଭିଃ ପୂର୍ଯ୍ୟତ ଇତ୍ୟେତଚ୍ଛରୀରମେବ ଶିବପୁରଂ ପତ୍ତନମିତ୍ୟର୍ଥଃ । ଅତ୍ର ପିଣ୍ଡଲକ୍ଷଣଶିବରାଜଧାନ୍ୟାଂ ସୂକ୍ଷ୍ମଭୂତାନ୍ତରାକାଶରମ୍ୟଂ ହୃତ୍କମଲମେବାନ୍ତଃପୁରମ୍ । ତତ୍ର ନିତ୍ୟପରିପୂର୍ଣତ୍ୱେନ ସିଦ୍ଧଃ ସନ୍ ସଚ୍ଚିଦାନନ୍ଦସ୍ୱରୂପପରଶିବୋ ହୃଦୟସ୍ୟ ସ୍ୱଚ୍ଛତ୍ୱେନ ଜଲାନ୍ତର୍ଗତାକାଶବତ୍ ସାକ୍ଷାତ୍ ପ୍ରକାଶରୂପଃ ସନ୍ ତିଷ୍ଠତୀତ୍ୟର୍ଥଃ ।। ୫୬-୫୭।।

– ସାତ ଧାତୁରେ[୨୬୫] ସମାବୃତ (ନିର୍ମିତ) ଏହି ଶରୀର ଶିବଙ୍କର ପୁର କୁହାଯାଏ । ଏଥିରେ ସୂକ୍ଷ୍ମ ଆକାଶରେ ଯୁକ୍ତ ଅତ ଏବ ମନୋହର ହୃଦୟ କମଳ ଶିବଙ୍କର ଅନ୍ତଃପୁର ଅଟେ । ଏଥିରେ ସାକ୍ଷାତ୍ ସଚ୍ଚିଦାନନ୍ଦ ସ୍ୱରୂପ ନିତ୍ୟସିଦ୍ଧ ପ୍ରକାଶମାନ ଶିବ ଜଳରେ ସ୍ଥିତ ଆକାଶ ପରି ବିରାଜମାନ ଅଟନ୍ତି ।। ୫୬-୫୭।।

ନନ୍ୱପରିଚ୍ଛିନ୍ନଃ ପରମେଶ୍ୱରଃ କଥଂ ପରିଚ୍ଛିନ୍ନହୃତ୍କମଲେ ତିଷ୍ଠତୀତ୍ୟତ୍ର ବଦନ୍ ପିଣ୍ଡାକାଶସ୍ଥଲଂ ସମାପୟତି –

ଅନ୍ତରାକାଶବିମ୍ବସ୍ଥମଶେଷୋପାଧିବର୍ଜିତମ୍ ।
ଘଟାକାଶ ଇବ ଛିନ୍ନଂ ଭାବୟେଚ୍ଚିନ୍ମୟଂ ଶିବମ୍ ।। ୫୮।।

ହୃଦୟାକାଶସ୍ଥାନସ୍ଥଂ ସମସ୍ତୋପାଧିରହିତଂ ଚିନ୍ମୟଂ ଶିବଂ ଘଟାକାଶ ଇବ ବିଚ୍ଛିନ୍ନଂ ବିଭାବୟେଦିତ୍ୟର୍ଥଃ ।। ୫୮।।

– (ଯୋଗୀ) ହୃଦୟାକାଶ ବିମ୍ବରେ ସ୍ଥିତ ସମସ୍ତ ଉପାଧିରୁ ରହିତ, ଚିନ୍ମୟ ଶିବଙ୍କର ଘଟାକାଶ ପରି ପରିଚ୍ଛିନ୍ନ ରୂପରେ ଭାବନା କରିବା ଉଚିତ୍ (ଅର୍ଥାତ୍ ଯେପରି ମହାକାଶ ଘଟରେ ଅବଚ୍ଛିନ୍ନ ହୋଇ ମଧ ଆକାଶ ହିଁ ଅଟେ, ସେହିପରି ଶିବ ହୃଦୟରେ ଅବଚ୍ଛିନ୍ନ ହୋଇ ମଧ ଶିବ ହିଁ ଅଟନ୍ତି ଏପରି ଭାବନା କରିବା ଉଚିତ୍) ।। ୫୮।।

ଇତି ପିଣ୍ଡାକାଶସ୍ଥଲମ୍

## ଅଥ ବିନ୍ଦ୍ୱାକାଶସ୍ଥଲମ୍

ଅଥ – ସଦାଶିବାଦିତତ୍ତ୍ୱାନାଂ କାରଣଂ ବ୍ୟାପକଃ ପରଃ ।
ବିନ୍ଦୁରୂପଃ ଶିବୋ ଧ୍ୟେୟୋ ବିନ୍ଦ୍ୱାକାଶ ଇତୀର୍ଯ୍ୟତେ ।।

୨୬୫. ଅନ୍ନ, ରସ, ରୁଧିର, ମାଂସ, ଚର୍ବି, ଅସ୍ଥି, ମଜ୍ଜା ଏବଂ ବୀର୍ଯ୍ୟ ।

ଇତି କିରଣାଗମବଚନାନୁସାରେଣ ତତ୍‌ପିଣ୍ଡାକାଶସ୍ଥଲସମ୍ପନ୍ନସ୍ୟ ସୁଲଭୀଭୂତବିନ୍ଦ୍ୱାକାଶସ୍ଥଲଂ ନିରୂପୟତି –

**ଯଥାକାଶୋ ବିଭୁର୍ଜ୍ଞେୟଃ ସର୍ବପ୍ରାଣ୍ୟୁପରି ସ୍ଥିତଃ ।**
**ତଥାତ୍ମେତ୍ୟୁପମାନାର୍ଥଂ ବିନ୍ଦ୍ୱାକାଶସ୍ଥଲଂ ବିଦୁଃ ।। ୫୯ ।।**

ସର୍ବପ୍ରାଣ୍ୟୁପରିବର୍ତ୍ତ୍ୟାକାଶୋ ଯଥା ବିଭୁଃ ସନ୍ ଜ୍ଞାତୁଂ ଯୋଗ୍ୟଃ, ତଥାସ୍ୟ ପିଣ୍ଡୀକାଶସ୍ଥଲସମ୍ପନ୍ନସ୍ୟ ଶିବଯୋଗିନ ଆତ୍ମା ସର୍ବପ୍ରାଣ୍ୟୁପରିବର୍ତ୍ତ୍ୟାକାଶବଦ୍ ବ୍ୟାପକୀଭୂତଃ ସନ୍ ବିଜ୍ଞାତୁଂ ଯୋଗ୍ୟ ଇତ୍ୟୁପମାନାର୍ଥମେବ ବିନ୍ଦ୍ୱାକାଶସ୍ଥଲଂ ବିଦୁର୍ଜାନନ୍ତୀତ୍ୟର୍ଥଃ ।। ୫୯ ।।

– (ବିନ୍ଦ୍ୱାକାଶସ୍ଥଳ ବର୍ଣ୍ଣନ) – ସମସ୍ତ ପ୍ରାଣୀଙ୍କର ଉପରେ ସ୍ଥିତ ଆକାଶ ଯେପରି ବ୍ୟାପକ ଜଣାଯାଏ, ସେହିପରି ଆତ୍ମା ମଧ (ସମସ୍ତ ପ୍ରାଣୀଙ୍କର ଶରୀର ଭିତରେ ପରିଚ୍ଛିନ୍ନ ରୂପରେ ରହି ବ୍ୟାପକ ଅଟେ ।) ଏହି ତୁଳନାର ଅର୍ଥକୁ ବିଦ୍ୱାନମାନେ ବିନ୍ଦ୍ୱାକାଶସ୍ଥଳ ବୋଲି ଜାଣନ୍ତି ।। ୫୯ ।।

ଅଥ – ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହୁ (ହି)ଶ୍ଚ ।।

ଇତି କଠବଲ୍ଲୀଶ୍ରୁତ୍ୟୁକ୍ତଦୃଷ୍ଟାନ୍ତପୂର୍ବକଂ ଚତୁର୍ଭିଃ ସୂତ୍ରୈସ୍ତଦେବ ପ୍ରତିପାଦୟତି –

**ଯଥୈକୋ ବାୟୁରାଖ୍ୟାତଃ ସର୍ବପ୍ରାଣିଗତୋ ବିଭୁଃ ।**
**ତଥାତ୍ମା ବ୍ୟାପକଃ ସାକ୍ଷାଦ୍ ସର୍ବପ୍ରାଣିଗତଃ ସ୍ୱୟମ୍ ।। ୬୦ ।।**

ସମସ୍ତପ୍ରାଣିନାଂ ପ୍ରାଣରୂପଂ ଗତୋ ବାୟୁରେକ ଏବ ବ୍ୟାପକଃ ସନ୍ନାଖ୍ୟାତଃ, ତଥାହମିତି ସ୍ୱୟଂ ସାକ୍ଷାଦ୍ ସର୍ବପ୍ରାଣିଗତ ଆତ୍ମା ବ୍ୟାପକ ଇତ୍ୟର୍ଥଃ ।। ୬୦ ।।

– ଯେପରି ଏକମାତ୍ର ବାୟୁ ସମସ୍ତ ପ୍ରାଣୀଙ୍କଠାରେ ରହେ ଏବଂ ବ୍ୟାପକ ଅଟେ, ସେହିପରି ଏକ ଆତ୍ମା ସାକ୍ଷାତ୍ ସ୍ୱୟଂ ସମସ୍ତ ପ୍ରାଣୀରେ ରହେ ଏବଂ ବ୍ୟାପକ ଅଟେ[୨୬୬] । (ଅର୍ଥାତ୍ ପ୍ରାଣୀଙ୍କର ଭିତରେ ଏବଂ ବାହାରେ ସର୍ବତ୍ର ସ୍ଥିତ ଅଟେ ।) ।। ୬୦ ।।

**ଯଥା ବହ୍ନିରମେୟାତ୍ମା ସର୍ବତ୍ରୈକୋଽପି ଭାସତେ ।**
**ତଥା ଶମ୍ଭୁଃ ସମସ୍ତାତ୍ମା ପରିଚ୍ଛେଦବିବର୍ଜିତଃ ।। ୬୧ ।।**

ଅପରିମିତସ୍ୱରୂପବାନେକୋଽଗ୍ନିର୍ଯଥା ସାର ବୈଦ୍ୟୁତପାର୍ଥିବ ବାଡ଼ବକାଲଗ୍ନି-ରୂପେଣ ବିଶ୍ୱବ୍ୟାପକଃ ସନ୍ ଭାସତେ, ତଥା ସର୍ବଚୈତନ୍ୟାତ୍ମକଶିବହ୍ନିରୂପପରମେଶ୍ୱର

---

୨୬୬. ତୁଳନୀୟ- ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।।
(କଠୋପ., ୨/୫/୧୦)

**ସର୍ବକାରେ ଚିଦାନନ୍ଦେ ସତ୍ୟରୂପିଣି ଶାଶ୍ୱତେ ।**
**ପରାକାଶମୟେ ତସ୍ମିନ୍ ପରେ ବ୍ରହ୍ମଣି ନିର୍ମଳେ ।। ୫୨ ।।**
**ଏକୀଭାବମୁପେତାନାଂ ଯୋଗିନାଂ ପରମାତ୍ମନାମ୍ ।**
**ପରାପରପରିଜ୍ଞାନପରିହାସକଥା କୁତଃ ।। ୫୩ ।।**

ଯତ୍ର ଅଦ୍ୱୈତବୈଭବବତି ବ୍ରହ୍ମଣି ଯୋଗାଦ୍ ଦୃଗ୍‌ଦ୍ୱୟେନ ସମାନସମରସ-ଯୋଗାଦ୍ ଅହଂ ତ୍ୱମିତି ଭେଦବିଭ୍ରମୋ ନାସ୍ତି, ଉଭୟୋରପ୍ୟହଂପ୍ରତ୍ୟୟୈକତ୍ୱବିଶ୍ରାନ୍ତତ୍ୱାତ୍ । ସଂଯୋଗବିୟୋଗୌ ଚ ନ ସ୍ତଃ, ଜ୍ଞେୟଜ୍ଞାତୃକଳ୍ପନା ଚ ଯତ୍ର ନାସ୍ତି, ବନ୍ଧୋ ମୁକ୍ତିଶ୍ଚ ଯତ୍ର ନାସ୍ତି, ଦେବତ୍ୱାଦ୍ୟଭିମାନୋଽପି ଯତ୍ର ନାସ୍ତି, ନ ସୁଖଂ ବୈଷୟିକସୁଖଂ ଯତ୍ର ନାସ୍ତି, ନୈବ ତାଦୃଗ୍ ଦୁଃଖଂ ନେନ୍ଦ୍ରିୟଜଂ ଜ୍ଞାନଂ ନାଜ୍ଞାନଂ ନ ଶ୍ରେଷ୍ଠତ୍ୱଂ ନ ନିକୃଷ୍ଟତ୍ୱଂ ନୋପରିଭାଗୋ ନ ଚାଧୋଭାଗୋ ନ ପଶ୍ଚାଦ୍‌ଭାଗୋ ନ ପୂର୍ବଭାଗଶ୍ଚ ତସ୍ମିନ୍‌ଦୂରେ କିଞ୍ଚିଦ୍‌ଦୂରେ ସର୍ବସ୍ୱରୂପେ ଚିଦାନନ୍ଦସତ୍ୟରୂପିଣି ଶ୍ୱାଶ୍ୱତେ ନିର୍ମଳେ ପରାକାଶମୟେ ବ୍ରହ୍ମଣି ଏକୀଭାବଂ ଗତାନାମ୍ ଅତଏବ ପରବ୍ରହ୍ମସ୍ୱରୂପାଣାଂ ଶିବଯୋଗିନାଂ ପରଂ ସ୍ୱଂ ଚ ଜାନାମୀତି ପରିହାସପ୍ରସଙ୍ଗଃ କୁତଃ ? ବ୍ୟାପକତ୍ୱାଦେକତ୍ୱାନ୍ନାସ୍ତୀତ୍ୟର୍ଥଃ ।। ୪୯-୫୩ ।।

– ଯେଉଁଠାରେ ଭେଦ ସହିତ ଯୋଗ ହେବାରୁ (ଅର୍ଥାତ୍ ଜୀବ ଓ ବ୍ରହ୍ମରେ ଭେଦ ବୁଦ୍ଧି ହେବାରୁ) 'ଅହଂ' ଏପରି ଭ୍ରମ ନାହିଁ (ଯୋଗ ଅର୍ଥାତ୍ ଜୀବ ଓ ବ୍ରହ୍ମଙ୍କର ଐକ୍ୟ ହେବାରୁ ଯେଉଁଠାରେ 'ଅହଂ' ଏପରି ଭେଦ ଅର୍ଥାତ୍ ଭ୍ରମ ନାହିଁ) ସଂଯୋଗ ନାହିଁ କି ବିୟୋଗ ନାହିଁ, ଜ୍ଞେୟ ଓ ଜ୍ଞାତାର କଳ୍ପନା ନାହିଁ । ବନ୍ଧନ, ମୋକ୍ଷ, ଏବଂ (ନିଜ ବିଷୟରେ ଅଥବା ଅନ୍ୟତ୍ର) ଦେବତ୍ୱର ଅଭିମାନ ନାହିଁ । ସୁଖ ନାହିଁ କି ଦୁଃଖ ନାହିଁ। ଅଜ୍ଞାନ ନାହିଁ କି ଜ୍ଞାନ ନାହିଁ। ଉତ୍କୃଷ୍ଟତ୍ୱ ନାହିଁ କି ଅପକୃଷ୍ଟତ୍ୱ ନାହିଁ । ଉପର ନାହିଁ କି ତଳ ନାହିଁ । ଆଗ ନାହିଁ କି ପଛ ନାହିଁ । ଦୂର କି ନିକଟର ସ୍ଥିତି ନାହିଁ । ସର୍ବରୂପ, ଚିଦାନନ୍ଦ, ସତ୍ୟସ୍ୱରୂପ, ଶାଶ୍ୱତ, ପର ଆକାଶ ଅର୍ଥାତ୍ ଚିଦାକାଶମୟ ସେହି ନିର୍ମଳ ବ୍ରହ୍ମ ସହିତ ଐକ୍ୟଭାବକୁ ପ୍ରାପ୍ତ ମହାତ୍ମା ଯୋଗୀଙ୍କ ବିଷୟରେ ପର-ଅପର ପରିଜ୍ଞାନ ରୂପ ପରିହାସର ଚର୍ଚ୍ଚା କିପରି ହୋଇପାରିବ ? ।। ୪୯-୫୩ ।।

ଅଥେମମର୍ଥମେବ ବିଶେଷୟନ୍ ସ୍ୱପରାଜ୍ଞସ୍ଥଳଂ ସମାପୟତି –

**ଦେଶକାଲାନବଚ୍ଛିନ୍ନତେଜୋରୂପସମାଶ୍ରୟାତ୍ ।**
**ସ୍ୱପରଜ୍ଞାନବିରହାତ୍ ସ୍ୱପରାଜ୍ଞସ୍ଥଳଂ ବିଦୁଃ ।। ୫୪ ।।**

ତେଜୋରୂପଂ ଚିଦ୍‌ପ୍ରକାଶରୂପମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫୪ ।।

– ଦେଶ, କାଳର ଅବଚ୍ଛେଦରୁ ଉର୍ଦ୍ଧ୍ୱ ତେଜସ୍ ରୂପ ପରବ୍ରହ୍ମଙ୍କର ଆଶ୍ରୟଣ

ଅର୍ଥାତ୍ ସାମରସ୍ୟ ତଥା ସ୍ୱ ପର ଜ୍ଞାନର ଅଭାବଯୁକ୍ତ ଶିବଯୋଗୀର ଅବସ୍ଥାକୁ ବିଦ୍ୱଜ୍ଜନ ସ୍ୱପରାଜ୍ଞସ୍ଥଳ କୁହନ୍ତି ।। ୫୪।।

ଇତି ସ୍ୱପରାଜ୍ଞସ୍ଥଳମ୍

## ଅଥ ଭାବାଭାବଲୟସ୍ଥଳମ୍

ଅଥ – ନିଦ୍ରାନ୍ତଂ ଜାଗରିତାନ୍ତଂ ଚୋଭୌ ଯୋ ବା ନ ପଶ୍ୟତି ।
ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି[୩୦୨] ।।

ଇତି କଠବଲ୍ଲୀଶ୍ରୁତ୍ୟନୁସାରେଣ,

ଭାବାଭାବଦ୍ୱୟାତୀତଂ ସ୍ୱପ୍ନଜାଗରଣାତିଗମ୍ ।
ମୃତ୍ୟୁଜୀବନନିର୍ମୁକ୍ତଂ ତତ୍ତ୍ୱଂ ତତ୍ତ୍ୱବିଦୋ ବିଦୁଃ ।।

ଇତି ଯୋଗଜାଗମବଚନାନୁସାରେଣ ଚ ତଦ୍ସ୍ୱରୂପଜ୍ଞାନଶୂନ୍ୟସ୍ୟ ଶିବଯୋଗିନୋ ଭାବାଭାବୌ ନ ସ୍ତ ଇତି ନିରୂପୟତି –

**ତ୍ୱନ୍ତାହନ୍ତାବିନିର୍ମୁକ୍ତେ ଶୂନ୍ୟକଳ୍ପେ ଚିଦମ୍ବରେ ।**
**ଏକୀଭୂତସ୍ୟ ସିଦ୍ଧସ୍ୟ ଭାବାଭାବକଥା କୁତଃ ।। ୫୫।।**

ପରିଚ୍ଛିନ୍ନଶରୀରବିଶିଷ୍ଟତ୍ୱମହଂଭାବରହିତେ ଶୂନ୍ୟସଦୃଶେ ଚିଦାକାଶେ ଏକରସୀଭୂତସ୍ୟ ସ୍ୱପରଜ୍ଞାନଶୂନ୍ୟସ୍ୟ ସିଦ୍ଧସ୍ୟ ଶିବଯୋଗିନୋ ଭାବାଭାବପ୍ରସଙ୍ଗଃ କୁତଃ ? ନାସ୍ତୀତ୍ୟର୍ଥଃ ।। ୫୫।।

– (ଭାବାଭାବଲୟସ୍ଥଳ ବର୍ଣ୍ଣନ) – 'ତ୍ୱଂ' ଏବଂ 'ଅହଂ' ଭାବରୁ ରହିତ ଶୂନ୍ୟକଳ୍ପ ଚିଦାକାଶରେ ଏକୀଭୂତ ସିଦ୍ଧ ଶିବଯୋଗୀ ନିମନ୍ତେ ଭାବ ଓ ଅଭାବର କଥା କେଉଁଠାରୁ ହୋଇପାରିବ (ଅର୍ଥାତ୍ ସେଠାରେ ଭାବ ନାହିଁ କି ଅଭାବ ନାହିଁ) ।। ୫୫।।

ଅଥ ତଦ୍ଭାବାଭାବଲୟସ୍ୱରୂପଂ ସୂତ୍ରଦ୍ୱୟେନ ପ୍ରତିପାଦୟତି –

**ଅହଂଭାବସ୍ୟ ଶୂନ୍ୟତ୍ୱାଦଭାବସ୍ୟ ତଥାତ୍ମନଃ ।**
**ଭାବାଭାବବିନିର୍ମୁକ୍ତୋ ଜୀବନ୍ମୁକ୍ତଃ ପ୍ରକାଶତେ ।। ୫୬।।**

ଅହଂଭାବରାହିତ୍ୟାଦ୍ ଆତ୍ମନଃ 'ଅୟମାତ୍ମା ବ୍ରହ୍ମ'[୩୦୩] ଇତି ପ୍ରସିଦ୍ଧ ପରମାତ୍ମନୋଽଭାବସ୍ୟ ତଥା ଶୂନ୍ୟତ୍ୱାଜ୍ଜୀବନ୍ମୁକ୍ତଃ ସ୍ୱପରଜ୍ଞାନଶୂନ୍ୟଃ ସନ୍ ଅମନସ୍କତନ୍ଦ୍ରିମୁଦ୍ରାସ୍ଥିତଃ ଶିବଯୋଗୀ ଭାବାଭାବବିନିର୍ମୁକ୍ତଃ ଅହମିତି ପରିଚ୍ଛିନ୍ନ ଦେହାହଂଭାବଃ,

---

୩୦୨. କ. ଉ., ୨/୨୧
୩୦୩. ଐ. ଉ., ୫/୩

ଆତ୍ମା ନାସ୍ତୀତ୍ୟଭାବଃ, ଏବଂ ରୂପଭାବାଭାବଶୂନ୍ୟଃ ସନ୍ ସ୍ୱସ୍ୱରୂପେଣ ପ୍ରକାଶତେ । ସକଳଦୁଃଖଭୋକ୍ତା ସନ୍ ସୁପ୍ତିଲୟଗାମିମୂଳାହଙ୍କାରୋଽହମସ୍ମୀତି ଭାବେନ ସର୍ବସାକ୍ଷିକତ୍ୱେନାବସ୍ଥାତ୍ରୟେଽପ୍ୟବଚ୍ଛେଦେନ ଭାସମାନଚୈତନ୍ୟଂ ନାସ୍ତୀତ୍ୟଭାବେନ ଚ ବିବିକ୍ତ ଏବ ଭାବାଭାବରହିତ ଇତ୍ୟର୍ଥଃ ।। ୫୬ ।।

– ଅହଂଭାବ ତଥା ଆତ୍ମାର ଅଭାବ ଶୂନ୍ୟ ହେବା ହେତୁ ଭାବ ଓ ଅଭାବରୁ ମୁକ୍ତ ଜୀବନ୍ମୁକ୍ତ ପ୍ରକାଶିତ ହୋଇଥାଏ ।। ୫୬ ।।

**ସୁଖଦୁଃଖାଦିଭାବେଷୁ ନାଭାବୋ ଭାବ ଏବ ବା ।**
**ବିଦ୍ୟତେ ଚିଦ୍‌ସ୍ୱରୂପସ୍ୟ ନିର୍ଲେପସ୍ୟ ମହାତ୍ମନଃ ।। ୫୭ ।।**

ଉକ୍ତଲକ୍ଷଣମୂଳାହଙ୍କାରଲେପରହିତସ୍ୟ ଚିଦ୍‌ସ୍ୱରୂପସ୍ୟ ମହାପୁରୁଷସ୍ୟ ସୁଖଦୁଃଖାଦି ସମ୍ବନ୍ଧେଷ୍ୱଭାବୋ ଭାବ ଏବ ବା ନ ବିଦ୍ୟତେ, ନିର୍ଲେପତ୍ୱେନ ବ୍ୟାପକତ୍ୱାଦିତ୍ୟର୍ଥଃ ।। ୫୭ ।।

– ନିର୍ଲେପ ଅର୍ଥାତ୍ ପାପ–ପୁଣ୍ୟାଦି ଦ୍ୱନ୍ଦ୍ୱରୁ ଊର୍ଦ୍ଧ୍ୱ ମହାନ୍ ଆତ୍ମାବାଲା ଚିଦ୍‌ସ୍ୱରୂପ ଶିବଯୋଗୀ ପାଇଁ ସୁଖ, ଦୁଃଖ ଆଦି ଭାବ ବିଷୟରେ ଭାବ ରହେ ନାହିଁ କି ଅଭାବ ରହେ ନାହିଁ ।। ୫୭ ।।

ଏବଂ ଭାବାଭାବଶୂନ୍ୟସ୍ୟ କିମପି ନ ଦୃଶ୍ୟତ ଇତ୍ୟତ୍ରାହ –

**ଯସ୍ମିନ୍ ଜ୍ୟୋତିଷି ଚିଦ୍ରୂପେ ଦୃଶ୍ୟତେ ନୈବ କିଞ୍ଚନ ।**
**ସଦ୍ରୂପଂ ବାପ୍ୟସଦ୍ରୂପଂ ଭାବାଭାବଂ ବିମୁଞ୍ଚତଃ ।। ୫୮ ।।**

ସ୍ପଷ୍ଟମ୍ ।। ୫୮ ।।

– ଭାବା ଓ ଅଭାବର ତ୍ୟାଗ କରିଥିବା (ଏହି ଦ୍ୱନ୍ଦ୍ୱରୁ ଊର୍ଦ୍ଧ୍ୱ) ଚିଦ୍‌ସ୍ୱରୂପ ତେଜୋମୟ ଶିବଯୋଗୀକୁ ସଦ୍‌ରୂପ ଅଥବା ଅସଦ୍‌ରୂପ କିଛି ଦେଖାଯାଏ ନାହିଁ ।। ୫୮ ।।

ଅଥ ଭାବାଭାବଲୟସ୍ଥଲଂ ସମାପୟତି –

**ପ୍ରତୀୟମାନୌ ବିଦ୍ୟେତେ ଭାବାଭାବୌ ନ କୁତ୍ରଚିତ୍ ।**
**ଲିଙ୍ଗୈକ୍ୟେ ସତି ଯତସ୍ତସ୍ମାଦ୍ ଭାବାଭାବଲୟସ୍ଥଲମ୍ ।। ୫୯ ।।**

ପ୍ରକାଶମାନୌ ଭାବାଭାବୌ ଶିବଲିଙ୍ଗୈକରସୀଭୂତମହାପୁରୁଷବିଷୟେ କ୍ୱଚିଦପି ଯସ୍ମାତ୍ କାରଣାନ୍ନ ବିଦ୍ୟେତେ ନ ସ୍ତଃ ତସ୍ମାଦ୍ ଭାବାଭାବଲୟସ୍ଥଲମିତ୍ୟୁକ୍ତମିତ୍ୟର୍ଥଃ ।। ୫୯ ।।

– ଯେଉଁ କାରଣରୁ ଶିବଲିଙ୍ଗ ସହିତ ଏକତ୍ୱ (ସାମରସ୍ୟ) କୁ ପ୍ରାପ୍ତ ଶିବଯୋଗୀ ନିମନ୍ତେ ପ୍ରତୀୟମାନ ଭାବ–ଅଭାବ କେଉଁଠାରେ ବିଦ୍ୟମାନ ନାହିଁ, ସେହି କାରଣରୁ (ସେହି ଦଶା) ଭାବାଭାବଲୟସ୍ଥଳ କୁହାଯାଏ ।। ୫୯ ।।

**ଇତି ଭାବାଭାବଲୟସ୍ଥଲମ୍**

## ଅଥ ଜ୍ଞାନଶୂନ୍ୟସ୍ଥଲମ୍

ଅଥ – 'ଅପ ଅପସ୍ୱଗ୍ନିମଗ୍ନୌ ବାୟୁଂ ବାୟୌ ବ୍ୟୋମ୍ନି ବ୍ୟୋମ ଲକ୍ଷୟେତ୍ । ଏବମନ୍ତର୍ଗତଂ ଚିତ୍ତଂ ପୁରୁଷୋ ପ୍ରତିମୁଚ୍ୟତେ' ଇତି ମୈତ୍ରେୟଶ୍ରୁତ୍ୟନୁସାରେଣ –

ସର୍ବଶୂନ୍ୟଂ ନିରାଭାସଂ ସାମରସ୍ୟଂ ତଥା ଭବେତ୍ ।
ଘୃତେ ଘୃତଂ ଯଥା ନ୍ୟସ୍ତଂ କ୍ଷୀରେ କ୍ଷୀରଂ ଯଥୈବ ଚ ।।

ଇତି ସର୍ବଜ୍ଞାନୋତ୍ତରବଚନାନୁସାରେଣ ଚ ସ୍ୱପରଜ୍ଞାନଶୂନ୍ୟତ୍ୱେନ ଭାବାଭାବଲୟସମ୍ପନ୍ନସ୍ୟ ଶିବଯୋଗିନୋଦ୍ଭେଦସୁଲଭଜ୍ଞାନଶୂନ୍ୟସ୍ଥଲଂ ସୂତ୍ରତ୍ରୟେଣ ନିରୂପୟତି –

**ପରାପରସମାପେକ୍ଷଭାବାଭାବ ବିବେଚନମ୍ ।**
**ଜ୍ଞାନଂ ବ୍ରହ୍ମଣି ତନ୍ନାସ୍ତି ଜ୍ଞାନଶୂନ୍ୟସ୍ଥଲଂ ବିଦୁଃ ।। ୬୦ ।।**

ପରାପର ଜ୍ଞାନାଭିଲାଷଯୁକ୍ତଭାବାଭାବବିବେକବଜ୍ଜ୍ଞାନଂ ବ୍ରହ୍ମଣି ପରବ୍ରହ୍ମସ୍ୱରୂପେ ଭାବାଭାବଲୟସମ୍ପନ୍ନେ ଶିବଯୋଗିନି ନାସ୍ତି, ତଦ୍ ଜ୍ଞାନଶୂନ୍ୟସ୍ଥଲମିତି ବିଦୁଃ, ଜ୍ଞାନାତୀତଂତ୍ୟର୍ଥଃ ।। ୬୦ ।।

– (ଜ୍ଞାନଶୂନ୍ୟସ୍ଥଲ ବର୍ଣ୍ଣନ) – ପର ଏବଂ ଅପର ର ଅପେକ୍ଷୀ ଭାବ ଓ ଅଭାବର ବିବେଚନ ରୂପ ଜ୍ଞାନବ୍ରହ୍ମରେ (ପରବ୍ରହ୍ମ ସ୍ୱରୂପ ଶିବଯୋଗୀରେ) ରହେ ନାହିଁ । ଏହି କାରଣରୁ ଏହା (ବିଦ୍ୱାନ୍ ଦ୍ୱାରା) ଜ୍ଞାନଶୂନ୍ୟସ୍ଥଳ କୁହାଯାଏ ।। ୬୦ ।।

ତର୍ହି ସ କଥଂ ତିଷ୍ଠତୀତ୍ୟତ୍ରାହ –

**ଜଲେ ଜଲମିବ ନ୍ୟସ୍ତଂ ବହ୍ନୌ ବହ୍ନିରିବାର୍ପିତମ୍ ।**
**ପରେ ବ୍ରହ୍ମଣି ଲୀନାତ୍ମା ବିଭାଗେନ ନ ଦୃଶ୍ୟତେ ।। ୬୧ ।।**

ଜଲମିଶ୍ରଜଲମିବ ବହ୍ନିସ୍ଥାପିତ ବହ୍ନିରିବ ପରବ୍ରହ୍ମସ୍ୱରୂପମହାଲିଙ୍ଗେ ଲୟୀଭୂତଭାବାଭାବପ୍ରଯତ୍ନବାନ୍ ଶିବଯୋଗୀ ଭିନ୍ନଭାବେନ ନ ଦୃଶ୍ୟତେ, ନ ତିଷ୍ଠତୀତ୍ୟର୍ଥଃ, ଜ୍ଞାନଶୂନ୍ୟତ୍ୱାଦିତି । ଅତ୍ର ଦ୍ୱୈତଜ୍ଞାନଶୂନ୍ୟ ଶିବାଦ୍ୱୈତେ ଜଲବହ୍ନି ଦୃଷ୍ଟାନ୍ତ ଆପ୍ୟତୈଜସସ୍ଥଲରୂପଦୃଗ୍ଭ୍ୟପୈକ୍ୟବତ୍ ସମାନସମରସରୂପଃ, ନ ତୁ ସ୍ୱରୂପହାନି ବୃଦ୍ଧିକରଃ, ସମୁଦ୍ରଜଲବଦିତି ।। ୬୧ ।।

– ଜଳରେ ମିଶା ଯାଇଥିବା ଜଳ, ଅଗ୍ନିରେ ପକାଯାଇଥିବା ଅଗ୍ନି ପରି ପରବ୍ରହ୍ମରେ ଲୀନ ଆତ୍ମାବାଲା ଶିବଯୋଗୀ ପୃଥକ୍ ଦେଖାଯାଏ ନାହିଁ ।। ୬୧ ।।

**ସର୍ବାତ୍ମନି ପରେ ତତ୍ତ୍ୱେ ଭେଦଶଙ୍କାବିବର୍ଜିତେ ।**
**ଜ୍ଞାତ୍ରାଦିବ୍ୟବହାରୋତ୍ଥଂ କୁତୋ ଜ୍ଞାନଂ ବିଭାବ୍ୟତେ ।। ୬୨ ।।**

ସ୍ପଷ୍ଟମ୍ ।। ୬୨ ।।

– ଭେଦର ଶଙ୍କାରୁ ରହିତ ବିଶ୍ୱରୂପ ପରତତ୍ତ୍ୱରେ ଜ୍ଞାତା, ଜ୍ଞେୟ ଓ ଜ୍ଞାନର

ବ୍ୟବହାରରୁ ଉତ୍ପନ୍ନ (ତ୍ରିପୁଟୀ) ଜ୍ଞାନର ଅନୁଭବ କେଉଁଠାରୁ ହେବ ? ।। ୬୨।।

ଅଥ ତଦେବ ସୂତ୍ରତ୍ରୟେଣ ବିଶେଷୟତି –

ନିର୍ବିକାରଂ ନିରାକାରଂ ନିତ୍ୟଂ ସୀମାବିବର୍ଜିତମ୍ ।
ବ୍ୟୋମବତ୍ ପରମଂ ବ୍ରହ୍ମ ନିର୍ବିକଳ୍ପତୟା ସ୍ଥିତମ୍ ।। ୬୩।।
ନ ପୃଥ୍ୱ୍ୟାଦୀନି ଭୂତାନି ନ ଗ୍ରହା ନୈବ ତାରକାଃ ।
ନ ଦେବା ନ ମନୁଷ୍ୟାଶ୍ଚ ନ ତିର୍ଯଞ୍ଚୋ ନ ଚାପରେ ।। ୬୪।।
ତସ୍ମିନ୍ କେବଳଚିନ୍ମାତ୍ର ସତ୍ତାନନ୍ଦୈକ ଲକ୍ଷଣେ ।
ତ୍ୱନ୍ତାହନ୍ତାଦିସଂରୂଢଂ ବିଜ୍ଞାନଂ କେନ ଭାବ୍ୟତେ ।। ୬୫।।

ମୃଦାଦିବଦ୍ୱିକାରରହିତଂ ନୀଳପୀତାଦ୍ୟାକାରରହିତମ୍ ଅବଧିରହିତଂ ପରଂବ୍ରହ୍ମ ବ୍ୟୋମବନ୍ନିର୍ବିକଳ୍ପତୟା ଭେଦରାହିତ୍ୟେନ ସ୍ଥିତଂ ତିଷ୍ଠତି । ଅତଏବ ଭିନ୍ନତୟା ପ୍ରତୀୟମାନଭୂମ୍ୟାଦିଭୂତାନି ନ, ଆଦିତ୍ୟାଦିନବଗ୍ରହାଶ୍ଚ ନ ଅଶ୍ୱିନ୍ୟାଦିତାରକାଶ୍ଚ ନ, ବିଷ୍ଣ୍ୱାଦିଦେବାଶ୍ଚ ନ, ମନୁଷ୍ୟାଶ୍ଚ ନ, ତିର୍ଯ୍ୟକ୍ ପ୍ରାଣିନଶ୍ଚ ନ, ପରେ ଚ ନ (ଭବନ୍ତି)। ତସ୍ମାତ୍ କେବଳସଚ୍ଚିଦାନନ୍ଦସ୍ୱରୂପେ ବ୍ରହ୍ମଣି ତ୍ୱମହମାଦିକବ୍ୟବହାରୋତ୍‌ଥବିଶେଷଜ୍ଞାନଂ କେନ ଭାବ୍ୟତେ ? ନ କେନାପି ଭାବ୍ୟତ ଇତ୍ୟର୍ଥଃ ।। ୬୩–୬୫।।

– ବିକାରରୁ ଶୂନ୍ୟ, ଆକାରରହିତ, ନିତ୍ୟ, ଅସୀମ, ଆକାଶ ପରି ସର୍ବବ୍ୟାପୀ ପରମବ୍ରହ୍ମ ନିର୍ବିକଳ୍ପ ରୂପରେ ବର୍ତ୍ତମାନ ଅଟନ୍ତି । ପୃଥିବୀ ଆଦି ପଞ୍ଚମହାଭୂତ, ଚନ୍ଦ୍ର ସୂର୍ଯ୍ୟ ଆଦି (ନବ)ଗ୍ରହ, (ଅଶ୍ୱିନୀ ଆଦି) ତାରାଗଣ, ଦେବତା, ମନୁଷ୍ୟ, ପକ୍ଷୀ ଅଥବା ଅନ୍ୟ ସବୁ ପ୍ରତୀତ ହୁଅନ୍ତି ନାହିଁ । କେବଳ ସତ୍, ଚିତ୍, ଆନନ୍ଦ ସ୍ୱରୂପ ସେହି ବ୍ରହ୍ମରୂପ ଶିବଯୋଗୀରେ 'ତ୍ୱଂ' ଏବଂ 'ଅହଂ' ଆଦି ଭାବନାରେ ଦୃଢ଼ଜ୍ଞାନ (ଅର୍ଥାତ୍ ଭେଦଜ୍ଞାନ) କାହାକୁ ଅନୁଭୂତ ହୋଇଥାଏ ଅର୍ଥାତ୍ କାହାରିକୁ ଅନୁଭୂତ ହୋଇ ନଥାଏ ।। ୬୪–୬୫।।

ଅଥ – 'ଏତଜ୍‌ଜ୍ଞେୟଂ ନିତ୍ୟମେବାତ୍ମସଂସ୍ଥଂ ନାତଃ ପରଂ ବେଦିତବ୍ୟଂ ଚ କିଞ୍ଚିତ୍'[୩୦୪] ଇତି ଶ୍ୱେତାଶ୍ୱତରଶ୍ରୁତ୍ୟନୁସାରେଣ, 'କେବଳଂ ଜ୍ଞେୟମିତ୍ୟୁକ୍ତଂ ବେଦିତବ୍ୟଂ ଚ କିଞ୍ଚନ' ଇତି ଦେବୀକାଳୋତ୍ତରବଚନାନୁସାରେଣ ଚ ସ୍ୱ ସ୍ୱରୂପଜ୍ଞାନିନସ୍ତ୍ରିପୁଟୀମୟ-ପ୍ରପଞ୍ଚଜ୍ଞାନଂ ନାସ୍ତୀତି ପଞ୍ଚଭିଃ ସୂତ୍ରୈଃ ପ୍ରତିପାଦୟତି –

ଜ୍ଞେୟାଭାବାଦ୍ୱିଶେଷେଣ ଶୂନ୍ୟକଳ୍ପଂ ବିଭାବ୍ୟତେ ।
ଜ୍ଞାତୃଜ୍ଞେୟାଦିଭିଃ ଶୂନ୍ୟଂ ଶୂନ୍ୟଂ ଜ୍ଞାନାଦିଭିର୍ଗୁଣୈଃ ।। ୬୬।।

---

୩୦୪. ଶ୍ୱେ. ଉ., ୧/୧୨

**ଆଦାବନ୍ତେ ଚ ମଧ୍ୟେ ଚ ଶୂନ୍ୟଂ ସର୍ବତ୍ର ସର୍ବଦା ।**
**ଦ୍ୱିତୀୟେନ ପଦାର୍ଥେନ ଶୂନ୍ୟ ଶୂନ୍ୟଂ ବିଭାବ୍ୟତେ ।। ୬୭ ।।**

ଜ୍ଞେୟାଭାବାତ୍ ସକଳବସ୍ତୁବିଷୟକଜ୍ଞାନାଭାବେନ ଜ୍ଞେୟପଦାର୍ଥଶୂନ୍ୟତ୍ୱାତ୍, 'ସଂବିଦେବ ଭଗବତୀ ବିଷୟସଓୋଗମେ ଶରଣମ୍' ଇତି ପ୍ରାଭାକରୈରପ୍ୟଙ୍ଗୀକୃତତ୍ୱାତ୍, ଶୂନ୍ୟକଳ୍ପଂ ଜ୍ଞାନମିତି ଶେଷଃ, ବିଭାବ୍ୟତେ । ତସ୍ମାଦ୍ ଜ୍ଞାତୃଜ୍ଞେୟାଦିତ୍ରିପୁଟୀମୟ ପ୍ରପଞ୍ଚଶୂନ୍ୟଂ ଜ୍ଞାନାଦିଭିର୍ଜ୍ଞାନେଚ୍ଛାଗୁଣୈଶ୍ଚ ଶୂନ୍ୟମ୍ ଆଦ୍ୟନ୍ତମଧ୍ୟେଷୁ ସର୍ବତ୍ର ସର୍ବଦା ଶୂନ୍ୟମ୍ । କେନେତ୍ୟତ୍ର ଦ୍ୱିତୀୟେନ ପଦାର୍ଥେନ ଶୂନ୍ୟମିତି । ତସ୍ମାଦ୍ ଶୂନ୍ୟଂ ଶୂନ୍ୟଜ୍ଞାନଂ ବିଭାବ୍ୟତେ ।। ୬୬ ୬୭ ।।

– ବିଶେଷ ଭାବରେ ଜ୍ଞେୟର ଅଭାବ ହେବା ହେତୁ ଶୂନ୍ୟ ଜ୍ଞାନର ଅନୁଭବ ହୋଇଥାଏ । ଏହି ଅନୁଭବ ଜ୍ଞାତା, ଜ୍ଞାନ, ଜ୍ଞେୟ ଆଦିରୁ ଶୂନ୍ୟ ତଥା ଜ୍ଞାନ ଇଚ୍ଛା ଆଦି ଗୁଣରୁ ଶୂନ୍ୟ ହୋଇଥାଏ । ଏହା ଆଦି, ମଧ୍ୟ ଓ ଅନ୍ତରେ ସର୍ବତ୍ର ସର୍ବଦା ଶୂନ୍ୟ ହୋଇଥାଏ । ଏହି ଶୂନ୍ୟ (ବ୍ରହ୍ମରୁ ଅତିରିକ୍ତ) ଦ୍ୱିତୀୟ ପଦାର୍ଥରେ ଶୂନ୍ୟ ଅନୁଭୂତ ହୋଇଥାଏ ।। ୬୬-୬୭ ।।

ଅଥ ତତ୍ କିମିତ୍ୟତ୍ରାହ –

**କେବଲଂ ସଚ୍ଚିଦାନନ୍ଦପ୍ରକାଶାଦ୍ୱୟଲକ୍ଷଣମ୍ ।**
**ଶୂନ୍ୟକଳ୍ପଂ ପରାକାଶଂ ପରବ୍ରହ୍ମ ପ୍ରକାଶତେ ।। ୬୮ ।।**

କେବଲଂ ସଚ୍ଚିଦାନନ୍ଦପ୍ରକାଶାଦ୍ୱିତୀୟଶୂନ୍ୟଚିହ୍ନମ୍, ଅତଏବ ଶୂନ୍ୟସଦୃଶଂ ପରବ୍ରହ୍ମ ମହାକାଶରୂପଂ ସତ୍ ପ୍ରକାଶତ ଇତ୍ୟର୍ଥଃ ।। ୬୮ ।।

– କେବଳ, ସତ୍, ଚିତ୍, ଆନନ୍ଦ, ପ୍ରକାଶ ଓ ଅଦ୍ୱିତୀୟ ଲକ୍ଷଣବାଲା, ଶୂନ୍ୟ ସଦୃଶ, ପରାକାଶ ପରବ୍ରହ୍ମ ପ୍ରକାଶିତ ହୁଏ ।। ୬୮ ।।

ଅଥୈବଂ ରୂପେ ବ୍ରହ୍ମଣି ତାଦାତ୍ମ୍ୟାପନ୍ନସ୍ୟ ବିକଳ୍ପଜ୍ଞାନୋତ୍ପତ୍ତିର୍ନ ସମ୍ଭବତୀତ୍ୟତ୍ରାହ –

**ଶୂନ୍ୟଜ୍ଞାନାଦିସଙ୍କଳ୍ପେ ଶୂନ୍ୟସର୍ବାର୍ଥସାଧନେ ।**
**ଜ୍ୟୋତିର୍ଲିଙ୍ଗେ ଚିଦାକାରେ ସ୍ୱପ୍ରକାଶେ ନିରୁତ୍ତରେ ।**
**ଏକୀଭାବମୁପେତସ୍ୟ କଥଂ ଜ୍ଞାନସ୍ୟ ସମ୍ଭବଃ ।। ୬୯ ।।**

ଶୂନ୍ୟଜ୍ଞାନେଚ୍ଛାଦିସଙ୍କଳ୍ପବତି ଶୂନ୍ୟସର୍ବାର୍ଥସାଧନେ ସ୍ୱସ୍ମାଦୁତ୍ତରରହିତେ ପରମଶିବଲିଙ୍ଗଜ୍ୟୋତିରୂପଚିଦାକାରସ୍ୱପ୍ରକାଶେ ଏକୀଭାବଂ ଗତସ୍ୟ ଶିବଯୋଗିନୋ ଜ୍ଞାନସ୍ୟ ସମ୍ଭବୋ ବୃତ୍ତିଜ୍ଞାନାବିର୍ଭାବଃ କଥଂ ସ୍ୟାତ୍ ? ନ କଥଞ୍ଚିଦପୀତ୍ୟର୍ଥଃ ।। ୬୯ ।।

– ଯିଏ ଜ୍ଞାନ ଆଦି ସଂକଳ୍ପ ଶୂନ୍ୟ, ସମସ୍ତ ପୁରୁଷାର୍ଥ ସାଧନରୁ ରହିତ, ନିରୁତ୍ତର (ସର୍ବୋପରି) ଚିତ୍‌ସ୍ୱରୂପ, ସ୍ୱପ୍ରକାଶ ଜ୍ୟୋତିର୍ଲିଙ୍ଗ ସହିତ ଏକ ହୁଏ, ତା'ର ଜ୍ଞାନ କେଉଁଠାରୁ ହେବ ? (କାରଣ ସେ ନିଜେ ଜ୍ଞାନ ସ୍ୱରୂପ ହୋଇଯାଏ) ।। ୬୯ ।।

ଅଥ – 'ନେତି ନେତ୍ୟସ୍ଥୂଲମନଣ୍ୱହ୍ରସ୍ୱମଦୀର୍ଘମପ୍ଲୁତମ୍'[୩୦୫] ଇତି ବୃହଦାରଣ୍ୟ-ଶ୍ରୁତ୍ୟନୁସାରେଣ –

ଅନାଖ୍ୟେ ତୁ ନିରାଲମ୍ବେ ହ୍ୟଗ୍ରାହ୍ୟେ ଭାବବର୍ଜିତେ ।
ନିସ୍ତତ୍ତ୍ୱେ ଯୋଜିତୋ ମୁକ୍ତ ଇତି ଶାସ୍ତ୍ରସ୍ୟ ନିଶ୍ଚୟଃ ।।

ଇତି ନିଶ୍ୱାସକାରିକାତନ୍ତ୍ରାନୁସାରେଣ,

ପଶୁପଶୁପତିଯୋଗୋ ଦୃଗ୍ଗୁଣୈକ୍ୟପ୍ରୟୋଗୋ
ଗଗନଗଗନଦେଶଃ ସିନ୍ଧୁ ସିନ୍ଧୁ ପ୍ରଦେଶଃ ।
ସମସମରସରୂପୋ ଭିନ୍ନଭିନ୍ନସ୍ୱରୂପୋ ନିଶି
ସମରସକାନ୍ତାବଲ୍ଲଭାଶ୍ଳେଷକାନ୍ତଃ ।।

ଇତି ତ୍ରୟୀତନ୍ତ୍ରଯୁକ୍ତିଯୁକ୍ତାଭିଯୁକ୍ତୋକ୍ତ୍ୟନୁସାରେଣ ଚ ପରମୁକ୍ତଲକ୍ଷଣମୁକ୍ତ୍ୱା ଜ୍ଞାନଶୂନ୍ୟସ୍ଥଳଂ ସମାପୟତି –

**ଯସ୍ୟ କାର୍ଯ୍ୟଦଶା ନାସ୍ତି କାରଣତ୍ୱମଥାପି ବା ।**
**ଶେଷତ୍ୱଂ ନୈବ ଶେଷିତ୍ୱଂ ସ ମୁକ୍ତଃ ପର ଉଚ୍ୟତେ ।। ୭୦ ।।**

ଯସ୍ୟ ସର୍ବଂ ନେତି ନେତି ନିବାର୍ଯ୍ୟ ତତ୍ତ୍ୱାତୀତସ୍ୟ ସ୍ୱସ୍ୱରୂପସମ୍ପନ୍ନସ୍ୟ କାର୍ଯ୍ୟାବସ୍ଥା ନାସ୍ତି, ଅଥାପି ବା ତନ୍ନ ଚେତ୍ କାରଣତ୍ୱଂ ଚ ନାସ୍ତି, ଯସ୍ୟ ପରବ୍ରହ୍ମପରଶିବଲିଙ୍ଗାଦି-ପର୍ଯ୍ୟାୟନାମୋଚ୍ଚାରବତଃ ସ୍ୱସ୍ୱରୂପସମ୍ପନ୍ନସ୍ୟ ଶେଷତ୍ୱମ୍ ଅବଶେଷତ୍ୱଂ ଶେଷିତ୍ୱଂ ଶେଷବତ୍ତ୍ୱଂ ଚ ନାସ୍ତି, ସ ନିତ୍ୟପରିପୂର୍ଣ୍ଣଃ ସଚ୍ଚିଦାନନ୍ଦସ୍ୱରୂପପରମୁକ୍ତ ଏବେତ୍ୟୁଚ୍ୟତ ଇତ୍ୟର୍ଥଃ । ଅୟଂ ଭାବଃ – 'ଅନୀଶଶ୍ଚାତ୍ମା ବଧ୍ୟତେ ଭୋକ୍ତୃଭାବାଦ୍ ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାଶୈଃ'[୩୦୬] ଇତି ଶ୍ୱେତାଶ୍ୱତରଶ୍ରୁତ୍ୟା 'ପାଶବଦ୍ଧୋ ଭବେଜ୍ଜୀବଃ ପାଶମୁକ୍ତଃ ପରଃ ଶିବଃ' ଇତି ବୀରାଗମବଚନେନ, ଦେଶିକୋପଦେଶେନ, ସ୍ୱାନୁଭବେନ[୩୦୭] ଚ ମାୟାମଳବିନ୍ଦୁ ତିରୋଭାବକର୍ମପାଶବିମୁକ୍ତପରଶିବଶବ୍ଦବାଚ୍ୟସ୍ୱରୂପାଭି-ବ୍ୟକ୍ତିରେବ ପରମୁକ୍ତିରିତି । ଏତଲ୍ଲିଙ୍ଗତ୍ରୟଂ ଶିବଲିଙ୍ଗୈକ୍ୟସ୍ୟାଙ୍ଗତ୍ରୟସ୍ୟ କ୍ରମେଣ ସଂଯୋଜନୀୟମ୍ ।। ୭୦ ।।

– ଯାହାର କାର୍ଯ୍ୟାବସ୍ଥା ନାହିଁ କି କାରଣାବସ୍ଥା ନାହିଁ, ଯିଏ ଶେଷ (ଅଙ୍ଗ) ନୁହେଁ କି ଶେଷୀ (ଅଙ୍ଗୀ) ନୁହେଁ, ସେ ପରମୁକ୍ତ (ଶ୍ରେଷ୍ଠ ମୁକ୍ତ) ଅଟେ ।। ୭୦ ।।

ଇତି ଜ୍ଞାନଶୂନ୍ୟସ୍ଥଳମ୍

---

୩୦୫. ବୃ. ଉ., ୩/୯/୨୬

୩୦୬. ଶ୍ୱେ. ଉ., ୧/୮

୩୦୭. ତୁଳନୀୟ – ଶାସ୍ତ୍ରତଃ ଗୁରୁତଃ ସ୍ୱତଃ (ତଂ. ଆ.)

## ଅଥୋପଦେଶୋପସଂହାରବର୍ଣ୍ଣନମ୍

ଅଥୈତଚ୍ଛାସ୍ତ୍ରସଂଗ୍ରହକୃଚ୍ଛିବାଚାର୍ଯ୍ୟଃ ସ୍ୱଶିଷ୍ୟପ୍ରଶିଷ୍ୟାନ୍ ପ୍ରତ୍ୟେତଚ୍ଛାସ୍ତ୍ରୋପରମଂ ସୂଚୟନ୍ ରେଣୁକଗଣେଶ୍ୱରୋ ନିରୁତ୍ତରଃ ସନ୍ ତୂଷ୍ଣୀଂ ସ୍ଥିତ ଇତି ସୂତ୍ରଦ୍ୱୟେନ କଥୟତି -

**ଏତାବଦୁକ୍ତ୍ୱା ପରମପ୍ରବୋଧମଦ୍ୱୈତମାନନ୍ଦଶିବପ୍ରକାଶମ୍ ।**

**ଦେବ୍ୟୈ ପୁରା ଭାଷିତମୀଶ୍ୱରେଣ ତୂଷ୍ଣୀମଭୂଦ୍ ଧ୍ୟାନପରୋ ଗଣେନ୍ଦ୍ରଃ ।। ୭୧ ।।**

ଗଣେନ୍ଦ୍ରୋ ରେଣୁକଗଣେଶ୍ୱରଃ ପରମେଶ୍ୱରେଣ ଦେବ୍ୟୈ ପାର୍ବତ୍ୟୈ ପୁରା ରହସ୍ୟଂ ସଦ୍‌ଭାଷିତଂ ଶିବାନନ୍ଦପ୍ରକାଶକଂ ଶିବାଦ୍ୱୈତରୂପଂ ପରମପ୍ରବୋଧମ୍ ଉପକ୍ରମୋପ-ସଂହାରମଧ୍ୟପରାମର୍ଶେଷ୍ୱପି ସ୍ୱସ୍ୱରୂପପ୍ରକାଶକପିଣ୍ଡାଦିବୃତ୍ତିଜ୍ଞାନଶୂନ୍ୟାନ୍ତବୀରଶୈବଶାସ୍ତ୍ର-ମେତାବଦନେନ ପ୍ରକାରେଣୋକ୍ତ୍ୱା କୁମ୍ଭସମ୍ଭବାୟୋପଦିଶ୍ୟ ସ୍ୱସ୍ୱରୂପଧ୍ୟାନାସକ୍ତଃ ସନ୍ ତୂଷ୍ଣୀମଭୂଦ୍ ମୌନମୁଦ୍ରାବଲମ୍ବୀ ବଭୂବେତ୍ୟର୍ଥଃ ।। ୭୧ ।।

- (ଉପଦେଶୋପସଂହାର ବର୍ଣ୍ଣନ) - ଗଣେଶ୍ୱର ରେଣୁକାଚାର୍ଯ୍ୟ ଈଶ୍ୱର (ଶିବ)ଙ୍କଦ୍ୱାରା ପ୍ରଥମେ ଦେବୀ ପାର୍ବତୀଙ୍କୁ ଗୁପ୍ତ ରୂପରେ ଉପଦିଷ୍ଟ ଅଦ୍ୱୈତ ଆନନ୍ଦ ଶିବ ପ୍ରକାଶ କରୁଥିବା ପରମ ପ୍ରବୋଧ ଅର୍ଥାତ୍ ଉତ୍ତମ ଜ୍ଞାନର ଏହିପରି ଏବଂ ଏତିକି ଉପଦେଶ ଦେଇ ଧ୍ୟାନସ୍ଥ ହୋଇ ମୌନ ହୋଇଗଲେ ।। ୭୧ ।।

**ଏବମୁକ୍ତ୍ୱା ସମାସୀନଂ ଶିବଯୋଗପରାୟଣମ୍ ।**

**ରେଣୁକଂ ତଂ ସମାଲୋକ୍ୟ ବଭାଷେ ପ୍ରାଞ୍ଜଲିର୍ମୁନି ।। ୭୨ ।।**

ବଭାଷେ ସ୍ତୁତିମାରବ୍ଧବାନିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୨ ।।

- ଏହିପରି କହି (ଆସନ ଉପରେ) ବିରାଜମାନ ଶିବଯୋଗୀ ସେହି ରେଣୁକାଚାର୍ଯ୍ୟଙ୍କୁ ଦେଖି ଅଗସ୍ତ୍ୟମୁନି ହାତ ଜୋଡ଼ି କରି କହିଲେ ।। ୭୨ ।।

ଅଥ ସପ୍ତଭିଃ ସୂତ୍ରୈଃ ଶ୍ରୀରେଣୁକସ୍ତୁତିଂ କରୋତ୍ୟଗସ୍ତ୍ୟ ଉବାଚେତି -

**ଶିବଯୋଗବିଶେଷଜ୍ଞ ଶିବଜ୍ଞାନମହୋଦଧେ ।**

**ସମସ୍ତବେଦଶାସ୍ତ୍ରାଦିବ୍ୟବହାରଧୁରନ୍ଧର ।। ୭୩ ।।**

**ଆଲୋକମାତ୍ରନିର୍ଦ୍ଧୂତ ସର୍ବସଂସାରବନ୍ଧନ ।**

**ସ୍ୱଚ୍ଛନ୍ଦଚରିତୋଲ୍ଲାସ ସ୍ୱପ୍ରକାଶାତ୍ମବଚ୍ଛିବ ।। ୭୪ ।।**

**ଅବତୀର୍ଣ୍ଣମିଦଂ ଶାସ୍ତ୍ରମନବଦ୍ୟଂ ତ୍ୱଦାନନାତ୍ ।**

**ଶ୍ରୁତ୍ୱା ମେ ମୋଦତେ ଚିତ୍ତଂ ଜ୍ୟୋତିଃ ପଶ୍ୟେ ଶିବାଭିଧମ୍ ।। ୭୫ ।।**

ଶିବଧ୍ୟାନଯୋଗବିଶେଷଜ୍ଞ, ଶିବଜ୍ଞାନସ୍ୟ ସମୁଦ୍ର, ସମସ୍ତବେଦାଗମପୁରାଣାଦି ଶାସ୍ତ୍ରବ୍ୟବହାରଭାରବାହକ, ଦର୍ଶନମାତ୍ରନିବାରିତସମସ୍ତଜନସଂସାରବନ୍ଧ, ସ୍ୱେଚ୍ଛାଚାରା-

ର୍ଭାବ, ସ୍ୱପ୍ରକାଶେନୈବ ଚୈତନ୍ୟବଚ୍ଛିବସ୍ୱରୂପ, ଭୋ ଗଣେନ୍ଦ୍ର, ତ୍ୱନ୍ମୁଖାଦାବିର୍ଭୂତଂ ଦୋଷରହିତମିଦଂ ବୀରଶୈବଶାସ୍ତ୍ରଂ ଶ୍ରୁତ୍ୱା ମେ ମନୋ ନନ୍ଦତି ଶିବପ୍ରକାଶଂ ପଶ୍ୟେ ।। ୭୩-୭୫ ।।

– ହେ ଶିବଯୋଗର ବିଶେଷଜ୍ଞ, ହେ ଶିବଜ୍ଞାନର ମହାସାଗର, ହେ ସମସ୍ତ ବେଦଶାସ୍ତ୍ରାଦି ବ୍ୟବହାରର ଧୁରନ୍ଧର, ହେ ଆଲୋକମାତ୍ରରେ ଅପବାରିତ ସମସ୍ତ ସଂସାର ରୂପ ବନ୍ଧନଯୁକ୍ତ, ହେ ସ୍ୱଚ୍ଛନ୍ଦଚରିତରେ ଉଲ୍ଲାସଯୁକ୍ତ, ହେ ସ୍ୱପ୍ରକାଶରୂପ ଶିବ, ଆପଣଙ୍କ ମୁଖ ନିଃସୃତ ଏହି ନିର୍ମଳଶାସ୍ତ୍ରକୁ ଶୁଣି କରି ମୋର ଚିତ୍ତ ଆନନ୍ଦରେ ପୂର୍ଣ୍ଣ ହୋଇଛି । ମୁଁ ଶିବ ନାମକ ଜ୍ୟୋତିର ସାକ୍ଷାତ୍କାର କରୁଛି ।। ୭୩-୭୫ ।।

**ଅଦ୍ୟ ମେ ସଫଳଂ ଜନ୍ମ ଗତୋ ମେ ଚିତ୍ତବିଭ୍ରମଃ ।**
**ସଞ୍ଜାତା ପାଶବିଚ୍ଛିତ୍ତିସ୍ତପାଂସି ଫଳିତାନି ମେ ।। ୭୬ ।।**

'ଅଦ୍ୟ ମେ' ଇତି ସର୍ବତ୍ର ସମ୍ବନ୍ଧଃ ।। ୭୬ ।।

– ଆଜି ମୋର ଜନ୍ମ ସଫଳ ହୋଇଗଲା । ମୋର ମନର ସନ୍ଦେହ ଦୂର ହୋଇଗଲା । ପାଶ (ବନ୍ଧନ) କଟିଗଲା ଏବଂ ମୋର ତପସ୍ୟା ଫଳୀଭୂତ ହେଲା ।। ୭୬ ।।

**ଇଦାନୀମେବ ମେ ଜାତଂ ମୁନିରାଜୋତ୍ତମୋତ୍ତମମ୍ ।**
**ଇତଃ ପରଂ ମୟା ନାସ୍ତି ସଦୃଶୋ ଭୁବନତ୍ରୟେ ।। ୭୭ ।।**

ମୁନୀଶ୍ୱରାଣାମ୍ ଋଷିଶ୍ରେଷ୍ଠାନାଂ ଉତ୍ତମୋତ୍ତମତ୍ୱମିତ୍ୟର୍ଥଃ, ଧର୍ମଧର୍ମିଣୋରଭେଦାତ୍ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୭ ।।

– ଏହି ସମୟରେ (ଏବେ) ମୋଠାରେ ମୁନିଶ୍ରେଷ୍ଠତା ଆସିଛି । ଏହାପରେ ତିନି ଭୁବନରେ ମୋ ପରି କେହି ନାହିଁ ।। ୭୭ ।।

**ଶାସ୍ତ୍ରଂ ତବ ମୁଖୋଦ୍‌ଗୀର୍ଣ୍ଣଂ ଶିବାଦ୍ୱୈତପରମ୍ପରମ୍ ।**
**ମାଂ ବିନା କସ୍ୟ ଲୋକେଷୁ ଶ୍ରୋତୁମସ୍ତି ତପଃ ଶୁଭମ୍ ।। ୭୮ ।।**
**ତପସାଂ ପରିପାକେନ ଶଙ୍କରସ୍ୟ ପ୍ରସାଦତଃ ।**
**ଆଗତସ୍ତ୍ୱଂ ମହାଭାଗ ମାଂ କୃତାର୍ଥୟିତୁଂ ଗିରା ।। ୭୯ ।।**

ଉଦ୍‌ଗୀର୍ଣ୍ଣଂ ବହିର୍ନିର୍ଗତମିତ୍ୟର୍ଥଃ । ଶାସ୍ତ୍ରଂ ବୀରଶୈବଶାସ୍ତ୍ରମ୍ । ମହାଭାଗ ଶ୍ରେଷ୍ଠେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୭୮-୭୯ ।।

– ଆପଣଙ୍କ ମୁଖନିସୃତ ଶିବାଦ୍ୱୟପରମ୍ପରାର ଶୁଭଶାସ୍ତ୍ରକୁ ଶୁଣିବା ପାଇଁ ମୋ ବିନା ଆଉ କାହାର ତପସ୍ୟା ହୋଇପାରିବ ।। ୭୮ ।।

– ହେ ମହାଭାଗ, ମୋର ତପସ୍ୟାର ପରିପାକରୁ ଶଙ୍କରଙ୍କର କୃପା ହେତୁ ଆପଣ ନିଜର ବାଣୀରେ ମତେ କୃତକୃତ୍ୟ କରିବା ପାଇଁ ଆସିଛନ୍ତି ।। ୭୯ ।।

ଅଥ ସଂଗ୍ରହକୃଚ୍ଛିବାଚାର୍ଯ୍ୟଃ କୁମ୍ଭସମ୍ଭବଂ ଶ୍ରୀରେଣୁକଃ ସ୍ତୁତିଂ କୃତବାନିତ୍ୟାହ –

**ଇତି ସ୍ତୁବନ୍ତଂ ବିନୟାଦଗସ୍ତ୍ୟଂ ମୁନିପୁଙ୍ଗବମ୍ ।**
**ଆଲୋକ୍ୟ କରୁଣାଦୃଷ୍ଟ୍ୟା ବଭାଷେ ସ ଗଣେଶ୍ୱରଃ ।। ୮୦ ।।**

ବିନୟାଦ୍ ଭକ୍ତେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୮୦ ।।

– ଏହିପରି ବିନୟପୂର୍ବକ ସ୍ତୁତି କରି ମୁନିଶ୍ରେଷ୍ଠ ଅଗସ୍ତ୍ୟଙ୍କୁ କୃପାମୟୀ ଦୃଷ୍ଟିରେ ଦେଖି ଗଣେଶ୍ୱର ରେଣୁକାଚାର୍ଯ୍ୟ କହିଲେ ।। ୮୦ ।।

**ଅଗସ୍ତ୍ୟ ମୁନିଶାର୍ଦୂଳ ତପଃସିଦ୍ଧମନୋରଥ ।**
**ତ୍ୱାଂ ବିନା ଶିବାଶାସ୍ତ୍ରସ୍ୟ କଃ ଶ୍ରୋତୁମଧିକାରବାନ୍ ।। ୮୧ ।।**

ଏକୋତ୍ତରଶତଂ ପ୍ରୋକ୍ତା ଦୀକ୍ଷାଭେଦା ମୟା ପୁରା ।
ଦୀକ୍ଷିତସ୍ତାସୁ ଗୁରୁଣା ଭକ୍ତୋଽସ୍ମିନ୍ନଧିକାରବାନ୍ ।।

ଇତି ଯୋଗଜାଗମବଚନାଦ୍ ଅସ୍ମିନ୍ ଶାସ୍ତ୍ରେ ତ୍ୱାଂ ବିନା ଅଧିକାରୀ ନାସ୍ତୀତ୍ୟର୍ଥଃ ।। ୮୧ ।।

– ହେ ତପସ୍ୟାଦ୍ୱାରା ସିଦ୍ଧମନୋରଥବାଲା ମୁନିଶ୍ରେଷ୍ଠ ଅଗସ୍ତ୍ୟ, ଆପଣଙ୍କ ବିନା ଶିବଶାସ୍ତ୍ରକୁ ଶୁଣିବାର ଅଧିକାରୀ ଅନ୍ୟ କିଏ ହୋଇପାରିବ ? ।। ୮୧ ।।

**ପାତ୍ରଂ ଶିବପ୍ରସାଦସ୍ୟ ଭବାନେକୋ ନ ଚାପରଃ ।**
**ଇତି ନିଶ୍ଚିତ୍ୟ କଥିତଂ ମୟା ତେ ତନ୍ତ୍ରମୀଦୃଶମ୍ ।। ୮୨ ।।**

ଈଦୃଶଂ ବୀରଶୈବତନ୍ତ୍ରମିତ୍ୟର୍ଥଃ ।। ୮୨ ।।

– ଶିବଙ୍କର କୃପାର ପାତ୍ର କେବଳ ଆପଣ ହିଁ ଅଟନ୍ତି, ଅନ୍ୟ କେହି ନୁହଁନ୍ତି – ଏହିପରି ନିଶ୍ଚୟ କରି ମୁଁ ଏହିପରି ତନ୍ତ୍ରକୁ ଆପଣଙ୍କୁ ଉପଦେଶ ଦେଲି ।। ୮୨ ।।

**ସ୍ଥାପ୍ୟତାଂ ସର୍ବଲୋକେଷୁ ତନ୍ତ୍ରମେତତ୍ ତ୍ୱୟା ମୁନେ ।**
**ଈଦୃଶଂ ଶିବବୋଧସ୍ୟ ସାଧନଂ ନାସ୍ତି କୁତ୍ରଚିତ୍ ।। ୮୩ ।।**

ସ୍ପଷ୍ଟମ୍ ।। ୮୩ ।।

– ହେ ମୁନି ! ଆପଣ ଏହି ତନ୍ତ୍ରକୁ ସବୁ ଲୋକରେ ପ୍ରଚାର, ପ୍ରସାର ଓ ସ୍ଥାପନ କରନ୍ତୁ । ଶିବଜ୍ଞାନର ଏପରି ସାଧନ କେଉଁଠାରେ ନାହିଁ ।। ୮୩ ।।

**ରହସ୍ୟମେତଦ୍ ସର୍ବଜ୍ଞଃ ସର୍ବାନୁଗ୍ରାହକଃ ଶିବଃ ।**
**ଅବାଦୀତ୍ ସର୍ବଲୋକାନାଂ ସିଦ୍ଧୟେ ପାର୍ବତୀପତିଃ ।। ୮୪ ।।**

ସିଦ୍ଧୟେ ଭୋଗମୋକ୍ଷସିଦ୍ଧୟ ଇତ୍ୟର୍ଥଃ । ଏତଦ୍ରହସ୍ୟଂ ବୀରଶୈବରହସ୍ୟମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୮୪ ।।

– ସର୍ବଜ୍ଞ, ସର୍ବାନୁଗ୍ରହକର୍ତ୍ତା, ପାର୍ବତୀପତି ଶିବ ସମସ୍ତ ଲୋକଙ୍କର ସିଦ୍ଧି ପାଇଁ ଏହି ରହସ୍ୟକୁ (ତନ୍ତ୍ରୋପନିଷଦ୍ କୁ) ବତାଇଲେ ।। ୮୪ ।।

ତଦିଦଂ ଶିବସିଦ୍ଧାନ୍ତସାରାଣାମୁତ୍ତମୋତ୍ତମମ୍ ।
ବେଦବେଦାନ୍ତସର୍ବସ୍ୱଂ ବିଦ୍ୟାଚାରପ୍ରବର୍ତ୍ତକମ୍ ।। ୮୫ ।।
ବୀରମାହେଶ୍ୱରଗ୍ରାହ୍ୟଂ ଶିବାଦ୍ୱୈତପ୍ରକାଶକମ୍ ।
ପରୀକ୍ଷିତେଭ୍ୟୋ ଦାତବ୍ୟଂ ଶିଷ୍ୟେଭ୍ୟୋ ନାନ୍ୟଥା କ୍ୱଚିତ୍ ।। ୮୬ ।।

ତଦିଦଂ ବୀରଶୈବଷଡ୍ସ୍ଥଲଶିବଯୋଗମାର୍ଗପ୍ରତିପାଦକଂ ତଦିଦଂ ଶାସ୍ତ୍ରଂ କାମିକାଦିବାତୁଲାନ୍ତାଷ୍ଟାବିଂଶତିଦିବ୍ୟାଗମସାରାଣାମୁତ୍ତମୋତ୍ତମଂ ଚତୁର୍ବେଦଦ୍ୱାତ୍ରିଂଶଦୁପନିଷଦ୍‌ସର୍ବସ୍ୱଂ ଜ୍ଞାନକ୍ରିୟାପ୍ରକାଶକଂ ବୀରମାହେଶ୍ୱରୈରଙ୍ଗୀକରଣୀୟଂ ପରଶିବାଦ୍ୱୈତପ୍ରତିପାଦକମିଦଂ ଶାସ୍ତ୍ରମ୍ 'ତାବତ୍ୟଃ ସଂହିତା ଅନ୍ତେବାସିନେ ବ୍ରୂୟାନ୍ନାସଂବତ୍ସରବାସିନେ ନ ପ୍ରବକ୍ତୟିତାଚାର୍ଯ୍ୟଃ' ଇତ୍ୟୈତରେୟଶ୍ରୁତେଃ –

ଭକ୍ତସ୍ୟୈବାତ୍ମଶିଷ୍ୟସ୍ୟ ବିରକ୍ତସ୍ୟ ମହାମତେଃ ।
ଗୁରୁଣା ଜ୍ଞାନିନା ଦେୟମାନନ୍ଦରସନିର୍ଭରମ୍ ।।

ଇତି ଯୋଗଜାଗମବଚନାଚ୍ଚ ପରୀକ୍ଷିତେଭ୍ୟଃ ଶିଷ୍ୟେଭ୍ୟୋ ଦେୟମ୍, ଅନଧିକାରିଣେ ନ ବ୍ରୂୟାଦିତି ଭାବଃ ।। ୮୫-୮୬ ।।

– ଅଠେଇଶି ଶୈବାଗମତତ୍ତ୍ୱରେ ଉତ୍ତମ, ବେଦ ଏବଂ ବେଦାନ୍ତର ସର୍ବସ୍ୱ, ବିଦ୍ୟାଚାରର ପ୍ରବର୍ତ୍ତକ, ବୀରମାହେଶ୍ୱରଙ୍କ ଦ୍ୱାରା ସ୍ୱୀକାର୍ଯ୍ୟ, ଶୈବାଦ୍ୱୈତର ପ୍ରକାଶକ, ଏହି ଶାସ୍ତ୍ର ପରୀକ୍ଷିତ ଶିଷ୍ୟଙ୍କୁ ହିଁ ଦେବା ଉଚିତ୍ । ଅନ୍ୟ ପ୍ରକାର ଲୋକଙ୍କୁ କେବେ ନୁହେଁ ।। ୮୫-୮୬ ।।

ଏତଚ୍ଛ୍ରବଣମାତ୍ରେଣ ସର୍ବେଷାଂ ପାପସଂକ୍ଷୟଃ ।
ଅବତୀର୍ଣ୍ଣଂ ମୟା ଭୂମୌ ଶାସ୍ତ୍ରସ୍ୟାସ୍ୟ ପ୍ରବୃତ୍ତୟେ ।
ପ୍ରବର୍ତ୍ତୟ ଶିବାଦ୍ୱୈତଂ ତ୍ୱମପି ଜ୍ଞାନମୀଦୃଶମ୍ ।। ୮୭ ।।

ସ୍ପଷ୍ଟମ୍ ।। ୮୭ ।।

– କେବଳ ଏହାକୁ ଶୁଣିଲେ ସବୁ ଲୋକଙ୍କର ପାପ କ୍ଷୟ ହୋଇଥାଏ । ଏହି ଶାସ୍ତ୍ରର ପ୍ରବର୍ତ୍ତନ ନିମନ୍ତେ ମୁଁ ଏହି ପୃଥିବୀରେ ଅବତାର ନେଇଛି । ଆପଣ ମଧ୍ୟ ଏହିପରି ଶୈବାଦ୍ୱୈତ ଜ୍ଞାନର ପ୍ରଚାର କରନ୍ତୁ ।। ୮୭ ।।

ଇତି ଶ୍ରୀମଦ୍‌ଷଟ୍‌ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ବୀରଶୈବଧର୍ମନିର୍ଣ୍ଣୟେ ସିଦ୍ଧାନ୍ତଶିଖାମଣୌ ଶିବୈକ୍ୟସ୍ଥଲବିଷୟନବବିଧଲିଙ୍ଗପ୍ରସଙ୍ଗୋ ନାମ ବିଂଶଃ ପରିଚ୍ଛେଦଃ ।। ୨୦।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତଶିଖାମଣିବ୍ୟାଖ୍ୟାୟାଂ ଶିବୈକ୍ୟସ୍ଥଲ-ବିଷୟନବବିଧଲିଙ୍ଗପ୍ରସଙ୍ଗୋ ନାମ ବିଂଶଃ ପରିଚ୍ଛେଦଃ ।। ୨୦।।

ଏହିପରି ଶ୍ରୀସିଦ୍ଧାନ୍ତଶିଖାମଣିର ଶିବୈକ୍ୟସ୍ଥଲବିଷୟନବବିଧଲିଙ୍ଗପ୍ରସଙ୍ଗ ନାମକ ବିଂଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ ଜ୍ଞାନବତୀ ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସଂପୂର୍ଣ୍ଣ ହେଲା ।। ୨୦।।



# ଏକବିଂଶଃ ପରିଚ୍ଛେଦଃ

## ବିଭୀଷଣାଭୀଷ୍ଟଦାନମ୍

ଅଥ ରେବଣସିଦ୍ଧେଶ୍ୱରେଣ କୁମ୍ଭସମ୍ଭବାୟପିଣ୍ଡାଦିବୃତ୍ତିଜ୍ଞାନଶୂନ୍ୟାନ୍ତୋପଦିଷ୍ଟଂ ବୀରଶୈବସଂଗ୍ରହଂ ଶିବଯୋଗିସଂଜ୍ଞକାଚାର୍ଯ୍ୟଃ ସ୍ୱଶିଷ୍ୟପ୍ରଶିଷ୍ୟେଷୁ ପ୍ରଖ୍ୟାତଂ କୃତ୍ୱା ଅନନ୍ତରଂ ରେଣୁକବିଭୀଷଣସଂବାଦଂ ରେବଣସିଦ୍ଧେଶ୍ୱରୈକ୍ୟଂ ଚ ପଞ୍ଚପଞ୍ଚାଶଦ୍‌ସୂତ୍ରୈଃ ସଂଗ୍ରହ୍ୟାହ -

ଇତ୍ୟୁକ୍ତ୍ୱା ପଶ୍ୟତସ୍ତସ୍ୟ ପୁରସ୍ତାଦେବ ରେଣୁକଃ ।
ଅନ୍ତର୍ଦଧେ ମହାଦେବଂ ଚିନ୍ତୟନ୍ନନ୍ତରାତ୍ମନା ।। ୧ ।।

ସ୍ପଷ୍ଟମ୍ ।। ୧ ।।

- (ବିଭୀଷଣଙ୍କୁ ଅଭୀଷ୍ଟଦାନ) - ଏହିପରି କହି ରେଣୁକଗଣେଶ୍ୱର ନିଜର ଅନ୍ତରାତ୍ମାରେ ମହାଦେବଙ୍କର ଧ୍ୟାନ କରି ସେହି ଅଗସ୍ତ୍ୟଙ୍କ ସମ୍ମୁଖରେ ଅନ୍ତର୍ହିତ ହୋଇଗଲେ ।। ୧ ।।

ଯ ଇଦଂ ଶିବସିଦ୍ଧାନ୍ତଂ ବୀରଶୈବମତଂ ପରମ୍ ।
ଶୃଣୋତି ଶୁଦ୍ଧମନସା ସ ଯାତି ପରମାଂ ଗତିମ୍ ।। ୨ ।।

ଯଃ ପୁରୁଷୋ ବୀରଶୈବମତମଙ୍ଗଲିଙ୍ଗଷଡ୍‌ସ୍ଥଲରୂପଂ ସଦ୍ ବୀରଶୈବଧର୍ମନିର୍ଣ୍ଣୟ ସମ୍ମତଂ ପରଂ ସର୍ବୋତ୍କୃଷ୍ଟମ୍ ଇଦଂ ଶିବସିଦ୍ଧାନ୍ତଂ ଶ୍ରୁତିସମ୍ମତମେତଚ୍ଛିବସିଦ୍ଧାନ୍ତଂ ଶୁଦ୍ଧମନସା ନିର୍ମଳଚିତ୍ତେନ ଶୃଣୋତି, ସ ପରମାଂ ଗତିଂ ପରମୁକ୍ତିଂ ଯାତୀତ୍ୟର୍ଥଃ ।। ୨ ।।

- ଯିଏ ଏହି ବୀରଶୈବ ଧର୍ମସମ୍ମତ ଶିବସିଦ୍ଧାନ୍ତକୁ ଶୁଦ୍ଧମନରେ ଶୁଣେ, ସେ ପରମଗତିକୁ ପ୍ରାପ୍ତ ହୁଏ ।। ୨ ।।

ଅଥାନ୍ତର୍ହିତୋ ରେଣୁକୋ ଲଙ୍କାଂ ପ୍ରବିଷ୍ଟବାନିତ୍ୟାହ -

ସ୍ୱଚ୍ଛନ୍ଦାଚାରରସିକଃ ସ୍ୱେଚ୍ଛାନିର୍ମିତବିଗ୍ରହଃ ।
ଆସସାଦ ପୁରୀଂ ଲଙ୍କାଂ ରେଣୁକୋ ଗଣନାୟକଃ ।। ୩ ।।

ନିର୍ମଳସ୍ୱେଚ୍ଛାଚାରରସିକ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩ ।।

- ସ୍ୱଚ୍ଛନ୍ଦ ଆଚରଣରେ ଆନନ୍ଦର ଅନୁଭବ କରୁଥିବା ତଥା ନିଜର ଇଚ୍ଛାନୁସାରେ ଶରୀର ଧାରଣ କରୁଥିବା ଗଣେଶ୍ୱର ରେଣୁକ (ଅନ୍ତର୍ହିତ ହେବା ପରେ) ଲଙ୍କା ପହଞ୍ଚିଗଲେ ।। ୩ ।।

ତମାଗତଂ ମହାଭାଗଂ ସର୍ବାଗମବିଶାରଦମ୍ ।
ବିଭୀଷଣଃ ସମାଲୋକ୍ୟ ଗେହଂ ପ୍ରାବେଶୟନ୍ନିଜମ୍ ।। ୪ ।।

ମହାଭାଗଃ ଶ୍ରେଷ୍ଠଃ ସର୍ବାଗମବିଶାରଦଃ କାମିକାଦିବାତୁଳାନ୍ତଦିବ୍ୟାଗମକୁଶଳ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪।।

– କାମିକଠାରୁ ବାତୁଳ ପର୍ଯ୍ୟନ୍ତ ସମସ୍ତ ଦିବ୍ୟ ଆଗମରେ ବିଶାରଦ ସେହି ମହାଭାଗ ରେଣୁକାଚାର୍ଯ୍ୟଙ୍କୁ ଆସିଥିବାର ଦେଖି ବିଭୀଷଣ ତାଙ୍କୁ ନିଜ ଘରେ ପ୍ରବେଶ କରାଇଲେ ।। ୪।।

**ଭଦ୍ରାସନେ ନିଜେ ରମ୍ୟେ ନିବେଶ୍ୟ ଗଣନାୟକମ୍ ।**
**ଅର୍ଘ୍ୟପାଦ୍ୟାଦିଭିଃ ସର୍ବୈରୁପଚାରୈରପୂଜୟତ୍ ।। ୫।।**

ନିଜେ ଭଦ୍ରାସନେ ସ୍ୱକୀୟସିଂହାସନେ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୫।।

– ନିଜର ରମଣୀୟ ସିଂହାସନ ଉପରେ ଗଣେଶ୍ୱରଙ୍କୁ ବସାଇ (ବିଭୀଷଣ) ଅର୍ଘ୍ୟପାଦ୍ୟ ଆଦି ସମସ୍ତ ଉପଚାରରେ ତାଙ୍କର ପୂଜା କଲେ ।। ୫।।

**ପୂଜିତେନ ପ୍ରସନ୍ନେନ ରେଣୁକେନ ନିରୂପିତଃ ।**
**ନିଷସାଦ ତଦଭ୍ୟାଶେ ସ ନିଜାସନ ମାଶ୍ରିତଃ ।। ୬।।**

ସ ବିଭୀଷଣଃ ପୂଜାପ୍ରସନ୍ନେନ ଶ୍ରୀରେଣୁକେନାଜ୍ଞାପିତଃ ସନ୍ ତତ୍ସମୀପେ ସ୍ୱକୀୟାସନାନ୍ତରମାଶ୍ରିତବାନ୍ ସନ୍ ନିଷସାଦ ଉପବିଷ୍ଟବାନିତ୍ୟର୍ଥଃ ।। ୬।।

– ପୂଜିତ ଅତଏବ ପ୍ରସନ୍ନ ରେଣୁକାଚାର୍ଯ୍ୟଦ୍ୱାରା ଆଦେଶକୁ ପ୍ରାପ୍ତ କରି ସେହି (ବିଭୀଷଣ) ତାଙ୍କ ପାଖରେ ନିଜର ଆସନ ଉପରେ ବସିଲେ ।। ୬।।

ଅଥ ବିଭୀଷଣଃ –

**ଆବଭାଷେ ଗଣେନ୍ଦ୍ରଂ ତଂ କୃତାଞ୍ଜଳି ବିଭୀଷଣଃ ।**
**ମାନୁଷାକାରସମ୍ପନ୍ନଂ ସାକ୍ଷାଚ୍ଛିବ ମିବାପରମ୍ ।। ୭।।**

ବିଭୀଷଣୋ ମାନୁଷାକୃତିଂ ସାକ୍ଷାଦପରଂ ଶିବମିବ ସ୍ଥିତମିତି ଶେଷଃ । ତଂ ଗଣେନ୍ଦ୍ରଂ ରେଣୁକଂ କୃତାଞ୍ଜଳି କୃତମଞ୍ଜଳିପୁଟଂ ଯସ୍ମିନ୍ କର୍ମଣି ଯଥା ଭବତି ତଥା ଆବଭାଷେ ବିଜ୍ଞାପନବଚନଂ ପ୍ରଯୁକ୍ତବାନିତ୍ୟର୍ଥଃ ।। ୭।।

– ଏହାପରେ ମନୁଷ୍ୟ ଆକାର ଧାରଣ କରିଥିବା ସାକ୍ଷାତ୍ ଦ୍ୱିତୀୟ ଶିବପରି ସେହି ଗଣେଶ୍ୱରଙ୍କୁ ବିଭୀଷଣ ହାତଯୋଡ଼ି କହିଲେ ।। ୭।।

**ରେଣୁକ ତ୍ୱଂ ଗଣାଧୀଶ ଶିବଜ୍ଞାନପରାୟଣ ।**
**ଅବତୀର୍ଣ୍ଣଂ ମହୀମେନାମିତି ସମ୍ୟକ୍ ଶ୍ରୁତଂ ମୟା ।। ୮।।**

ଭୋ ଶିବଜ୍ଞାନପରାୟଣ ଗଣାଧୀଶ ଶ୍ରୀରେଣୁକ, ତ୍ୱାମେନାଂ ମହୀଂ ଭୂଲୋକଂ ପ୍ରତ୍ୟବତୀର୍ଣ୍ଣଂ ସନ୍ତଂ ମହା ସମ୍ୟଗ୍ ଇତି ଲୋକବାର୍ତ୍ତୟା ଶ୍ରୁତମିତ୍ୟର୍ଥଃ ।। ୮।।

– ହେ ଶିବଜ୍ଞାନପରାୟଣ ଗଣେଶ୍ୱର ରେଣୁକ, ଆପଣ ଏହି ଧରାଧାମ ଉପରେ ଅବତାର ନେଇଛନ୍ତି – ଏହା ମୁଁ ଭଲ ଭାବରେ ଜାଣିଛି ।। ୮ ।।

**ମଦ୍‌ଭାଗ୍ୟଗୌରବାଦଦ୍ୟ ସମାୟାସ୍ତ୍ୱଂ ପୁରୀମିମାମ୍ ।**
**କଥଂ ଭାଗ୍ୟବିହୀନାନାଂ ସୁଲଭାଃ ସ୍ୟୁର୍ଭବାଦୃଶାଃ ।। ୯ ।।**

ସ୍ପଷ୍ଟମ୍ ।। ୯ ।।

– ମୋର ମହାଭାଗ୍ୟରୁ ଆଜି ଆପଣ ଏହି ନଗରୀରେ (ଲଙ୍କାରେ) ଆସିଛନ୍ତି। ଭାଗ୍ୟହୀନ ଲୋକଙ୍କୁ ଆପଣଙ୍କ ପରି ଲୋକ କିପରି ସୁଲଭ ହୋଇପାରିବେ ? ।। ୯ ।।

**ମତ୍‌ସମୋ ନାସ୍ତି ଲୋକେଷୁ ଭାଗ୍ୟାତିଶୟବତ୍ତୟା ।**
**ଯସ୍ୟ ଗେହଂ ସ୍ୱୟଂ ପ୍ରାପ୍ତୋ ଭବାନ୍ ସାକ୍ଷାନ୍ମହେଶ୍ୱରଃ ।। ୧୦ ।।**

ଭୋ ରେଣୁକ, ଭୂଲୋକଗତପ୍ରତ୍ୟକ୍ଷମହେଶ୍ୱରୋ ଭବାନ୍ ସ୍ୱୟମେବ ଯସ୍ୟ ମେ ରାଜାଲୟଂ ପ୍ରାପ୍ତୋଽସି, ତତୋ ଭାଗ୍ୟାତିଶୟତ୍ତ୍ୱେନ ଲୋକେଷୁ ମତ୍ସମଃ କୋଽପି ନାସ୍ତୀତ୍ୟର୍ଥଃ ।। ୧୦ ।।

– ଏହି ସଂସାରରେ ମୋ ପରି ଅତିଶୟ ଭାଗ୍ୟଶାଳୀ କେହି ନାହିଁ, ଯାହାଙ୍କ ଘରେ ସାକ୍ଷାଦ୍ ମହେଶ୍ୱର ସ୍ୱରୂପ ଆପଣ ସ୍ୱୟଂ ଆସିଛନ୍ତି ।। ୧୦ ।।

ଅଥ ନ ତାବନ୍ମାତ୍ରମିତ୍ୟତ୍ରାହ –

**କୃତାର୍ଥା ମେ ପୁରୀ ହ୍ୟେଷା କୃତାର୍ଥୋ ରାକ୍ଷସାନ୍ୱୟଃ ।**
**ଜୀବିତଂ ଚ କୃତାର୍ଥଂ ମେ ଯସ୍ୟ ତ୍ୱଂ ଦୃଷ୍ଟିଗୋଚରଃ ।। ୧୧ ।।**

ଭୋ ରେଣୁକ, ତ୍ୱଂ ଯସ୍ୟ ମେ ଦୃଷ୍ଟିଗୋଚରଃ, ତସ୍ମାଦ୍ ମେ ମମୈଷା ଲଙ୍କାପୁରୀ କୃତାର୍ଥେତ୍ୟାଦି ।। ୧୧ ।।

– ଯାହାଙ୍କର ସମ୍ମୁଖରେ ଆପଣ ଦେଖା ଯାଉଛନ୍ତି, ତାହା ମୋର ଲଙ୍କାପୁରୀ ଏବଂ ଏହି ରାକ୍ଷସକୁଳ ତଥା ମୋର ଜୀବନ (ଆଜି) କୃତକୃତ୍ୟ ହୋଇଗଲା ।। ୧୧ ।।

**ଇତି ବ୍ରୁବାଣଂ କଲ୍ୟାଣଂ ରାକ୍ଷସେନ୍ଦ୍ରଂ ଗଣେଶ୍ୱରଃ ।**
**ବଭାଷେ ସସ୍ମିତୋ ବାଣୀଂ ବିଶ୍ୱୋଲ୍ଲାସକରୀଂ ଶୁଭାମ୍ ।। ୧୨ ।।**

ସସ୍ମିତଃ ମନ୍ଦସ୍ମିତେନ ଯୁକ୍ତଃ ସନ୍ନିତ୍ୟର୍ଥଃ । ବିଶ୍ୱୋଲ୍ଲାସକରୀଂ ସର୍ବେଷାମାନନ୍ଦକରୀମିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୨ ।।

– ଏହିପରି କହୁଥିବା କଲ୍ୟାଣଯୁକ୍ତ ରାକ୍ଷସେନ୍ଦ୍ରଙ୍କୁ ଗଣେଶ୍ୱର ମନ୍ଦହାସ ସହିତ ବିଶ୍ୱୋଲ୍ଲାସକାରିଣୀ ଶୁଭ ବାଣୀ କହିଲେ ।। ୧୨ ।।

ଅଥ ତତ୍‌ପ୍ରକାରଂ ଚତୁର୍ଭି ଶ୍ଲୋକୈର୍ବର୍ଣ୍ଣୟତି –

**ବିଭୀଷଣ ମହାଭାଗ ଜାନେ ତ୍ୱାଂ ଧର୍ମକୋବିଦମ୍ ।**
**ତ୍ୱାଂ ବିନା କସ୍ୟ ଲୋକେଷୁ ଜାୟତେ ଭକ୍ତିରୀଦୃଶୀ ।। ୧୩।।**

ସ୍ପଷ୍ଟମ୍ ।। ୧୩।।

– ହେ ମହାଭାଗ ବିଭୀଷଣ, ଆପଣଙ୍କୁ ମୁଁ ଧର୍ମଜ୍ଞ ଭାବରେ ଜାଣିଛି । ଏହି ଲୋକରେ ଆପଣଙ୍କ ବ୍ୟତୀତ ଆଉ କାହା ପାଖରେ ଏହିପରି ଭକ୍ତି ହୋଇପାରିବ ।। ୧୩।।

**ସମସ୍ତଶାସ୍ତ୍ରସାରଜ୍ଞଂ ସର୍ବଧର୍ମପରାୟଣମ୍ ।**
**ଅଧ୍ୟାତ୍ମବିଦ୍ୟାନିରତମାହୁସ୍ତ୍ୱାଂ ରାକ୍ଷସେଶ୍ୱର ।। ୧୪।।**

ଭୋ ବିଭୀଷଣ ! ତ୍ୱାଂ ସମସ୍ତନିଗମାଦିଶାସ୍ତ୍ରସାରଜ୍ଞଂ ସକଳଶିବଧର୍ମେଷୁ ପରାୟଣଂ ତତ୍ପରମିତ୍ୟର୍ଥଃ । ଶିବାଦ୍ୱୈତ ଜ୍ଞାନଯୋଗରୂପାଧ୍ୟାତ୍ମ ବିଦ୍ୟାନିରତଂ ସନ୍ତମ୍ ଆହୁରିତ୍ୟର୍ଥଃ ।। ୧୪।।

– ହେ ରାକ୍ଷସେଶ୍ୱର, (ବିଦ୍ୱାନ୍‌ମାନେ) ଆପଣଙ୍କୁ ସମସ୍ତ ଶାସ୍ତ୍ରର ତତ୍ତ୍ୱବେତ୍ତା, ସର୍ବଧର୍ମ ପରାୟଣ ତଥା ଅଧ୍ୟାତ୍ମବିଦ୍ୟାରେ ନିରତ କହନ୍ତି ।। ୧୪।।

ଅତଃ କାରଣାତ୍ –

**ତ୍ୱଦୀୟଧର୍ମସମ୍ପତ୍ତିଂ ଶ୍ରୁତ୍ୱାହଂ ବିସ୍ମିତାଶୟଃ ।**
**ବ୍ରଜନ୍ କୈଳାସମଚଳଂ ତ୍ୱଦନ୍ତିକମୁପାଗତଃ ।। ୧୫।।**

କୈଳାସମଚଳଂ ବ୍ରଜନ୍ନହଂ ତ୍ୱଦୀୟଶିବଧର୍ମସମ୍ପତ୍ତିଂ ଶ୍ରୁତ୍ୱାଽଦ୍ଭଶ୍ଚର୍ଯ୍ୟଯୁକ୍ତଚିତ୍ତଃ ସନ୍ ତ୍ୱତ୍ସମୀପମାଗତୋଽସ୍ମୀତ୍ୟର୍ଥଃ ।। ୧୫।।

– ଆପଣଙ୍କର ଧର୍ମାଚରଣପ୍ରବୃତ୍ତିକୁ ଶୁଣିକରି ବିସ୍ମିତଚିତ୍ତ ମୁଁ କୈଳାସ ପର୍ବତକୁ ଯାଉଥିବା ବେଳେ ଆପଣଙ୍କ ପାଖକୁ ଆସିଗଲି ।। ୧୫।।

**ପ୍ରୀତୋଽସ୍ମି ତବ ଚରିତ୍ରୈଃ ଶୋଭନୈର୍ଲୋକବିଶ୍ରୁତୈଃ ।**
**ଦାସ୍ୟାମି ତେ ବରଂ ସାକ୍ଷାତ୍ ପ୍ରାର୍ଥୟସ୍ୱ ଯଥେପ୍ସିତମ୍ ।। ୧୬।।**

ସ୍ପଷ୍ଟମ୍ ।। ୧୬।।

– ମୁଁ ଆପଣଙ୍କର ଲୋକବିଶ୍ରୁତ ଚରିତ୍ରରେ ପ୍ରସନ୍ନ ଅଟେ । ମୁଁ ଆପଣଙ୍କୁ ସାକ୍ଷାତ୍ ବର ଦେବି । ଯଥେପ୍ସିତ ବର ମାଗ ।। ୧୬।।

**ଇତି ପ୍ରସାଦସୁମୁଖେ ଭାଷମାଣେ ଗଣେଶ୍ୱରେ ।**
**ପ୍ରଣମ୍ୟ ପରୟା ପ୍ରୀତ୍ୟା ବ୍ୟାଜହାର ବିଭୀଷଣଃ ।। ୧୭।।**

ବ୍ୟାଜହାର ବିଜ୍ଞାପନବାକ୍ୟଂ ପ୍ରଯୁକ୍ତବାନିତ୍ୟର୍ଥଃ ।। ୧୭।।

– ପ୍ରସନ୍ନତାରେ ଯୁକ୍ତ ଗଣେଶ୍ୱର ଏପରି କହିବା ପରେ ବିଭୀଷଣ ପରମ ପ୍ରସନ୍ନତା ସହିତ ପ୍ରଣାମ କରି କହିଲେ ।। ୧୭।।

ଅଥ ତତ୍ପ୍ରକାରଂ ଷଡ୍‌ଭିଃ ସୂତ୍ରୈଃ ପ୍ରଦର୍ଶ୍ୟ ସ୍ୱସ୍ୟ ରାବଣୋକ୍ତାଭିପ୍ରାୟମଷ୍ଟଭିଃ ସୂତ୍ରୈଃ ସୂଚୟତି –

**ଆଗମାନୁଗ୍ରହାଦେବ ଭବତଃ ଶିବଯୋଗିନଃ ।**
**ଦୁର୍ଲଭାଃ ସର୍ବଲୋକାନାଂ ସମପଦ୍ୟନ୍ତ ସମ୍ପଦଃ ।। ୧୮।।**

ଭୋ ଗଣେଶ୍ୱର ! ଶିବଯୋଗିନୋ ଭବତ ଆଗମନରୂପାନୁଗ୍ରହାଦେବ ସର୍ବଜନଦୁର୍ଲଭାଃ ସମ୍ପଦଃ ସମପଦ୍ୟନ୍ତ ପ୍ରାପ୍ତା ଇତ୍ୟର୍ଥଃ ।। ୧୮।।

– ଆପଣଙ୍କ ପରି ଶିବଯୋଗୀଙ୍କର ଆଗମନ ରୂପକ କୃପାରେ ହିଁ ସମସ୍ତ ଲୋକଙ୍କୁ ଦୁର୍ଲଭ ସମ୍ପତ୍ତିସବୁ ମିଳିଥାଏ ।। ୧୮।।

**ତଥାପି ପ୍ରାର୍ଥନୀୟଂ ମେ କିଞ୍ଚିଦସ୍ତି ଗଣେଶ୍ୱର ।**
**ସୁକୃତେ ପରିପକ୍ୱେ ହି ସ୍ୱୟଂ ସିଦ୍ଧ୍ୟତି ବାଞ୍ଛିତମ୍ ।। ୧୯।।**

ମେ ମମେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୧୯।।

– ତଥାପି ହେ ଗଣେଶ୍ୱର, ମୋର କିଛି ପ୍ରାର୍ଥନା ଅଛି । ପୁଣ୍ୟ ପରିପକ୍ୱ ହେବା ପରେ ଅଭୀଷ୍ଟର ସିଦ୍ଧି ସ୍ୱୟଂ ହୋଇଯାଏ ।। ୧୯।।

**ରାବଣୋ ହି ମମ ଭ୍ରାତା ମାହେଶ୍ୱରଶିଖାମଣିଃ ।**
**ଅଦୃଷ୍ଟଶତ୍ରୁ ସମ୍ବାଧଂ ଶଶାସ ହି ଜଗତ୍ ତ୍ରୟମ୍ ।। ୨୦।।**

ଅଦୃଷ୍ଟଶତ୍ରୁସମ୍ବାଧଂ ଯଥା ଭବତି ତଥା ଜଗତ୍‌ତ୍ରୟଂ ହି ପ୍ରସିଦ୍ଧଂ ସତ୍ ଶଶାସ ପାଲୟାମାସେତ୍ୟର୍ଥଃ ।। ୨୦।।

– ମୋର ଭାଇ ରାବଣ ଶିବଭକ୍ତମାନଙ୍କର ଶିଖାମଣି (ଶ୍ରେଷ୍ଠ) ଥିଲେ, ଯାହାଙ୍କର ଶତ୍ରୁରୂପୀ ବାଧା ନ ଥିଲା, ଯିଏ ତିନି ଲୋକରେ ଶାସନ କରିଥିଲେ ।। ୨୦।।

**ଯସ୍ୟ ପ୍ରତାପମତୁଲଂ ସୋଢୁମକ୍ଷମଶକ୍ତୟଃ ।**
**ଇନ୍ଦ୍ରାଦୟଃ ସୁରାଃ ସର୍ବେ ରାଜ୍ୟଲକ୍ଷ୍ମ୍ୟା ବିଯୋଜିତାଃ ।। ୨୧।।**

ସ୍ପଷ୍ଟମ୍ ।। ୨୧।।

– ଯାହାଙ୍କର ଅତୁଳ ପ୍ରତାପକୁ ସହିବାକୁ ଅସମର୍ଥ ଇନ୍ଦ୍ର ଆଦି ସମସ୍ତ ଦେବଗଣ ରାଜଲକ୍ଷ୍ମୀରୁ ରହିତ କରି ଦିଆଗଲେ ।। ୨୧।।

**ସ ତୁ କାଳବଶେନୈବ ସ୍ୱଚାରିତ୍ରବିପର୍ଯ୍ୟୟାତ୍ ।**
**ରଣେ ବିଷ୍ଣ୍ୱବତାରେଣ ରାମେଣ ନିହତୋଽଭବତ୍ ।। ୨୨।।**

ସ୍ପଷ୍ଟମ୍ ।। ୨୨।।

– ସେହି ପରାକ୍ରମୀ ରାବଣ କାଳ ପ୍ରଭାବରେ ନିଜର ବିପରୀତ ଚରିତ୍ର କାରଣରୁ ବିଷ୍ଣୁଙ୍କର ଅବତାରଭୂତ ରାମଙ୍କଦ୍ୱାରା ଯୁଦ୍ଧରେ ମରା ହେଲେ ।। ୨୨।।

**ସ ତୁ ରାମଶରାବିଦ୍ଧଃ କଣ୍ଠସ୍ଖଳିତଜୀବିତଃ ।**
**ଅବଶିଷ୍ଟଂ ସମାଲୋକ୍ୟ ମାମବାଦୀଦ୍ ସୁଦୁଃଖିତଃ ।। ୨୩।।**

ସ ରାବଣୋ ରାମବାଣେନ କ୍ଷତଂ ଲବ୍ଧବାନ୍ ସନ୍ କଣ୍ଠଗତପ୍ରାଣଃ ସନ୍ ଅବଶିଷ୍ଟଂ ରାକ୍ଷସେଷୁ ହତଶିଷ୍ଟଂ ମାଂ ଦୃଷ୍ଟ୍ୱାତ୍ୟନ୍ତଦୁଃଖିତଃ ସନ୍ ପ୍ରତ୍ୟବଦଦିତ୍ୟର୍ଥଃ ।। ୨୩।।

– ରାମଙ୍କର ବାଣରେ ପୂର୍ଣ୍ଣ ଭାବରେ ବିଦ୍ଧ, ତେଣୁ କଣ୍ଠଗତପ୍ରାଣବାଲା ରାବଣ ଅବଶିଷ୍ଟ ମତେ ଦେଖି କରି ଦୁଃଖି ହୋଇ କହିଲେ ।। ୨୩।।

ଅଥ ରାବଣୋକ୍ତପ୍ରକାରମୁପପାଦୟତି –

**ବିଭୀଷଣ ବିଶେଷଜ୍ଞ ମହାବୁଦ୍ଧେ ସୁଧାର୍ମିକ ।**
**ଅବଶିଷ୍ଟୋଽସି ବଂଶସ୍ୟ ରକ୍ଷସାଂ ଭାଗ୍ୟଗୌରବାତ୍ ।। ୨୪।।**

ସ୍ପଷ୍ଟମ୍ ।। ୨୪।।

– ହେ ଧର୍ମାଚରଣଶୀଳ ମହାବୁଦ୍ଧିମାନ୍ ବିଶେଷଜ୍ଞ, (ବିଶିଷ୍ଟ ଜ୍ଞାନବାଲା ବିଭୀଷଣ) ରାକ୍ଷସଙ୍କର ମହାଭାଗ୍ୟରେ ଏକମାତ୍ର ଆପଣ ରାକ୍ଷସଙ୍କ ବଂଶରେ ଅବଶିଷ୍ଟ ଅଛନ୍ତି ।।୨୪।।

**ବୟମଜ୍ଞାନସମ୍ପନ୍ନା ମହତ୍ସୁ ଦ୍ରୋହକାରିଣଃ ।**
**ଇଦୃଶୀଂ ତୁ ଗତିଂ ପ୍ରାପ୍ତା ଦୁସ୍ତରା ହି ବିଧିସ୍ଥିତିଃ ।। ୨୫।।**

ବୟମଜ୍ଞାନସମ୍ପନ୍ନାଃ ସନ୍ତୋ ମହତ୍ସୁ ମହତାଂ ବିଷୟେ ଦ୍ରୋହକାରିଣ ଇତି ଇଦୃଶୀ ଗତିଂ ପ୍ରାପ୍ତାଃ । ତଥାହି ବିଧିସ୍ଥିତିଃ ଦୈବାଧୀନବୃତ୍ତିଃ, ଦୁସ୍ତରା ହି ଲଙ୍ଘିତୁମଶକ୍ୟା ଖଲ୍ୱିତ୍ୟର୍ଥଃ ।। ୨୫।।

– ଅଜ୍ଞାନୀ, ମହାନ୍ ଲୋକଙ୍କର ବିରୋଧ କରୁଥିବା ଆମେ ଏହିପରି ଗତିକୁ ପ୍ରାପ୍ତ ହେଲୁ । ଭାଗ୍ୟର ସ୍ଥିତି ଅନୁଲଙ୍ଘନୀୟ ଅଟେ ।। ୨୫।।

**ନବକଂ ଲିଙ୍ଗକୋଟୀନାଂ ପ୍ରତିଷ୍ଠାପ୍ୟମିହ ସ୍ଥଲେ ।**
**ଇତି ସଙ୍କଳ୍ପିତଂ ପୂର୍ବଂ ମୟା ତଦବଶିଷ୍ୟତେ ।। ୨୬।।**

ଇହ ସ୍ଥଲେ ଅସ୍ମିନ୍ ଲଙ୍କାପତ୍ତନସ୍ଥଲେ ନବକୋଟିଲିଙ୍ଗଂ ପ୍ରତିଷ୍ଠାପ୍ୟମିତି ମୟା ପୂର୍ବଂ ସଙ୍କଳ୍ପିତମ୍, ତତ୍ର କିଞ୍ଚିଦବଶିଷ୍ଟମସ୍ତୀତ୍ୟର୍ଥଃ ।। ୨୬।।

– ମୁଁ ପ୍ରଥମେ ଏହି ସଙ୍କଳ୍ପ କରିଥିଲି କି ଏହି ଲଙ୍କା ନଗରୀରେ ନଅ କୋଟି ଶିବଲିଙ୍ଗର ସ୍ଥାପନା କରିବି । ସେଥିରୁ କିଛି ଶେଷ ଅଛି ।। ୨୬।।

କିୟଦବଶିଷ୍ଟମିତ୍ୟତ୍ରାହ –

**କୋଟିଷଟ୍କଂ ତୁ ଲିଙ୍ଗାନାଂ ମୟା ସାଧୁ ପ୍ରତିଷ୍ଠିତମ୍ ।**
**କୋଟିତ୍ରୟଂ ତୁ ଲିଙ୍ଗାନାଂ ସ୍ଥାପନୀୟମତସ୍ତ୍ୱୟା ।। ୨୭।।**

ଅତସ୍ତତ୍ସଂକଳ୍ପପୂରଣାର୍ଥମିତ୍ୟର୍ଥଃ ।। ୨୭।।

– ଛଅ କୋଟି ଲିଙ୍ଗ ମୁଁ ଭଲ ଭାବରେ ପ୍ରତିଷ୍ଠିତ କରିଛି । ଏହାପରେ ତିନି କୋଟି ଲିଙ୍ଗର ସ୍ଥାପନା ତମକୁ କରିବାକୁ ଅଛି ।। ୨୭।।

**ଇତି ତସ୍ୟ ବଚଃ ଶ୍ରୁତ୍ୱା ଦୀନବୁଦ୍ଧେର୍ମରିଷ୍ୟତଃ ।**
**ତଥା ସାଧୁ କରୋମୀତି ପ୍ରତିଜ୍ଞାତଂ ମୟା ତଥା ।। ୨୮।।**

ସ୍ପଷ୍ଟମ୍ ।। ୨୮।।

– ଦୀନବୁଦ୍ଧି ତଥା ମରଣାସନ୍ନ ସେହି ରାବଣର କଥା ଶୁଣି 'ମୁଁ ସେହିପରି ଠିକ୍ ଭାବରେ କରିବି' ବୋଲି ପ୍ରତିଜ୍ଞା କଲି ।। ୨୮।।

**ଯୁଗପଚ୍ଛିବଲିଙ୍ଗାନାଂ କୋଟିତ୍ରୟମନୁତ୍ତମମ୍ ।**
**ପ୍ରତିଷ୍ଠାପ୍ୟଂ ଯଥାଶାସ୍ତ୍ରମିତି ମେ ନିଶ୍ଚୟୋଦ୍ଧଭବତ୍ ।। ୨୯।।**

ସ୍ପଷ୍ଟମ୍ ।। ୨୯।।

– ପୁଣି ମୁଁ ନିଶ୍ଚୟ କଲି କି ତିନି କୋଟି ଉତ୍ତମୋତ୍ତମ ଶିବଲିଙ୍ଗର ଏକାଥରକେ ଶାସ୍ତ୍ରବିଧିରେ ସ୍ଥାପନା କରିବି ।। ୨୯।।

**ଲିଙ୍ଗକୋଟିତ୍ରୟସ୍ୟେହ ଯୁଗପଦ୍ ସ୍ଥାପନାବିଧୌ ।**
**ଅବିଦନ୍ନେକମାଚାର୍ଯ୍ୟମହମେବମବସ୍ଥିତଃ ।। ୩୦।।**

ଇହ ଲଙ୍କାୟାମିତ୍ୟର୍ଥଃ । ଯୁଗପଲ୍ଲିଙ୍ଗତ୍ରିକୋଟି ସ୍ଥାପନବିଷୟେ ମୁଖ୍ୟମାଚାର୍ଯ୍ୟମଲବ୍ଧବାନ୍ ସନ୍ନେବଂ ସ୍ଥିତୋଦ୍ଧସ୍ମୀତ୍ୟର୍ଥଃ ।। ୩୦।।

– ତିନି କୋଟି ଶିବଲିଙ୍ଗର ସ୍ଥାପନା କରିବାରେ ସମର୍ଥ ଜଣେ ଆଚାର୍ଯ୍ୟ ନ ଜାଣିବା ହେତୁ ମୁଁ ଏଠାରେ (ଲଙ୍କାରେ) ଏହିପରି (ଲିଙ୍ଗ ସ୍ଥାପନା ନ କରିପାରି) ଅଛି ।। ୩୦।।

**ଶିବଶାସ୍ତ୍ରବିଶେଷଜ୍ଞଃ ଶିବଜ୍ଞାନନିଧିର୍ଭବାନ୍ ।**
**ଆଚାର୍ଯ୍ୟଭାବମାସାଦ୍ୟ ମମ ପୂରୟ ବାଞ୍ଛିତମ୍ ।। ୩୧।।**

ଶିବଶାସ୍ତ୍ରବିଶେଷଜ୍ଞ ଭୋ ରେବଣସିଦ୍ଧ, ଭବାନ୍ ଶିବଜ୍ଞାନସ୍ୟ ନିଧିର୍ନିକ୍ଷେପସ୍ଥାନଭୂତଃ, ଅତ ଆଚାର୍ଯ୍ୟଭାବମାସାଦ୍ୟ ଯୁଗପଦ୍ କୋଟିତ୍ରୟାଚାର୍ଯ୍ୟଭାବଂ ପ୍ରାପ୍ୟ ମମାଭୀଷ୍ଟଂ ପୂରୟେତ୍ୟର୍ଥଃ ।। ୩୧ ।।

– ଆପଣ ଶୈବଶାସ୍ତ୍ରର ବିଶେଷଜ୍ଞ ତଥା ଶିବଜ୍ଞାନର ନିଧି ଅଟନ୍ତି । ଆଚାର୍ଯ୍ୟ ପଦକୁ ସ୍ୱୀକାର କରି ମୋର ଇଚ୍ଛାକୁ ପୂର୍ଣ୍ଣ କରନ୍ତୁ ।। ୩୧ ।।

ଅଥ ଶ୍ରୀରେଣୁକସ୍ତସ୍ୟାଭୀଷ୍ଟଂ ପୂରୟିତ୍ୱାବନ୍ତର୍ହିତ ଇତି ଶ୍ଳୋକପଞ୍ଚକେନ ପ୍ରତିପାଦୟତି –

**ତସ୍ୟେତି ବଚନଂ ଶ୍ରୁତ୍ୱା ରାକ୍ଷସେନ୍ଦ୍ରସ୍ୟ ଧୀମତଃ ।**
**ତଥେତି ପ୍ରତିଶୁଶ୍ରାବ ସର୍ବଜ୍ଞୋ ଗଣନାୟକଃ ।। ୩୨ ।।**

ପ୍ରତିଶୁଶ୍ରାବ ଅଙ୍ଗୀକୃତବାନିତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୨ ।।

– ବୁଦ୍ଧିମାନ୍ ରାକ୍ଷସେନ୍ଦ୍ର ବିଭୀଷଣଙ୍କର ଏହି ବଚନସବୁ ଶୁଣି ସର୍ବଜ୍ଞ ଗଣେଶ୍ୱର 'ସେହିପରି ହିଁ ହେବ' – ଏପରି ପ୍ରତିଜ୍ଞା କଲେ ।। ୩୨ ।।

**ତତ୍ର ସନ୍ତୁଷ୍ଟଚିତ୍ତସ୍ୟ ପୌଲସ୍ତ୍ୟସ୍ୟେଷ୍ଟସିଦ୍ଧୟେ ।**
**କୋଟିତ୍ରୟଂ ତୁ ଲିଙ୍ଗାନାଂ ଯଥାଶାସ୍ତ୍ରଂ ଯଥାବିଧି ।**
**ତ୍ରିକୋଟ୍ୟାଚାର୍ଯ୍ୟରୂପେଣ ସ୍ଥାପିତଂ ତେନ ତତ୍ କ୍ଷଣେ ।। ୩୩ ।।**

ତତ୍ର ଲଙ୍କାୟାଂ ପୌଲସ୍ତ୍ୟସ୍ୟ ବିଭୀଷଣସ୍ୟେତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୩୩ ।।

– ସନ୍ତୁଷ୍ଟଚିତ୍ତ ବିଭୀଷଣଙ୍କର ଇଷ୍ଟସିଦ୍ଧି ନିମନ୍ତେ ତ୍ରିକୋଟି ଆଚାର୍ଯ୍ୟ ଭାବରେ ରେଣୁକ ତିନିକୋଟି ଶିବଲିଙ୍ଗକୁ ଶାସ୍ତ୍ର ଏବଂ ବିଧିବିଧାନ ଅନୁସାରେ ତତ୍‌କାଳ ସ୍ଥାପନ କରିଲେ ।। ୩୩ ।।

**ତାଦୃଶଂ ତସ୍ୟା ମାହାତ୍ମ୍ୟଂ ସମାଲୋକ୍ୟ ବିଭୀଷଣଃ ।**
**ପ୍ରଣନାମ ମୁହୁର୍ଭକ୍ତ୍ୟା ପଦୟୋସ୍ତସ୍ୟ ବିସ୍ମିତଃ ।। ୩୪ ।।**

ସ୍ପଷ୍ଟମ୍ ।। ୩୪ ।।

– ବିଭୀଷଣ ସେହି ରେଣୁକାଚାର୍ଯ୍ୟଙ୍କର ସେହି ପ୍ରକାରର ମହିମାକୁ ଦେଖି ଆଶ୍ଚର୍ଯ୍ୟଚକିତ ହୋଇଗଲେ ଏବଂ ବାରମ୍ବାର ଭକ୍ତିପୂର୍ବକ ତାଙ୍କର ଚରଣରେ ପ୍ରଣାମ କରିବାକୁ ଲାଗିଲେ ।। ୩୪ ।।

**ପ୍ରଣତଂ ବିନୟୋପେତଂ ପ୍ରହୃଷ୍ଟଂ ରାକ୍ଷସେଶ୍ୱରମ୍ ।**
**ଅନୁଗୃହ୍ୟ ସ୍ୱମାହାତ୍ମ୍ୟାଦ୍ ରେଣୁକୋଽନ୍ତର୍ହିତୋଽଭବତ୍ ।। ୩୫ ।।**

ସ୍ପଷ୍ଟମ୍ ।। ୩୫ ।।

– ବିନୟରେ ଯୁକ୍ତ, ପ୍ରସନ୍ନ ତଥା ନମସ୍କାର କରିଥିବା ରାକ୍ଷସେଶ୍ୱରଙ୍କ ଉପରେ ଅନୁଗ୍ରହ କରି ରେଣୁକାଚାର୍ଯ୍ୟ ନିଜର ମହିମାରେ ଅନ୍ତର୍ହିତ ହୋଇଗଲେ ।। ୩୫।।

**ବିଭୀଷଣୋଽପି ହୃଷ୍ଟାତ୍ମା ରେଣୁକସ୍ୟ ପ୍ରସାଦତଃ ।**
**ଶିବଭକ୍ତିରସାସକ୍ତଃ ସ୍ଥିରରାଜ୍ୟମପାଳୟତ୍ ।। ୩୬।।**

ସ୍ପଷ୍ଟମ୍ ।। ୩୬।।

– ରେଣୁକାଚାର୍ଯ୍ୟଙ୍କର କୃପାରେ ବିଭୀଷଣ ପ୍ରସନ୍ନ ଚିତ୍ତ ତଥା ଶିବଭକ୍ତିରସରେ ଆପ୍ଲାବିତ ହୋଇ ସ୍ଥିର ରାଜ୍ୟର ରକ୍ଷାରେ ରତ ହେଲେ ।। ୩୬।।

ଅଥାଷ୍ଟଦିକ୍ଷୁ ପ୍ରସିଦ୍ଧସ୍ୟ ରେବଣସିଦ୍ଧେଶ୍ୱରସ୍ୟ ମହତ୍ତ୍ୱଂ ସଙ୍କୋଚେନାଷ୍ଟଭିଃ ସୂତ୍ରୈଃ ପ୍ରକାଶୟତି –

**ରେଣୁକୋଽପି ମହାତେଜାଃ ସଞ୍ଚରନ୍ କ୍ଷିତିମଣ୍ଡଳେ ।**
**ପ୍ରଚ୍ଛନ୍ନଶ୍ଚ ପ୍ରକାଶଶ୍ଚ ପରମାଦ୍ୱୈତ ଭାବିତଃ ।। ୩୭।।**
**କାଂଶ୍ଚିଦ୍ ଦୃଷ୍ଟିନିପାତେନ କରୁଣାରସବର୍ଷିଣା ।**
**ଅପରାନୁପଦେଶେନ ଶିବାଦ୍ୱୈତାଭିମର୍ଶିନା ।। ୩୮।।**
**ଅନ୍ୟାଂଶ୍ଚ ସହବାସେନ ସମସ୍ତମଳହାରିଣା ।**
**କୃତାର୍ଥୟନ୍ ଜନାନ୍ ସର୍ବାନ୍ କୃତିନଃ ପକ୍ୱକର୍ମିଣଃ ।। ୩୯।।**
**ଦର୍ଶୟିତ୍ୱା ନିଜାଧିକ୍ୟଂ ଶିବଦର୍ଶନଲାଳସଃ ।**
**ଖଣ୍ଡୟିତ୍ୱା ଦୁରାଚାରାନ୍ ପାଷଣ୍ଡାନ୍ ଭିନ୍ନଦର୍ଶନାନ୍ ।। ୪୦।।**
**ଯନ୍ତ୍ରମନ୍ତ୍ରକଳାସିଦ୍ଧାନ୍ ବିମତାନ୍ ସିଦ୍ଧମଣ୍ଡଳାନ୍ ।**
**ବିଜିତ୍ୟ ସ୍ୱପ୍ରଭାବେଣ ସ୍ଥାପୟିତ୍ୱା ଶିବାଗମାନ୍ ।**
**ଆଜଗାମ ନିଜାବାସଂ କୋଲ୍ଲିପାକ୍ୟଭିଧଂ ପୁରମ୍ ।। ୪୧।।**

ପ୍ରଚ୍ଛନ୍ନଶ୍ଚ ସପ୍ତଶତବର୍ଷପର୍ଯ୍ୟନ୍ତମିତି ଶେଷଃ । ତଥା ପ୍ରକଟିତଃ ସନ୍ କାଂଶ୍ଚିଜ୍ଜନାନ୍ କରୁଣାରସପୂରିତକଟାକ୍ଷେଣ କୃତାର୍ଥୟନ୍, ଅପରାନ୍ ଶିବାଦ୍ୱୈତପ୍ରକାଶକୋପଦେଶେନ କୃତାର୍ଥୟନ୍, ଅନ୍ୟାନ୍ ନିର୍ମଳସହବାସେନ କୃତାର୍ଥୟନ୍, ଅବଶିଷ୍ଟସର୍ବଜନାନ୍ କୃତିନଃ ସକଳକଳା କୁଶଳାନ୍ ପକ୍ୱକର୍ମିଣଃ ପରିପକ୍ୱମଳମାୟାପାଶବନ୍ତଃ ସନ୍ତଶ୍ଚ କୃତାର୍ଥୟନ୍ ସନ୍, ଶିବଦର୍ଶନଲାଳସଃ ଶିବସମୟଲମ୍ପଟଃ ଶ୍ରୀରେବଣସିଦ୍ଧୋ ନିଜାଧିକ୍ୟମ୍ ଅନେକଚିତ୍ରବିଚିତ୍ର ନିଜମହତ୍ତ୍ୱଂ ଦର୍ଶୟିତ୍ୱା ଭିନ୍ନଦର୍ଶନାନ୍ ବୈଷ୍ଣବାଦ୍ୟନ୍ୟସମୟନିଷ୍ଠାନ୍ ପାଷଣ୍ଡାନ୍ ଶଙ୍ଖଚକ୍ରାଦ୍ୟନ୍ୟଲାଞ୍ଛନଯୁକ୍ତାନ୍ ଦୁରାଚାରାନ୍ ଖଣ୍ଡୟିତ୍ୱା ଯନ୍ତ୍ରମନ୍ତ୍ରାଦିଚତୁଃଷଷ୍ଟିକଳା ସିଦ୍ଧିଯୁକ୍ତାନ୍ କାପାଳିକାଦିପରମତସିଦ୍ଧମଣ୍ଡଳାନ୍ ଗୋରକ୍ଷାଦିନବକୋଟିସିଦ୍ଧାନ୍ ସ୍ୱସାମର୍ଥ୍ୟେନ ବିଜିତ୍ୟ

କାମିକାଦିଶିବସିଦ୍ଧାନ୍ତାନ୍ ସ୍ଥାପୟିତ୍ୱା ନିଜାବାସଂ କୋଲ୍ଲିପାକ୍ୟଭିଧଂ ପୁରମାଜଗାମ ଆସସାଦେତ୍ୟର୍ଥଃ ।। ୩୭-୪୧ ।।

– ମହାତେଜସ୍ୱୀ ରେଣୁକାଚାର୍ଯ୍ୟ ମଧ୍ୟ ପୃଥ୍ୱୀମଣ୍ଡଳରେ ସଞ୍ଚରଣ କରି କେବେ ପ୍ରକଟ କେବେ ତିରୋହିତ, ପରମ ଅଦ୍ୱୈତ ଭାବରେ ଭାବିତ ହୋଇ କିଛିଙ୍କୁ କରୁଣାପୂର୍ଣ୍ଣ ଦୃଷ୍ଟିରେ ଅନୁଗୃହୀତ କରି, କିଛିଙ୍କୁ ଶିବାଦ୍ୱୈତବିଷୟକ ଉପଦେଶ ଦେଇ, ଅନ୍ୟ ଲୋକଙ୍କୁ ସମସ୍ତ ମଳହାରୀ ସହବାସରେ କୃତକୃତ୍ୟ କରି, ପକ୍ୱକର୍ମମଳାଶୟବାଲା ସୁକୃତୀ ଜନଙ୍କୁ ନିଜର ଆଧିକ୍ୟ ଦେଖାଇ କୃତାର୍ଥ କରି, ଭିନ୍ନ ଦର୍ଶନବାଲା ପାଖଣ୍ଡୀ ଦୁରାଚାରୀଙ୍କର ଖଣ୍ଡନ କରି, ଯନ୍ତ୍ର ମନ୍ତ୍ର କଳାରେ ସିଦ୍ଧ ବିରୋଧୀ ସିଦ୍ଧମଣ୍ଡଳକୁ ନିଜର ପ୍ରଭାବରେ ଜୀତି, ଶୈବାଗମର ସ୍ଥାପନା କରି ଶିବଦର୍ଶନର ଇଚ୍ଛାରେ ନିଜର ଆବାସ କୋଲ୍ଲିପାକ୍ୟ ନାମକ ନଗରରୁ ଆସିଗଲେ ।। ୩୭-୪୧ ।।

**ତତ୍ର ସମ୍ଭାବିତଃ ସର୍ବୈର୍ଜନୈଃ ଶିବପରାୟଣୈଃ ।**
**ସୋମନାଥାଭିଧାନସ୍ୟ ଶିବସ୍ୟ ପ୍ରାପ ମନ୍ଦିରମ୍ ।। ୪୨ ।।**

ସମ୍ଭାବିତଃ ସତ୍କୃତ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୨ ।।

– ସେଠାରେ ଶିବପରାୟଣ ସମସ୍ତ ଭକ୍ତଙ୍କଦ୍ୱାରା ସମ୍ମାନିତ ହୋଇ ରେଣୁକାଚାର୍ଯ୍ୟ ସୋମନାଥ ନାମକ ଶିବମନ୍ଦିରକୁ ଗଲେ ।। ୪୨ ।।

**ପଶ୍ୟତାଂ ତତ୍ର ସର୍ବେଷାଂ ଭକ୍ତାନାଂ ଶିବଯୋଗିନାମ୍ ।**
**ତନ୍ୱାନୋ ବିସ୍ମୟଂ ଭାବୈସ୍ତୁଷ୍ଟାବ ପରମେଶ୍ୱରମ୍ ।। ୪୩ ।।**

ଭାବୈର୍ନିର୍ମଳଗୁଣୈରିତ୍ୟର୍ଥଃ । ବିସ୍ମୟମାଶ୍ଚର୍ଯ୍ୟଂ ତନ୍ୱାନୋ ବିସ୍ତାରୟନ୍ନିତ୍ୟର୍ଥଃ ।। ୪୩ ।।

– ସେଠାରେ ଦ୍ରଷ୍ଟା ଭାବରେ ଥିବା ସମସ୍ତ ଶିବଯୋଗୀ ଭକ୍ତଙ୍କର ଆଶ୍ଚର୍ଯ୍ୟକୁ ବୃଦ୍ଧି କରି ସେ ଭାବରେ ପରମେଶ୍ୱରଙ୍କର ସ୍ତୁତି କଲେ (ନିଜର ଭକ୍ତି ଭାବରେ ଭକ୍ତଙ୍କର ବିସ୍ମୟକୁ ବଢ଼ାଇ ସ୍ୱୟଂ ଶିବଙ୍କର ସ୍ତୁତି କଲେ ।) ।। ୪୩ ।।

ଅଥ ସପ୍ତଭିଃ ସୂତ୍ରୈଃ ସୋମେଶ୍ୱରସ୍ୟ ସ୍ତୁତିଂ କରୋତି –

**ଦେବଦେବ ଜଗନ୍ନାଥ ଜଗତ୍କାରଣକାରଣ ।**
**ବ୍ରହ୍ମବିଷ୍ଣୁସୁରାଧୀଶବନ୍ଦ୍ୟମାନପଦାମ୍ବୁଜ ।। ୪୪ ।।**

ଅତ୍ର ଜଗଚ୍ଛବ୍ଦେନ ଭୁବନାନ୍ୟୁଚ୍ୟନ୍ତେ । ତତ୍କାରଣୀଭୂତବିନ୍ଦୁମାୟାଦୀନାମପି କାରଣୀଭୂତ ଇତ୍ୟର୍ଥଃ ।। ୪୪ ।।

– (ରେଣୁକାଚାର୍ଯ୍ୟ ଦ୍ୱାରା କରାଯାଇଥିବା ସ୍ତୁତି) – ହେ ଦେବଦେବ, ଜଗନ୍ନାଥ, ସଂସାରର କାରଣଭୂତ ମାୟା ଅଥବା ପ୍ରକୃତି ଆଦି କାରଣ, ବ୍ରହ୍ମା ବିଷ୍ଣୁ ସୁରାଧୀଶ ଅର୍ଥାତ୍ ଇନ୍ଦ୍ରଙ୍କ ଦ୍ୱାରା ଆପଣଙ୍କର ଚରଣକମଳର ବନ୍ଦନା କରାଯାଏ ।। ୪୪ ।।

**ସଂସାରନାଟକଭ୍ରାନ୍ତିକଳାନିର୍ବହଣପ୍ରଦ ।**
**ସମସ୍ତବେଦବେଦାନ୍ତପରିବୋଧିତବୈଭବ ।। ୪୫।।**

ସଂସାରନାଟକଭ୍ରାନ୍ତିକଳାଜୟପ୍ରଦ ଇତ୍ୟର୍ଥଃ ।। ୪୫।।

– ଆପଣ ସଂସାରନାଟକରୂପୀ ଭ୍ରମ କଳାର ନିର୍ବହଣ କରିବାବାଲା ତଥା ସମସ୍ତ ବେଦବେଦାନ୍ତଦ୍ୱାରା ପୂର୍ଣ୍ଣତୟା ବୋଧିତବୈଭବବାଲା ଅଟନ୍ତି ।। ୪୫।।

**ସଂସାରବୈଦ୍ୟ ସର୍ବଜ୍ଞ ସର୍ବଶକ୍ତିନିରଙ୍କୁଶ ।**
**ସଚ୍ଚିଦାନନ୍ଦ ସର୍ବସ୍ୱ ପରମାକାଶବିଗ୍ରହ ।। ୪୬।।**

'ଆକାଶଶରୀରଂ ବ୍ରହ୍ମ'[୩୦୮] ଇତି ଶ୍ରୁତେଶ୍ଚିଦାକାଶସ୍ୱରୂପ ଇତ୍ୟର୍ଥଃ । ଶିଷ୍ଟଂ ସ୍ପଷ୍ଟମ୍ ।। ୪୬।।

– ଆପଣ ସଂସାରରୂପୀ ରୋଗର ବୈଦ୍ୟ, ସର୍ବଜ୍ଞ, ସର୍ବଶକ୍ତି, ନିରଙ୍କୁଶ, ସତ୍, ଚିତ୍, ଆନନ୍ଦ ସ୍ୱରୂପ, ସର୍ବସ୍ୱ ତଥା ପରାକାଶରୂପୀ ଶରୀରବାଲା ଅଟନ୍ତି ।। ୪୬।।

**ସମସ୍ତଜଗଦାଧାରଜ୍ୟୋତିର୍ଲିଙ୍ଗବିଜୃମ୍ଭଣ ।**
**ସଦାଶିବମୁଖାନେକଦିବ୍ୟମୂର୍ତ୍ତିକଳାଧର ।। ୪୭।।**

'ଜ୍ୱାଲଲିଙ୍ଗାୟ ନମଃ'[୩୦୯] ଇତି ଶ୍ରୁତେର୍ଜ୍ୟୋତିଲିଙ୍ଗସ୍ୱରୂପେଣ ଜୃମ୍ଭମାଣ ଇତ୍ୟର୍ଥଃ । 'ସ୍ଥିରେଭିରଙ୍ଗୈଃ ପୁରୁରୂପ ଉଗ୍ରଃ'[୩୧୦] ଇତି ଶ୍ରୁତେଃ ସକଳନିଷ୍କଳସଦାଶିବପ୍ରଭୃତିଦିବ୍ୟ-ମୂର୍ତ୍ତିକଳାଧର ଇତ୍ୟର୍ଥଃ । ଅତ୍ର – 'ସ ଏକୋ ରୁଦ୍ରଃ ସ ଈଶାନଃ ସ ଭଗବାନ୍ ସ ମହେଶ୍ୱରଃ ସ ମହାଦେବଃ'[୩୧୧] ଇତି ଶ୍ରୁତିଃ ।। ୪୭।।

– ସମ୍ପୂର୍ଣ୍ଣ ସଂସାରର ଆଧାର ତଥା ଜ୍ୟୋତିର୍ଲିଙ୍ଗର ପ୍ରକାଶକ (ସମସ୍ତ ଜଗତର ଆଧାରଭୂତ ଜ୍ୟୋତିର୍ଲିଙ୍ଗର ପ୍ରକାଶକ) ସଦାଶିବ ପ୍ରମୁଖ ଅନେକ ଦିବ୍ୟ ମୂର୍ତ୍ତିଙ୍କର କଳାକାର ଅଟନ୍ତି ।। ୪୭।।

**ଗୁଣତ୍ରୟପଦାତୀତ ମଳତ୍ରୟବିନାଶନ ।**
**ଜଗତ୍ତ୍ରୟବିଳାସାମ୍ନ୍ ଶ୍ରୁତିତ୍ରୟବିଲୋଚନ ।। ୪୮।।**

ସତ୍ତ୍ୱରଜସ୍ତମୋଗୁଣସ୍ଥାନାତୀତ ଆଣବକାର୍ମଣମାୟିକାଖ୍ୟମଳତ୍ରୟୋନ୍ମୂଳନକର ସ୍ୱର୍ଗମର୍ତ୍ତ୍ୟପାତାଳଲକ୍ଷଣଜଗତ୍ତ୍ରୟସୃଷ୍ଟ୍ୟାଦିପଞ୍ଚକୃତ୍ୟକ୍ରୀଡ଼ାବିଳାସୋନ୍ମୁଖରଗ୍ ଯଜୁଃ ସାମାଖ୍ୟଶ୍ରୁତିତ୍ରୟବିଲୋଚନ ଇତ୍ୟର୍ଥଃ ।। ୪୮।।

– ସତ୍ତ୍ୱ ଆଦି ତିନିଗୁଣର ସ୍ତରର ଉପରେ ସ୍ଥିତ, ଆଣବ ଆଦି ତିନି ମଳର ବିନାଶକ, ତ୍ରୈଲୋକ୍ୟ ରୂପରେ ଚାଲୁଥିବା (ସୃଷ୍ଟି ଆଦି) ପଞ୍ଚକୃତ୍ୟ କ୍ରୀଡ଼ାର ଆନନ୍ଦ

---

୩୦୮. ତୈ. ଉ., ୧/୬/୨
୩୦୯. ମ. ନା. ଉ., ୧୪/୯
୩୧୦. କ. ସଂ., ୨/୩୩/୯
୩୧୧. ଅ. ଶି. ଉ., ୩

ନେବାବାଲା ତଥା ଋଗ୍ୟଜୁଃସାମ ନାମକ ତିନି ବେଦରୂପୀ ତ୍ରିନେତ୍ରବାଲା ଅଟନ୍ତି ।। ୪୮ ।।

ପାହି ମାଂ ପରମେଶାନ ପାହି ମାଂ ପାର୍ବତୀପତେ ।
ତ୍ୱଦାଜ୍ଞୟା ମୟୈତାବତ୍‌କାଲମାତ୍ରଂ ମହୀତଳେ ।
ଅଚାରି ଭବଦୁକ୍ତାନାମାଗମାନାଂ ପ୍ରସିଦ୍ଧୟେ ।। ୪୯ ।।

ସ୍ପଷ୍ଟମ୍ ।। ୪୯ ।।

– ହେ ପରମେଶ୍ୱର, ମୋର ରକ୍ଷା କରନ୍ତୁ । ହେ ପାର୍ବତୀପତି, ମୋର ତ୍ରାଣ କରନ୍ତୁ । ଆପଣଙ୍କର ଆଜ୍ଞାରେ ମୁଁ ଏତେ ସମୟ ଧରି ପୃଥ୍ୱୀ ପୃଷ୍ଠରେ ଆପଣଙ୍କଦ୍ୱାରା କୁହାଯାଇଥିବା ଆଗମର ପ୍ରସିଦ୍ଧି (ପ୍ରଚାର, ପ୍ରସାର) ନିମନ୍ତେ ବିଚରଣ କଲି ।। ୪୯ ।।

ଅତଃ ପରଂ ସ୍ୱରୂପଂ ତେ ପ୍ରାପ୍ତୁକାମୋଽସ୍ମି ଶଙ୍କର ।
ଅନ୍ତରଂ ଦେହି ମେ କିଞ୍ଚିଦନୁକମ୍ପାବିଶେଷତଃ ।। ୫୦ ।।

ଭୋ ଶଙ୍କର ସୁଖକର, ତେନ ପ୍ରସିଦ୍ଧ ସୋମେଶ୍ୱର, ଅତଃ ପରମ୍ ଇତଃ ପରମିତ୍ୟର୍ଥଃ । ଅହଂ ତେ ସ୍ୱରୂପଂ ଲବ୍ଧୁକାମୋଽସ୍ମି, ମେ ମମ ଅନ୍ତରମବକାଶଂ ଦେହି । ଅନୁକମ୍ପାଂ କୃପାଂ ବିଶେଷତୋ ଦେହି କୁର୍ବିତ୍ୟର୍ଥଃ ।। ୫୦ ।।

– ହେ ଶଙ୍କର, ଏହାପରେ ମୁଁ ଆପଣଙ୍କର ସ୍ୱରୂପକୁ ପ୍ରାପ୍ତ କରିବାକୁ ଚାହୁଁଛି । ବିଶେଷ କୃପା କରି ମତେ କିଛି ଅବକାଶ ଦିଅନ୍ତୁ ।। ୫୦ ।।

ଅଥ ବୃତ୍ତତ୍ରୟେଣ ଶିବପ୍ରସନ୍ନତାଂ ରେବଣସିଦ୍ଧେଶ୍ୱରସ୍ୱଲିଙ୍ଗୈକ୍ୟଂ ଚ ପ୍ରତିପାଦୟତି –

ଇତ୍ୟୁକ୍ତେ ଗଣନାୟକେନ ସହସା ଲିଙ୍ଗାତ୍ ତତଃ ଶାଙ୍କରାଦ୍
ବତ୍ସାଗଚ୍ଛ ମହାନୁଭାବ ଭବତୋ ଭକ୍ତ୍ୟା ପ୍ରସନ୍ନୋଽସ୍ମ୍ୟହମ୍ ।
ଇତ୍ୟୁଚ୍ଚୈରଗଦଦ୍ ବଚସ୍ତନୁଭୃତାମାଶ୍ଚର୍ଯ୍ୟମାସୀତ୍ ତଦା
ଦିବ୍ୟୋ ଦୁନ୍ଦୁଭିରାନନାଦ ଗଗନେ ପୁଷ୍ପଂ ବବର୍ଷୁର୍ଗଣାଃ ।। ୫୧ ।।

ଗଣନାୟକେନ ରେବଣସିଦ୍ଧେଶ୍ୱରେଣ ଇତ୍ୟୁକ୍ତେ ଏବଂ ବିଜ୍ଞାପିତେ ସତି ସହସା ତତ୍କ୍ଷଣେନ ଶାଙ୍କରାତ୍ ତତୋ ଲିଙ୍ଗାତ୍ ସୋମେଶ୍ୱର ଲିଙ୍ଗାତ୍ ଭୋ ମହାନୁଭାବ ନିଗମାଗମେଷୁ ମହାନିଶ୍ଚୟବୁଦ୍ଧିମନ୍ ବତ୍ସ ରେବଣସିଦ୍ଧାଖ୍ୟକୁମାର, ଭବତସ୍ତବ ଭକ୍ତ୍ୟା ନବବିଧଭକ୍ତ୍ୟା ଅହଂ ପ୍ରସନ୍ନୋଽସ୍ମି, ଆଗଚ୍ଛ ଆୟାହୀତି ବଚଃ ଶିବ ଉଚ୍ଚୈରଗଦଦ୍ ଅବାଦୀତ୍ । ତଦା ତସ୍ମିନ୍ ସମୟେ ତନୁଭୃତାଂ ଶରୀରିଣାମାଶ୍ଚର୍ଯ୍ୟଂ କୌତୁକମାସୀତ୍, ଗଗନେ ଦିବ୍ୟୋ ଦୁନ୍ଦୁଭିଃ ଦେବ ଦୁନ୍ଦୁଭିଃ, ଆନନାଦ ସର୍ବତ୍ର ଧ୍ୱନିତବାନ୍, ଗଣାଃ ପ୍ରମଥଗଣା ଦେବଗଣାଶ୍ଚ ପୁଷ୍ପଂ କୁସୁମବୃଷ୍ଟିଂ ବବର୍ଷୁରିତ୍ୟର୍ଥଃ ।। ୫୧ ।।

– ଗଣେଶ୍ୱର ଏପରି କହିବା ପରେ ଅକସ୍ମାତ୍ ଶିବଲିଙ୍ଗରୁ ଉଚ୍ଚସ୍ୱରରେ ବାଣୀ ବାହାରିଲା – 'ହେ ବତ୍ସ, ଆସ । ହେ ମହାନୁଭାବ, ମୁଁ ତୁମର (ନବଧା) ଭକ୍ତିରେ ପ୍ରସନ୍ନ

ହୋଇଅଛି ।' ସେହି ସମୟରେ ସମସ୍ତ ମନୁଷ୍ୟଙ୍କର ଆଶ୍ଚର୍ଯ୍ୟ ଭାବ ହୋଇଥିଲା । ଆକାଶରେ ଦେବଦୁନ୍ଦୁଭି ବାଜିଲା ଏବଂ ଦେବଗଣ ପୁଷ୍ପବୃଷ୍ଟି କଲେ ।। ୫୧।।

ଶ୍ରୁତ୍ୱା ଲିଙ୍ଗାଦ୍ ବଚନମୁଦିତଂ ଶାଙ୍କରଂ ସାନୁକମ୍ପଂ
ସଂହୃଷ୍ଟାତ୍ମା ଗଣପତିରଥୋ ଜ୍ୟୋତିଷା ଦୀପ୍ୟମାନଃ ।
ଜାତୋତ୍କର୍ଷୈଃ ପରମନୁଚରୈର୍ଯୋଗିଭିଃ ସ୍ତୂୟମାନୋ
ଜ୍ୟୋତିର୍ଲିଙ୍ଗଂ ପରମନୁବିଶତ୍ ସ୍ୱପ୍ରକାଶଂ ତଦାନୀମ୍ ।। ୫୨।।

ଅଥୋ ପୁଷ୍ପବୃଷ୍ଟ୍ୟନନ୍ତରଂ ସଂହୃଷ୍ଟାତ୍ମା ସନ୍ତୁଷ୍ଟଚିତ୍ତୋ ଗଣପତିଃ ଶିବଗଣପତିଃ ଶ୍ରୀରେବଣସିଦ୍ଧୋ ଜ୍ୟୋତିଷା ଶିବପ୍ରକାଶେନ ଦୀପ୍ୟମାନଃ ପ୍ରକାଶମାନଃ ସନ୍ ଲିଙ୍ଗାତ୍ ସୋମେଶଲିଙ୍ଗାଦ୍ ଉଦିତମ୍ ଉଦ୍‌ଭୂତଂ ସାନୁକମ୍ପଂ କୃପାସହିତଂ ଶାଙ୍କରଂ ବଚନଂ ଶିବସମ୍ବନ୍ଧିବଚନଂ ପୂର୍ବୋକ୍ତବାକ୍ୟଂ ଶ୍ରୁତ୍ୱା, ଜାତୋତ୍କର୍ଷୈର୍ ଉଦ୍‌ଭୂତାଶ୍ଚର୍ଯ୍ୟବଦ୍‌ଭିଃ, ଅନୁଚରୈଃ ସହଚରୈଃ ଶିବଯୋଗିଭିଃ ପରମଧିକତୟା ସ୍ତୂୟମାନଃ ସନ୍ ତଦାନୀଂ ତସ୍ମିନ୍ ସମୟେ ପରଂ ସର୍ବୋତ୍କୃଷ୍ଟଂ ସ୍ୱପ୍ରକାଶଂ ନିଜପ୍ରକାଶରୂପଂ ଜ୍ୟୋତିର୍ଲିଙ୍ଗଂ 'ତସ୍ୟ ଭାସା ସର୍ବମିଦଂ ବିଭାତି'[୩୧୨] 'ତମେବ ଭାନ୍ତମନୁଭାତି ସର୍ବମ୍'[୩୧୩] ଇତି ଶ୍ରୁତିସିଦ୍ଧଚିଲ୍ଲିଙ୍ଗ-ମନୁବିଶତ୍ ସ୍ୱରୂପହାନିବୃଦ୍ଧିବ୍ୟତିରେକେଣ ସାମରସ୍ୟେନ ପ୍ରବିଷ୍ଟବାନିତ୍ୟର୍ଥଃ ।। ୫୨।।

– ଲିଙ୍ଗରୁ ବାହାରୁ ଥିବା ଅନୁକମ୍ପାଯୁକ୍ତ ଶାଙ୍କର ବଚନକୁ ଶୁଣିକରି ଗଣେଶ୍ୱରଙ୍କର ମନ ପ୍ରସନ୍ନ ହୋଇଗଲା । ଜ୍ୟୋତିରେ ସେ ଦୀପ୍ୟମାନ ହୋଇଗଲେ । ପରମ-ଉତ୍କର୍ଷାଯୁକ୍ତ ଅନୁଚରଭୂତ ଯୋଗୀଦ୍ୱାରା ସ୍ତୂୟମାନ ସେ ସେହି ସମୟରେ ପରମ ସ୍ୱପ୍ରକାଶ ଜ୍ୟୋତିର୍ଲିଙ୍ଗରେ ପ୍ରବେଶ କରି ଗଲେ ।। ୫୨।।

ଲୀନେ ତସ୍ମିନ୍ ଶାଙ୍କରେ ସ୍ୱପ୍ରକାଶେ
ଦୀବ୍ୟାକାରେ ରେଣୁକେ ସିଦ୍ଧନାଥେ ।
ସର୍ବୋ ଲୋକୋ ବିସ୍ମିତୋଽଭୂତ୍ ତଦାନୀଂ
ଶୈବୀ ଭକ୍ତିଃ ସପ୍ରମାଣା ବଭୂବ ।। ୫୩।।

ଦିବ୍ୟାକାରେ ମନୋହରସ୍ୱରୂପେ ରେଣୁକେ ସିଦ୍ଧନାଥେ ରେବଣସିଦ୍ଧେଶ୍ୱରେ ସ୍ୱପ୍ରକାଶେ ଶାଙ୍କରେ ତସ୍ମିନ୍ ଲିଙ୍ଗେ ସୋମେଶଲିଙ୍ଗେ ଲୀନେ ସତି ଐକ୍ୟଂ ଗତେ ସତି ସର୍ବୋ ଲୋକଃ ସମସ୍ତଜନୋ ବିସ୍ମିତ ଆଶ୍ଚର୍ଯ୍ୟଯୁକ୍ତ ଆସୀତ୍ । ତଦାନୀଂ ତସ୍ମିନ୍ କାଲେ ଶୈବୀ ଭକ୍ତିଃ ଶିବସମ୍ବନ୍ଧିନୀ ଭକ୍ତିଃ ସପ୍ରମାଣା ପ୍ରମାଣେନ ସହ ବର୍ତ୍ତମାନା ବଭୂବ ଆସୀଦିତ୍ୟର୍ଥଃ ।। ୫୩।।

---

୩୧୨. କ. ଉ., ୨/୨/୧୫
୩୧୩. କ. ଉ., ୨/୨/୧୫

– ଦିବ୍ୟ ଆକାରବାଲା ସିଦ୍ଧନାଥ ରେଣୁକାଚାର୍ଯ୍ୟ ସେହି ସ୍ୱପ୍ରକାଶ ଶାଙ୍କର ଲିଙ୍ଗରେ ଲୀନ ହୋଇଯିବା ପରେ ସେହି ସମୟରେ ସମସ୍ତ ଲୋକ ଆଶ୍ଚର୍ଯ୍ୟଚକିତ ହୋଇଗଲେ ତଥା ଶୈବୀଭକ୍ତି ପ୍ରମାଣିତ ହୋଇଗଲା ।। ୫୦।।

**ଶ୍ରୀବେଦାଗମବୀରଶୈବସରଣିଂ ଶ୍ରୀଷଟ୍‌ସ୍ଥଲୋଦ୍ୟନ୍ମଣିଂ**
**ଶ୍ରୀଜୀବେଶ୍ୱରଯୋଗପଦ୍ମତରଣିଂ ଶ୍ରୀଗୋପ୍ୟଚିନ୍ତାମଣିମ୍ ।**
**ଶ୍ରୀସିଦ୍ଧାନ୍ତଶିଖାମଣିଂ ଲିଖୟିତା ଯସ୍ତଂ ଲିଖିତ୍ୱା ପରାନ୍**
**ଶ୍ରୁତ୍ୱା ଶ୍ରାବୟିତା ସ ଯାତି ବିମଳାଂ ଭୁକ୍ତିଂ ଚ ମୁକ୍ତିଂ ପରାମ୍ ।। ୫୪।।**

ଶ୍ରୀବେଦାଗମବୀରଶୈବସରଣିଂ ମଙ୍ଗଳକରସକଳସମୟଶାସ୍ତ୍ରୋତ୍ତରବେଦାଗମ-ପ୍ରତିପାଦ୍ୟବୀରଶୈବସରଣିରେବ ସରଣିର୍ଯସ୍ୟେତ୍ୟର୍ଥଃ, ଶ୍ରୀଷଟ୍‌ସ୍ଥଲୋଦ୍ୟନ୍ମଣିଂ ମଙ୍ଗଳାତ୍ମକୈକୋତ୍ତରଶତସ୍ଥଲରୂପାଙ୍ଗଲିଙ୍ଗଷଟ୍‌ସ୍ଥଲମାର୍ଗପ୍ରକାଶନଶାଣୋଲ୍ଲୀଢରତ୍ନମ୍, ଶ୍ରୀଜୀବେଶ୍ୱରଯୋଗପଦ୍ମତରଣିଂ ଶୋଭମାନଜୀବପରମୈକ୍ୟଲକ୍ଷଣକମଲବିକସନାର୍କମ୍, ଶ୍ରୀଗୋପ୍ୟଚିନ୍ତାମଣିଂ ମଙ୍ଗଳକରଶିବରହସ୍ୟାର୍ଥପ୍ରକାଶନଚିନ୍ତାରତ୍ନଂ ତଂ ଶ୍ରୀସିଦ୍ଧାନ୍ତ-ଶିଖାମଣ୍ୟାଖ୍ୟବୀରଶୈବଶାସ୍ତ୍ରଂ ଯୋ ଲିଖିତ୍ୱା ପରାନ୍ ଲେଖୟିତା, ଯଃ ଶ୍ରୁତ୍ୱା ପରାନ୍ ଶ୍ରାବୟିତ୍ୱା, ସ ବିମଲାଂ ଭକ୍ତିଂ ପରାଂ ମୁକ୍ତିଂ ଚ ଯାତି ପ୍ରାପ୍ନୋତୀତ୍ୟର୍ଥଃ ।। ୫୪।।

– (ଫଳଶ୍ରୁତି ବର୍ଣ୍ଣନ) – ଶ୍ରୀବେଦାଗମ ବୀରଶୈବ ସିଦ୍ଧାନ୍ତର ଅନୁସରଣ କରୁଥିବା, ମଙ୍ଗଳକାରୀ ଛଅ ସ୍ଥଳରେ ଚମକୁଥିବା ମଣି, ଜୀବ ଏବଂ ଈଶ୍ୱରଙ୍କର ଯୋଗରୂପୀ କମଳର ସୂର୍ଯ୍ୟ, ଗୋପ୍ୟ ଚିନ୍ତାମଣି ·ରୂପ ଶ୍ରୀସିଦ୍ଧାନ୍ତଶିଖାମଣିକୁ ଲେଖିବାବାଲା ଯେଉଁ ମନୁଷ୍ୟ ଏହାକୁ ଲେଖିବ ଅଥବା ଲେଖାଇବ ଅଥବା ଲେଖିକରି ଶୁଣାଇବ ଅଥବା ସ୍ୱୟଂ ଶୁଣିବ, ସେ ନିର୍ମଳ ଭୋଗ ଏବଂ ପରମୋକ୍ଷକୁ ପ୍ରାପ୍ତ କରେ ।। ୫୪।।

ଇତି ଶ୍ରୀମଦ୍‌ଷଡ୍‌ସ୍ଥଲବ୍ରହ୍ମିଣା ଶିବଯୋଗିନାମ୍ନା ରେଣୁକାଚାର୍ଯ୍ୟେଣ ବିରଚିତେ ବୀରଶୈବଧର୍ମନିର୍ଣ୍ଣୟେ ସିଦ୍ଧାନ୍ତଶିଖାମଣୌ ରେଣୁକବିଭୀଷଣସଂବାଦେ ରେଣୁକଶିବ-ଲିଙ୍ଗୈକ୍ୟପ୍ରସଙ୍ଗୋ ନାମୈକବିଂଶଃ ପରିଚ୍ଛେଦଃ ।। ୨୧।।

ଇତି ଶ୍ରୀମଦ୍‌ପଦବାକ୍ୟପ୍ରମାଣପାରାବାରଧୁରୀଣଶ୍ରୀମରିତୋଣ୍ଟଦାର୍ଯ୍ୟେଣ ବିରଚିତାୟାଂ ତତ୍ତ୍ୱପ୍ରଦୀପିକାଖ୍ୟାୟାଂ ସିଦ୍ଧାନ୍ତ ଶିଖାମଣିବ୍ୟାଖ୍ୟାୟାଂ ରେଣୁକ-ବିଭୀଷଣସଂବାଦେ ରେଣୁକଶିବଲିଙ୍ଗୈକ୍ୟପ୍ରସଙ୍ଗୋ ନାମୈକବିଂଶଃ ପରିଚ୍ଛେଦଃ ।।୨୧।।

– ଏହିପରି ଶ୍ରୀସିଦ୍ଧାନ୍ତ ଶିଖାମଣିର ରେଣୁକବିଭୀଷଣସମ୍ବାଦ ତଥା ରେଣୁକ-ଶିବଲିଙ୍ଗୈକ୍ୟପ୍ରସଙ୍ଗ ନାମକ ଏକବିଂଶ ପରିଚ୍ଛେଦର ଆଚାର୍ଯ୍ୟ ରାଧେଶ୍ୟାମଚତୁର୍ବେଦୀକୃତ 'ଜ୍ଞାନବତୀ' ହିନ୍ଦୀ ବ୍ୟାଖ୍ୟାର ଓଡ଼ିଆ ଅନୁବାଦ ସମ୍ପୂର୍ଣ୍ଣ ହେଲା ।। ୨୧।।



# ପରିଶିଷ୍ଟାନି

## ଶ୍ଲୋକାର୍ଧାନୁକ୍ରମଣୀ

# ବ୍ୟାଖ୍ୟୋଦ୍ଧୃତ ଗ୍ରନ୍ଥ – ସଙ୍କେତସୂଚୀ

| | | |
|---|---|---|
| ଅ. କୋ. | – | ଅମରକୋଷ |
| ଅମ. ଉ. | – | ଅମନସ୍କୋପନିଷଦ୍ |
| ଅ. ବ. | – | ଅଭିଯୁକ୍ତବଚନ |
| ଅ. ଶିଖୋ. | – | ଅଥର୍ବଶିଖୋପନିଷଦ୍ |
| ଅ. ଶିର. | – | ଅଥର୍ବଶିର ଉପନିଷଦ୍ |
| ଅ. ଶ୍ରୁ. | – | ଅଥର୍ବଶ୍ରୁତି |
| ଆ. | – | ଆଗମ |
| ଆ. ପୁ. | – | ଆଦିତ୍ୟପୁରାଣ |
| ଆ. ଶ୍ରୁ. | – | ଆଥର୍ବଣଶ୍ରୁତି |
| ଇ. ପ୍ର. | – | ଈଶ୍ୱରପ୍ରତ୍ୟଭିଜ୍ଞା |
| ଋ. | – | ଋଗ୍‌ବେଦ |
| ଐ. ଆ. | – | ଐତରେୟାରଣ୍ୟକ |
| ଐ. ଉ. | – | ଐତରେୟୋପନିଷଦ୍ |
| ଐ. ଶ୍ରୁ. | – | ଐତରେୟଶ୍ରୁତି |
| କ. ଉ. | – | କଠୋପନିଷଦ୍ |
| କା. ଆ. | – | କାମିକାଗମ |
| କି. ତ. | – | କିରଣତନ୍ତ୍ର |
| କି. ଆ. | – | କିରଣାଗମ |
| କୈ. ଉ. | – | କୈବଲ୍ୟୋପନିଷଦ୍ |
| କୌ. ବ୍ରା. ଉ. | – | କୌଷତକିବ୍ରାହ୍ମଣୋପନିଷଦ୍ |
| ଛା. ଉ. | – | ଛାନ୍ଦୋଗ୍ୟୋପନିଷଦ୍ |
| ଜା. ଉ. | – | ଜାବାଲୋପନିଷଦ୍ |
| ଜୈ. ବ୍ରା. | – | ଜୈମିନୀୟବ୍ରାହ୍ମଣୋପନିଷଦ୍ |
| ତ. ପ୍ର. | – | ତତ୍ତ୍ୱପ୍ରକାଶ |
| ତୈ. ଆ. | – | ତୈତ୍ତିରୀୟାରଣ୍ୟକ |
| ତୈ. ଉ. | – | ତୈତ୍ତିରୀୟୋପନିଷଦ୍ |
| ତ୍ର. ତ. | – | ତ୍ରୟୀତନ୍ତ୍ର |
| ତ୍ରି. ମ. | – | ତ୍ରିପାଦ୍ୱିଭୂତିମହାନାରାୟଣୋପନିଷଦ୍ |
| ଦେ. କା. | – | ଦେବୀକାଲୋତ୍ତର |
| ନି. କା. | – | ନିଶ୍ୱାସକାରିକା |

| | | |
|---|---|---|
| ନୃ. ଉ. | – | ନୃସିଂହୋତ୍ତରତାପନୀୟୋପନିଷଦ୍ |
| ପ. ତ. | – | (ପତି) ପରାତନ୍ତ୍ର |
| ପ. ତ୍ରୀ. | – | ପରାତ୍ରୀଶିକା |
| ପା. ଉ. | – | ପାରାଶରୋପପୁରାଣ |
| ପା.ଯୋ.ସୂ. | – | ପାତଞ୍ଜଲଯୋଗସୂତ୍ର |
| ପୁ. | – | ପୁରାଣ |
| ପୌ. ଆ. | – | ପୌଷ୍କରାଗମ |
| ପ୍ର. ଉ. | – | ପ୍ରଶ୍ନୋପନିଷଦ୍ |
| ପ୍ରାଭା. | – | ପ୍ରାଭାକର |
| ବୃ. ଉ. | – | ବୃହଦାରଣ୍ୟକୋପନିଷଦ୍ |
| ବ୍ର. ଉ. | – | ବ୍ରହ୍ମୋତ୍ତରଖଣ୍ଡ |
| ବ୍ର. ବି. ଉ. | – | ବ୍ରହ୍ମବିନ୍ଦୂପନିଷଦ୍ |
| ବ୍ର. ସୂ. | – | ବ୍ରହ୍ମସୂତ୍ର |
| ଭ. ଗୀ. | – | ଭଗବଦ୍‌ଗୀତା |
| ମ. ନା. ଉ. | – | ମହାନାରାୟଣୋପନିଷଦ୍ |
| ମ. ମ. ପ. | – | ମହାର୍ଥମଞ୍ଜରୀପରିମଳ |
| ମ. ସ୍ତ. | – | ମହିମ୍ନସ୍ତବ |
| ମହୋ. | – | ମହୋପନିଷଦ୍ |
| ମା. କା. | – | ମାଣ୍ଡୁକ୍ୟକାରିକା |
| ମା. ସଂ. | – | ମାଧ୍ୟନ୍ଦିନ ସଂହିତା |
| ମୀ. ସୂ. | – | ମୀମାଂସାସୂତ୍ର |
| ମୁ. ଉ. | – | ମୁଣ୍ଡକୋପନିଷଦ୍ |
| ମୃ. ବି. | – | ମୃଗେନ୍ଦ୍ରାଗମ ବିଦ୍ୟାପାଦ |
| ମୈ. ଉ. | – | ମୈତ୍ର୍ୟୁପନିଷଦ୍ |
| ଯା. ଶ୍ରୁ. | – | ଯାଜ୍ଞବଲ୍କ୍ୟଶ୍ରୁତି |
| ଯୋ. ଆ. | – | ଯୋଗାଗମ |
| ଯୋ. ଶା. | – | ଯୋଗଶାସ୍ତ୍ର |
| ଯୋ. ସୂ. | – | ଯୋଗସୂତ୍ର |
| ରୁ. ଜା. | – | ରୁଦ୍ରାକ୍ଷଜାବାଲୋପନିଷଦ୍ |
| ଲି. ଉ. | – | ଲିଙ୍ଗୋପନିଷଦ୍ |
| ଲି. ସୂ. | – | ଲିଙ୍ଗସୂକ୍ତ |
| ବ. ଉ. | – | ବରାହୋପନିଷଦ୍ |

| | | |
|---|---|---|
| ବା. ଉ. | – | ବାତୁଳୋତ୍ତର |
| ବା. ତ. | – | ବାତୁଳତନ୍ତ୍ର |
| ବା. ପ. | – | ବାକ୍ୟପଦୀୟ |
| ବା. ବ. | – | ବାସିଷ୍ଠବଚନ |
| ବା. ସଂ. | – | ବାୟବୀୟସଂହିତା |
| ବି. ପ. | – | ବିରୂପାକ୍ଷପଞ୍ଚାଶିକା |
| ବି. ସା. | – | ବିଶ୍ୱସାରୋତ୍ତର |
| ବୀ. ଆ. | – | ବୀରାଗମ |
| ବୀ. ତ. | – | ବୀରତନ୍ତ୍ର |
| ବେ. ବ. | – | ବେଦାନ୍ତବଚନ |
| ବ୍ୟା. ବ. | – | ବ୍ୟାସବଚନ |
| ଶ. ସଂ. | – | ଶଙ୍କରସଂହିତା |
| ଶି. ଆ. | – | ଶିବାଗମ |
| ଶି. ଦୃ. | – | ଶିବଦୃଷ୍ଟି |
| ଶି. ଧ. | – | ଶିବଧର୍ମୋତ୍ତର |
| ଶି. ର. | – | ଶିବରହସ୍ୟ |
| ଶି. ସଂ. ଉ. | – | ଶିବସଙ୍କଳ୍ପୋପନିଷଦ୍ |
| ଶ୍ରୁ. | – | ଶ୍ରୁତି |
| ଶ୍ୱେ. ଉ. | – | ଶ୍ୱେତାଶ୍ୱତରୋପନିଷଦ୍ |
| ସ. ଜ୍ଞା. | – | ସର୍ବଜ୍ଞାନୋତ୍ତର |
| ସ. ପ. | – | ସଙ୍କେତପଦ୍ଧତି |
| ସ. ମ. | – | ସର୍ବମଙ୍ଗଳାଶାସନ |
| ସି. ବ. | – | ସିଦ୍ଧାନ୍ତବଚନ |
| ସି. ଶି. | – | ସିଦ୍ଧାନ୍ତଶିଖାମଣି |
| ସୂ. ଗୀ. | – | ସୂତଗୀତା |
| ସୂ. ସଂ. | – | ସୂତସଂହିତା |
| ସ୍କ. ପୁ. | – | ସ୍କନ୍ଦପୁରାଣ |
| ସ୍ମୃ. | – | ସ୍ମୃତି |
| ସ୍ୱା. ଆ. | – | ସ୍ୱାୟମ୍ଭୁବାଗମ |
| ହଂ. ଉ. | – | ହଂସୋପନିଷଦ୍ |



# ନ୍ୟାୟସୂଚୀ

ଅଣ୍ଡରସନ୍ୟାୟ
ଅହିକୁଣ୍ଡଳନ୍ୟାୟ
କାକାକ୍ଷିନ୍ୟାୟ
କୂର୍ମଭଙ୍ଗିନ୍ୟାୟ
କ୍ଷୀରନୀରନ୍ୟାୟ
ଘୃତକାଠିନ୍ୟନ୍ୟାୟ
ଘୃତକୀଟନ୍ୟାୟ
ଦଗ୍ଧପଟନ୍ୟାୟ
ଦଣ୍ଡଭାଣ୍ଡନ୍ୟାୟ
ନହି ଭିକ୍ଷୁକୋ...ମିତି ନ୍ୟାୟ
ବୀଜାଙ୍କୁରନ୍ୟାୟ
ମୟୂରାଣ୍ଡରସନ୍ୟାୟ
ରଜ୍ଜୁସର୍ପ (ଭୁଜଙ୍ଗ)ନ୍ୟାୟ
ବହ୍ନ୍ୟୁଷ୍ଣତ୍ୱନ୍ୟାୟ
ବୃକ୍ଷଗତଫଳପୁଷ୍ପାଦିନ୍ୟାୟ
ଶିଖଣ୍ଡ୍ୟଣ୍ଡରସନ୍ୟାୟ
ଶୁକ୍ଲପଟନ୍ୟାୟ
ସନ୍ଦିଗ୍ଧାଦ୍ଧର୍ଥନ୍ୟାୟ
ସର୍ବଂ ଜ୍ଞାନଂ ଧର୍ମିଣ୍ୟଭ୍ରାନ୍ତମିତନ୍ୟାୟ
ସାଗରତରଙ୍ଗନ୍ୟାୟ
ସିଂହମାଣବକନ୍ୟାୟ
ସ୍ୱର୍ଣ୍ଣକୁଣ୍ଡଳନ୍ୟାୟ





# ଶ୍ରୀସିଦ୍ଧାନ୍ତଶିଖାମଣି

## ପୁସ୍ତକପରିଚୟ

ଶ୍ରୀସିଦ୍ଧାନ୍ତଶିଖାମଣି ବୀରଶୈବପରମ୍ପରାର ମୂଳଗ୍ରନ୍ଥ । ପରମକାରୁଣିକ ଭଗବାନ୍ ଶିବଙ୍କର ଆଶୀର୍ବାଦରୁ ଶ୍ରୀଶୈଳପର୍ବତନିକଟସ୍ଥ ସୋମେଶ୍ୱରଲିଙ୍ଗରୁ ଉତ୍ପନ୍ନ ହୋଇ ଶ୍ରୀଜଗଦ୍‌ଗୁରୁରେଣୁକାଚାର୍ଯ୍ୟମହାମୁନି ଅଗସ୍ତ୍ୟଙ୍କୁ ଶିବରହସ୍ୟର ଜ୍ଞାନ ଦେଇଛନ୍ତି । ଏହି ଜ୍ଞାନରହସ୍ୟ ଉକ୍ତ ପସ୍ତକରେ ୨୧ଗୋଟି ଅଧ୍ୟାୟରେ ରେଣୁକ-ଅଗସ୍ତ୍ୟ ସଂବାଦରୂପେ ବର୍ଣ୍ଣିତ ହୋଇଅଛି । ବୀରଶୈବପରମ୍ପରାରେ ଏହା ପାରାୟଣ ଗ୍ରନ୍ଥରୂପେ ଆଦୃତ ହୋଇଅଛି । ଏହି ଗ୍ରନ୍ଥରେ ସୃଷ୍ଟି ପ୍ରକ୍ରିୟା, ରେଣୁକାଚାର୍ଯ୍ୟଙ୍କ ଉତ୍ପତ୍ତି, ଅଗସ୍ତ୍ୟଙ୍କ ସ୍ୱରୂପ, ବୀରଶୈବଦର୍ଶନର ମହତ୍ତ୍ୱ, ଦୀକ୍ଷା, ଭସ୍ମଧାରଣବିଧି, ଜପମାହାତ୍ମ୍ୟ, ଭକ୍ତି, ମାହେଶ୍ୱରସ୍ଥଳ, ଲିଙ୍ଗନିଷ୍ଠାସ୍ଥଳ, ଭକ୍ତଦେହିକ ଲିଙ୍ଗସ୍ଥଳ, ଜଙ୍ଗମମାହାତ୍ମ୍ୟ, ଶରଣାଗତି, ପ୍ରାଣଲିଙ୍ଗାର୍ଚ୍ଚନ, ଅଙ୍ଗଲିଙ୍ଗ, ଶୀଳସଂପାଦନ, ଦୀକ୍ଷାଗୁରୁ, ଶିକ୍ଷାଗୁରୁ, ଜ୍ଞାନଗୁରୁ, କ୍ରିୟାଗମ, ଧର୍ମାଚାର, ଜ୍ଞାନାଚାର, ପ୍ରାଣାନୁଗ୍ରହ, ଆତ୍ମଲିଙ୍ଗ, ପିଣ୍ଡାକାଶ, ବିନ୍ଦାକାଶ, ମହାକାଶ, କ୍ରିୟା-ଭାବ-ଜ୍ଞାନପ୍ରକାଶସ୍ଥଳ, ବିଭୀଷଣଙ୍କ ଦ୍ୱାରା ଅଭୀଷ୍ଟଦାନ ଏବଂ କୋଟିଲିଙ୍ଗସ୍ଥାପନା ପ୍ରସଙ୍ଗ ଆଦି ବିସ୍ତୃତରୂପରେ ବର୍ଣ୍ଣିତ ହୋଇଅଛି । ଅନୁକ୍ରମଣିକାରେ ଶ୍ଳୋକାର୍ଦ୍ଧସୂଚୀ ଦିଆଯାଇଛି । ବୀରଶୈବଧର୍ମସ୍ଥାପନା ନିମନ୍ତେ କର୍ଣ୍ଣାଟକର ରମ୍ଭାପୁରୀ, ମଧ୍ୟପ୍ରଦେଶର ଉଜ୍ଜୟିନୀ, ଉତ୍ତରାଞ୍ଚଳର ଓଖୀମଠ, ଆନ୍ଧ୍ରପ୍ରଦେଶର ଶ୍ରୀଶୈଳ ଏବଂ ଉତ୍ତରପ୍ରଦେଶର କାଶୀଠାରେ ଧର୍ମପୀଠ ସ୍ଥାପନା କରାଯାଇଛି ।



Sree Rama Offset Printers, Mahabubnagar, Telangana State_09440296637